*ଆଦାନ-ପ୍ରଦାନ*

# ଜଗନ୍ନାଥ ପ୍ରସାଦ ଦାସଙ୍କ
# ଶ୍ରେଷ୍ଠ ଗଳ୍ପ

ସଂପାଦନା

ଗୁରୁଚରଣ ବେହେରା



nbt.india

एकः सूते सकलम्

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ISBN 978-81-237-7325-4

ପ୍ରଥମ ସଂସ୍କରଣ 2014 (ଶକାବ୍ଦ 1936)



Jagannath Prasad Dasanka Shrestha Galpa *(Odia Original)*

**₹ 290.00**

ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ନେହେରୁ ଭବନ, 5, ଇନ୍‌ଷ୍ଟିଚ୍ୟୁସନାଲ ଏରିଆ, ଫେଜ୍ - II
ବସନ୍ତକୁଞ୍ଜ, ନୂଆ ଦିଲ୍ଲୀ - 110070 କର୍ତ୍ତୃକ ପ୍ରକାଶିତ
Website : www.nbtindia.gov.in

# ସୂଚୀ


| | |
|---|---|
| *ମୁଖବନ୍ଧ* | *vii* |
| ଶବ୍ଦଭେଦ | 1 |
| ମୃତ୍ୟୁବୋଧ | 13 |
| ସତ୍ୟାସତ୍ୟ | 24 |
| ନିର୍ଦ୍ଧାରିତ ସ୍ଥାନ | 34 |
| ପିକନିକ | 40 |
| ନିଜତ୍ୱ | 47 |
| ମଲା ଲୋକ | 62 |
| ଅମରତ୍ୱ | 68 |
| ବାଘ | 74 |
| ସ୍ୱର୍ଣ୍ଣ | 79 |
| ଫଟୋଗ୍ରାଫ | 87 |
| ସାହିତ୍ୟକାର | 95 |
| ସଂପ୍ରଦାୟ | 104 |
| ସାକ୍ଷାତ୍‌କାର | 111 |
| ସାମ୍ରାଜ୍ୟ | 119 |
| ପ୍ରତିଦ୍ୱନ୍ଦ୍ୱୀ | 128 |
| ସବୁ ଅଛି କିଛି ନାହିଁ | 139 |
| ଜଣା ଅଜଣା | 155 |
| ଚରମ ପତ୍ର | 166 |
| ଦେଖଣାହାରି | 184 |
| ଭୃତ୍ୟ | 196 |

ସ୍ୱାତୀ ଆସିବ 209
ମନ୍ତ୍ର 221
କୁଶୀଲବ 238
ଭାବମୂର୍ତ୍ତି 254
କବିତାର ଦୀର୍ଘ ଜୀବନ 271

# ମୁଖବନ୍ଧ

## ୧

ଜଗନ୍ନାଥ ପ୍ରସାଦ ଦାସଙ୍କ ପ୍ରଥମ ଗଳ୍ପ 'ଶବ୍ଦଭେଦ' ୧୯୮୦ ମସିହାରେ ପ୍ରକାଶ ପାଇବା ପୂର୍ବରୁ ସେ କେତୋଟି ନାଟକ ଲେଖିଥିଲେ, ନାଟକରେ ଅଭିନୟ କରିଥିଲେ, କବି ଭାବରେ ଖ୍ୟାତି ଅର୍ଜନ କରିସାରିଥିଲେ, ନିଜର ଚିତ୍ରକଳାର ପ୍ରଦର୍ଶନୀ କରାଇଥିଲେ ଓ ଚିତ୍ରକଳା ଉପରେ ଗବେଷଣା ଆରମ୍ଭ କରିଦେଇଥିଲେ, ଯାହାର ପରିଣତି ଥିଲା ୧୯୮୨ ମସିହାରେ 'ପୁରୀ ଚିତ୍ର' (Puri Paintings) ପୁସ୍ତକର ପ୍ରକାଶନ । ତେଣୁ ତାଙ୍କର ଗଳ୍ପଗୁଡ଼ିକରେ ଏ ସମସ୍ତ ସାହିତ୍ୟ-ବିଭାଗର ଆଙ୍ଗିକର ପ୍ରୟୋଗ ଦେଖିବାକୁ ମିଳେ । ଅର୍ଥାତ କାବ୍ୟିକ ଆବେଦନ, ନାଟକୀୟ ଉତ୍କଣ୍ଠା, ଗବେଷଣାଗତ ବିଶ୍ଳେଷଣ, ଶବ୍ଦ ମାଧ୍ୟମରେ ଦୃଶ୍ୟ-ଚିତ୍ର ଅଙ୍କନ, ଆକର୍ଷଣୀୟ କଥନଶୈଳୀର ସମ୍ମିଶ୍ରଣ ତାଙ୍କ ଗଳ୍ପର ବୈଶିଷ୍ଟ୍ୟ । ବିଷୟବସ୍ତୁ ଦୃଷ୍ଟିରୁ ତାଙ୍କର ଗଳ୍ପ ହେଉଛି ସତ୍ୟ ଓ ବାସ୍ତବତାର ଆପେକ୍ଷିକତା ଓ ଅନିର୍ଦ୍ଦିଷ୍ଟତା ଉପରେ ଟିପ୍ପଣୀ । ବିଷୟ ଓ ଆଙ୍ଗିକକୁ ଅବଶ୍ୟ ଭିନ୍ନ ଭାବରେ ଦେଖାଯାଇପାରେ ନାହିଁ । ବାସ୍ତବ ଅଭିଜ୍ଞତା ଭିତରେ ତାଙ୍କର ନିମଜ୍ଜନ, ସରକାରୀ ପ୍ରଶାସକ ଭାବରେ ସାଧାରଣ ମଣିଷର ଦୁଃଖ ଦୈନ୍ୟ ବିରୁଦ୍ଧରେ ନିରନ୍ତର ସଂଘର୍ଷ ସହିତ ତାଙ୍କର ସଂପୃକ୍ତି ତାଙ୍କୁ ଅପସୃୟମାନ ବହୁରୂପୀ ସତ୍ୟ ବାସ୍ତବତାର ଉପଲବ୍ଧି ଆଣି ଦେଇଥିଲା ।

ଜଗନ୍ନାଥ ପ୍ରସାଦ ଦାସଙ୍କ ଜନ୍ମ ୧୯୩୬ରେ । ପିତା ଶ୍ରୀଧର ଦାସ ଓ ମାତା ଇନ୍ଦୁଦେବୀଙ୍କର ଲାଳନ ପାଳନ ଓ ପରିବାରର ପରିବେଶ ତାଙ୍କ ଭିତରେ ଜ୍ଞାନ ପିପାସା, ସୃଜନ ଶକ୍ତିର ଉଦ୍ରେକ କରିଥିଲା । କଟକର ମିଶନ୍ ସ୍କୁଲରୁ ମାଟ୍ରିକ ପାଶ୍, ରେଭେନ୍‌ସା କଲେଜରେ ଅର୍ଥନୀତିରେ ସମ୍ମାନ ସହିତ ସ୍ନାତକ ଓ ତା'ପରେ ଏହ୍ଲାହାବାଦ ବିଶ୍ୱବିଦ୍ୟାଳୟରେ ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ଅଧ୍ୟୟନ ତାଙ୍କ ଛାତ୍ର ଜୀବନର ଏକ ସ୍ଥୂଳ ବିବରଣୀ । ସେହି ଏହ୍ଲାହାବାଦ ବିଶ୍ୱବିଦ୍ୟାଳୟରେ ଏକବର୍ଷ ଅଧ୍ୟାପନା କରିବା ପରେ ୧୯୫୮ରେ ଆଇ.ଏ.ଏସ୍ ପରୀକ୍ଷାରେ ସେ କୃତିତ୍ୱ ଅର୍ଜନ କରନ୍ତି ।

ପ୍ରଶାସକ ହିସାବରେ ସେ ବଡ଼ ଆହ୍ୱାନର ସମ୍ମୁଖୀନ ହୁଅନ୍ତି ଯେତେବେଳେ ଅନବରତ ମରୁଡ଼ି ପ୍ରପୀଡ଼ିତ କଳାହାଣ୍ଡି ଜିଲ୍ଲାର କଲେକ୍ଟର ଥିଲେ, ୧୯୬୩ରୁ ୧୯୬୬ ପର୍ଯ୍ୟନ୍ତ । ତଳ ସ୍ତରର ମଣିଷଙ୍କ ଦୁର୍ଦ୍ଦଶା ଏବଂ ଉପର ସ୍ତରର ଲୋକଙ୍କର ଏଥିପ୍ରତି ଚରମ ଉଦାସୀନତାର ଅନୁଭବ ତାଙ୍କ ପାଇଁ ବଡ଼ ମର୍ମନ୍ତୁଦ ଥିଲା । ମରୁଡ଼ି ସଂପର୍କରେ ତାଙ୍କ ଦ୍ୱାରା ପ୍ରସ୍ତୁତ ପ୍ରଦତ୍ତ କରାଳ ଚିତ୍ରର ଦୁଃଖଦ ବିବରଣୀ, ତା'ର ସମାଧାନର ସବିଶେଷ ପ୍ରସ୍ତାବ, ଅନୁରୋଧ, ଆବେଦନ ଉଚ୍ଚ ପ୍ରଶାସନିକ ସ୍ତରରେ ବିଶେଷ ଆଲୋଡ଼ନ ଓ ପ୍ରତିକ୍ରିୟା ସୃଷ୍ଟି କରୁନଥିଲା । ଫାଇଲ୍‌ର ନାଲିଫିତା ତଳେ ସବୁ ଚାପିହୋଇ ରହିଯାଉଥିଲା । ଏହାର ଏକ ଅନୁରୂପ ସମାନ୍ତରାଳ ଚିତ୍ର ସେ ପ୍ରଦାନ କରିଛନ୍ତି ତାଙ୍କର ଦେଶ କାଳ ପାତ୍ର (୧୯୯୨)ରେ ନ'ଅଙ୍କ ଦୁର୍ଭିକ୍ଷ ସଂକ୍ରାନ୍ତୀୟ ରିପୋର୍ଟ ପ୍ରତି ରେଭେନ୍‌ସା ସାହେବଙ୍କର ନିଷ୍ଠୁର ଉଦାସୀନତାର ବର୍ଣ୍ଣନା ମାଧ୍ୟମରେ । ଓଡ଼ିଶା ଓ ଦିଲ୍ଲୀରେ ବିଭିନ୍ନ ପଦବୀରେ ରହିବା ପରେ ୧୯୮୪ରେ ଆଇ.ଏ.ଏସ୍. ଚାକିରିରୁ ଇସ୍ତଫା ଦିଅନ୍ତି ଓ ସାହିତ୍ୟ ଓ କଳା ସାଧନାରେ ବ୍ରତୀ ହୁଅନ୍ତି । ସାହିତ୍ୟ କଳା ପାଇଁ ଆଇ.ଏ.ଏସ୍. ରୁ ଇସ୍ତଫା ଦେଇଥିବା ଏକ ବିରଳ ବ୍ୟକ୍ତିତ୍ୱ ହେଉଛନ୍ତି ଜଗନ୍ନାଥ ପ୍ରସାଦ ଦାସ ।

କବିତା ଥିଲା ଜଗନ୍ନାଥ ପ୍ରସାଦଙ୍କର ପ୍ରଥମ ପ୍ରେମ । ପିଲାଦିନରୁ ଥିଲା କବିତା ଲେଖିବାର ଝୁଙ୍କ୍ । ରେଭେନ୍ସା କଲେଜ ସମୟରେ ତାଙ୍କର କବିତା ଡଗର, ଝଙ୍କାର, ଆସନ୍ତାକାଲି, ପ୍ରଭାତୀ, ପ୍ରଜାତନ୍ତ୍ର, ଆଶା ଆଦି ପତ୍ରପତ୍ରିକାରେ ପ୍ରକାଶ ପାଏ । ବିଶିଷ୍ଟ କଥାକାର ମନୋଜ ଦାସଙ୍କ ସହିତ ଆଗାମୀ ପତ୍ରିକାର ସହ-ସଂପାଦନା କରନ୍ତି । ସେ ସମୟର ବରିଷ୍ଠ କବି କାଳିନ୍ଦି ଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ବୈକୁଣ୍ଠନାଥ ପଟ୍ଟନାୟକ ଏବଂ ଅନ୍ୟମାନଙ୍କ ସହିତ କବିତା ସଂକଳନରେ ତାଙ୍କର କବିତା ସ୍ଥାନ ପାଏ । ୧୯୬୦ରେ ସେ ଦୁଇଟି ନାଟକ ଲେଖିଥିଲେ । ୧୯୭୧ରେ ତାଙ୍କ ଦ୍ୱାରା ଲିଖିତ ନାଟକ 'ସୂର୍ଯ୍ୟାସ୍ତ ପୂର୍ବରୁ' ବଙ୍ଗଳା ଭାଷାରେ ଅନୂଦିତ ହୋଇ ୧୯୭୨ରେ ମଞ୍ଚସ୍ଥ ହୁଏ । ୧୯୭୭ରେ ଏହି ନାଟକଟି ଓଡ଼ିଆରେ ପ୍ରକାଶ ପାଏ । ଏଠାରେ ଉଲ୍ଲେଖଯୋଗ୍ୟ ଯେ 'ପୂର୍ବରାଗ' ନାଟକରେ ସେ ଓ ପତ୍ନୀ ମିତା ଅଭିନୟ କରିଥିଲେ । କ୍ରମଶଃ ସେ ରଙ୍ଗମଞ୍ଚ ବଳୟକୁ ଟାଣିହୋଇ ଆସନ୍ତି । ଅନନ୍ତ ମହାପାତ୍ରଙ୍କ ପରି ନାଟ୍ୟଶିଳ୍ପୀଙ୍କ ସହିତ ତାଙ୍କର ବନ୍ଧୁତ୍ୱ ତାଙ୍କୁ ନାଟକ ସିନେମା ସହିତ ଅଧିକରୁ ଅଧିକ ଜଡ଼ିତ କରାଏ । କଟକ ସାଂସ୍କୃତିକ ପରିଷଦ ଓ କଳା ବିକାଶ କେନ୍ଦ୍ରର ସଭାପତି ପଦ ଅଳଂକୃତ କରନ୍ତି । ତାଙ୍କ ଦ୍ୱାରା ଲିଖିତ ଅନ୍ୟାନ୍ୟ ନାଟକଗୁଡ଼ିକ ହେଲା ସବାଶେଷ ଲୋକ, ଅସଂଗତ ନାଟକ ଓ ସୁନ୍ଦର ଦାସ । ଅନେକ ସମୀକ୍ଷକଙ୍କ ମତରେ 'ସୁନ୍ଦର ଦାସ' ତାଙ୍କର ଶ୍ରେଷ୍ଠ ନାଟକ ।

ମଞ୍ଚକଳା ସାଙ୍ଗକୁ ସେ ଚିତ୍ରକଳାରେ ଧ୍ୟାନ ଦିଅନ୍ତି । ତାଙ୍କ ଚିତ୍ରକଳାର ପ୍ରଥମ

ପ୍ରଦର୍ଶନୀ ୧୯୭୮ ମସିହାରେ ହୁଏ । କ୍ରମଶଃ ଚିତ୍ରକଳା ଇତିହାସ ଗବେଷଣାରେ ମନୋନିବେଶ କରନ୍ତି । ମଞ୍ଚକଳାରୁ ଚିତ୍ରକଳା, ଚିତ୍ରକଳାରୁ ଚିତ୍ରକଳା ଇତିହାସ ତାଙ୍କ ପ୍ରତିଭାର ସ୍ୱାଭାବିକ ସରଣୀ । ପଟ୍ଟଚିତ୍ରର ଗାଁ ରଘୁରାଜପୁର ତାଙ୍କ ଗବେଷଣାର ଲାବୋରେଟୋରୀ ପାଲଟିଯାଏ । ୧୯୮୨ରେ ପ୍ରକାଶ ପାଏ 'Puri Paintings' । ଏହା ଅନେକ ପ୍ରଶଂସାମୂଳକ ସମୀକ୍ଷା ପାଏ । ପରେ ପରେ 'ଚିତ୍ରପୋଥି' ପ୍ରକାଶ ପାଏ ୧୯୮୫ରେ ।

ଅନେକ ଦିନର ବ୍ୟବଧାନ ପରେ ତାଙ୍କର କବି ଜୀବନର ଖିଅକୁ ସେ ଗୋଟାଇ ନିଅନ୍ତି । ୧୯୭୧ରେ ତାଙ୍କର ପ୍ରଥମ କବିତା ସଂକଳନ 'ପ୍ରଥମ ପୁରୁଷ' ପ୍ରକାଶ ପାଏ । ଏହାର ପ୍ରଚ୍ଛଦପଟ ଆଙ୍କିଥିଲେ ବିଶିଷ୍ଟ ଚଳଚ୍ଚିତ୍ର ନିର୍ଦ୍ଦେଶକ ସତ୍ୟଜିତ ରାୟ । ପରେ ପରେ ଆସେ ଅନ୍ୟସବୁ ମୃତ୍ୟୁ (୧୯୭୬), ଯେ ଯାହାର ନିର୍ଜନତା (୧୯୭୯), ଅନ୍ୟ ଦେଶ ଭିନ୍ନ ସମୟ (୧୯୮୨), ଯାତ୍ରାର ପ୍ରଥମ ପାଦ (୧୯୮୮), ଆହ୍ନିକ (୧୯୯୦), ସ୍ଥିରଚିତ୍ର (୧୯୯୧), ସଚରାଚର (୧୯୯୪), ସ୍ମୃତିର ସହର (୧୯୯୫), ପରିକ୍ରମା (୧୯୯୮), ଅସମୟ (୨୦୦୪) । ଆହ୍ନିକ ୧୯୯୧ରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଁ ବିବେଚିତ ହୋଇଥିଲା, କିନ୍ତୁ ଲେଖକ ଏହାକୁ ଗ୍ରହଣ କରିନଥିଲେ ।

୧୯୮୦ରେ ଶବ୍ଦଭେଦର ପ୍ରକାଶନ ପରେ ଗଳ୍ପ ସଂକଳନ ଭବନାଥ ଓ ଅନ୍ୟମାନେ (୧୯୮୨), ଦିନଚର୍ଯ୍ୟା (୧୯୮୩), ଆମେ ଯେଉଁମାନେ (୧୯୮୬), ସାକ୍ଷାତ୍‌କାର (୧୯୮୭), ପ୍ରିୟ ବିଦୂଷକ (୧୯୯୨), ଶେଷ ପର୍ଯ୍ୟନ୍ତ (୧୯୯୫), ଇଚ୍ଛାପତ୍ର (୨୦୦୦), ଇନ୍ଦ୍ରଧନୁ, ଆଖି ଓ କବିତାର ଦୀର୍ଘଜୀବନ (୨୦୦୯) ଏପରି ଆଠଟି ଗଳ୍ପ ସଂକଳନ । ୧୯୯୮ରେ 'ପ୍ରିୟ ବିଦୂଷକ' ପାଇଁ ସମ୍ମାନଜନକ ସାରଳା ପୁରସ୍କାର ପାଆନ୍ତି ସେ । ତାଙ୍କର ଅନେକ କବିତା ଓ ଗଳ୍ପ ଇଂରାଜୀ ଓ ଅନ୍ୟାନ୍ୟ ଭାଷାରେ ଅନୂଦିତ ହୋଇ ପ୍ରକାଶ ପାଇଛି । କାହାଣୀ ଓ ଇତିହାସ ରଚନାର ଅଭିଜ୍ଞତାକୁ ଆଧାର କରି ସେ ରଚନା କରନ୍ତି ଦେଶ କାଳ ପାତ୍ର (୧୯୯୨) । ଏହାକୁ ଐତିହାସିକ ଉପନ୍ୟାସ ନକହି ବରଂ ଔପନ୍ୟାସିକ ଇତିହାସ କୁହାଯାଇପାରେ ।

ଜଗନ୍ନାଥ ପ୍ରସାଦଙ୍କର ଜୀବନ ଅଭିଜ୍ଞତା ଓ ସାହିତ୍ୟିକ ଅଭିଜ୍ଞତାର ଏହି ସଂକ୍ଷିପ୍ତ ବିବରଣୀ ଦେବାର ମୋର ଲକ୍ଷ୍ୟ ହେଉଛି ଲେଖକଙ୍କର ଜୀବନ ଓ ସାହିତ୍ୟ ମଧ୍ୟରେ ଥିବା ସଂପର୍କର ସୂତ୍ର ଉପରେ ଆଲୋକପାତ କରିବା । ଏହାର ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ହେଉଛି କବି ନାଟ୍ୟକାର, ଚିତ୍ରକର ଓ ଗବେଷକର ଅନୁଭୂତି ତାଙ୍କର କାହାଣୀ କଥନର ପ୍ରକ୍ରିୟାରେ କିପରି ଅଂଶଗ୍ରହଣ କରିଛି ତାହା ଦର୍ଶାଇବା ।

## ୨

ଜଗନ୍ନାଥ ପ୍ରସାଦଙ୍କ ପ୍ରଥମ ଗଳ୍ପ 'ଶବ୍ଦଭେଦ'କୁ ତାଙ୍କ ଗଳ୍ପ ସମଗ୍ର ଏବଂ ଏହି ସଂକଳନର ଉପକ୍ରମଣିକା ବା ଗାଳ୍ପିକ ଫ୍ରେମ୍‌ୱାର୍କ ଭାବରେ ନିଆଯାଇପାରେ । ତାଙ୍କର ପରବର୍ତ୍ତୀ ଗଳ୍ପଗୁଡ଼ିକର ଭ୍ରୂଣ ଏହି ଗଳ୍ପରେ ମିଳିପାରେ । ପ୍ରଥମ ପୁରୁଷ କଥନ ଦୃଷ୍ଟିଭଙ୍ଗୀରେ ଭବନାଥର କାହାଣୀ କଥାକାର ପରିବେଷଣ କରନ୍ତି, କଥାକାର ନିଜେ ଏହାର କଥକ ଓ ଏକ ଚରିତ୍ର ମଧ୍ୟ । ଭବନାଥ ବଞ୍ଚେ ଶବ୍ଦର ଦୁନିଆରେ, ନିତି ଶବ୍ଦ ସହିତ ଖେଳ ଖେଳେ, ଶବ୍ଦର ବିସ୍ତୃତି, ଗଭୀରତା ଓ ଶକ୍ତିର ଆକଳନ କରିଚାଲେ । ତା'ର କବିତା ଦୁର୍ବୋଧ୍ୟ ବୋଲି ଅଭିଯୋଗ ହୁଏ, କିନ୍ତୁ ତା'ର କବିତାର ଏକ ପଙ୍‌କ୍ତିକୁ ନେଇ ଦୁଇଟି ରାଜନୈତିକ ଦଳର ନେତାଙ୍କ ମଧ୍ୟରେ ଦ୍ୱନ୍ଦ ସୃଷ୍ଟି ହୁଏ ଓ ଏହି ଦ୍ୱନ୍ଦର ଶିକାର ହୁଏ ଭବନାଥ । ସେ କହେ ତା'ର ପ୍ରେମ ପରି ତା'ର କବିତା ଦୁର୍ବୋଧ୍ୟ । ପ୍ରେମିକା ବିଭା ହୋଇଯିବା ପରେ ବି ତା ସହିତ ଚିଠି ମାଧ୍ୟମରେ ସମ୍ପର୍କ ରଖେ । ଗୋଟିଏ ସମୟରେ ସମ୍ବାଦ ପଠାଏ । ସ୍ୱାମୀ ତା'ର ମରିଯାଇଛି, ଭବନାଥ ଆସି ତାକୁ ନେଇଯାଉ, କିନ୍ତୁ ଭବନାଥ ଯେତେବେଳେ ତା ନିକଟକୁ ଯାଏ ସେ ଦେଖେ ପ୍ରେମିକା ତା'ର ସିନ୍ଦୂର ଅଳଙ୍କାର ପିନ୍ଧି ଘରେ ଅଛି । କିଛିଦିନ ପରେ ଭବନାଥ ଲେଖକଙ୍କୁ ଜଣାଏ ଯେ ସେ ପୁଣି ପ୍ରେମରେ ପଡ଼ିଛି । ଭବନାଥର ଏ ଭଲ ପାଇବାର ବିବରଣୀ ସତ ନା କଳ୍ପନା - ଏକ ପ୍ରଶ୍ନବାଚୀ ଗଳ୍ପଟିର ଶେଷ ଆଡ଼କୁ ଟାଣି ହୋଇ ରହିଯାଏ ।

ଏ ଗଳ୍ପଟି ଯେଉଁ କେତୋଟି ପ୍ରସଙ୍ଗ ଉତ୍‌ଥାପନ କରେ ସେହି ପ୍ରସଙ୍ଗଗୁଡ଼ିକ ଭିନ୍ନ ରୂପରେ, ଭିନ୍ନ ବାଗରେ ତାଙ୍କର ଅନ୍ୟ ଗଳ୍ପଗୁଡ଼ିକରେ ଅନୁରଣିତ ବ୍ୟଞ୍ଜିତ ହେବାର ଦେଖାଯାଏ । ପ୍ରଥମ, ଶବ୍ଦର ଉଭୟ ଶକ୍ତି ଓ ବିଫଳତା, ବ୍ୟାପ୍ତି ଓ ସୀମିତତାକୁ ଏହା ପ୍ରକାଶ କରେ । ଦ୍ୱିତୀୟ, କବିତା ଜଗତ ଓ ବାସ୍ତବ ବୋଲି ଧରିନେଇ ବାହାର ଦୁନିଆର ମଣିଷ ସାହିତ୍ୟିକକୁ ଦ୍ୱନ୍ଦ ଭିତରକୁ ଟାଣିନିଏ । ତୃତୀୟ, ବାସ୍ତବତା ଓ କଳ୍ପନା ମଧ୍ୟରେ ସୀମାର ଅନିର୍ଦ୍ଦିଷ୍ଟତା । ଭବନାଥ ତା'ର ପ୍ରେମ ସଂପର୍କରେ ଯେଉଁ ରସାଳ କାହାଣୀ କହେ ତାହା ବାସ୍ତବ ନା କବି କଳ୍ପନା ? ଚତୁର୍ଥ, ଯେଉଁ ନାରୀ ଚରିତ୍ରର ସୂଚନା ଭବନାଥର ବିବରଣୀରୁ ଜଣାପଡ଼େ ହୋଇପାରେ ତାହା ଏକ ରହସ୍ୟମୟୀ ନାରୀ, ପୁରୁଷକୁ ସନ୍ଦିଗ୍‌ଧତା ଓ ଦ୍ୱନ୍ଦରେ ଝୁଲାଇ ରଖି ନିଜର କ୍ଷମତା ଓ କର୍ତ୍ତୃତ୍ୱ ଜାହିର କରେ । ପଞ୍ଚମ, ସମାଜରେ କବିର ସ୍ଥିତି, କବିତା ଓ ସମାଜ ମଧ୍ୟରେ ସଂପର୍କ ଗଳ୍ପଟିର ସାମାଜିକ ଦିଗ । ବିଭିନ୍ନ ସାମାଜିକ ପ୍ରସଙ୍ଗକୁ ନେଇ ତାଙ୍କର ଅନେକ ଗଳ୍ପ ପ୍ରତି ଏ ଏକ ଦିଗବାରେଣୀ । ଷଷ୍ଠ, ଭବନାଥ ବର୍ଣ୍ଣିତ ପ୍ରେମ ବିବରଣୀ ଏକ କାହାଣୀର ରୂପ ନିଏ, ସମଗ୍ର କାହାଣୀ ଭିତରେ ଅନ୍ୟ ଏକ କାହାଣୀ, ଏକ ଉପକାହାଣୀ । କାହାଣୀ ଭିତରେ

କାହାଣୀର ଧାରାକୁ ଆଧିକାହାଣୀ ବା ମେଟାଫିକ୍‌ସନ (metafiction) କୁହାଯାଏ । ଏ ପ୍ରକାର ଆତ୍ମ-ସଚେତନ, ଆତ୍ମ-ସୂଚନା କୈନ୍ଦ୍ରିକ (self-referential) ରଚନାର ଅନେକ ଦୃଷ୍ଟାନ୍ତ ଏ ସଂକଳନରେ ରହିଛି । ଦେଖିବାକୁ ଗଲେ, ତାଙ୍କର ସବୁ ଗଳ୍ପରେ ଆତ୍ମସଚେତନତାର ଧାରା ପରିଲକ୍ଷିତ । ସପ୍ତମ, ଭବନାଥ ଏକ ଉଦ୍ଭଟ ଚରିତ୍ର, ତା'ର ଜୀବନରେ ନିହିତ ଅଛି ଉଦ୍ଭଟତା, ବ୍ୟଥା ବ୍ୟଙ୍ଗର ମିଶ୍ରଣ । ଆପଣାର ପୃଥିବୀ, ଆପଣାର ମାର୍ଗ, ଆପଣାର ସ୍ଥିତି ନିର୍ମାଣ କରୁଥିବା ଭବନାଥ ଏକ ସ୍ଥିତିବାଦୀ ଚରିତ୍ର । ଶବ୍ଦଭେଦ ଗଳ୍ପର ଯେଉଁ ନିର୍ଯ୍ୟାସମାନ ମୁଁ କାଢ଼ିଲି ସେସବୁକୁ ଜଗନ୍ନାଥ ପ୍ରସାଦଙ୍କ ଗଳ୍ପର ବ୍ୟାଖ୍ୟାକରଣର ସୂତ୍ର ରୂପେ ବ୍ୟବହାର କରିବା ମୋର ଉଦ୍ଦେଶ୍ୟ ।

ତାଙ୍କର 'ମୃତ୍ୟୁବୋଧ' ଗଳ୍ପ ବାସ୍ତବ ଅବାସ୍ତବର ସୀମାରୁ ଉଚ୍ଚାରିତ ଏକ କାହାଣୀ । ଆତ୍ମହତ୍ୟା ଉଦ୍ୟମ କରି ପୁଣି ବଞ୍ଚିବାକୁ ପ୍ରୟାସ କରି ହସ୍‌ପିଟାଲ ବେଡ୍‌ରେ ସଂଘର୍ଷ କରୁଥିବା ମଣିଷର ଏକକ ସଂଳାପ । ଜୀବନ ମୃତ୍ୟୁର ସନ୍ଧିକ୍ଷଣରେ ଝୁଲୁଥିବା ମଣିଷଟିର ଅଭିବ୍ୟକ୍ତି । ମୃତ୍ୟୁପର ଏକ କାଳ୍ପନିକ ଇଲାକାରୁ ଲୋକଟିର ବୟାନ, ପଶ୍ଚାତ୍ ଦୃଷ୍ଟି କଥନ ମାଧମରେ ତା'ର ଅତୀତ ଜୀବନର ଦୃଶ୍ୟଚିତ୍ର ଝଲସି ଉଠେ । ତା'ର ମୃତ୍ୟୁଦିବସ ସଂପର୍କରେ ଲାମାର ଭବିଷ୍ୟବାଣୀ ତା'ର ଜୀବନର ସୀମା ଟାଣିଦିଏ । ତାକୁ ଅତିରିକ୍ତ ମୃତ୍ୟୁ ସଚେତନ କରାଏ । ପୁନର୍ବାର ନିଜକୁ ବଞ୍ଚାଇବାର ଉଦ୍ୟମ ଏହି ନିର୍ଦ୍ଧାରଣ, ସୀମା ନିର୍ଣ୍ଣୟକୁ ଅସ୍ୱୀକାର କରିବାର ସଙ୍କେତ । ନିଜ ଇଚ୍ଛାରେ, ନିଜ ବାଟରେ ବଞ୍ଚିବା ମରିବାର ସ୍ୱାଧୀନତା, ନିଜ ପସନ୍ଦର ସ୍ୱାଧୀନତା ଓ ଦାୟିତ୍ୱବୋଧକୁ ଏହା ପ୍ରକାଶ କରେ । ଗଳ୍ପଟିର ଶେଷ ଦୃଶ୍ୟଚିତ୍ର ତା'ର ଏକ ପକ୍ଷୀକୁ ରୂପାନ୍ତର । ସେ ଊର୍ଦ୍ଧ୍ୱରୁ ଦେଖେ ପୁରୁଣା ପରିସ୍ଥିତି ଓ ଚରିତ୍ର ପରିବର୍ତ୍ତିତ ହୋଇଯାଆନ୍ତି, ନର୍ସ ଭିତରେ ଦେଖେ ଆପଣାର ହରାଇଥିବା ପତ୍ନୀକୁ । ଚରମ ସ୍ୱାଧୀନତାର ଚିତ୍ରକଳ୍ପ ଏହି ଦୃଶ୍ୟଚିତ୍ର । ଅତିବାସ୍ତବତାର ଚୌହଦି ଭିତରେ ଶଂସିତ ଘଟଣାଗୁଡ଼ିକ ସ୍ଥିତିବାଦୀ ଅନୁସଂଧାନର କାହାଣୀ ।

ବାସ୍ତବତା ଓ ସ୍ୱପ୍ନ ଭିତରେ ସଂଘଟିତ କାହାଣୀ ହେଉଛି 'ସତ୍ୟାସତ୍ୟ' । ସତ୍ୟ ମସୃଣ, ଅପସୃୟମାନ, ବହୁରୂପୀ, ବିଖଣ୍ଡିତ । ଆମେ ଯାହାକୁ ସତ୍ୟ ବୋଲି କହୁ ତାହା କେବଳ ସତ୍ୟର ଭିନ୍ନ ଭିନ୍ନ ସଂସ୍କରଣ । ପଦ୍ମଧର ଏହି ପ୍ରକାର ସତ୍ୟାସତ୍ୟ ଦୁନିଆରେ ବଞ୍ଚେ । ଗଳ୍ପଟିରେ ଫ୍ରାଞ୍ଜ କାଫ୍‌କାଙ୍କର ପ୍ରଭାବ ପରିଲକ୍ଷିତ । ସେ ତାଙ୍କର The Trial ଉପନ୍ୟାସରେ ମାମୁଲି ଘଟଣାରେ ରହସ୍ୟ ଓ ବିସ୍ମୟ ଉଦ୍‌ଘାଟନ କରିଛନ୍ତି । ମାମୁଲି ନଗଣ୍ୟକୁ ନେଇ ଉଜ୍ଜ୍ୱଳ କଥନିକା ସୃଷ୍ଟି କରିବା କାଫ୍‌କା ଓ ଜେମ୍‌ସ ଜୟସ୍‌ଙ୍କର କଳାକୃତିତ୍ୱ । ତାହା ହିଁ ଜଗନ୍ନାଥ ପ୍ରସାଦ ଏଥିରେ ଚେଷ୍ଟା କରିଛନ୍ତି । କଚେରିର ଅପରିଚ୍ଛନ୍ନ ଆବର୍ଜନାପୂର୍ଣ୍ଣ ପରିବେଶ, ହଳଦିଆ ପଡ଼ିଯାଇଥିବା ବିଡ଼ା ବିଡ଼ା କାଗଜପତ୍ର,

ଦଳିଲ ଦସ୍ତାବିଜର ଟିକନିଖି ବର୍ଣ୍ଣନା ଏକ ପ୍ରକାର ଅରୁଚି ଓ ଭୟର ଉଦ୍ରେକ କରେ । କାଫ୍‌କାଙ୍କ 'କେ' ପରି କଚେରି ଅମଲାତନ୍ତ୍ର ଚକ୍ରରେ ହନ୍ତସନ୍ତ ହୁଏ ପଦ୍ମଧର । ଅବୋଧ୍ୟ ଦୁନିଆର ବିଭ୍ରାନ୍ତିରେ ଘାଣ୍ଟି ହୁଏ । କିନ୍ତୁ 'କେ'ର କଷ୍ଟ ବେଦନାର କାରଣବିହୀନତା, ଯୁକ୍ତିହୀନତା, ରହସ୍ୟର ତୀବ୍ରତା ପଦ୍ମଧର ଚରିତ୍ରରେ ନାହିଁ । ଭାରତୀୟ ପରିପ୍ରେକ୍ଷୀରେ କାର୍ଯ୍ୟ-କାରଣ, କାରଣ-ପରିଣତି ସଂପର୍କ ଉପରେ ତଥାପି ବିଶ୍ୱାସ ରହିଛି ବୋଲି ଜଗନ୍ନାଥ ପ୍ରସାଦଙ୍କ ରଚନାରେ ସୂଚନା ମିଳେ । ମୁଦେଇ ମୁଦାଲା ସାକ୍ଷୀଙ୍କ ଜମାନବନ୍ଦୀ, ଓକିଲଙ୍କ ଜବାବ ସୁଆଲ, ଉଚ୍ଚବାଚ, ଜଜ୍‌ଙ୍କ ଉଦାସୀନତା - ଏସବୁ ପଦ୍ମଧରକୁ ଲାଗେ ଯେପରି ମୂଳ ଘଟଣା, ମୂଳ ମକଦ୍ଦମାଠାରୁ ଅଲଗା । ସବୁ ଅସଂଲଗ୍ନ, ଅବାସ୍ତବ । ସତ୍ୟକୁ ଅସତ୍ୟ, ଅସତ୍ୟକୁ ସତ୍ୟରେ ପରିଣତ କରିବାର ମିଛ ପ୍ରତିଦ୍ୱନ୍ଦ୍ୱିତା, ଲଢ଼େଇ, ନାଟକୀୟତା ଭିତରେ ଅସଲ ସତ୍ୟ ଲୁଚିଯାଏ । ଏ ଅରୁଚିକର, ବିରକ୍ତିକର, ଭୟଙ୍କର ପରିବେଶ ଏକ ଦୁଃସ୍ୱପ୍ନର ପରିବେଶ । ବିରକ୍ତ ବୀତସ୍ପୃହ ପଦ୍ମଧର ନିଜର କିମ୍ଭୂତ କଳ୍ପନା (grotesque) ବଳରେ ଜଜ୍ ଓ ଓକିଲଙ୍କୁ କିମ୍ଭୂତକିମାକାର ଉଦ୍ଭଟ ରୂପ ଦିଏ - ଜଜ୍ ଓକିଲ ସବୁ କାଠ ପୁତ୍ତଳିକା ଉପରୁ ଟଣା ହୋଇଥିବା ସୂତା ଦ୍ୱାରା ପରିଚାଳିତ । ଏହାକୁ ପ୍ରତିହତ କରି ମଧୁର କଳ୍ପନା ବଳରେ ବସୁଧାକୁ ନେଇ ସେ ଏକ ରୋମାଣ୍ଟିକ ଦୁନିଆ ସୃଷ୍ଟି କରେ, କିନ୍ତୁ ବସୁଧାକୁ ସାମ୍ନା କରିବାକୁ ସାହସ ହରାଏ । ଦୁଃସ୍ୱପ୍ନ ଓ ସ୍ୱପ୍ନ ମଧ୍ୟରେ ଦୋଳାୟିତ, ବାସ୍ତବତା ଓ କଳ୍ପନା ଭିତରେ ସେ ଧନ୍ଦି ହୁଏ । ତା'ର ସ୍ତ୍ରୀ ଓ ବସୁଧା ଭିତରେ କେଉଁଟା ସତ୍ୟ, କେଉଁଟା ଅସତ୍ୟ ଅନିର୍ଣ୍ଣେୟ ହୋଇ ରହିଯାଏ । ତା'ର ମକଦ୍ଦମା ଓ କଚେରି ମଧ୍ୟରେ କି ସଂପର୍କ ସେ ବୁଝିପାରେ ନାହିଁ ।

'ମୃତ୍ୟୁବୋଧ' ପରି ଏକ ମୃତ୍ୟୁପର ଇଲାକାର କଳ୍ପନା କରିଛନ୍ତି କଥାକାର 'ମଲା ଲୋକ' ଗଳ୍ପରେ । ବ୍ୟକ୍ତି ସଂପର୍କ ଉପରେ ଏହା ଏକ ଟିପ୍‌ପଣୀ । ମୃତ୍ୟୁପର ଲୋକରୁ ଆଦିତ୍ୟ ଦେଖେ ତା'ପାଇଁ ଶୋକପ୍ରକାଶ ନିହାତି ଲୋକଦେଖାଣିଆ, ନିଜକୁ ଆପଣାର ବୋଲି ଚିହ୍ନେଇ ହେବାର ପ୍ରତିଯୋଗିତା, କଲେଜ ଛୁଟି କରାଇ ଉପଭୋଗ କରିବାକୁ ଛାତ୍ରଙ୍କ ପାଇଁ ଅପୂର୍ବ ସୁଯୋଗ । ଆନ୍ତରିକତାହୀନ ଔପଚାରିକ ରଚନାପୂର୍ଣ୍ଣ ସଂପର୍କ ଉପରେ ଏ ଏକ ମନ୍ତବ୍ୟମୂଳକ କାହାଣୀ । କିନ୍ତୁ ମରିବା ପୂର୍ବରୁ ସୁଜାତାର ମଧୁର ସ୍ମୃତିର କ୍ଷୀଣ ହସ ତାଙ୍କ ମୁହଁ ଉପରେ ରହିଯାଇଛି ଔପଚାରିକତା, ହିସାବକିତାବର ଊର୍ଦ୍ଧ୍ୱରେ । ପୃଥିବୀର ଊର୍ଦ୍ଧ୍ୱ ଇଲାକାରୁ ଏସବୁ ଅବଲୋକନ କରିବା ଆଦିତ୍ୟର ଅବିସ୍ମରଣୀୟ ରହିବାର ଅପଚେଷ୍ଟା ।

ଅନୁରୂପ ବିଷୟ ଓ ଆଙ୍ଗିକକୁ ନେଇ ଭିନ୍ନ ଏକ ପରିପ୍ରେକ୍ଷୀର କାହାଣୀ 'ଭାବମୂର୍ତ୍ତି' । ଏହାର ନାୟକ ସାରାଜୀବନ ନିଜର ଭାବମୂର୍ତ୍ତି ସଜାଡ଼ିବାରେ ବ୍ୟସ୍ତ ରୁହନ୍ତି । କବିତା ଲେଖିବା, ଛପାଇବା, ନିଜ କବିତା ଉପରେ ପ୍ରଶସ୍ତିମୂଳକ ସମାଲୋଚନା

ଓ ସନ୍ଦର୍ଭ ଲେଖାଇବା, ନିଜର ସାକ୍ଷାତ୍‌କାର ଛପାଇବା, ସାହିତ୍ୟ ପାଇଁ ପୁରସ୍କାର ସମ୍ମାନ ସମ୍ବର୍ଦ୍ଧନାର ବ୍ୟବସ୍ଥା କରିବା, ଏପରିକି ମୃତ୍ୟୁପରେ ତାଙ୍କର ସ୍ମୃତିରକ୍ଷା ପାଇଁ ଏକ ଟ୍ରଷ୍ଟ ଗଢ଼ି ପର୍ଯ୍ୟାପ୍ତ ଅର୍ଥର ବ୍ୟବସ୍ଥା କରି ତାଙ୍କର ଏକାନ୍ତ ଅନୁଗତ ଜଣକୁ ଦାୟିତ୍ୱ ଦେବା ଏକ ଆତ୍ମମୋହଗ୍ରସ୍ତ ମାନସିକ ବିକାର । ଗ୍ରୀକ୍ ଚରିତ୍ର ନାର୍ସିସସ୍ ପରି ଆପଣାର ଛବି ପ୍ରତି ଆସକ୍ତ ଏ ମଣିଷର ପରିଣତି ନୈରାଶ୍ୟ ଓ ନିରର୍ଥକତା । ସର୍ବୋଚ୍ଚ ପୁରସ୍କାର ପାଇବାର ସବୁ ବ୍ୟବସ୍ଥା ସେ କରିସାରିଥିଲେ ମଧ୍ୟ ପୁରସ୍କାର ପାଇବା ପୂର୍ବରୁ ତାଙ୍କର ମୃତ୍ୟୁ ହୁଏ । ତାଙ୍କର ଅତୃପ୍ତ ଆତ୍ମା ଦେଖେ ସବୁ ଓଲଟ ପାଲଟ । ସେ ଯଦିଓ ନାସ୍ତିକ ଥିଲେ, ତାଙ୍କ ସ୍ତ୍ରୀ ସାଧ୍ୱୀ ନାରୀ ସହ ଥିଲେ ଏବଂ ଈଶ୍ୱରବିଶ୍ୱାସୀ ଥିଲେ, ନିତି ପୂଜାପାଠ କରୁଥିଲେ । ତାଙ୍କର ପ୍ରତ୍ୟେକ କବିତା ପ୍ରକାଶ ହେବା ପୂର୍ବରୁ ସେ ତାକୁ ଶୁଣାଉଥିଲେ, ସେ ତାଙ୍କର ଥିଲା ପ୍ରେରଣାଦାତ୍ରୀ । ଯଦିଓ ସେ ତାଙ୍କର କବିତା ବିଷୟରେ ସଂପୂର୍ଣ୍ଣ ଉଦାସୀନ ଥିଲା । କଥାଟାକୁ ରସାଳ କରିବାକୁ ସେ କହେ ତାଙ୍କର କାଳେ ଅନ୍ୟ ଏକ ନାରୀ ସହିତ କିଛିଦିନ ପାଇଁ ସଂପର୍କ ଥିଲା, ଯାହା ସଂପୂର୍ଣ୍ଣ ମିଥ୍ୟା । କବିମାନଙ୍କର ଏ ପ୍ରକାର ଦୁର୍ବଳତା ରହିବା ଉଚିତ୍ ବୋଲି ତାଙ୍କର ସ୍ତ୍ରୀ ଭାବିନିଏ । କବିପତ୍ନୀ ହିସାବରେ ସେ ନିଜର ଭାବମୂର୍ତ୍ତି ଗଢ଼େ, କବିଙ୍କର ନୁହେଁ । ଶୋକସଭା ଏବଂ ପୁରସ୍କାର ସମ୍ବର୍ଦ୍ଧନା ସଭାରେ ବକ୍ତାମାନେ ତାଙ୍କ ବିଷୟରେ ଯାହା କହିଲେ ସେସବୁର ତା ସହିତ କୌଣସି ସଂପର୍କ ନଥିଲା । ଏପରିକି ମଞ୍ଚ ଉପରେ ଥିବା ପ୍ରତିଛବି ସହିତ ତାଙ୍କର କୌଣସି ସାମଞ୍ଜସ୍ୟ ନଥିଲା । ଏ ଯେପରି ଥିଲା ଅନ୍ୟଜଣଙ୍କର ଶୋକସଭା ଓ ସମ୍ବର୍ଦ୍ଧନା । ଟ୍ରଷ୍ଟର ଅର୍ଥ ନେଇ ସେ ଲୋକଟି ସାଙ୍ଗସାଥୀଙ୍କ ମେଳରେ ମଦ ପିଏ, ମଦ ନିଶାରେ ତାକୁ ଗାଳିଦିଏ । ଶେଷକୁ ତା'ର ଅପ୍ରକାଶିତ କବିତାସବୁକୁ କାଟିକୁଟି ଅଲଗା କବିତା ତିଆରି କରେ । ଦାରୁଣ ଶ୍ଳେଷ ହେଉଛି ଜୀବନତମାମ ସେ ଶ୍ରମ ଓ କାରସାଦି କରି ଗଢ଼ିଥିବା ଭାବମୂର୍ତ୍ତି ଭୁଶୁଡ଼ି ପଡ଼େ ।

ଏହି ପ୍ରକାର ଆତ୍ମମୋହଗ୍ରସ୍ତ, ଛବିସର୍ବସ୍ୱ ବିକାର ଉପରେ ବ୍ୟଙ୍ଗ ହେଉଛି 'ଅମରତ୍ୱ' । ସର୍ବସାଧାରଣଙ୍କ ଅର୍ଥ ଖର୍ଚ୍ଚ କରି କ୍ଷମତାସୀନମାନେ ଆପଣାର ନାମଫଳକ, ସ୍ମାରକୀ, ଷ୍ଟାଚୁ ନିର୍ମାଣ କରନ୍ତି । କିନ୍ତୁ ସେମାନେ କ୍ଷମତାରୁ ଯିବା ପରେ ପରେ ସେସବୁ ବିକୃତ, ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଏ । ତା ଜାଗାରେ ନୂଆ ସ୍ମାରକୀ ମୁଣ୍ଡ ଟେକେ ସେହି ଏକା ପରିଣତି ଭୋଗିବାକୁ । ଏହାର ଅଳୀକତା ଓ ଅନୈତିକତା ଉପରେ ଏକ ତୀର୍ଯ୍ୟକ ସମାଲୋଚନା ଏ ଗଳ୍ପଟି ।

ବ୍ୟକ୍ତି ସଂପର୍କରୁ ନେଇ 'ଫଟୋଗ୍ରାଫ' ଗଳ୍ପ । ସାଂସାରିକ ଜୀବନର ଚାପରେ ପାଲଟି ଯାଇଥିବା ଶୁଷ୍କ ଉଦାସ ମଣିଷକୁ ପିଲାଦିନର ମଧୁର ସ୍ମାରକୀ ଫଟୋଗ୍ରାଫ ହଠାତ ଚିଆଁଇ ଦିଏ । ସଂପର୍କର ସଜୀବ ସବୁଜ ପୃଥିବୀ ଖୋଲିଯାଏ ତା ଆଗରେ,

ସେ ହୋଇଯାଏ ଭାବବିହ୍ୱଳ ମଣିଷଟିଏ, ହଜିଯାଇଥିବା ଖିଅଗୁଡ଼ିକୁ ଗୋଟାଇ ନିଏ, ସ୍ମୃତି କଳ୍ପନାର ରାଜ୍ୟରେ କ୍ଷଣକ ପାଇଁ ନିଜକୁ ହଜାଇ ଦିଏ ।

ସାମାଜିକ ପ୍ରସଙ୍ଗକୁ ନେଇ ଦୃଷ୍ଟାନ୍ତମୂଳକ ଗଳ୍ପ ହେଉଛି 'ନିର୍ଦ୍ଧାରିତ ସ୍ଥାନ', 'ସଂପ୍ରଦାୟ', 'ଦେଖଣାହାରି' ଓ 'ସାହିତ୍ୟକାର' । ଚାକିରିରେ ଆରକ୍ଷଣ ଆଇନ ସତ୍ତ୍ୱେ ଦୁର୍ବଳ ଶ୍ରେଣୀ ପାଇଁ ସରକାରଙ୍କର ଯୋଜନା ପରେ ଯୋଜନା ସତ୍ତ୍ୱେ ଏବଂ ନିଜର ଯଥାଯଥ ଯୋଗ୍ୟତା ସତ୍ତ୍ୱେ ମୋଚିପିଲା ହରିରାମ ନାମ ଦରଖାସ୍ତ ଦେଇ, ଇଣ୍ଟରଭ୍ୟୁ ଦେଇ, ଅଫିସରୁ ଅଫିସ ଘୂରି ବୁଲି ନିରାଶ ହୁଏ । ସବୁ ଚାକିରି ପ୍ରଭାବ, ପ୍ରତିଷ୍ଠା, ଅର୍ଥବଳ ନିକଟରେ ବନ୍ଧା ପଡ଼ିଛି । ସରକାରୀ ସାହାଯ୍ୟ, ଯୋଜନା ସବୁ ବିଭ୍ରାନ୍ତିକର ଓ ଅବାସ୍ତବ । ସାମାଜିକ ନ୍ୟାୟ ବାଟମାରଣା । ଶେଷକୁ ହତାଶ ହରିରାମ ଫେରିଆସେ ତା'ର ନିର୍ଦ୍ଧାରିତ ସ୍ଥାନକୁ, ଯେଉଁ ପିଅନର ଚୌକିରେ ତା ବାପା ବସୁଥିଲା ବର୍ଷ ବର୍ଷ ଓ ସେ ବି ବସୁଥିଲା ପ୍ରଥମେ ପ୍ରଥମେ । ଗଳ୍ପଟି କଥାକାରଙ୍କର ତୀବ୍ର ସାମାଜିକ ସମାଲୋଚନାର ଏକ ସାର୍ଥକ ସୃଷ୍ଟି ।

'ସଂପ୍ରଦାୟ' ସାଂପ୍ରଦାୟିକ ଦଙ୍ଗାକୁ ନେଇ । ପାଗଳ ଓ ମୁସଲମାନ ଚା' ଦୋକାନୀ ମହାତ୍ମା ଗଳ୍ପଟିର ଦୁଇଟି ସ୍ତମ୍ଭ ସ୍ୱରୂପ । ପାଗଳର ଅଯତ୍ନବର୍ଦ୍ଧିତ ଦାଢ଼ି ତାକୁ କେତେବେଳେ ମୁସଲମାନ ତ କେତେବେଳେ ହିନ୍ଦୁ ବାବାଜୀ ଓ କେତେବେଳେ ଶିଖ୍‌ର ଭ୍ରାନ୍ତିକର ପରିଚୟ ଦିଏ । ହିନ୍ଦୁ ମୁସଲମାନ ବା ଶିଖ୍ ଦଙ୍ଗାରେ ସେ ହୁଏ ଆକ୍ରମଣର ଶିକାର, କ୍ଷତବିକ୍ଷତ ହୁଏ । ପରସ୍ପରର ପରସ୍ପର ପ୍ରତି ଥିବା ଶତ୍ରୁତା ତା'ରି ଉପରେ ମେଣ୍ଟିଯାଏ । ସମସ୍ତଙ୍କ ଭିତରର ରାଗ ହିଂସା ମୁକୁଳିଯାଏ ତା'ରି ଉପରେ । ସେହି ଛୋଟ ସହରର ମହାତ୍ମା ରୂପେ ପରିଚିତ ମୁସଲମାନ ଚା' ଦୋକାନୀର ଚା' ଦୋକାନ ଭାଙ୍ଗିଯାଏ କିନ୍ତୁ ମହାତ୍ମାକୁ କୌଣସି ଗୋଷ୍ଠୀ ଆକ୍ରମଣ କରନ୍ତି ନାହିଁ । ତାହା ଥିଲା ସବୁ ସଂପ୍ରଦାୟ ମଧ୍ୟରେ ଅଘୋଷିତ ବୁଝାମଣା । ସକଳ ସାମାଜିକ କ୍ରୋଧ ହିଂସାକୁ ନିଜ ଉପରେ ପାର କରାଇ ନେଇ ପାଗଳ ଓ ଚା' ଦୋକାନ ହୁଏ ସାମାଜିକ ସ୍ଥିରତାର ମାଧ୍ୟମ, ନିଜ ଅଜ୍ଞାତରେ ବଡ଼ ସାମାଜିକ ଦାୟିତ୍ୱ ତୁଲାନ୍ତି । ସକଳ ସଂପ୍ରଦାୟର ସଂଘର୍ଷ ଓ ମିଳନର ପୀଠ ଥିଲେ ପାଗଳ ଓ ମହାତ୍ମା । ଏ ଥିଲା ପୁରୁଣା କଥା । କିନ୍ତୁ ସଂପ୍ରତି ରାଜନୈତିକ ଫାଇଦା ପାଇଁ ରାଜନୀତିକ ବ୍ୟକ୍ତିଙ୍କ ଦ୍ୱାରା ପରିଚାଳିତ ଦଙ୍ଗାରେ ଉଭୟ ପାଗଳ ଓ ମହାତ୍ମା ନିହତ ହୁଅନ୍ତି । ମାନବିକ ସୌହାର୍ଦ୍ଦ ସୂତ୍ରଟି ଛିନ୍ନ ହୋଇଯାଏ ଶେଷକୁ ।

ଜୀବନ ଭିତରେ ନିବେଶ ନଥାଇ ଆରାମ ଚୌକିର ସାହିତ୍ୟିକଙ୍କ ଉପରେ 'ସାହିତ୍ୟକାର' ଏକ ବ୍ୟଙ୍ଗ । ଏମାନଙ୍କ ଜୀବନଚର୍ଯ୍ୟା ହେଲା ପୁରସ୍କାର ପଛରେ ଧାଇଁବା, ଲବି କରିବା, ତୋଷାମଦ କରିବା, ଏଥିପାଇଁ ଠିକାଦାରୀ କରୁଥିବା ଲେଖକ ପ୍ରକାଶକଙ୍କ

ସହିତ ଅନୈତିକ ସମ୍ବନ୍ଧ ରଖିବା, କ୍ଷମତାଧାରୀଙ୍କର ଚାଟୁ କରିବା । ଏହି ପୁରସ୍କାର ବିକଳ ଲେଖକମାନେ ସାମାଜିକ ରାଜନୈତିକ ଆପଦ ସମୟରେ କାହିଁ ଲୁଚି ଯାଆନ୍ତି, ସ୍ୱର ଉତ୍ତୋଳନ କରନ୍ତି ନାହିଁ । ପ୍ରତିପକ୍ଷରେ, ରସାନନ୍ଦ ଜଣେ ସାଧାରଣ ଲେଖକ, ଜରୁରୀ ପରିସ୍ଥିତିର ସମାଲୋଚନା କରି ଜେଲ ଯାଏ, ତା ସାହିତ୍ୟରେ ଅଶ୍ଳୀଳତା ଅଭିଯୋଗରେ ପୋଲିସ ନିର୍ଯ୍ୟାତନା ଭୋଗେ, ପ୍ରତିଷ୍ଠିତ ପୁରସ୍କାର ରଙ୍କ ଲେଖକ ବିଷ୍ଣୁଶର୍ମାଙ୍କ ପୁସ୍ତକର କେତୋଟି ଅଶ୍ଳୀଳ ବର୍ଣ୍ଣନାକୁ ରସାନନ୍ଦ ତା ବିରୁଦ୍ଧରେ ଚାଲିଥିବା ଅଶ୍ଳୀଳତା କେଶ୍‌ରେ ତା ସପକ୍ଷରେ ପ୍ରମାଣ ସ୍ୱରୂପ ବ୍ୟବହାର କରିବାକୁ ବିଷ୍ଣୁଶର୍ମାର ଅନୁମତି ଚାହେଁ । ସାହିତ୍ୟରେ ଅଶ୍ଳୀଳତାକୁ ନାକ ଟେକୁଥିବା ତଥାକଥିତ ଅଭିଜାତ ସାହିତ୍ୟିକମାନେ ପୁରସ୍କାର ପାଇଁ ତୋଷାମଦ, ଚକ୍ରାନ୍ତ ପରି ଅଧିକ ହୀନ କର୍ମରେ ଲିପ୍ତ ଥାଆନ୍ତି । ଏ ପ୍ରକାର ସାହିତ୍ୟ ବ୍ୟବସାୟୀ 'ସାହିତ୍ୟକାର'ମାନଙ୍କ ପ୍ରତି ଏକ ବ୍ୟଙ୍ଗାତ୍ମକ ଆହ୍ୱାନ ହେଉଛି ରସାନନ୍ଦ ।

ସାହିତ୍ୟିକ, ସାହିତ୍ୟକାରକୁ ନେଇ ଅନ୍ୟ ଏକ ଗଳ୍ପ ହେଉଛି 'ସବୁ ଅଛି କିଛି ନାହିଁ', କିନ୍ତୁ ଏହାର ମର୍ମବାଣୀ ଭିନ୍ନ ଅଟେ । ବାହ୍ୟ କ୍ଷମତା, ସମ୍ମାନ, ପ୍ରତିପତ୍ତିର ଅନ୍ତରାଳରେ ରହିଥିବା ଅଭାବବୋଧ, ଶୂନ୍ୟତାର କାହାଣୀ ଏହି ଗଳ୍ପ । ସାମାଜିକ, ରାଜନୀତିକ ଜଞ୍ଜାଳ, ହୋ ହଲ୍ଲା ଭିତରେ ଦୁଇ ସହପାଠୀ - ରାଜନୀତିକ ମନ୍ତ୍ରୀ ସୁଖଦା ଓ ସାହିତ୍ୟିକ ତାରାପଦ ଖୋଜୁଥା'ନ୍ତି ନିରୋଳା ମୁହୂର୍ତ୍ତଟିଏ ପଦେ ମନଖୋଲା କଥା ହେବାକୁ । "ସୁଖଦା, ତମର ମନେ ଅଛି..."ରେ ଅଟକିଯାଏ, ଖୋଲିପାରେ ନାହିଁ ଅନ୍ତରଙ୍ଗ କଥାଟି । "ପ୍ରକୃତ ସତ୍ୟ ହେଉଛି ମୋର କିଛି ନାହିଁ, କିନ୍ତୁ ମିଛରେ ଭାବୁଛି ମୋର ସବୁ ଅଛି" ସୁଖଦାର ସ୍ୱୀକାରୋକ୍ତି । ତାରାପଦ ବି ଉପଲବ୍ଧି କରେ ତା'ର ସାହିତ୍ୟର ମୌଳିକତା ଓ ଐଶ୍ୱର୍ଯ୍ୟର ଅନ୍ତିମ ଅସାରତା : "ବିଭିନ୍ନ ସ୍ରୋତରୁ ଏକାଠି କରି ଆଣିଥିବା ଛୋଟ ଛୋଟ ଅଂଶକୁ କତୁରି ଓ ଅଠା ଦେଇ ଯୋଡ଼ା ଯାଇଥିବା ନବଗୁଞ୍ଜର ସୃଷ୍ଟି ।" ସୁଖଦା ଓ ତାରାପଦ ମଧ୍ୟରେ କୌଣସି ମୌଳିକ ପ୍ରଭେଦ ନାହିଁ । ତାରାପଦ ବି ସାହିତ୍ୟରେ ରାଜନୀତି କରେ, ନିଜର ଅଭିନନ୍ଦନ ଗ୍ରନ୍ଥ କିପରି ପ୍ରକାଶ ପାଇବ, ପ୍ରତିପକ୍ଷ ସାହିତ୍ୟିକଙ୍କୁ କିପରି ମୁକାବିଲା କରାଯିବ, ତା ସାହିତ୍ୟିକ ଚୌର୍ଯ୍ୟକୁ ପଦାରେ ପକାଇବାକୁ ଚାଲିଥିବା ଉଦ୍ୟମକୁ କିପରି ପଣ୍ଡ କରିବ । ସୁଖଦାଠାରୁ କୌଣସି ପ୍ରକାରେ ସେ ନୈତିକ ସ୍ତରରେ ଉଚ୍ଚତର ନୁହେଁ । ଏସବୁ କୃତ୍ରିମତାର ତଳେ ଚାପି ହୋଇଯାଏ ସରଳ ଦିନର ସାବଲୀଳ ସ୍ମୃତି । ନିର୍ଘାତ ଭାବେ ନିଃସ୍ୱ, କାଙ୍ଗାଳ ଏହି ଯଶପିପାସୁ ମଣିଷମାନେ ।

କ୍ଷମତା ହେଉଛି କଥାକାରଙ୍କର ଏକ ବିଶିଷ୍ଟ ପ୍ରସଙ୍ଗ । 'ସାମ୍ରାଜ୍ୟ', 'ପ୍ରତିଦ୍ୱନ୍ଦ୍ୱୀ', 'ଚରମ ପତ୍ର', 'ଭୃତ୍ୟ' ଏହାର ଉଦାହରଣ । କିନ୍ତୁ ଦେଖିବାକୁ ଗଲେ ତାଙ୍କର ସମସ୍ତ

ଗଳ୍ପରେ କ୍ଷମତାର ଅନ୍ତଃଫଲ୍‌ଗୁ ପ୍ରବାହିତ । ବିଶିଷ୍ଟ ତତ୍ତ୍ୱବିତ୍ ମିସେଲ୍ ଫୁକୋ କ୍ଷମତାର ସଂଜ୍ଞା ଓ ସ୍ୱରୂପ ପ୍ରକାଶ କରିବାକୁ ଯାଇ କହନ୍ତି, କ୍ଷମତା ସର୍ବବ୍ୟାପୀ, ସର୍ବସ୍ତରୀୟ ଏକ ଶକ୍ତିପ୍ରବାହ । କ୍ଷମତା ଏକ ବାହ୍ୟ ଉର୍ଦ୍ଧ୍ୱାୟିତ ଶକ୍ତି । ବ୍ୟକ୍ତି କ୍ଷମତାର ଉତ୍ସ ନୁହେଁ କି କ୍ଷମତାର ଅଧିକାରୀ ନୁହେଁ, କି କ୍ଷମତା ପ୍ରୟୋଗ କରେ ନାହିଁ । ପ୍ରତ୍ୟେକ ବ୍ୟକ୍ତି କ୍ଷମତାର କବଳରେ । ବ୍ୟକ୍ତି ମାଧ୍ୟମରେ କ୍ଷମତା ରୂପ ନିଏ, ମୂର୍ତ୍ତ ହୁଏ, ବ୍ୟକ୍ତି କେବଳ କ୍ଷମତାର ମାଧ୍ୟମ । ପ୍ରତିଟି ମଣିଷ ଅନ୍ୟ ପ୍ରତିଟି ମଣିଷର ଅଧୀନସ୍ଥ, ଭିନ୍ନ ଭିନ୍ନ ଇଲାକାରେ ଭିନ୍ନ ଭିନ୍ନ ସ୍ତରରେ । କେହି ନିରଙ୍କୁଶ କ୍ଷମତାସମ୍ପନ୍ନ ନୁହେଁ : " It is a society of microdominations" । ଆମ ସମାଜ କ୍ଷୁଦ୍ର କ୍ଷୁଦ୍ର ସୀମିତ, ଖଣ୍ଡିତ ଆଧିପତ୍ୟର ସମାଜ । ଗୋଟିଏ ନିର୍ଦ୍ଦିଷ୍ଟ ପରିସରରେ ପ୍ରଭୁତ୍ୱ ଜାହିର କରୁଥିବା ବ୍ୟକ୍ତି, ଅନ୍ୟ ଏକ ପରିସରରେ ପରାଧୀନ ; ଏପରିକି ଯାହା ଉପରେ ସେ ପ୍ରଭୁତ୍ୱ ଜାହିର କରେ ସେ ହୋଇପାରେ ସେହି ପରିସରରେ ସମ୍ରାଟ । ଆହୁରି ମଧ୍ୟ, ମାଲିକ ତା'ର ଅଧସ୍ତନ ଉପରେ ନିର୍ଭରଶୀଳ ଥିବାରୁ ସେ ଅଧସ୍ତନର ଅଧୀନ । ସାମ୍ରାଜ୍ୟ ଗଳ୍ପର କର୍ତ୍ତବ୍ୟନିଷ୍ଠ, କର୍ମଠ, ଅଧ୍ୟବସାୟୀ, କଠୋର ଅନୁଶାସନ ଓ କଡ଼ା ମିଜାଜର ରଘୁପତି ତା ଜିଲ୍ଲାରେ ସେ ସମ୍ରାଟ । ଆଦେଶ ତା'ର ଅଲଙ୍ଘ୍ୟ, ଅନୁଜ୍ଞା ଅପ୍ରତିରୋଧ୍ୟ । କିନ୍ତୁ ନିଜର ସଦା ସର୍ବଦା ଅସୁସ୍ଥ ଝିଅର ଆରୋଗ୍ୟ ପାଇଁ ଅଷ୍ଟସାଧକ ରୂପେ ପରିଚିତ ତା'ର ନିମ୍ନସ୍ଥ କାର୍ଯ୍ୟାଳୟର ପିଅନ ପଶୁପତି ନିକଟରେ ତାକୁ ଅନୁଗ୍ରହ ପ୍ରାର୍ଥୀ ହେବାକୁ ପଡ଼େ । ପଶୁପତିର ନୁଆଁଣିଆ ଚାଳଘରେ ଲମ୍ୱା ଏକ ଧାଡ଼ିରେ ଅପେକ୍ଷା କରିବାକୁ ପଡ଼େ ତାକୁ କେତେବେଳେ ତା'ର ପାଳି ପଡ଼ିବ ପଶୁପତିର ସାକ୍ଷାତ ପାଇବାକୁ । ଏଠାରେ ସେ ଦେଖେ ଅନ୍ୟ ଏକ ସାମ୍ରାଜ୍ୟର ବିସ୍ତାର ଯେଉଁଠାରେ ସେ ଏକ ଭିକ୍ଷାର୍ଥୀ ପ୍ରଜା । ତା'ର ଦମ୍ଭ, ଅହମିକା କେତେ ତୁଚ୍ଛ ଏଠି - ଏକ ମର୍ମାନ୍ତିକ ବିଡ଼ମ୍ୱନା । ପଶୁପତିର ସାମ୍ରାଜ୍ୟ ଏକ ପ୍ରହେଳିକା, ଏକ ଇନ୍ଦ୍ରଜାଲ ଯାହା ବାସ୍ତବତାଠାରୁ ଅଧିକ ଶକ୍ତିଶାଳୀ ମନେହୁଏ । ଏ ପ୍ରହେଳିକାର ସୌଧ ମଣିଷର ନିରାଟ ଦୁର୍ବଳତା, ଶୂନ୍ୟତାବୋଧ, ଅଭାବବୋଧ ଉପରେ ଗଢ଼ା । ଯୁକ୍ତିନିଷ୍ଠ ପ୍ରଶାସକ ଗୁଣିଗାରେଡ଼ିରେ ବିଶ୍ୱାସ କରିବା ମଣିଷର ଅସହାୟତାବୋଧର ପରିଚୟ ଦେବା ସଙ୍ଗେ ସଙ୍ଗେ ଯୁକ୍ତିତର୍କର ସୀମାବଦ୍ଧତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରେ । ବାସ୍ତବତା, ଅବାସ୍ତବତା, ଯୁକ୍ତି ଅଯୁକ୍ତିର ଆପେକ୍ଷିକତା ଉପରେ ଏକ ଦାରୁଣ ଶ୍ଳେଷପୂର୍ଣ୍ଣ ଅଭିବ୍ୟକ୍ତି ଏହି କାହାଣୀ ।

'ପ୍ରତିଦ୍ୱନ୍ଦ୍ୱୀ' କ୍ଷମତା ରଣନୀତିର ଅନ୍ୟ ଏକ ଦୃଷ୍ଟାନ୍ତ । ଦୁଇ ପୁରୁଣା ବନ୍ଧୁ ଜୟସିଂହ ଓ ରଙ୍ଗନାଥ ପ୍ରମୋଶନର ଦୌଡ଼ରେ ପରସ୍ପରର ପ୍ରତିଦ୍ୱନ୍ଦ୍ୱୀ । ସନ୍ଦିଗ୍ଧ ଉପାୟରେ ଜୟସିଂହ ଉପରିସ୍ଥ ଆସନର ଅଧିକାରୀ ହେବାପରେ ସଚ୍ଚୋଟ, କର୍ତ୍ତବ୍ୟନିଷ୍ଠ ରଙ୍ଗନାଥ ତା ଅଧୀନରେ କାମ କରିବାକୁ ଅସ୍ୱସ୍ତିକର ବୋଧ କରେ । ତା ପ୍ରତି ଜୟସିଂହର

ବ୍ୟବହାର ଦିନକୁ ଦିନ ରୁକ୍ଷ ଓ ଉଦାସୀନ ହୁଏ । ନିଜ କର୍ତ୍ତବ୍ୟ ପ୍ରତି କ୍ରମଶଃ ବୀତସ୍ପୃହ ହୋଇପଡ଼ି ଜୟସିଂହ ବିରୁଦ୍ଧରେ ରଙ୍ଗନାଥ ଗୋପନରେ ପ୍ରମାଣ, ନଥିପତ୍ର, ବିବରଣୀ ସଂଗ୍ରହରେ ଲାଗିପଡ଼େ । ଅଭିଯୋଗର ଫାଇଲ୍ ତିଆରି କରୁ କରୁ ତା'ର ଅବସର ହୋଇଯାଏ । ପରସ୍ପର ପ୍ରତି ଥିବା ଦୁର୍ବଳତା ଓ ଭୟରୁ ସୃଷ୍ଟି ଏହି ବନ୍ଧୁତ୍ୱ-ବୈରତାର ବିରୋଧାଭାସ । ଉଭୟ ପରସ୍ପରଙ୍କ ବିକଳ୍ପ ଅହଂ । ଏକ ସଂଗୁପ୍ତ ଅନ୍ଧ ଲଢ଼େଇ ଚାଲିଥାଏ ଦୁଇଜଣଙ୍କ ଭିତରେ । ଜୟସିଂହ ହିସାବୀ, କୁଚକ୍ରୀ ଓ ଚତୁର ଥିବାବେଳେ ରଙ୍ଗନାଥ ସରଳ, ସଲଖ, ଆବେଗପୂର୍ଣ୍ଣ । ରଙ୍ଗନାଥର ଅବସର ପରେ ଜୟସିଂହ ତା'ର ଦ୍ୱାରସ୍ଥ ହୋଇ ଅନୁନୟ କରେ ଆଉ ପାଞ୍ଚବର୍ଷ କମ୍ପାନୀରେ ଚାକିରି କରିବାକୁ । ନିଜର ଅସୁସ୍ଥତା, ପରିବାରର ଜଟିଳତା ଦର୍ଶାଇ ତା'ର ସାହାଯ୍ୟ ଭିକ୍ଷା କରେ, ଯଥୋଚିତ ବେତନର ପ୍ରତିଶ୍ରୁତି ଦିଏ । ଜଣେ ଅସୁଖୀ, ଅସହାୟ ମଣିଷର ଆଚରଣ ତା'ର ଆଉ ଏକ ରଣନୀତି ନୁହେଁ କି ? ଏହା ତା ମନର ଭାଷା, ନା ରଙ୍ଗନାଥକୁ କ୍ଷମତା ଚକ୍ରରେ ବାନ୍ଧି ରଖିବାକୁ ତା'ର ଏକ ଅଭିନୟ ? ସେ କ'ଣ ସଚେତନ ଯେ ସେ ଉଚ୍ଚ ଆସନ ଅଧିକାର କରିଛି ଅନୈତିକ ଉପାୟରେ ଓ ରଙ୍ଗନାଥ ନୈତିକ ସ୍ତରରେ ତା'ଠାରୁ ବହୁ ଉଚ୍ଚରେ ? ଏପରିକି ଅବସର ପରେ ବି ରଙ୍ଗନାଥକୁ ନିଜର ପ୍ରତିଦ୍ୱନ୍ଦ୍ୱୀ ମନେକରେ ? ତା'ର ନୈତିକ ପ୍ରତିଷ୍ଠାକୁ ଖର୍ବ କରିବାକୁ ଏହା କ'ଣ ତା'ର ଏକ ଆୟୁଧ ? ଅନ୍ୟ ଏକ ଦୃଷ୍ଟିରେ, ଜୟସିଂହର ଅନୈତିକ, ବେଆଇନ କର୍ମର ହିସାବକିତାବରେ ଜ୍ଞାନ ଓ ଆତ୍ମାକୁ ନିବେଶ କରି ରଙ୍ଗନାଥ ନିଜେ ଅନୈତିକତା ଦ୍ୱାରା ସଂକ୍ରମିତ ଓ ଆକ୍ରାନ୍ତ ହୋଇନାହିଁ କି ? ସତ୍ୟ ଓ ଅଭିନୟ ଭିତରେ ଛକାପଂଝା ଏହି ଗଳ୍ପଟି ।

'ଭୃତ୍ୟ' ଗଳ୍ପ କ୍ଷମତା ବିମର୍ଶର ଅନ୍ୟ ଏକ ଦିଗ । ବ୍ୟକ୍ତିସ୍ଥିତିକୁ ବୁଝାଇବାକୁ ଯାଇ ସ୍ଥିତିବାଦୀ ଦାର୍ଶନିକ ଜାଁ ପଲ ସାର୍ତ୍ର, being-for-itself, being -for-others ଓ being-in-itself ପରିଭାଷା ବ୍ୟବହାର କରିଛନ୍ତି । ଅନ୍ୟର ଇଚ୍ଛା, ପସନ୍ଦ, ଅପସନ୍ଦ ଅନୁସାରେ ଚଳୁଥିବା ବ୍ୟକ୍ତି ଅନ୍ୟ ଦ୍ୱାରା ନିର୍ଦ୍ଧାରିତ ଜୀବନ ବଞ୍ଚେ, ଅର୍ଥାତ୍ ଅନ୍ୟର ଜୀବନ ବଞ୍ଚେ । ସେ ହୁଏ being -for-others, ନିଜର ଅନ୍ତଃଚେତନାକୁ ଅବଜ୍ଞା କରି ଏକ ମିଛ ଜୀବନ ବଞ୍ଚେ, ନିଜର ସ୍ଥିତି ବା being-for-itself ରୁ ଦୂରେଇ ଯାଏ । କ୍ରମଶଃ ସେ ହୋଇଯାଏ ଏକ ନିଷ୍କ୍ରିୟ, ନିର୍ବେଦ, ଚେତନାବିରହିତ ବସ୍ତୁଟିଏ being-in-itself. 'ଭୃତ୍ୟ' ଗଳ୍ପର ସୁଧାକର ଅନ୍ୟର ଅଧୀନସ୍ଥ ଏକ ବ୍ୟକ୍ତିସତ୍ତା, ସ୍ୱତନ୍ତ୍ରତାବିହୀନ ଜୀବଟିଏ । ଦୀର୍ଘଦିନର ପରାଧୀନତା ଫଳରେ ସେ ତା'ର ପରାଧୀନତାକୁ ଅନ୍ତରୀଣ କରିନିଏ । ଦାସତ୍ୱ, ପରାଧୀନତାର ସ୍ଥିତିରୁ ଅଲଗା ହେଲେ ତା'ର ସ୍ଥିତି ବିପନ୍ନ । ହାକିମର ଅବସର ପରେ ବି ସେ ହାକିମର ଘରେ କାମ କରେ, ଗାଳି, ଅପମାନ, ଲାଞ୍ଛନା ଆଗପରି ପାଏ । ଏକ ରହସ୍ୟମୟ ରଜ୍ଜୁରେ ବନ୍ଧା ହାକିମ ସହିତ । ଯେଉଁଦିନ

ମାଲିକର ମୃତ୍ୟୁ ଘଟେ ସେହିଦିନ ହସ୍‌ପିଟାଲରୁ ଫେରିବା ପରେ ସୁଧାକର ନିଜ ଛାତିରେ କଷ୍ଟ ଅନୁଭବ କରେ । ତା'ର ଆସନ୍ନ ବିଲୋପନର ସଂକେତ ।

'ଚରମ ପତ୍ର'ରେ କ୍ଷମତା ଲଢ଼େଇର ପୃଷ୍ଠଭୂମି ହେଉଛି ରାଜନୀତି । ସରକାରଙ୍କ ପ୍ରେସ୍‌ବିଲ୍‌ର ବିରୋଧ କରି ଦୁଇ ପୂର୍ବତନ ମୁଖ୍ୟମନ୍ତ୍ରୀ ଜେଲ ଭୋଗନ୍ତି । ମୁଖ୍ୟମନ୍ତ୍ରୀଙ୍କର ଅଭିସନ୍ଧିମୂଳକ ଗୁପ୍ତ ନିର୍ଦ୍ଦେଶ ଫଳରେ ଯମନିର୍ଯ୍ୟାତନା ପାଆନ୍ତି । ଏକଦା ଭୟଙ୍କର ଭାବରେ ପରସ୍ପର ବିରୋଧୀ ଏହି ଦୁଇନେତା ଜେଲରେ କ୍ରମଶଃ ପରସ୍ପରର ନିକଟତର ହୁଅନ୍ତି । ପରିଶେଷରେ ସରକାର ପ୍ରସ୍ତାବ ଦିଏ ଆନ୍ଦୋଳନ ପ୍ରତ୍ୟାହାର କରିବାର ଲିଖିତ ପ୍ରତିଶ୍ରୁତି ଦେଲେ ସେମାନଙ୍କୁ ଜେଲରୁ ଖଲାସ କରି ଦିଆଯିବ । କିନ୍ତୁ ଏହାର ଜବାବରେ ସେମାନେ ଯେଉଁ ଦାବିପତ୍ର ଦେଲେ ତାହା ହେଉଛି ସେମାନଙ୍କୁ ରହିବା, ଖାଇବା, ପିଇବାରେ ଅନବରତ ହରକତ କରୁଥିବା ଜେଲ କର୍ମଚାରୀ ଭିକାରୀକୁ ଅନ୍ୟତ୍ର ବଦଳି କରିଦେବାକୁ । ଏ ଏକ ଚରମ ପତ୍ର, ମୁଖ୍ୟମନ୍ତ୍ରୀଙ୍କ ରଣନୀତି ବିରୁଦ୍ଧରେ ପ୍ରତିରଣନୀତି ।

ରାଷ୍ଟ୍ର ଓ ନାଗରିକର ସଂପର୍କକୁ ନେଇ 'ଦେଖଣାହାରି' । ମାର୍କ୍ସବାଦୀ ତତ୍ତ୍ୱବିତ୍ ଲୁଇ ଆଲଥୁଜର ରାଷ୍ଟ୍ର-କ୍ଷମତା ପ୍ରୟୋଗର ଦୁଇଟି ଆୟୁଧର ଉଲ୍ଲେଖ କରିଛନ୍ତି : ନିଷ୍ପେଷଣମୂଳକ ରାଷ୍ଟ୍ର ବ୍ୟବସ୍ଥା (repressive state operation), ମତାଦର୍ଶମୂଳକ ରାଷ୍ଟ୍ର ବ୍ୟବସ୍ଥା (ideological state operation)। ପୋଲିସ ମିଲିଟାରୀ ଦ୍ୱାରା ବଳପ୍ରୟୋଗ ଓ ଶିକ୍ଷା ବ୍ୟବସ୍ଥା, ପ୍ରଚାର ମାଧ୍ୟମ ଦ୍ୱାରା ଜନମାନସକୁ ପ୍ରଭାବିତ କରିବା । ଗଳ୍ପଟିରେ ଏହି ଦୁଇଟି ଉଦାହରଣ ରହିଛି - ପୋଲିସ କ୍ଷମତାର ବର୍ବର ପ୍ରୟୋଗ ଏବଂ ପ୍ରତ୍ୟକ୍ଷ-ପରୋକ୍ଷ ଲାଞ୍ଚ, ପୃଷ୍ଠପୋଷକତା ଦ୍ୱାରା କ୍ଷମତାସୀନଙ୍କ ସମର୍ଥନରେ ଓ ଇଙ୍ଗିତରେ ସମ୍ବାଦପତ୍ରରେ ରିପୋର୍ଟ ଛପାଇ ଜନମତକୁ ପ୍ରଭାବିତ କରିବାର ପ୍ରଚେଷ୍ଟା । ସରକାରୀ ଖର୍ଚ୍ଚ ଓ ଆତିଥ୍ୟରେ ଦଙ୍ଗାଗ୍ରସ୍ତ ଅଞ୍ଚଳକୁ ଯାଇଥିବା ସାମ୍ବାଦିକ ଦଳରେ ସଂବିତ୍ ଏକ ନିଆରା ସାମ୍ବାଦିକ । ସେଦିନ ହୋଟେଲର ଝରକା ଦେଇ ସେ ଦେଖେ ସାମ୍ନା ରାସ୍ତାର ଆରପଟେ ଗାନ୍ଧିମୂର୍ତ୍ତି ତଳେ ଦୁଇଜଣ ପୋଲିସ ଜଣେ ଲୋକକୁ ନିର୍ଧୂମ୍ ପିଟୁଛନ୍ତି ଓ ଲୋକଟିର ଆର୍ତ୍ତଚିତ୍କାର ଶୁଭୁଛି । ତା'ପରଦିନ ସମ୍ବାଦପତ୍ରରେ ବାହାରିପଡ଼େ ପରିସ୍ଥିତି ସଂପୂର୍ଣ୍ଣ ନିୟନ୍ତ୍ରଣାଧୀନ, ଶାନ୍ତି ଫେରିଆସିଛି । ସରକାର ବାହା ବାହା ନିଏ । ତା'ପରଦିନ ସଂବିତ୍ କିନ୍ତୁ ବିବେକର ତାଡ଼ନାରେ ପୋଲିସ ବିରୋଧରେ ଅଭିଯୋଗ କରେ, ସେହି ସ୍ଥାନକୁ ସେହି ଦୁଇ ପୋଲିସଙ୍କ ସାଙ୍ଗରେ ଯାଏ । ପୋଲିସର ଲାଠି ଉଠେ, "ଏଥରକ ଯେଉଁ ଚିତ୍କାରଟି ଶୁଣାଗଲା ସେଇଟି ତା'ର ନିଜର" । ହୋଟେଲର ଝରକାସବୁ ବନ୍ଦ ହୋଇଯାଏ, ଲାଇଟ୍ ସବୁ ଲିଭିଯାଏ । ନିଷ୍ପେଷଣ ଓ ଉଦାସୀନତାର ଅନ୍ଧାରିମୂଳକରେ ସଂବିତ୍‌ର ପ୍ରତିବାଦ ଥିଲା ଏକ କ୍ଷୀଣ ଆଲୋକ ଶିଖା । ଗଣତନ୍ତ୍ର ଓ ବ୍ୟକ୍ତି ସ୍ୱାଧୀନତା

ଉପରେ ଏକ ଗମ୍ଭୀର ଗୁରୁତର ପ୍ରଶ୍ନ ଗଳ୍ପଟିରେ ଅନୁରଣିତ ହୁଏ ।

ଯେଉଁ ଚତୁରୀ ରହସ୍ୟମୟୀ ନାରୀର ଆଭାସ 'ଶବ୍ଦଭେଦ'ରେ ମିଳିଥିଲା ତା'ର ବିବିଧ ପ୍ରତିରୂପ 'ପିକନିକ', 'ନିଜତ୍ୱ', 'ସ୍ପର୍ଶ', 'ସାକ୍ଷାତ୍କାର', 'ଜଣା ଅଜଣା', 'ସ୍ୱାତୀ ଆସିବ', 'ମନ୍ତ୍ର' ଗଳ୍ପରେ । 'ପିକନିକ'ରେ ସୁନନ୍ଦାର ସଂଘର୍ଷ ଇଚ୍ଛା, ସାମାଜିକ ନିଷେଧ ବିରୋଧରେ ନିଜର ନାରୀତ୍ୱ ପାଇଁ । ଅତୀତରେ ସେ ଅରବିନ୍ଦକୁ ଭଲ ପାଉଥିଲା । ତାକୁ ଅସଂଖ୍ୟ ଚିଠି ଲେଖୁଥିଲା, କିନ୍ତୁ ସେସବୁକୁ ଚିରିଦେଉଥିଲା । ତା'ର ଏକପାଖିଆ ପ୍ରେମ, ତା'ର ସଂଗୁପ୍ତ ଇଚ୍ଛା, ଉଦ୍‌ବେଗର ସ୍ୱଗତୋକ୍ତି ଥିଲା ତା'ର ଚିଠି । ସେଦିନ ପତିର ଅନୁମତି ନନେଇ ସେ ବାନ୍ଧବୀ ସମିତା ଓ ଅରବିନ୍ଦ ସହିତ ପିକନିକ ଚାଲିଯାଏ । ଅରବିନ୍ଦର ଦୂରତ୍ୱଭାବ, ଉଦାସୀନତାକୁ ଅନୁଭବ କରି ଭିତରେ ଭିତରେ ଛଟପଟ ହୁଏ । ଫେରିଆସି ନିଜଆଡୁ ସଫେଇ ଦେଇ ତା'ର ସ୍ୱାମୀକୁ ଲେଖେ ଅରବିନ୍ଦ ସହିତ ତା'ର ସଂପର୍କ ନଥିଲା, ପିକନିକରେ ଅରବିନ୍ଦ ସହିତ କଥାବାର୍ତ୍ତା ହୋଇନଥିଲା, ତାଙ୍କ ଅନୁପସ୍ଥିତିରେ ପିକନିକ ଯିବା ତା'ର ଭୁଲ୍ ଥିଲା । ପୂର୍ବ ଚିଠି ପରି ଏ ଚିଠିକୁ ମଧ୍ୟ ସେ ଚିରିପକାଏ । ନିଃସଙ୍ଗତାରୁ ମୁକୁଳି ଯିବାକୁ, ରୁଟିନବନ୍ଧା ଜୀବନରୁ କ୍ଷଣିକ ରିହାତି ପାଇବାକୁ ଅରବିନ୍ଦକୁ ନେଇ ଏକ ବିକଳ୍ପ ଦୁନିଆ ଗଢ଼େ ଓ ପର ମୁହୂର୍ତ୍ତରେ ତାକୁ ଭାଙ୍ଗିଦିଏ । ନାରୀର ଉଭୟ ଦୁର୍ବଳତା ଓ କଳ୍ପନାଶକ୍ତିକୁ ଗଳ୍ପଟି ପ୍ରକାଶ କରେ ଓ ନାରୀ ମାନସିକତାକୁ ଉନ୍ମୋଚନ କରେ ।

'ନିଜତ୍ୱ'ର ନାରୀ ବାସ୍ତବତାର ସାମ୍ନା କରେ ନିଜ ବାଟରେ, ନିଜର ସର୍ତ୍ତ ଅନୁସାରେ । ଡିରେକ୍ଟରଙ୍କର "ତମେ ଆଜି ଫ୍ରି ଅଛ ?"ର ଇଙ୍ଗିତକୁ ପ୍ରତ୍ୟାଖ୍ୟାନ କରେ ଉର୍ମିଳା । ପ୍ରେମିକ ଉଦୟନର ତା'ର ଚାକିରି କରିବାକୁ ବିରୋଧ, ବସ୍‌ରେ ବଜାରରେ ପୁରୁଷଙ୍କ ଅଶ୍ଳୀଳ ଇଙ୍ଗିତ, ଅଫିସରେ ପୁରୁଷ ସହକର୍ମୀଙ୍କର ତାକୁ ନ୍ୟୂନ କରିବାର ପ୍ରଚେଷ୍ଟାକୁ ସେ ଏଡ଼ାଇ ଚାଲେ । ଶେଷକୁ ଅସ୍ତବ୍ୟସ୍ତ ଉର୍ମିଳା ଉଦୟନକୁ ଚିଠି ଲେଖେ ଚାକିରିରୁ ଇସ୍ତଫା ଦେଇ ତାକୁ ବିବାହ କରିବାକୁ । କିନ୍ତୁ ଯେତେବେଳେ କଥା ପ୍ରସଙ୍ଗରେ ଉଦୟନ କହେ ଯେ ସ୍ତ୍ରୀ ପୁରୁଷଠାରୁ କମ୍ ଦରମା ପାଇବା ଉଚିତ୍ ସେତେବେଳେ ସେ ଦେଖେ ସବୁକ୍ଷେତ୍ରରେ ପୁରୁଷ ପ୍ରାଧାନ୍ୟ । ବୁଝାଯାଏ ତା'ର ପ୍ରେମିକର ପ୍ରେମ ଆତ୍ମକୈନ୍ଦ୍ରିକ, ପୁରୁଷର ବଡ଼ପଣିଆ, ଅହମିକାରୁ ଭଲପାଇବା ବି ମୁକ୍ତ ନୁହେଁ । ସଂକଳ୍ପ ନିଏ, ତା'ର ଜୀବନକୁ ଡିରେକ୍ଟର କିମ୍ବା ଉଦୟନ ଦ୍ୱାରା ନିୟନ୍ତ୍ରିତ ହେବାକୁ ଦେବ ନାହିଁ । ଆପଣାର ଦେହ ଉପରେ ଆପଣାର ମାଲିକାନା ଜାହିର କରିବାକୁ ନିଷ୍ପତ୍ତି ନିଏ । ଆତ୍ମ-ସ୍ୱାଧୀନତା ଓ ନିଜ ପ୍ରତି ନିଜର ଦାୟିତ୍ୱବୋଧ ସଂପର୍କରେ ସଚେତନ ହୁଏ । ଯେତେବେଳେ ନିଜଆଡୁ ଡିରେକ୍ଟରଙ୍କୁ କୁହେ, 'ଆପଣ ଆଜି ସନ୍ଧ୍ୟାରେ ଫ୍ରି ଅଛନ୍ତି ?', ଏହା ଆତ୍ମ-ସମର୍ପଣ ନୁହେଁ, ଏହା ଆତ୍ମ-ପ୍ରତିଷ୍ଠା । ନିଜର ଶରୀର ଓ

ମନକୁ ନିଜ ଇଚ୍ଛାରେ ବ୍ୟବହାର କରିବାର ସ୍ୱାଧୀନତା ଜାହିର । ନିଜର ଶରୀର ଓ ମନ ଉପରେ ଯେଉଁ ଅଧିକାରକୁ ଯୁଗ ଯୁଗ ଧରି ପୁରୁଷଜାତି ନାରୀଜାତିଠାରୁ ଛଡ଼ାଇ ନେଇଥିଲା, ତା'ର ପୁନରୁଦ୍ଧାର, ତା'ର ସାବ୍ୟସ୍ତ କରିବାର ଏହା ଏକ ବଜ୍ରବାଣୀ । ଡିରେକ୍ଟରଙ୍କ ପ୍ରତି ଏ ଆହ୍ୱାନ ଗଭୀର ଆତ୍ମବିଶ୍ୱାସର, ଉର୍ଦ୍ଧ୍ୱସ୍ୱଳ ବ୍ୟକ୍ତିତ୍ୱର । ଦେଖିବାକୁ ବାକି ରହିଯାଏ ଡିରେକ୍ଟର କିପରି ଏହାର ସାମ୍ନା କରୁଛନ୍ତି । ଏ ଆହ୍ୱାନ ସମଗ୍ର ପୁରୁଷତାନ୍ତ୍ରିକ ସମାଜ ପ୍ରତି ।

'ସ୍ପର୍ଶ' ଏକ ଗୀତି-କାହାଣୀ । ଭଲପାଇବାର ଆନନ୍ଦାତିଶଯ୍ୟର ଉତ୍ତୁଙ୍ଗ ମୁହୂର୍ତ୍ତକୁ ସାମ୍ନା କରିବାର ଅନେକ ଗଳ୍ପ ମଧ୍ୟରେ 'ସ୍ପର୍ଶ' ତାଙ୍କର ଶ୍ରେଷ୍ଠ ସୃଷ୍ଟି । ମାଧବୀ ଅଦ୍ଭୁତ ଭାବେ ରହସ୍ୟମୟୀ । କେତେବେଳେ ପ୍ରବଳ ଆବେଗ ଓ ପ୍ରଚଣ୍ଡ ଯୌନ-ପିପାସାର କାମିନୀ । ଅନେକ କାମରୀତିର କୁହୁକିନୀ ଯାଦୁକରୀ ନାରୀ । ପୁରୁଷକୁ ପ୍ରେମିକକୁ ଗ୍ରାସି ପକାଇବାର, ଶୋଷି ପକାଇବାର, ନିଃଶେଷ କରିଦେବାର ଜାନ୍ତବ କ୍ଷୁଧାଟିଏ । ବିଛଣା ଉପରେ "ଶାନ୍ତ ଶିଷ୍ଟ ଶୀର୍ଣ୍ଣକାୟ ଝିଅଟି ହଠାତ୍ ପରିବର୍ତ୍ତିତ ହୋଇ ହାତ ଗୋଡ଼ ଓଠ ଛାତିରେ ରୂପାନ୍ତରିତ ଉଚ୍ଛୃଙ୍ଖଳ ଅବୟବ ହୋଇଯାଉଥିଲା ।" ଆଶ୍ଚର୍ଯ୍ୟଜନକ ଭାବେ କେତେବେଳେ ହିମଶୀତଳ ଆବେଗହୀନ ଉଦାସୀନ ଶୁଷ୍କ କାଷ୍ଠ ପୁତ୍ତଳିକାଟିଏ, କେତୋଟି ଔପଚାରିକତାରେ ସୀମିତ ତା'ର ଜବାବ ଓ ପ୍ରତିକ୍ରିୟା । ପ୍ରାପ୍ତି ଓ ଅପ୍ରାପ୍ତି ମଧ୍ୟରେ ସନ୍ତୁଳିତ ହୁଏ ପୁରୁଷ ପ୍ରେମିକ । ଅସମ୍ଭବ ଆତ୍ମନିୟନ୍ତ୍ରଣ ବଳରେ ନିଜକୁ, ଦେହ ମନକୁ ବିକିଦିଏ, ପୁରୁଷ ଦ୍ୱାରା ବ୍ୟବହୃତ ହେବାକୁ ଦିଏ ନାହିଁ । ନିଜର ଦେହମନକୁ ନିଜ ଅକ୍ତିଆରରେ ରଖି ପୁରୁଷକୁ କଲବଲ କରେ, ତା'ର ଦମ୍ଭ ଅହମିକାକୁ ଖର୍ବ କରେ । ନାରୀର ବିବିଧତା, ବହୁରୂପିତାର ମାୟାର ଜାଲରେ ପୁରୁଷ ଛନ୍ଦି ହୋଇପଡ଼େ ବୁଢ଼ିଆଣୀ ଜାଲରେ ପଡ଼ିଥିବା ମାଛି ପରି ।

'ସାକ୍ଷାତ୍କାର' ଏକ ଆଧି-କାହାଣୀଗତ (metafictional) ଗଳ୍ପ ଯେଉଁଥିରେ ସତ୍ୟ ଓ କଳ୍ପନାର ସୀମା ହଜିଯାଏ, ବାସ୍ତବତା ଓ ନାଟକର ବିଭ୍ରାନ୍ତି ଘଟେ । ଶର୍ବରୀକୁ ସଂପୂର୍ଣ୍ଣଭାବେ ପାଇବାକୁ, ଉପଭୋଗ କରିବାକୁ ଓ ଅନ୍ୟମାନଙ୍କର ସନ୍ଧାନୀ ସନ୍ଦେହ ଚକ୍ଷୁରୁ ରକ୍ଷା ପାଇବାକୁ ଚନ୍ଦ୍ରହାସ ଶର୍ବରୀକୁ ନେଇ ସାକ୍ଷାତ୍କାରର ନାଟକ ସୃଷ୍ଟି କରେ, ସେ ନାଟକ ଶେଷକୁ ସତ ହୋଇଯାଏ, ଏହାର ଶରବ୍ୟ ହୁଏ ସ୍ୱୟଂ ଚନ୍ଦ୍ରହାସ । କାହାଣୀ ଭିତରେ କାହାଣୀ ନାଟକ ଭିତରେ ନାଟକ, ନାଟକ ବିଷୟରେ ନାଟକ ବା ମେଟାଥିଏଟର ଆଙ୍ଗିକର ଆଦ୍ୟ ପ୍ରବକ୍ତା ଇଟାଲୀୟ ନାଟ୍ୟକାର ଲୁଇ ପିରାଣ୍ଡେଲୋଙ୍କର Six Characters in Search of an Author ରେ ଏକ ନାଟକର ଚରିତ୍ରମାନେ ନିଜ ନିଜର ଭୂମିକାରେ ଅଭିନୟ କରୁ କରୁ ବାସ୍ତବ ଜୀବନର ଚରିତ୍ରରେ ପରିଣତ ହୁଅନ୍ତି । ସାକ୍ଷାତ୍କାର ନାଟକରେ ସାମ୍ବାଦିକ ଭୂମିକାରେ ଅଭିନୟ କରୁଥିବା ଶର୍ବରୀ କ୍ରମଶଃ ନିଜର ଅଭିନୟ

କଳାର ବୃତ୍ତକୁ ଟାଣି ହୋଇ ଆସେ ଓ ସେ ସତସତିକିଆ ସାମ୍ନାଦିଙ୍କ ପାଇଟିଯାଏ । ଏ ପ୍ରକ୍ରିୟାକୁ ଚନ୍ଦ୍ରହାସ ଅଟକାଇପାରେ ନାହିଁ । ଯେଉଁ ଖେଳ ଚନ୍ଦ୍ରହାସ ଖେଳିବାକୁ ଚାହୁଁଥିଲା ତାହା ତା'ର ନିୟନ୍ତ୍ରଣରୁ ଚାଲିଯାଏ । ମାୟାବତୀ ଶର୍ବରୀ ଏହି ସାକ୍ଷାତ୍କାର ନାଟକକୁ ଆୟୁଧ ରୂପେ ବ୍ୟବହାର କରି ଚନ୍ଦ୍ରହାସର ଯୌନ ଅହଂକାରକୁ ଖର୍ବ କରେ । ତାକୁ ଏକ ଅସହାୟ ସ୍ଥିତିକୁ ଠେଲିଦେଇ ସେ ଚାଲିଯାଏ ନିଜର ବ୍ୟକ୍ତିସ୍ଥିତି, ନିଜର ଦେହ ଉପରେ ଅକ୍ତିଆର ଜାହିର କରେ । (ଚନ୍ଦ୍ରହାସ ଓ ଶର୍ବରୀ ନାମର ମର୍ମାର୍ଥର ବ୍ୟଞ୍ଜନା ଗଳ୍ପଟିରେ ଝଙ୍କୃତ ହୁଏ ।) ଚନ୍ଦ୍ରହାସ ଅନୁଭବ କରେ ତା'ର ଅନ୍ତଃଶୂନ୍ୟତାକୁ, ଶର୍ବରୀ ଉପଲବ୍ଧି କରେ ତା'ର ଅସୀମ ସମ୍ଭାବନାକୁ । ଏ ସାକ୍ଷାତ୍କାର ହେଉଛି ଚନ୍ଦ୍ରହାସ ଓ ଶର୍ବରୀର ନିଜ ନିଜର ଅସ୍ତିତ୍ୱ ସହିତ ସାକ୍ଷାତ୍କାର ।

ସତ ଅସତର ବିଭ୍ରାନ୍ତିକର ଜଗତ ହେଉଛି 'ଜଣା ଅଜଣା'ର ଜଗତ । ଏଥିରେ ଅଭିବ୍ୟକ୍ତ ଏକ ନାରୀର ରହସ୍ୟମୟ ଇଲାକା - ନିହାତି ଝାପ୍‌ସା କିନ୍ତୁ ଶକ୍ତିଶାଳୀ । ସୀମା ହୋଇପାରେ ପ୍ରଖର ବୁଦ୍ଧିମତୀ ବା ଅସାଧାରଣ ଶକ୍ତିର ଅଧିକାରିଣୀ । ଅଫିସରେ, ବାହାରେ ଘଟୁଥିବା ଘଟଣାକୁ ଲୁଚାଇବାକୁ ରମାନାଥର ସକଳ ପ୍ରଚେଷ୍ଟା ସୀମାର ଆଖିରେ ଧରାପଡ଼ିଯାଏ । ତା'ର ଆଖିକୁ ଦେଖି ଅସଲ ସତଟାକୁ ଚିହ୍ନିପକାଇ ସୀମା ତାକୁ ଚକିତ କରିପକାଏ ଓ ମୁକାବିଲା କରି ଅପଦସ୍ଥ କରିପକାଏ । ରମାନାଥର ସନ୍ଦେହ ସୀମା ତା ପଛରେ ଗୁପ୍ତଚର ଲଗାଇଛି, କେହି ତା ବିଷୟରେ ପ୍ରତିଦିନ ସୀମାକୁ ଖବର ଦେଉଛି କିମ୍ବା ସୀମାର କାହା ସହିତ ଗୋପନ ସଂପର୍କ ଅଛି । ସାରା ଦିପହର ସୀମା କ'ଣ କରେ ? ସୀମାର ମୃତ୍ୟୁପରେ ତା'ର ବାକ୍ସରୁ ପାଏ ଏକ ଫଟୋଗ୍ରାଫ୍, ଯେଉଁଥିରେ ସୀମା ଓ ତା'ର ଚାରିଜଣ ବାନ୍ଧବୀ ହାତ ଧରାଧରି ଛିଡ଼ା ହୋଇ ଏକ ନିର୍ଦ୍ଦିଷ୍ଟ ବସ୍ତୁକୁ ଏକାଗ୍ରତାର ସହ ଦେଖୁଛନ୍ତି । ସମ୍ବାଦପତ୍ରରେ ବାହାରିଥିବା ଡାକିନୀ ହେବାର ସମ୍ବାଦକୁ ପଢ଼ି ରମାନାଥ ମନେ କରେ ସୀମା ଓ ତା'ର ବାନ୍ଧବୀମାନେ ଡାହାଣୀ ହେବାର ପ୍ରାଥମିକ ଦୀକ୍ଷା ନେବାକୁ ଏକ ତାନ୍ତ୍ରିକ ବିନ୍ୟାସରେ କେଉଁ ଶକ୍ତି ଚିହ୍ନକୁ ଘେରି ବସିଥିଲେ । ଏ ତନ୍ତ୍ର ସାଧନା ସୀମାର ତୀକ୍ଷ୍ଣ ଅନ୍ତଃଦୃଷ୍ଟିର ପ୍ରତୀକ । ସୀମାର ଅନ୍ତଃଦୃଷ୍ଟିର ଚମତ୍କାରିତା କେବଳ ତନ୍ତ୍ରର ପ୍ରତୀକ ମାଧ୍ୟମରେ ପ୍ରକାଶ ପାଇପାରେ । ତେବେ ରମାନାଥର ଦୃଷ୍ଟିରେ ସୀମା କ'ଣ ଏକ ସମାନ୍ତରାଳ ଜୀବନ ବଞ୍ଚୁଥିଲା ? ତା'ର ସାରା ଦାମ୍ପତ୍ୟ ଜୀବନ କ'ଣ ଜଣେ ଅଜଣା ଅଚିହ୍ନା ସ୍ତ୍ରୀ ସହିତ କଟିଥିଲା ? ଏକ ଡାକିନୀ ସହିତ ? କେଉଁଟି ଜଣା, କେଉଁଟି ଅଜଣା ? ଯାହା ଜଣା ତାହା ଅଜଣା ନା ଯାହା ଅଜଣା ତାହା ଜଣା ? ସାରା ଅତୀତ ବର୍ତ୍ତମାନ ଐନ୍ଦ୍ରଜାଲିକ, ଏ ସଂସାର ଏ ଜୀବନ ଗୋଟିଏ ଭେଳିକି ।

'ସ୍ୱାତୀ ଆସିବ' ଏକ ନାଟକୀୟ ଉତ୍କଣ୍ଠାଭରା କାହାଣୀ । କାହାଣୀର କେନ୍ଦ୍ରବିନ୍ଦୁ ସ୍ୱାତୀ, କିନ୍ତୁ ଏଥିରେ ସ୍ୱାତୀର ଉପସ୍ଥିତି ସାମାନ୍ୟ-ଗଳ୍ପର ପ୍ରାରମ୍ଭରେ ଭାସ୍କର ସହିତ

ପଦେ ଦି'ପଦ କଥା । ଗଳ୍ପର ଅଧିକାଂଶରେ ସେ ଅନୁପସ୍ଥିତ ଥିଲେ ମଧ୍ୟ ତା'ର ଉପସ୍ଥିତି ଅନୁଭୂତ ହୁଏ ଭାସ୍କରର ପ୍ରତୀକ୍ଷାର ଉତ୍କଣ୍ଠା, ଆବେଗ, ଉତ୍ତେଜନା ଓ ଅସ୍ଥିରତା ମାଧ୍ୟମରେ । ସ୍ୱାତୀକୁ ସ୍ୱାଗତ କରିବାକୁ ଭାସ୍କରର ସକଳ ସାଜସଜ୍ଜା ଓ ମାନସିକ ପ୍ରସ୍ତୁତିର ଆବେଗଭରା ବିବରଣୀରେ ଭରପୂର ହୁଏ ଗଳ୍ପଟି । ସ୍ୱାତୀକୁ ନେଇ ସମସ୍ତ ଯୋଜନା ଓ ସ୍ୱପ୍ନର ନାଟକୀୟ ଉତ୍କଣ୍ଠାର କ୍ରମ ଆରୋହଣ ଶୀର୍ଷରେ ପହଞ୍ଚେ । ସମସ୍ତ ଉତ୍ତେଜନା, ଉତ୍କଣ୍ଠା ପୁଞ୍ଜୀଭୂତ ହୁଏ ସେ ଶୀର୍ଷବିନ୍ଦୁରେ, ବିସ୍ଫୋରଣର ଚରମ ମୁହୂର୍ତ୍ତରେ । ଠିକ୍ ସେହି ସମୟରେ ଭାସ୍କର ଘରେ ତାଲା ପକାଇଦେଇ, ଏକ ଜରୁରୀ କାମରେ ବାହାରକୁ ଯାଉଛି ବୋଲି ଚିଠିଟିଏ ଲେଖି ତାଲାରେ ଝୁଲାଇ ଦେଇ ବାହାରକୁ ଚାଲିଯାଏ । ଏ ଆକସ୍ମିକ ଅବରୋହଣର କାରଣ କ'ଣ ? ନାଟକୀୟତାର ଅଚାନକ ପତନର ତାତ୍ପର୍ଯ୍ୟ କ'ଣ ? ଚରମ ମୁହୂର୍ତ୍ତଟିର ବିସ୍ଫୋରଣକୁ ସହିବାକୁ କ'ଣ ଭାସ୍କର ଭୀତତ୍ରସ୍ତ ? ସ୍ୱାତୀର ପ୍ରଚଣ୍ଡ କ୍ଷମତାର ପରିଚୟ ଦିଏ, ଯାହା ଆଗରେ ପୁରୁଷଟି ବଡ଼ ଦୟନୀୟ । ସ୍ୱାତୀର କଳ୍ପିତ ଛବି ଆଗରେ ଭାସ୍କର ନିବଶ, ସ୍ୱାତୀର ସର୍ବଗ୍ରାସୀ କାମନାର ଆଭାସ ତାକୁ ନିର୍ବୀର୍ଯ୍ୟ କରିପକାଏ । ଗୋଟାଏ ଅନୁପସ୍ଥିତ ଚରିତ୍ରର ନିଦା ରହସ୍ୟମୟ ଉପସ୍ଥିତି ଗଳ୍ପଟିର ବୈଶିଷ୍ଟ । ସୀମା ପରି ସ୍ୱାତୀ ଏକ ଜ୍ୱାଳାମୟୀ ନାରୀ ।

'ଜଣା ଅଜଣା' ପରି ମନ୍ତ୍ର ଗଳ୍ପରେ ତନ୍ତ୍ରକୁ ବଳିଷ୍ଠ ପ୍ରତୀକ ରୂପେ କଥାକାର ବ୍ୟବହାର କରିଛନ୍ତି ନାରୀ ମାନସର ରହସ୍ୟଘନ ଜଟିଳ ବୃତ୍ତକୁ ଉନ୍ମୋଚନ କରିବାକୁ । ଏକଦା ମେଧାବିନୀ ଛାତ୍ରୀ ଓ ନେତ୍ରୀ ଭାବରେ ଖ୍ୟାତା ସୁହାସିନୀ ସଂପ୍ରତି ଦୁର୍ନୀତିଗ୍ରସ୍ତ ସ୍ୱାମୀ ପ୍ରଭାକରଠାରୁ ଦୂରଛଡ଼ା ହୋଇ ରହେ, ଭିଜିଲାନ୍‌ସ କେଶ୍‌ରେ ପଡ଼ିଥିବା ସ୍ୱାମୀର ଦୁଃଖ ପ୍ରତି ଉଦାସୀନ ରହେ । ଭଣ୍ଡ ସ୍ୱାମୀଜୀଙ୍କୁ ନେଇ ଦୁର୍ନୀତିଗ୍ରସ୍ତ ଚିଫ୍ ଇଞ୍ଜିନିୟର, ପ୍ରଭାକର ଏବଂ ନଗ୍ରବାସୀମାନେ ବେଶ୍ ଉତ୍ତେଜିତ ଥିବାବେଳେ ସେ ସ୍ୱାମୀଜୀକୁ ବେଖାତିର କରେ । ଅନେକ ପୁରୁଷ-ସ୍ତ୍ରୀ ସ୍ୱାମୀଜୀର ଛଳନାର ଶିକାର ହେବାବେଳେ ତା'ର ଭଣ୍ଡାମି ଓ ଯୌନଲାଳସାର ମୁକାବିଲା କରେ ସୁହାସିନୀ ନିଜ ବାଟରେ । ଆତ୍ମସମର୍ପଣ ନକରି ସ୍ୱାମୀଜୀର ଅସଲ ଚେହେରାକୁ ସିଧା ଇଙ୍ଗିତ କରେ, "ତୁ ଗୋଟିଏ ଅସଲ ଠକ ।" ଅନ୍ୟ ନାରୀମାନଙ୍କ ପରି ତା'ର ପାଦ ତଳେ ନବସି ବସେ ତା ପାଖରେ, ସମାନ ଉଚ୍ଚତାରେ । ସ୍ୱାମୀଜୀର ମିଛମନ୍ତ୍ରର ମୁକାବିଲା କରେ ନିଜର ବ୍ୟକ୍ତିତ୍ୱ, ଅନ୍ତଃଦୃଷ୍ଟି ଓ ଆତ୍ମାର ମନ୍ତ୍ର ଦ୍ୱାରା । ସେ ଧରାଦିଏ ନାହିଁ ବରଂ ସ୍ୱାମୀଜୀକୁ ନିଜ ନିୟନ୍ତ୍ରଣରେ ଆଣେ । ବୌଦ୍ଧିକ ସ୍ତରରେ ସ୍ୱାମୀଜୀ ବରଂ ତା ଉପରେ ନିର୍ଭରଶୀଳ ହୁଅନ୍ତି । କେବଳ ସ୍ୱାମୀଜୀଙ୍କ ବୌଦ୍ଧିକ ବକ୍ତୃତାର ପ୍ରଶଂସା କରେ, ଏହାକୁ ଲିପିବଦ୍ଧ କରି ଏକ ପୁସ୍ତକ ସଂପାଦନାରେ ଲାଗିପଡ଼େ । ତେବେ ପ୍ରଶ୍ନ ଉଠେ ଜଣେ ଭଣ୍ଡ ପ୍ରତାରକ ଏତେ ସୁନ୍ଦର ସାରଗର୍ଭକ ଭାଷଣ କିପରି ଦେଇପାରେ ? ଏହାର ଜବାବରେ କୁହାଯାଇପାରେ ସ୍ୱାମୀଜୀଙ୍କର

ଅନେକ ନାଟକ ପରି ଏ ଏକ ନାଟକ, ସେ ଏକ ପୋଖତ ଅଭିନେତା । ଅଭିନୟ ଓ ବାସ୍ତବତା ଭିତରେ ପ୍ରଭେଦ ରୁହେ ନାହିଁ ସାଧାରଣ ଜନ ପାଇଁ, କିନ୍ତୁ ସମାଲୋଚକ ବିଦୁଷୀ ସୁହାସିନୀ ପାଇଁ ନୁହେଁ । ବରଂ ସୁହାସିନୀ ଏ ବକ୍ତୃତାକୁ ଲିପିବଦ୍ଧ, ସଂକଳିତ ଓ ସଂପାଦିତ କରି ସେଥିରେ ନିଜର ମୋହର ଲଗାଇଦିଏ । ଅର୍ଥାତ୍, ପୁସ୍ତକଟିର ସେ ହୋଇଯାଏ ସହସ୍ରଷ୍ଟା । ଉପାଦାନକୁ ଆତ୍ମସ୍ଥ କରି ଏହାକୁ ନୂତନ କଳେବର ଦିଏ ବିଦୁଷୀ, ବୁଦ୍ଧିମତୀ, ଚତୁରୀ ସୁହାସିନୀ । ଚିଫ୍ ଇଞ୍ଜିନିୟରଙ୍କ ଶାଳୀ ସହିତ ପ୍ରଚୁର ଅର୍ଥ ଅଳଙ୍କାର ସହିତ ସ୍ୱାମୀଜୀ ହଠାତ ଉଭାନ ହୋଇଯିବା ପରେ ଯେତେବେଳେ ସକଳ ନଗ୍ରବାସୀ ହତଚକିତ, ସୁହାସିନୀ ପ୍ରତିକ୍ରିୟାହୀନ, ପ୍ରତାରିତ ସମାଜ ଓ ପ୍ରତାରକ ସ୍ୱାମୀଜୀର ବହୁ ଉର୍ଦ୍ଧ୍ୱରେ ସେ ବୁଦ୍ଧି, ଅନ୍ତଃଦୃଷ୍ଟି ଓ ନୈତିକତା ସ୍ତରରେ । ଏହାହିଁ ଅସଲ ମନ୍ତ୍ର ।

କାଫ୍କାଙ୍କ ଦୃଷ୍ଟିଭଙ୍ଗୀ ଓ ଶୈଳୀ ଏବଂ ଉତ୍ତର ଆଧୁନିକ ଆଧିକାହାଣୀ ଆଙ୍ଗିକର ସୁନ୍ଦର ସମ୍ମିଶ୍ରଣର ଏକ ସଫଳ ପରୀକ୍ଷା କରିଛନ୍ତି କଥାକାର କୁଶୀଲବ ଗଳ୍ପରେ । କାରଣହୀନ, ଅଯୌକ୍ତିକ ଯନ୍ତ୍ରଣାର ଶିକାର ହୁଏ ଲେଖକ ବଳଭଦ୍ର । ସତ୍ୟାସତ୍ୟର ନାୟକ ପଦ୍ମଧରର ଚରିତ୍ରଠାରୁ ବଳଭଦ୍ରର ଚରିତ୍ର ଆହୁରି ଶାଣିତ ଓ ଜଟିଳ । ଲେଖକଙ୍କର ଦୁଇଟି ପରିଚୟ ; ଅଭିଜାତ, ବୌଦ୍ଧିକ ଗଳ୍ପ ଉପନ୍ୟାସର ଲେଖକ- ବଳଭଦ୍ର ଏବଂ ପଇସା କମାଇବାକୁ ଡିଟେକ୍ଟିଭ, ହାଲୁକା ଅଶ୍ଳୀଳ ଉପନ୍ୟାସ, ଶସ୍ତା ରାଜନୈତିକ କାହାଣୀ, ରୋମାଞ୍ଚକର ଥ୍ରିଲରର ଲେଖକ- କୀର୍ତ୍ତିମୁଖ । ଶବ୍ଦଭେଦର ଭବନାଥ ପରି ନିଜ ଉପନ୍ୟାସର କୌଣସି ଚରିତ୍ର ସହିତ ସାମଞ୍ଜସ୍ୟ ଥିବା ବାସ୍ତବ ଦୁନିଆର ଲୋକଙ୍କ ସମାଲୋଚନାର ଶିକାର ହୁଏ ବଳଭଦ୍ର । ସାହିତ୍ୟର ସୀମା ଡେଇଁ ବାସ୍ତବ ଦୁନିଆରେ ସାହିତ୍ୟର ସଂକ୍ରମଣ ଓ ବିସ୍ତାରକୁ ଏହା ସୂଚିତ କରେ । ତା'ର ଏକ ଡିଟେକ୍ଟିଭ ଉପନ୍ୟାସର ଘଟଣା ସହିତ ସାମଞ୍ଜସ୍ୟ ଥିବା ଏକ ସତ ଅପହରଣ ଘଟଣାକୁ ନେଇ ପୋଲିସର ସନ୍ଦେହ ବଳୟକୁ ସେ ଆସିଯାଏ - ଏ କାହାଣୀ ଦ୍ୱାରା ପ୍ରେରିତ ହୋଇ କେହି ଏହି ଅପରାଧ କରିପାରିଥାଏ ବା ଲେଖକ ଏ ଘଟଣା ସଂପର୍କରେ ଜାଣିପାରିଥାଏ ବା ନିଜେ ସେଥିରେ ସଂପୃକ୍ତ ଥାଇପାରେ । ପୋଲିସ ଦାରୋଗା ତାକୁ ଏ ବିଷୟରେ ପଚରାଉଚରା କରିବା ପରେ ଏ ବିଷୟରେ ସେ କୌତୂହଳୀ ହୋଇପଡ଼େ, ନିଜଆଡ୍ରୁ ଦାରୋଗା ସହିତ ସଂପର୍କ ରଖେ, ଏ ସଂପର୍କରେ କୌଣସି ଖବର ନପାଇଲେ ହୋଇପଡ଼େ ଅଧୈର୍ଯ୍ୟ, ଅସ୍ତବ୍ୟସ୍ତ । କେଶ୍ର ଅଗ୍ରଗତି ସଂପର୍କରେ ମାତ୍ରାଧିକ କୌତୂହଳ, ଜିଜ୍ଞାସା ପ୍ରକାଶ କରେ । କ୍ରମଶଃ The Trial ର 'କେ' ପରି ନିଜେ ତଦନ୍ତ ପ୍ରକ୍ରିୟାକୁ ଟାଣି ହୋଇଆସେ । ଏକ ଅହେତୁକ ଯନ୍ତ୍ରଣାରେ ଘାଣ୍ଟି ହୁଏ । ତଦନ୍ତ ଘଟଣାଟି ତା ଉପନ୍ୟାସର ଏକ ବିସ୍ତାରିତ ଅଂଶ ହୋଇଯାଏ, ନିଜେ ସେଥିରେ ଏକ ଚରିତ୍ର ବନିଯାଏ । ଏକ କାଳ୍ପନିକ ସୃଷ୍ଟିକୁ

ପ୍ରମାଣ ଭାବରେ ଗ୍ରହଣ କରି ଦାରୋଗା ବି ଏ ବିସ୍ତାରିତ ସାହିତ୍ୟର ଚରିତ୍ରଟିଏ ହୋଇଯାଏ । କଳାର ଇନ୍ଦ୍ରଜାଲରେ ସଭିଏଁ ଛନ୍ଦି ହୋଇପଡ଼ନ୍ତି ଠିକ୍ ଯେପରି 'ସାକ୍ଷାତ୍‌କାର'ର ଶର୍ବରୀ ଓ ଚନ୍ଦ୍ରହାସ ନିଜ ସୃଷ୍ଟ ନାଟକରେ ବାନ୍ଧି ହୁଅନ୍ତି । ଲେଖକ ଶେଷକୁ ଗିରଫ ହୁଏ, କାଫ୍‌କାଙ୍କ ପୃଥିବୀ ପରି ଜଗନ୍ନାଥ ପ୍ରସାଦଙ୍କ ପୃଥିବୀ ବଡ଼ ଭୟଙ୍କର ଓ ହାସ୍ୟକର । ସମସ୍ତେ ଏ ନାଟକ ବା କାହାଣୀର ଚରିତ୍ର - କୁଶୀଳବ । ସାରା ପୃଥିବୀ ଯେ ଏକ ରଙ୍ଗମଞ୍ଚ ଏହି ଆଧିଭୌତିକ ସତ୍ୟ ଉପରେ କୁଶୀଳବ ଏକ ଆଲୋକପାତ । ଏକ କାଳ୍ପନିକ ସୃଷ୍ଟିର ଘଟଣାକୁ ତଦନ୍ତର ସୂତ୍ର ଭାବରେ ଗ୍ରହଣ କରିବା ଆଇନ୍‌ର ସୀମିତତା ଓ ଯୁକ୍ତିର ସୀମାବଦ୍ଧତାକୁ ଦର୍ଶାଇଦିଏ, କାର୍ଯ୍ୟ-କାରଣ ସଂପର୍କର ସଙ୍ଗତିକୁ ପ୍ରଶ୍ନ କରେ । ଲେଖକର ଅସଲି-ନକଲି ଭିତରେ ବିଭ୍ରାନ୍ତି ସୃଷ୍ଟି ହୁଏ, ବଳଭଦ୍ର କୀର୍ତ୍ତିମୁଖ ବାରି ହୁଅନ୍ତି ନାହିଁ । ଅନ୍ୟ ଏକ ଦୃଷ୍ଟିରୁ ବଳଭଦ୍ରର ଅଭିଜାତ, ଶିଷ୍ଟ ସାହିତ୍ୟର ସୌଧ ଭୁଶୁଡ଼ି ପଡ଼େ କୀର୍ତ୍ତିମୁଖର ଶସ୍ତା ସାହିତ୍ୟର ବାସ୍ତବ, ମାମୁଲି ଚିତ୍ତବୃତ୍ତିର ଆଘାତରେ । ବାସ୍ତବ ଦୁନିଆର କାଳ୍ପନିକତା (fictionality) ଉପରେ ଗଢ଼ା ଏହି କାହାଣୀ ଏକ ଆଧିକାହାଣୀ । ମୋର ଏଠାରେ ମନ୍ତବ୍ୟ ହେଉଛି ଯେ ଜଗନ୍ନାଥ ପ୍ରସାଦଙ୍କର ପୂର୍ବ ଗଳ୍ପଗୁଡ଼ିକରେ ରୂପ ପାଇଥିବା ତାଙ୍କର ଦୃଷ୍ଟିଭଙ୍ଗୀ ଓ ଆଙ୍ଗିକର ସୂକ୍ଷ୍ମ ସମ୍ମିଶ୍ରଣ ଏହି 'କୁଶୀଳବ'ରେ ଘଟିଛି ।

'କବିତାର ଦୀର୍ଘଜୀବନ' ଲେଖକଙ୍କର ପୂର୍ବ କାହାଣୀ ପରି ସାହିତ୍ୟ ଓ ସମାଜ, ସାହିତ୍ୟ ଓ ଜୀବନ ମଧ୍ୟରେ ଥିବା ପାରସ୍ପରିକତା, ସଂଯୋଗ, ଆତଯାତର ଜଟିଳ ଗ୍ରନ୍ଥିକୁ ଉନ୍ମୋଚନ କରିବାକୁ ଚେଷ୍ଟା କରେ । ଗଳ୍ପଟି ଜଣେ କବିର ଶେଷ ଅଧ୍ୟାୟର କାହାଣୀ । ଆପଣାର କବିତାର ଦୁନିଆରେ ମଜ୍ଜି ରହି କବିଟି ସମାଜ ସଂସାରଠାରୁ ଦୂରେଇ ରୁହେ । ଚାକିରି ଚାଲିଯାଏ, ପତ୍ନୀ-ପୁତ୍ର ଘରଛାଡ଼ି ପଳାନ୍ତି । ସମାଜରୁ ବିଚ୍ଛିନ୍ନ କବିତା ତା'ର ଶକ୍ତି ଓ ସାନ୍ଦ୍ରତା ହରାଏ । ପଇସା ପାଇଁ ସେ ଲେଖେ ସିନେମା ସଂଗୀତ ଓ ସଂଳାପ । ଶସ୍ତା ବ୍ୟାବସାୟିକ ସାହିତ୍ୟର ଚକ୍ରରେ ପଡ଼ିଯାଏ । ସେ ଯେଉଁ ଗୀତ ଲେଖେ ତାକୁ ସଂପାଦକ ପ୍ରଯୋଜକ ବଦଳାଇ ଅଶ୍ଳୀଳ କରିଦିଅନ୍ତି । ଚାପର ବଶବର୍ତ୍ତୀ ହୋଇ ଅଶ୍ଳୀଳ ଗୀତ ଲେଖିଚାଲେ । ତା'ର କବିତ୍ୱ ବିକ୍ରିହୁଏ ପଣ୍ୟ ଆକାରରେ । ଶେଷକୁ ଗାଁରେ ରହେ, ଢାବାରେ ଅଧିକାଂଶ ସମୟ କାଟେ, ଦେଶୀମଦରେ ବୁଡ଼ିରହେ । ହୋଇପଡ଼େ ଅନ୍ୟମାନଙ୍କ ପାଇଁ କୌତୂହଳ ଆମୋଦର ସାମଗ୍ରୀ । ପୂର୍ବ ପରିକଳ୍ପିତ ଯୋଜନା ଅନୁସାରେ ତା'ର ସାକ୍ଷାତ୍‌କାର ନେବା ସମୟରେ ତା'ର ମଦ ପିଇବା, ମଦ ପିଉ ପିଉ ପଡ଼ିଯିବା, ପ୍ରତିବାଦର ଚିତ୍କାର କରିବାର - ଏସବୁର ଫଟୋ ଉଠାଇ ନିଆଯାଏ ପତ୍ରିକାର ଚାହିଦା ବଢ଼ାଇବାକୁ । ସୌଦାଗରୀ ସଭ୍ୟତାର ପଣ୍ୟ ହୋଇଯାଏ ସେ । ଏସବୁ ଯନ୍ତ୍ରଣା ଓ ହାସ୍ୟାସ୍ପଦତା ଭିତରେ କୁସୁମର ସ୍ମୃତି ତାକୁ ଆହ୍ଲାଦ ଦିଏ ।

କୁସୁମ ତା'ର କବିତା ପ୍ରତି ଆଗ୍ରହୀ ନଥିଲା, କିନ୍ତୁ ତା'ର ଭଲପାଇବା ଥିଲା ଅନାସକ୍ତ ଭଲପାଇବା, ସେ ଚାହେଁ ତା ପାଖକୁ ଆସିଯିବାକୁ, ତା'ର ଯତ୍ନ ନେବାକୁ । କବି କିନ୍ତୁ ଏକଲା ରହିବାକୁ ଚାହେଁ, କବିତାର ଯେଉଁ ସ୍ୱତନ୍ତ୍ର ପୃଥିବୀ ତିଆରି କରିଛି ତା'ରି ଭିତରେ ବାକିଦିନ କାଟିଦେବାକୁ ଆଶା ରଖେ । 'କବିତାର ଚିରନ୍ତନତା' ପରିବର୍ତ୍ତେ 'କବିତାର ଦୀର୍ଘଜୀବନ' ଶୀର୍ଷକର ତାତ୍ପର୍ଯ୍ୟ ଏଠାରେ ପ୍ରାସଙ୍ଗିକ ମନେହୁଏ । କବିତା ଚିରନ୍ତନ, କାଳଜୟୀ ଏବଂ କବି ସ୍ରଷ୍ଟା, ଭଗବାନଙ୍କର ପ୍ରତିରୂପ- ଏ ପ୍ରକାର ପାରଂପରିକ ଦାବିକୁ ପ୍ରରୂପବାଦୀ ସମାଲୋଚନା (formalism) ଓ ଉତ୍ତର ଆଧୁନିକତା ପ୍ରତ୍ୟାଖ୍ୟାନ କରେ । କବିତା ଏକ ସୃଷ୍ଟି ନୁହେଁ, ଏକ ନିର୍ମିତି, ଏକ କାରିଗରି, କବି ଜଣେ କାରିଗର । ତେଣୁ ସାଂପ୍ରତିକ ବିମର୍ଶର ଧାରା ଅନୁସାରେ ଜଗନ୍ନାଥ ପ୍ରସାଦ କବିତାର ଚିରନ୍ତନତାର କଥା କହିନାହାନ୍ତି ଦୀର୍ଘଜୀବନର କଥା କହିଛନ୍ତି । କବି ଯେତେବେଳେ ଏକଲା ହୋଇଯାଏ ଜୀବନର ଶେଷ ସୋପାନରେ ଆପଣା ସୃଷ୍ଟିର କଳ୍ପନା ଜଗତରେ ଆଶ୍ରୟ ନିଏ, କବିତାର ଦୀର୍ଘଜୀବନ ଭିତରେ କବିର ଜୀବନ ଅନ୍ତର୍ଭୁକ୍ତ ହୋଇଯାଏ । କବିତାର ପ୍ରଲମ୍ବିତ ଜୀବନରେ ତା'ର ଜୀବନ ଏକ ଅଂଶ ହୋଇଯାଏ । ଏହା ତା'ର ବଞ୍ଚିବାର ରାହା, ଦୀର୍ଘ ଜୀବନର ସ୍ୱାଦ ।

## ୩

ଟି. ଏସ୍. ଇଲିଅଟ୍‌ଙ୍କ ଭାଷାରେ କବି ତା ସମୟର ସର୍ବୋଚ୍ଚ ସଚେତନ ବିନ୍ଦୁରେ ଅବସ୍ଥାନ କରେ । ସକଳ ଘଟଣା, ଚିନ୍ତା, ଚେତନାର ପ୍ରବାହ ପ୍ରତି ସେ ଥାଏ ଉନ୍ମୁଖ । ଜଗନ୍ନାଥ ପ୍ରସାଦ ଦାସ ସମସ୍ତ ଅଭିଜ୍ଞତା ଚେତନାର କେନ୍ଦ୍ରରେ ଥାଆନ୍ତି । ସାମାଜିକ ପ୍ରସଙ୍ଗ ଓ ରାଜନୈତିକ ସମସ୍ୟା ସଂପର୍କରେ ସେ ଯେତିକି ସଚେତନ, ଚିନ୍ତା ରାଜ୍ୟରେ ଚାଲିଥିବା ଆନ୍ଦୋଳନ ପ୍ରତି ସେତିକି ସଚେତନ । ତାଙ୍କର ଅଧ୍ୟୟନ ଗବେଷଣାର ଜ୍ଞାନ ଅଭିଜ୍ଞତା ଅନୁଭୂତିରେ ରୂପାନ୍ତରିତ ହୋଇ ତାଙ୍କ କାହାଣୀର ଅଙ୍ଗୀଭୂତ ହୋଇଯାଏ । କାହାଣୀ ତାଙ୍କର ଜ୍ଞାନର ପ୍ରଦର୍ଶନୀ ନୁହେଁ, ଅନ୍ତରୀଣ ଅନୁଭୂତିର ରୂପାୟଣ । ପ୍ରଥମ ସାଂପ୍ରତିକ ସାମାଜିକ ପ୍ରସଙ୍ଗ ଆରକ୍ଷଣ, ସାମ୍ପ୍ରଦାୟିକ ଦଙ୍ଗା, ରାଜନୀତିକ ସଂଘର୍ଷ, ଉଦ୍ଭୁଡ଼ା ବ୍ୟକ୍ତିସଂପର୍କ, କ୍ଷମତାର ଖେଳ, ସମାଜରେ ନାରୀର ସଂଘର୍ଷ, କବିର ସ୍ଥିତି, ମଣିଷର ମନଃସ୍ତତ୍ତ୍ୱ ଏବଂ ସର୍ବୋପରି ବିଶ୍ୱରେ ମଣିଷର ସ୍ଥିତିକୁ ନେଇ ତାଙ୍କର ଗଳ୍ପ ଋଦ୍ଧିମନ୍ତ । ପ୍ରସଙ୍ଗଗୁଡ଼ିକ ପରସ୍ପରଠାରୁ ଅଲଗା ନୁହଁନ୍ତି, ପରସ୍ପର ସହିତ ଜଡ଼ିତ, ପରସ୍ପରର ସୀମା ଲଂଘନ କରନ୍ତି । ସେହିପରି ମାର୍କ୍ସବାଦ, ସ୍ଥିତିବାଦ, ବାମାବାଦ, ଉତ୍ତର ଆଧୁନିକତାବାଦର ଦୃଷ୍ଟିଭଙ୍ଗୀ ଓ ଆଙ୍ଗିକ ତାଙ୍କର କାହାଣୀ ନିର୍ମାଣର ଉପାଦାନ । ତାଙ୍କର ଅନେକ ଗଳ୍ପ ସ୍ଥିତିବାଦୀ ଦର୍ଶନ, ବିଶେଷତଃ ଫ୍ରାଞ୍ଜ କାଫ୍‌କାଙ୍କ ଚିନ୍ତବୃତ୍ତି ଓ

ଆଙ୍ଗିକ ଦ୍ୱାରା ପ୍ରଭାବିତ । ପୂର୍ବ ନିର୍ଦ୍ଧାରିତ, ଅର୍ଥଦ୍ୱାରା ନିର୍ମିତ ସତ୍ୟ ଓ ମାର୍ଗର ପ୍ରତ୍ୟାଖ୍ୟାନ କରି ନିଜସ୍ୱ ଓ ନିଜସ୍ୱ ମାର୍ଗର ସଂଧାନ କରନ୍ତି ତାଙ୍କର ଚରିତ୍ରମାନେ ।

ନାରୀ ଚରିତ୍ର ଚିତ୍ରଣରେ ଜଗନ୍ନାଥ ପ୍ରସାଦଙ୍କ କଳାକୁଶଳତା ଅଦ୍ୱିତୀୟ । ତାଙ୍କର ନାରୀ ବହୁବିଧ, ପରିବର୍ତ୍ତନଶୀଳ, ଅପହଞ୍ଚ ଓ ଅବୋଧ, କିନ୍ତୁ ଶକ୍ତିସମ୍ପନ୍ନା, କେବେ କେବେ ଅଗ୍ନିକନ୍ୟା । ଏହା ବୁଝାଏ ନାହିଁ ଯେ କଥାକାର ନାରୀର ନାସ୍ତିମୂଳକ ଚିତ୍ର ପ୍ରଦାନ କରିଛନ୍ତି, ତାଙ୍କର ନାରୀ ଶ୍ରଦ୍ଧାମୟୀ, ଆତ୍ମସଚେତନ ଏବଂ ପୁରୁଷ ଆଧିପତ୍ୟ ଓ ନିଷ୍ପେଷଣର ଦୃଢ଼ ବିରୋଧୀ । ବାସ୍ତବତା ଓ କଳ୍ପନା ଭିତରେ ବେଶ୍ ସ୍ୱଚ୍ଛଳରେ ଆତଯାତ କରେ । 'ଶବ୍ଦଭେଦ'ର ନାରୀ ହୋଇପାରେ କବି କଳ୍ପନା କିମ୍ବା ବାସ୍ତବତା, କିମ୍ବା ଉଭୟ, ସେ ଛଳନାମୟୀ, କୌତୁକମୟୀ ମାୟାବତୀ, 'ପିକନିକ', 'ସାକ୍ଷାତ୍‌କାର'ର ନାୟିକା ପୁରୁଷର କବ୍‌ଜାରୁ ରକ୍ଷା ପାଇବାକୁ କଳ୍ପନାଶକ୍ତିର ବ୍ୟବହାର କରନ୍ତି । 'ନିଜତ୍ୱ'ର ଉର୍ମିଳା ବୁଝେ ତା ଦେହର ମୂଲ୍ୟ, ତା'ର ଦେହ ଉପରେ ତା'ର ଅଧିକାରବୋଧ । 'ସ୍ପର୍ଶ'ର ମାଧବୀ ନିଜ ଇଚ୍ଛା ଅନୁସାରେ, ନିଜର ଆବେଗକୁ ନେଇ, ପୁରୁଷର ନିର୍ଦ୍ଦେଶ କି ଇଙ୍ଗିତରେ ନୁହେଁ, ନିଜର ଦେହକୁ ବ୍ୟବହାର କରେ - କେତେବେଳେ ଉନ୍ମୁକ୍ତା, କେତେବେଳେ ସ୍ପର୍ଶକାତରତାହୀନ ନିବୁଜ ଶରୀରଟିଏ । 'ଜଣା ଅଜଣା' ଓ 'ମନ୍ତ୍ର'ରେ ନାରୀର ଅସାଧାରଣ ଧୀଶକ୍ତି ଓ ଅନ୍ତର୍ଦୃଷ୍ଟିର ବିସ୍ତାରିତ ଚିତ୍ରକଳ୍ପ ହେଉଛି 'ମନ୍ତ୍ର' ।

ପ୍ରାରମ୍ଭରୁ ମୁଁ ଯେଉଁ ତାତ୍ତ୍ୱିକ ଏବଂ ଗାଳ୍ପିକ ଫ୍ରେମ୍‌ୱାର୍କ ବା ଚୌହଦି ଅଙ୍କନ କରିଛି ତା'ର କାର୍ଯ୍ୟକାରିତା ସଂଶିତ ଗଳ୍ପଗୁଡ଼ିକରେ ଦର୍ଶାଇବାକୁ ପ୍ରଚେଷ୍ଟା କରିଛି । ସଂକ୍ଷେପରେ କହିବାକୁ ଗଲେ ଜଗନ୍ନାଥ ପ୍ରସାଦଙ୍କ ଗଳ୍ପ ବାସ୍ତବ, ଅବାସ୍ତବର ଲୁଚକାଳି, ଛକାପଂଝାର ପ୍ରାଙ୍ଗଣ । ତାଙ୍କର ଗଳ୍ପଜଗତ ବାସ୍ତବତା-ଅବାସ୍ତବତା, ସ୍ୱପ୍ନ-ଦୁଃସ୍ୱପ୍ନରେ ଗଢ଼ା । ଏସବୁର ସୀମା ଅନିର୍ଣ୍ଣେୟ ଓ ଅନିର୍ଦ୍ଦିଷ୍ଟ । ସ୍ୱାଭାବିକ ବାସ୍ତବତାରୁ କିମ୍ଭୂତ ବାସ୍ତବତା (grotesque realism), ବାସ୍ତବତାରୁ ଅତିବାସ୍ତବତା ବା ସ୍ୱପ୍ନଦୃଷ୍ଟି, ସ୍ୱପ୍ନରୁ ଦୁଃସ୍ୱପ୍ନକୁ ଗତି ଓ ପ୍ରତ୍ୟାବର୍ତ୍ତନ ବେଶ୍ ସହଜ ଓ ସ୍ୱାଭାବିକ । 'ସତ୍ୟାସତ୍ୟ' ଓ 'କୁଶୀଲବ' ସ୍ୱପ୍ନ ଦୁଃସ୍ୱପ୍ନ ମଧ୍ୟରେ ଦୋଳାୟିତ । ବାସ୍ତବ ତଦନ୍ତ ପ୍ରକ୍ରିୟା ମାନସିକ, ଆଧ୍ୟାତ୍ମିକ ସ୍ତରରେ ତଦନ୍ତ ଓ ଅନୁସଂଧାନରେ ପରିଣତ ହୁଏ । ଏକ ସାର୍ବଜନୀନ ଅପରାଧବୋଧ, ପ୍ରତିଟି ମଣିଷର ଭିତରେ ଥିବା ଅପରାଧବୋଧକୁ ବେଶ୍ କଳାତ୍ମକ ଭାବରେ ଗଳ୍ପଟି ପ୍ରକଟ କରେ, ପୁରୋଭାଗକୁ ଆଣେ । ସ୍ୱାଭାବିକତାବାଦ, ପ୍ରତୀକବାଦ, ଅତିବାସ୍ତବବାଦ (fantasy), ଉତ୍ତରଆଧୁନିକ ଆଧିକାହାଣୀ ଶୈଳୀ - ଏମିତି ଅନେକ ଶୈଳୀ ଓ ଆଙ୍ଗିକର ସଫଳ ପ୍ରୟୋଗଶାଳା ଜଗନ୍ନାଥ ପ୍ରସାଦଙ୍କ ଗଳ୍ପସମୂହ । ଆଧୁନିକତାବାଦ ଓ ଉତ୍ତର ଆଧୁନିକତାବାଦ ତାଙ୍କ କଳାସ୍ଥାପତ୍ୟର ଦୁଇଟି ଦିଗନ୍ତ । ବ୍ୟଥା ଓ ବ୍ୟଙ୍ଗରେ ଗଢ଼ା ତାଙ୍କ ଗଳ୍ପଜଗତ । ଭବନାଥରୁ ବଳଭଦ୍ର ପର୍ଯ୍ୟନ୍ତ, ସୁନନ୍ଦାଠାରୁ ସୁହାସିନୀ ପର୍ଯ୍ୟନ୍ତ ତାଙ୍କ

ଚରିତ୍ରମାନେ ଗତି କରନ୍ତି ଶୂନ୍ୟତାବୋଧ, ବିଷାଦ ମଧ୍ୟ ଦେଇ ସ୍ୱ ସ୍ୱ ସ୍ଥିତିର ସନ୍ଧାନରେ । ଉଦ୍ଭଟ, ଦୁର୍ବୋଧ ଇଲାକାରେ ସେମାନେ ସଂଗ୍ରାମରତ । ଏବଂ ଏହି ସଂଗ୍ରାମ ମାଧ୍ୟମରେ ଆପଣାର ଉଭୟ ଦୁର୍ବଳତା ଓ ଶକ୍ତିର ମୁକାବିଲା କରନ୍ତି, ଉଭୟ ଅଭାବବୋଧ ଓ ଆତ୍ମିକ ଐଶ୍ୱର୍ଯ୍ୟର ଉପଲବ୍ଧି କରନ୍ତି । ଭାଷା ତାଙ୍କର ତଦ୍ଭବ, ଦେଶଜ ଶବ୍ଦର ମିଶ୍ରଣ ଏବଂ ଏହା ମାମୁଲି ନଗଣ୍ୟ ଘଟଣାକୁ ନେଇ ଚମତ୍କାର କଥନଶୈଳୀ ସୃଷ୍ଟି କରିବା ପାଇଁ ନିହାତି ଉପଯୋଗୀ ।

## ୪

ଜଗନ୍ନାଥ ପ୍ରସାଦ ଦାସଙ୍କର ଅନେକ ଗଳ୍ପ ମଧ୍ୟରୁ କେତୋଟି ଗଳ୍ପ ବାଛିବା ଏକ କଷ୍ଟକର ବ୍ୟାପାର । ସଂଶିତ ଗଳ୍ପଗୁଡ଼ିକ ବାହାରେ ଅନେକ ଉଚ୍ଚକୋଟିର ଗଳ୍ପ ରହିଯାଇଛି ଅବଶ୍ୟ । ସେସବୁକୁ ପୁସ୍ତକଟିରେ ସ୍ଥାନ ଦେବାକୁ ଇଚ୍ଛା ଥିଲେ ମଧ୍ୟ ପୁସ୍ତକଟିର ସୀମିତ କଳେବର ଦୃଷ୍ଟିରୁ ସେ ଇଚ୍ଛାକୁ ମୋର ସମ୍ବରଣ କରିବାକୁ ପଡ଼ିଛି । ଏହା ବ୍ୟତୀତ ଗଳ୍ପଗୁଡ଼ିକୁ ବାଛିଲାବେଳେ କେତୋଟି ଦିଗ ପ୍ରତି ମୋତେ ଧ୍ୟାନ ଦେବାକୁ ପଡ଼ିଛି । ପ୍ରଥମତଃ, କଥାକାରଙ୍କର ସାହିତ୍ୟିକ ଜୀବନର ବିଭିନ୍ନ ପର୍ଯ୍ୟାୟକୁ ପ୍ରତିନିଧିତ୍ୱ ଦେବା । ଏହା ତାଙ୍କର ଗାଳ୍ପିକ ମାନସର କ୍ରମବିକାଶର ସମ୍ୟକ ଧାରଣା ଦେବ । ଦ୍ୱିତୀୟ, ତାଙ୍କର କଥିତ ବିବିଧ ପ୍ରସଙ୍ଗକୁ ଅନ୍ତର୍ଭୁକ୍ତ କରିବା, ଯାହାକି ତାଙ୍କ ଗଳ୍ପର ବିସ୍ତାରର ସୂଚନା ଦେବ । ତୃତୀୟ, ତାଙ୍କ ଦ୍ୱାରା ବ୍ୟବହୃତ ବିଭିନ୍ନ ଶୈଳୀ ଓ ଆଙ୍ଗିକର ଯଥାଯଥ ଦୃଷ୍ଟାନ୍ତକୁ ସ୍ଥାନ ଦେବା । ଏସବୁ ବିବିଧତା ଭିତରେ କଥନିକାର ମୁଖ୍ୟଧାରାକୁ ଚିହ୍ନାଇ ଦେବା ଓ ଜଗନ୍ନାଥ ପ୍ରସାଦଙ୍କ ସୃଜନଶୀଳ ମାନସର ଗତିବୃତ୍ତର ଏକ ଆଭାସ ଚିତ୍ର ପ୍ରଦାନ କରିବା ସଂକଳନଟିର ଲକ୍ଷ୍ୟ । ତାଙ୍କ ଗଳ୍ପଗୁଡ଼ିକର ରହସ୍ୟଭରା, ଉତ୍କଣ୍ଠାପୂର୍ଣ୍ଣ ଆପାତତଃ ବୌଦ୍ଧିକ ପରିବେଶ ପାଠକଙ୍କୁ ଗଳ୍ପର ବଳୟ ଭିତରକୁ ଟାଣି ଆଣେ । ଜୀବନର ଅନେକ ଅସମାହିତ ପ୍ରଶ୍ନର ସାମ୍ନା କରାଏ । ଗଳ୍ପଗୁଡ଼ିକର ରହସ୍ୟ ଉଦ୍‌ଘାଟନରେ ବ୍ରତୀ କରାଇ ପାଠକଙ୍କୁ ସଜାଗ ସକ୍ରିୟ କରାଏ । ସେମାନେ ଭାଗ ନିଅନ୍ତି ଗଳ୍ପର ଅର୍ଥ ନିର୍ମାଣ ପ୍ରକ୍ରିୟାରେ । ସେମାନେ ହୁଅନ୍ତି ସହସ୍ରଷ୍ଟା । ଏହି ସଚେତନ ସକ୍ରିୟ ସହସ୍ରଷ୍ଟା ପାଠକଙ୍କର ପ୍ରତିକ୍ରିୟାକୁ ପ୍ରତୀକ୍ଷା କରେ ଏହି ଗଳ୍ପ ସଂକଳନ ।

**ଗୁରୁଚରଣ ବେହେରା**
*ପ୍ରଫେସର, ଇଂରାଜୀ (ସାଂପ୍ରତିକ ସାହିତ୍ୟ)*
*ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ, ବାରଣାସୀ*

# ଶବ୍ଦଭେଦ

ଆମେ ସମସ୍ତେ କଲେଜରେ ପଢ଼ିବାବେଳୁ ହିଁ ଜାଣିଥିଲୁ ଯେ ଭବନାଥ ଦିନେ ନା ଦିନେ ପାଗଳ ହୋଇଯିବ । ସେ ସେତେବେଳେ ବି କବିତା ଲେଖୁଥିଲା ଏବଂ ନିଜକୁ ଏକ ସାଘାତିକ ପ୍ରେମରେ ପଡ଼ିଛି ବୋଲି ଭାବୁଥିଲା । ଅବଶ୍ୟ କଲେଜରେ ପଢ଼ିବା ସମୟରେ ସମସ୍ତେ କବିତା ଲେଖିଥା'ନ୍ତି ଓ ନିଜକୁ ପ୍ରେମରେ ପଡ଼ିଥିବାର ଭାବିଥା'ନ୍ତି । କିନ୍ତୁ ଭବନାଥ ଏକାଧାରରେ ଆମ ସମସ୍ତଙ୍କଠାରୁ ଗମ୍ଭୀର ପ୍ରକୃତିର ଥିଲା ତଥା ବହୁତ ବେଶି କଥା କହୁଥିଲା । କଲେଜପାଖ ଛୋଟ ଚା' ଦୋକାନରେ ସମସ୍ତେ ତା କଥା ଶୁଣି ଶୁଣି ବିରକ୍ତ ହୋଇ ଚାଲିଯିବା ପରେ ବି ସେ ଦୋକାନର ମାଲିକକୁ ତା'ର କଥା କହିବାରେ ଲାଗୁଥିଲା । କଲେଜରେ ତା'ର ବିଶେଷ ବନ୍ଧୁ ବୋଲି କେହି ନଥିଲେ ବି ଭବନାଥ ସମସ୍ତଙ୍କ ସହିତ ସାମାନ୍ୟ ସମ୍ପର୍କ ରଖିଥିଲା ।

ଭବନାଥର କବିତା ଲେଖିବାର ସାମର୍ଥ୍ୟ ବିଷୟରେ ଆମର କଲେଜବେଳେ ବିଶେଷ ଆସ୍ଥା ନଥିଲା । ଭବନାଥ ଅଦ୍ଭୁତ କବିତା ସବୁ ଲେଖୁଥିଲା ଏବଂ ତା'ର କବିତା ଯେ କୌଣସିଠାରେ ପ୍ରକାଶ ପାଉ ନଥିଲା, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା । ମୋର ମନେଅଛି, ଯୋଉଦିନ ହାତରେ ଗୋଟିଏ ପତ୍ରିକା ଧରି ଭବନାଥ ଝଡ଼ ଭଳି ଚା'ଦୋକାନରେ ପହଞ୍ଚିଲା ଏବଂ ତା'ର ପ୍ରଥମ ପ୍ରକାଶିତ କବିତା ଆମକୁ ଦେଖାଇଲା । ଦୋକାନରେ ସେତେବେଳକୁ ବେଶ୍ ଭିଡ଼ ଥିଲା । ଆମେ ଚାରିଜଣ ବସିଥିବା ଟେବୁଲ ପାଖକୁ ଗୋଟାଏ ଚଉକି ଟାଣିଆଣି ବସି ଭବନାଥ ସେଦିନ ଆମକୁ ତା'ର ପ୍ରଥମ ପ୍ରକାଶିତ କବିତା ଶୁଣାଇଥିଲା । କବିତାର ଶୀର୍ଷକ ଥିଲା - ଆରୋହ-ଅବରୋହ- ଓ କବିତାଟିର ଦୈର୍ଘ୍ୟ ଥିଲା ମାତ୍ର ଛ'ଟି ଧାଡ଼ି ।

ଦୁବଘାସ ବରଗଛ
ପିମ୍ପୁଡ଼ି ହାତୀ
ମଣିଷ ଈଶ୍ୱର ।
ଈଶ୍ୱର ମଣିଷ

ହାତୀ ପିମ୍ପୁଡ଼ି
ବରଗଛ ଦୁବଘାସ ।

କବିତାଟି ଯଦି ଗୋଟିଏ ଜଣାଶୁଣା ପତ୍ରିକାରେ ପ୍ରକାଶ ପାଇନଥାନ୍ତା, ତାହେଲେ ଆମେ ଭବନାଥର ଏହି କାବ୍ୟିକ ପ୍ରୟାସକୁ ହସି ଉଡ଼ାଇ ଦେଇଥାନ୍ତୁ, ତା ଅନ୍ୟସବୁ କଥାଭଳି । କିନ୍ତୁ ସେ ସେତେବେଳେ କଲେଜରେ ଏକମାତ୍ର ପ୍ରକାଶିତ କବି ହୋଇଥିବାରୁ ଆମକୁ ତା'ର ଭାଷଣ ଶୁଣିବାକୁ ହୋଇଥିଲା । ଏହି ଛୋଟ କବିତାର ଆଳରେ ସେ ଆମକୁ ବୁଝାଇବାକୁ ଲାଗିଲା ଯେ ଗୋଟିଏ କବିତା ପଛରେ କେତେ ସାଧନା ଦରକାର । ଉଦାହରଣସ୍ୱରୂପ, ଭବନାଥ ବୁଝାଇଲା, ଏଇ ଛ'ଧାଡ଼ିର କବିତା ପଛରେ ତାକୁ କିପରି ଛ' ମାସ ସମୟ ଲାଗିଥିଲା, ଏ ଆରୋହ କିପରି କେବଳ ଦୁବଘାସରୁ ବରଗଛ ଏବଂ ପିମ୍ପୁଡ଼ିରୁ ହାତୀ ହିଁ ନୁହେଁ, ଦୁବଘାସରୁ ପିମ୍ପୁଡ଼ି ଏବଂ ପିମ୍ପୁଡ଼ିରୁ ମଣିଷକୁ ମଧ । ଏହି ଆରୋହ ସହିତ କିପରି ଡାରଉଇନଙ୍କର ନ୍ୟାଚୁରାଲ ସିଲେକଶନର ସିଦ୍ଧାନ୍ତ ସବୁ ଅଙ୍ଗାଙ୍ଗୀଭାବେ ଜଡ଼ିତ, ସେକଥା ମଧ କହିବାକୁ ଭୁଲି ନଥିଲା ଭବନାଥ ଏବଂ ଶେଷରେ ସେ ଇଲିଅଟ୍, ପାଉଣ୍ଡ ପ୍ରମୁଖଙ୍କର ନଜିର ଦେଇ ଭଲ କବିତା କ'ଣ ସେ ବିଷୟରେ ଛୋଟ ବକ୍ତୃତାଟିଏ ଦେଇଥିଲା ।

ଏଥରକ ତା କଥାକୁ କେହି ହସରେ ଉଡ଼ାଇ ଦେଇ ନଥିଲେ ଏବଂ ମୁଁ ଭାବୁଚି, ଆମ ଭିତରୁ ଯେଉଁମାନେ ପ୍ରତିଷ୍ଠିତ କବି ହେବାର ସ୍ୱପ୍ନ ଦେଖୁଥିଲେ, ସେମାନଙ୍କ ଭିତରୁ କେହି କେହି ଈର୍ଷାନ୍ୱିତ ମଧ ହୋଇଥିଲେ । ଆମେସବୁ ଚା' ପିଇସାରି ଉଠିବାକୁ ବସିଥିଲୁ, କିଏ ଜଣେ ଦୁର୍ଭାଗ୍ୟବଶତଃ ପିମ୍ପୁଡ଼ିର ଉକାର ହ୍ରସ୍ୱ ନା ଦୀର୍ଘ, ଏ ବିଷୟରେ ପ୍ରଶ୍ନ କଲା । ଭବନାଥ ଯେମିତି ପ୍ରଶ୍ନ ପାଇଁ ପ୍ରସ୍ତୁତ ଥିଲା । ସେ ନିଜର ଝୋଲାରୁ- କହିବା ବାହୁଲ୍ୟ, ଆମ ଭିତରେ ଭବନାଥ ଏକମାତ୍ର କବି ଥିଲା ଯେ କି କବି ଭଳି ପୋଷାକ ପିନ୍ଧୁଥିଲା ଏବଂ କାନ୍ଧରେ ଝୋଲା ପକାଉଥିଲା-ଗୋଟିଏ ଅଭିଧାନ ବାହାର କରି ଦେଖାଇଲା ଏବଂ ପ୍ରମାଣ କଲା ଯେ, ସେ ଦେଇଥିବା ବନାନ ହିଁ ଶୁଦ୍ଧ। ଏହାଛଡ଼ା ସେ ଆହୁରି ମଧ ବର୍ଣ୍ଣନା କଲା ଯେ ଗୁରୁଚଣ୍ଡାଳ ଦୋଷରେ ଅଭିଯୁକ୍ତ ହେବାର ସମ୍ଭାବନା ସତ୍ତ୍ୱେ ସେ କାହିଁକି ପିପୀଲିକ ବା ପିପୀଲିକା ଶବ୍ଦ ବ୍ୟବହାର ନକରି ପିମ୍ପୁଡ଼ି ଶବ୍ଦ ବ୍ୟବହାର କରିଥିଲା ।

ଏ କବିତାର ପ୍ରକାଶ ପରେ ଭବନାଥ ନିଜକୁ ଏକ ପ୍ରତିଷ୍ଠିତ ଲେଖକ ବୋଲି ମନେ କରିବାରେ ଲାଗିଲା ଏବଂ ଦାଢ଼ି ବଢ଼ାଇବାକୁ ଆରମ୍ଭ କଲା । ଯଦିଓ ତା'ର ଅନ୍ୟ କୌଣସି କବିତା ଅନେକଦିନ ପର୍ଯ୍ୟନ୍ତ ପ୍ରକାଶ ପାଇ ନଥିଲା, ସେ କଲେଜରେ କବି ଭାବରେ ସ୍ୱୀକୃତି ପାଇ ସାରିଥିଲା । ସେ ଏଥରକ କଥା କଥାକେ ତା'ର ଝୋଲାରୁ ଅଭିଧାନ ବାହାର କରୁଥିଲା ଏବଂ ବିଭିନ୍ନ ଶବ୍ଦର ଅର୍ଥ ଓ ପ୍ରୟୋଗ ବିଷୟରେ ଯୁକ୍ତିତର୍କ

କରୁଥିଲା । କେହି ଏ ବିଷୟରେ ପଚାରିଲେ ଓଲଟା ଯୁକ୍ତି କରୁଥିଲା, ଶବ୍ଦ ହିଁ ତ ବ୍ରହ୍ମ ! ଏବଂ ବାଇବେଲର ଉକ୍ତି ଉଦ୍ଧାର କରୁଥିଲା : ପ୍ରାରମ୍ଭରେ କେବଳ ଶବ୍ଦ ହିଁ ଥିଲା ଏବଂ ଏହି ଶବ୍ଦ ହିଁ ପରିଣତ ହେଲା ଈଶ୍ୱରରେ ।

ଫାଇନାଲ ପରୀକ୍ଷା ପରେ ଆମେ ଯେତେବେଳେ ଶେଷଥର ପାଇଁ କଲେଜ ଛାଡ଼ିଲୁ, ସମସ୍ତେ ନିଜର ଠିକଣା ବିନିମୟ କରିଥିଲେ ବି, ଆଉ ବେଶିଦିନ କେହି କାହାରି ସହିତ ସମ୍ପର୍କ ରଖିବା ସମ୍ଭବ ହୋଇ ନଥିଲା । ତା'ପରେ ଚାକିରି କରି କିଏ କୁଆଡ଼େ ଚାଲିଗଲେ । ମୋର ଚାକିରି ହେଲା ଅନ୍ୟ ସହରରେ । ମଝିରେ ପତ୍ରପତ୍ରିକାରେ ମୁଁ ଭବନାଥର କବିତା ଦେଖୁଥିଲି ଏବଂ ସେହି ସୂତ୍ରରେ ଭାବି ନେଇଥିଲି ଯେ ଭବନାଥ ବି କୁଆଡ଼େ ଚାକିରିବାକିରି କରି ରହିବଣି, ଆଉ ହୁଏତ ମଝିରେ ମଝିରେ ସଉକରେ କବିତା ଲେଖୁଥିବ । ତା'ର କବିତାସବୁ ମୋ ପାଇଁ ସମ୍ପୂର୍ଣ୍ଣ ଦୁର୍ବୋଧ ଥିଲା ଏବଂ ଭବନାଥକୁ ପୂର୍ବରୁ ଜାଣିଥିବାରୁ ମୁଁ ମଝିରେ ମଝିରେ ଏକଥା ମଧ୍ୟ ଭାବୁଥିଲି ଯେ ପାଠକମାନଙ୍କୁ ନିର୍ବୋଧ ସାବ୍ୟସ୍ତ କରିବା ପାଇଁ ବୋଧହୁଏ ସେ ଏଭଳି କବିତା ସବୁ ଲେଖୁଛି ।

ଛୁଟିରେ ମୁଁ ଯେତେବେଳେ ଘରକୁ ଆସୁଥିଲି, ପୁରୁଣା ସାଙ୍ଗମାନଙ୍କ ସହିତ କେବେ କେମିତି ଦେଖା ହୋଇଯାଉଥିଲା ଏବଂ ସେଇମାନଙ୍କ ପାଖରୁ ମଝିରେ ମଝିରେ ଭବନାଥ କଥା ଶୁଣିବାକୁ ମିଳୁଥିଲା । ଭବନାଥ ସେତେବେଳକୁ ଗୋଟାଏ ଖବରକାଗଜ ଅଫିସରେ ଚାକିରି କରୁଥିଲା ଓ ତାକୁ ସମସ୍ତେ ଜାଣୁଥିଲେ କବି ଭାବରେ । ଥରେ କୌତୂହଳବଶ ହୋଇ ମୁଁ ତାଙ୍କ ଅଫିସକୁ ଫୋନ କଲି ଓ ଭବନାଥ ମୋ କଥା ଶୁଣି ଖୁସି ହେଲା । ସେଇଦିନ ସନ୍ଧ୍ୟାରେ ଆମର ସେଇ ପୁରୁଣା ଚା'ଦୋକାନରେ ଦେଖା କରିବାର ଠିକ୍ ହେଲା ।

ମୁଁ ଚା'ଦୋକାନରେ ପହଞ୍ଚିବା ବେଳକୁ ଭବନାଥ ଆସି ନଥିଲା । ଚା'ଦୋକାନ ନିଶ୍ଚୟ ଠିକ୍ ସେଇ ଆଗପରି ଥିଲା, କିନ୍ତୁ ମତେ ଜଣାଗଲା ସେଇଟି ଯେପରି ଆହୁରି ସଂକୀର୍ଣ୍ଣ ଓ ଆହୁରି ଅପରିଷ୍କାର ହୋଇଯାଇଛି । ଏ ଅନୁଭୂତି ମୋର ପ୍ରସାରିତ ଦୃଷ୍ଟିକୋଣ ଯୋଗୁଁ ହେଉଚି କି ନା ଭାବିବା ବେଳକୁ ଭବନାଥ ଆସି ପହଞ୍ଚିଲା । ଚା'ର ଅର୍ଡ଼ର ଦେଇ ଭବନାଥ କହିଲା ଯେ ତା'ର ଡେରି ହେବାର କାରଣ ହେଉଚି ତା'ର ଗୋଟିଏ ଶବ୍ଦ ନେଇ ସମ୍ପାଦକଙ୍କ ସହିତ ଝଗଡ଼ା ହୋଇଗଲା । ଏକଥା ଶୁଣି ମୁଁ ଜାଣିଲି ଯେ, ସେ ବର୍ତ୍ତମାନ ପୁଣି ଶବ୍ଦର ତାତ୍ପର୍ଯ୍ୟ ଉପରେ ଗୋଟାଏ ବକ୍ତୃତା ଦେବ, କିନ୍ତୁ ସେ ପର୍ଯ୍ୟନ୍ତ ଭବନାଥ ମନ ଭିତରୁ ସମ୍ପାଦକଙ୍କ ସହିତ ଝଗଡ଼ା କଥାଟା ଯାଇନଥିଲା ବୋଧହୁଏ । ସେ ଚୁପ୍‌ଚାପ୍ ବସି ରହିଲା । ମୁଁ ତାକୁ ଏଥର ଭଲ ଭାବରେ ଅନାଇ ଦେଖିଲି । ଭବନାଥ ସେଇ ଆଗଭଳି ରହିଛି, ଠିକ୍ ସେମିତି କବି ଏବଂ ପାଗଳା ପାଗଳା ! ମୋର

ଆଉ ଯେଉଁସବୁ ପୁରୁଣା ବନ୍ଧୁଙ୍କ ସହିତ ସାକ୍ଷାତ ହେଉଥିଲା, ଆମେ ସବୁ ଆମର ପିଲାଛୁଆଙ୍କ ପାଠପଢ଼ା, ଜିନିଷପତ୍ରର ଦରଦାମ ଆଉ ଆମର ସ୍ୱାସ୍ଥ୍ୟ ଇତ୍ୟାଦି ବିଷୟରେ କଥାବାର୍ତ୍ତା କରୁଥିଲୁ । କିନ୍ତୁ ଏକମାତ୍ର ଭବନାଥକୁ ଦେଖିଲି, ସେ ଠିକ୍ ଆଗଭଳି ରହିଚି ଆଉ ତା'ର କୌଣସି ମାନସିକ ପରିବର୍ତ୍ତନ ବି ହୋଇନାହିଁ, କାରଣ ସେ ପୁରୁଣା କଥାରୁ ସମ୍ପର୍କ କାଟିଦେଇ ନାହିଁ ।

ଚା' ଦୋକାନର ମାଲିକ, ଯାହାକୁ ମୁଁ ଆଠବର୍ଷ ପରେ ଚିହ୍ନିପାରିଥିଲି କିନ୍ତୁ ସେ ମତେ ଚିହ୍ନିପାରି ନଥିଲା, ସେ ଭବନାଥ ପାଖକୁ ଆସି ତା'ର ଭଲମନ୍ଦ ପଚାରିଲା । ଭବନାଥ ଦୁଃଖରେ ମୁଣ୍ଡ ହଲାଇ କହିଲା, ତା'ର ସବୁଦିନ ଚା' ଦୋକାନକୁ ଆସିବାକୁ ଇଚ୍ଛା, କିନ୍ତୁ ସବୁଦିନ ଡେରି ହୋଇଯାଉଛି । ତା' କଥା ଶୁଣି ମୁଁ ଭାବିଲି ସେ ବୋଧହୁଏ କୌଣସି ଦାୟିତ୍ୱସମ୍ପନ୍ନ କାମରେ ରହିଛି । ମୁଁ ଯେତେବେଳେ ତାକୁ ତା'ର ଅଫିସ୍ କଥା ପଚାରିଲି, ସେ ପକେଟରୁ ଗୋଟେ ମାଗ୍ନିଫାଇଙ୍ଗ ଗ୍ଲାସ୍ ବାହାର କରି ମତେ ଦେଖାଇଲା । ମୁଁ ତାକୁ ତା'ର ଆଖି ବିଷୟରେ ପଚାରିବାକୁ ଯାଉଥିଲି, ଭବନାଥ କାଚଟା ପକେଟରେ ରଖି ଝୋଲାରୁ ଅଭିଧାନ ବାହାର କଲା ଓ ମୋ ଆଡ଼କୁ ବଢ଼ାଇ ଦେଲା । ଅକ୍ଷରଗୁଡ଼ାକ ଖୁବ୍ ଛୋଟ ଛୋଟ ଥିବାରୁ ମୋର ପଢ଼ିବାରେ ଖୁବ୍ କଷ୍ଟ ହେଉଥିଲା । କିନ୍ତୁ ମୁଁ ଦେଖିଲି ଯେ ଭବନାଥ ଅନାୟାସରେ ତାକୁ ପଢ଼ିଗଲା । ତା'ପରେ ସେ ମତେ ଜଣାଇଲା ଯେ ତା'ର ପ୍ରଧାନ କାମ ହେଲା ଖବରକାଗଜ ଅଫିସ୍‌ରେ ପ୍ରୁଫ୍ ଦେଖିବା । ଆଉ ପ୍ରତି ଶବ୍ଦକୁ ଠିକ୍ ଠିକ୍ ଦେଖିବାକୁ ହେଲେ ଖାଲି ଦୃଷ୍ଟିଶକ୍ତି ହିଁ ପର୍ଯ୍ୟାପ୍ତ ନୁହେଁ, ପ୍ରତ୍ୟେକ ଶବ୍ଦକୁ ଅନ୍ୟ ଶବ୍ଦଠାରୁ ଅଲଗା କରି ତାକୁ ତନ୍ନ ତନ୍ନ କରି ଦେଖିବାକୁ ହୋଇଥାଏ ।

ଚା' ପିଇସାରି ଆମେ ଯାଇ ପୁରୁଣା କଲେଜର ଲନ୍‌ରେ ବସିଲୁ । ମୁଁ ଦେଖିଲି ଯେ ମୁଁ ଏକ ପୁରୁଣା ପରିବେଶ ସହିତ ନିଜକୁ ଖାପ ଖୁଆଇ ପାରୁ ନଥିଲି, କିନ୍ତୁ ଭବନାଥ ବେଶ୍ ଆରାମରେ ଘାସ ଉପରେ ଚକା ପକାଇ ବସିଲା ଓ ମତେ ମୋ କଥାସବୁ ପଚାରିଲା । ମୁଁ ମୋର ଚାକିରିର ପ୍ରଗତି ଓ ସ୍ତ୍ରୀ, ପରିବାରଙ୍କ ବିସ୍ତୃତ ବିବରଣୀ ଦେବା ପରେ ଯେତେବେଳେ ତା' କଥା ପଚାରିଲି, ସେ ସଂକ୍ଷେପରେ ଉତ୍ତର ଦେଲା, କଲେଜବେଳେ ଯେମିତି ଏକା ରହୁଥିଲା ସେମିତି ରହୁଚି, ଆଉ ଯେତେବେଳେ ସମୟ ହେଉଚି କବିତା ଲେଖୁଚି । ସେ ମତେ ତା'ର କବିତା ଖାତାଟା ଦେଖିବାକୁ ଦେଲା । ତା'ର ସେହି ପୁରୁଣା 'ଆରୋହ-ଅବରୋହ' କବିତା ପରେ ସେ ଅନେକ କବିତା ଲେଖି ସାରିଥିଲା । ଯଦିଓ ତା'ର କବିତ୍ୱ ବିଷୟରେ ମୋର ଭଲ ଧାରଣା ନଥିଲା, ମୁଁ କହିଲି, ଭଲ କରିଚୁ, ଲେଖାଲେଖି ଅଭ୍ୟାସ ରଖିଛୁ । ସେ ମୋତେ ଓଲଟା ପଚାରିଲା, କ'ଣ କବିତା-ଫବିତା ପଢୁଛୁ ଆଜିକାଲି ? ମୁଁ କହିଲି, ହଁ, କେତେବେଳେ କେମିତି

ଦେଖିନିଏ । ଭବନାଥ ତା'ର କବିତା ଖାତାଟିକୁ ଯତ୍ନ ସହକାରେ ନେଇ ପୁଣି ଝୋଲାରେ ରଖିଲା ଓ ଦୁଃଖସୂଚକ ଚୁ ଚୁ କଲା । ମୁଁ ଜାଣିଲି ଏଥର ଭବନାଥର ବକ୍ତୃତା ଆରମ୍ଭ ହେବ, ଏବଂ ତାହାହିଁ ହେଲା ।

ଆଉ ଟିକିଏ ଭଲ ଭାବରେ ଚକା ପକାଇ ବସି ଭବନାଥ କହିଲା, ଖାଲି ଆଖି ପକାଇ ଦେଲେ ତ ପଢ଼ା ହୁଏନା ! କବିତା ପଢ଼ିଲେ ପ୍ରତିଟି ଶବ୍ଦକୁ ତନ୍ନ ତନ୍ନ କରି ଦେଖିବାକୁ ହୁଏ । କଥା ଉପରେ ଜୋର ଦେବା ପାଇଁ ସେ ଏଥରକ ତା'ର ଯବକାଚଟି ନେଇ ହଲାଇବାରେ ଲାଗିଲା, କହିଲା, ପ୍ରତିଟି ଶବ୍ଦକୁ, ପୂରା ବାକ୍ୟଟାକୁ ପଢ଼ିଲେ ବି କିଛି ଲାଭ ନାହିଁ । ଯେମିତି ହ୍ୟାମଲେଟରେ ହ୍ୟାମଲେଟ ତା'ର ମା'କୁ କହୁଚି, ୟୁ ଆର ୟୋର ହଜ୍‌ବ୍ୟାଣ୍ଡସ୍ ବ୍ରଦର୍ସ ୱାଇଫ୍ । ନିହାତି ସାଦାସିଧା କଥା ଏବଂ ପ୍ରତିଟି ଗୋଟିଏ ସାଧାରଣ ଶବ୍ଦ ତମେ ତମ ସ୍ୱାମୀର ଭାଇର ସ୍ତ୍ରୀ । କିନ୍ତୁ ପୂର୍ବାପର ସଙ୍ଗତିରେ ଏଇ ଶବ୍ଦମାନେ କିଭଳି ମାରାତ୍ମକ ହୋଇ ପାରନ୍ତି, ଦେଖିଲୁ ? ଏଇ କେତୋଟି ଶବ୍ଦ ତା'ର ମା'କୁ ତା'ର ନିଜର ଆତ୍ମାକୁ ଦେଖିବାକୁ କହୁଛନ୍ତି ଏବଂ ତାକୁ ତା'ର ନିର୍ବୋଧତା, ତା'ର ପାପ ଏବଂ ତା'ର ଜଘନ୍ୟ ବ୍ୟବହାର ବିଷୟରେ ସଚେତନ କରି ଦେଉଛନ୍ତି । ଟିକିଏ ଚୁପ୍ ରହି ଭବନାଥ କହିଲା, ଅର୍ଥ ପାଇଁ ଆମକୁ ଅନେକ ସମୟରେ ଶବ୍ଦ ଭିତର ଦେଇ ବାହାର ପୃଥିବୀକୁ ବି ଯିବାକୁ ପଡ଼ିବ ।

ଭବନାଥ ଚୁପ୍ ରହିଲା ଓ ମୁଁ ଏଇ ଅବସରରେ ତା'ର ଦାର୍ଶନିକ ବକ୍ତୃତାକୁ ହୃଦୟଙ୍ଗମ କରିବାକୁ ଚେଷ୍ଟା କଲି । ଶେଷରେ ମୁଁ ଏହି ଉପସଂହାରରେ ପହଞ୍ଚିଲି ଯେ ହୁଏତ ସେକ୍‌ସପିଅରଙ୍କ ଭଳି ଲେଖକଙ୍କ ଲେଖାରେ ଶବ୍ଦ ବାହାରେ ତା'ର ଅର୍ଥ ନିହିତ ଥାଇପାରେ, କିନ୍ତୁ ମାମୁଲି କବିତା, ଯେମିତି ଭବନାଥର ଆରୋହ-ଅବରୋହ, ସେଥିରେ ଆଉ କି ଗୂଢ଼ ଅର୍ଥ ଥାଇପାରେ ?

ମୋର ଏ ଧାରଣା ଭୁଲ ଥିଲା, ସେକଥା ମୁଁ ଜାଣି ପାରିଲି ଅନେକ ଦିନ ପରେ । କଥାପ୍ରସଙ୍ଗରେ ମତେ ଭବନାଥ କହିଥିଲା, ଏ ଶବ୍ଦ ହିଁ ଦିନେ ନିଆଁ ହୋଇ ସବୁ ଜାଳିଦେବ । କିନ୍ତୁ ଭବନାଥର କବିତାର ସ୍ଫୁଲିଙ୍ଗ ବାହାରି ଯେ ସମାଜରେ ଅନ୍ୟାୟ ଅତ୍ୟାଚାର ପ୍ରତିରୋଧ କରିବା ପାଇଁ ଇନ୍ଧନ ଯୋଗାଇବ, ସେ ବିଷୟରେ ମୋର ଯଥେଷ୍ଟ ସନ୍ଦେହ ଥିଲା । ଭବନାଥ ଯେତେବେଳେ ତା'ର କବିତା ପାଇଁ ଜେଲ ଗଲା ବୋଲି ଜାଣିଲି, ମୁଁ ବୁଝିଲି ଯେ ନିଶ୍ଚୟ କୋଉଠି କ'ଣ ଗୋଟାଏ ବଡ଼ ଭୁଲ ହୋଇଯାଇଛି । ପରେ ମୋତେ ଜଣାପଡ଼ିଲା ଯେ ଭବନାଥ ଜେଲ ଯାଇଥିଲା ତା'ର ଆରୋହ-ଅବରୋହ କବିତା ପାଇଁ କିମ୍ବା ଠିକ୍ ଭାବରେ କହିବାକୁ ଗଲେ କବିତାର ଅଧକ ପାଇଁ । ମୁଁ ସେତେବେଳେ ଅନେକ ଦୂରରେ ଥିଲି ଏବଂ ବିସ୍ତାରିତ ଭାବରେ ଖବର ପାଇ ନଥିଲେ ବି ଏ ବିଷୟରେ ଯାହା ଜାଣିଲି ତା'ର ମର୍ମ ଏଇପରି, ଦଶ ବାରବର୍ଷ ପୂର୍ବେ ତା'ର

କବିତା ଲେଖିବାବେଳେ ଭବନାଥ ଜାଣି ନଥିଲା ଯେ ହାତୀ ଚିହ୍ନ ନେଇ ଜଣେ ପ୍ରାର୍ଥୀ କେଉଁ ସୁଦୂର ଭବିଷ୍ୟତରେ ନିର୍ବାଚନ ଲଢ଼ିବେ ଏବଂ ବିରୋଧୀ ଦଳର ପ୍ରାର୍ଥୀ ତାଙ୍କର ଉଚ୍ଚାକାଙ୍କ୍ଷାର ଦୁଷ୍କରତା ପ୍ରତିପାଦନ କରିବା ପାଇଁ ଆରୋହ କବିତା ବ୍ୟବହାର କରିବେ । ଏହି ବାଦବିସମ୍ବାଦରେ ଭବନାଥର ନାଁ ଉଠିଲା ଏବଂ ହାତୀମାର୍କା ପ୍ରାର୍ଥୀ ଭାବିଲେ ଯେ ଯଦି ଭବନାଥ ତାଙ୍କ ପାଇଁ ନିର୍ବାଚନରେ ପକ୍ଷ ନେଇ ଗୋଟିଏ ଇସ୍ତାହାର ଦିଏ ତାହେଲେ ତାଙ୍କର ସୁବିଧା ହେବ । କିନ୍ତୁ ତାଙ୍କର ସମସ୍ତ ବାର୍ତ୍ତାବହଙ୍କୁ ଭବନାଥ ପ୍ରତ୍ୟାଖ୍ୟାନ କରିଦେଲା ଏବଂ ଶେଷରେ ବିରକ୍ତ ହୋଇ ସ୍ୱୟଂ ହାତୀ ପ୍ରାର୍ଥୀଙ୍କୁ ଗୋଟିଏ ରୋକଠୋକ ପତ୍ର ଲେଖିଦେଲା ଯେ, ସେ ଯାହା କହିବାର କଥା ତାହା କବିତାରେ କହିଛି ଏବଂ ସେ ବିଷୟରେ ଆଉ ତା'ର କିଛି କହିବାର ନାହିଁ । ଭବନାଥର ଦୁର୍ଭାଗ୍ୟକୁ ହାତୀ ନିର୍ବାଚନରେ ଜୟଲାଭ କଲା ଏବଂ ତା'ର କିଛିଦିନ ପରେ ଜରୁରୀ ପରିସ୍ଥିତିର ଆଳରେ ଭବନାଥ ଜେଲ ଗଲା ।

ଭବନାଥ ସାଙ୍ଗରେ ମୋର ପୁଣି ଯେତେବେଳେ ଦେଖାହେଲା, ମୁଁ ସେତେବେଳକୁ ଆମ ପୁରୁଣା ସହରକୁ ବଦଳି ହେଇ ଆସିଥିଲି ଓ ଭବନାଥ ଜେଲରୁ ଖଲାସ ହୋଇସାରିଥିଲା । ମୁଁ ଶୁଣିବାକୁ ପାଇଥିଲି ଯେ ହାତୀ ନିର୍ବାଚନ ମକଦ୍ଦମାରେ ହାରିଯିବାରୁ ହିଁ ଭବନାଥ ଜେଲରୁ ମୁକୁଳିବା ସମ୍ଭବ ହୋଇଥିଲା । ହାତୀର ହାରିବାରେ ଖୁସି ହୋଇ ଯେତେବେଳେ ବିରୋଧୀ ଦଳ ଭବନାଥର କବିତାର ଅବରୋହ ଅଧିକ ବ୍ୟବହାର କରିବାକୁ ଚାହିଁଲେ, ଭବନାଥ ସେମାନଙ୍କୁ ବି ସିଧା ମନା କରିଦେଲା । ଜେଲ ଯିବାବେଳେ ତା'ର ଚାକିରି ଚାଲି ଯାଇଥିଲା ଏବଂ ଜେଲରୁ ଫେରିବା ପରେ ସେ ତା'ର ପୁରୁଣା ଚାକିରି ଫେରି ପାଇଥିଲା ବହୁ କଷ୍ଟରେ । ଜେଲରୁ ଫେରି ଭବନାଥ ବେଶ୍ ପ୍ରସିଦ୍ଧି ଲାଭ କରିସାରିଥିଲା । ତା'ର କବିତାମାନ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଉଥିଲା ଏବଂ କବିମାନଙ୍କ ଭିତରେ ତା'ର ନାଁ ନିଶ୍ଚୟ ଗଣା ହେଉଥିଲା ।

ମୁଁ ତାକୁ ଫୋନ କରିବାରେ ସେ ମତେ କଲେଜ ଚା' ଦୋକାନରେ ଭେଟ ହେବ ବୋଲି କହିଲା । ମୁଁ ସେତେବେଳକୁ ମୋର ଚାକିରିରେ ଆଉ କିଛି ଧାପ ଉପରକୁ ଉଠିଥିଲି ଓ ସେଇ ପୁରୁଣା ଚା' ଦୋକାନକୁ ଯିବାକୁ ସଂକୋଚ ବୋଧ କରୁଥିଲି । ଶେଷରେ ମୁଁ ତାକୁ ମୋର ଘରକୁ ଆସିବାକୁ କହିଲି । କିନ୍ତୁ ଭବନାଥ ତା' ନିଜ ଘରେ ଏକା ଅଛି, ଏବଂ ତା' ଘରେ କଥାବାର୍ତ୍ତା କରିବାକୁ ସୁବିଧା ହେବ ବୋଲି ତା' ଘରକୁ ଡାକିଲା । ମୁଁ ଯେତେବେଳେ ସନ୍ଧ୍ୟାବେଳେ ମୋର ଗାଡ଼ିକୁ ଅନେକ ଦୂରରେ ରଖି ଛୋଟ ଗଳି ଭିତରେ ପଚାରି ପଚାରି ତା' ଘରେ ପହଞ୍ଚିଲି, ସେ ମତେ ଅପେକ୍ଷା କରିଥିଲା । ତା' ଛୋଟ ବଖରାକ ଘର ଭିତରେ ଅନେକ ବହି ଜମା ହୋଇଥିଲା । ଖଟର ଗୋଟାଏ କଣରୁ ବହି ଆଡ଼େଇ ସେ ମୋର ବସିବା ପାଇଁ ଜାଗା କଲା । ମୁଁ

ଯେତେବେଳେ ତାକୁ ତା'ର ଜେଲ୍ ଯିବା କଥା ପଚାରିଲି, ସେ ମତେ ସହଜ ଭାବରେ ତା'ର ଉତ୍ତର ଦେଲା, ଜେଲ୍ ଯିବା ନେଇ ତା'ର ମନ ଭିତରେ କୌଣସି ଗ୍ଲାନି ନଥିଲା । ବରଂ ସେ କହିଲା ଯେ ଜେଲ ଭିତରେ ସେ ତା'ର ମାନସିକ ସ୍ଥିତିକୁ ସଜାଡ଼ି ନେବା ପାଇଁ ସୁବିଧା ପାଇଥିଲା, ଯାହା ଫଳରେ କି ସେ ଭାବୁଚି ଏଥରକ ଆହୁରି ଭଲ କବିତା ଲେଖିପାରିବ ।

ସେ ମୋ ପାଇଁ ଚା' କରିବାକୁ କଣରେ ଥିବା ଷ୍ଟୋଭ ପାଖକୁ ଗଲା । ମୁଁ ଜାଣିଲି ଯେ ସେ ତା'ର ନିଜର ଚଳିବା ପାଇଁ ସ୍ୱୟଂସଂପୂର୍ଣ୍ଣ । ମୁଁ ଆହୁରି ଲକ୍ଷ୍ୟକଲି ଯେ ଭବନାଥ ବେଶ୍ ଗମ୍ଭୀର ହୋଇଯାଇଛି । ତା'ର ଚେହେରା, ଚାଲିଚଳନ ଓ କଥାବାର୍ତ୍ତାରୁ ଜଣା ପଡୁଥିଲା ସେ ଯେମିତି ଗୋଟିଏ ଉଚ୍ଚ ବୌଦ୍ଧିକ ସ୍ତରରେ ପହଞ୍ଚି ଯାଇଛି । କଲେଜରେ ପଢ଼ିବାବେଳେ ପରିହାସର ଉପଲକ୍ଷ୍ୟ ଥିବା ଭବନାଥ ଏ ଭବନାଥଠାରୁ ସଂପୂର୍ଣ୍ଣ ଅଲଗା ଥିଲା ଏବଂ ବର୍ତ୍ତମାନ ମତେ ତା'ର 'ଆରୋହ-ଅବରୋହ' କବିତା ଆଉ ହାସ୍ୟାସ୍ପଦ ମନେ ହେଉନଥିଲା । ଭବନାଥର ନୂଆ ବ୍ୟକ୍ତିତ୍ୱ ଯେମିତି ତା'ର ପୂରା ଅତୀତକୁ ବି ଗୋଟାଏ ନୂଆ ରଙ୍ଗ ଦେଇ ଦେଇଥିଲା ।

ଚା'ର ପାଣି ଯେତେବେଳେ ଫୁଟିବାକୁ ଆରମ୍ଭ କଲା, ମୁଁ ଭବନାଥକୁ ପଚାରିଲି, ତୁ କ'ଣ ସତରେ ଭାବୁଛୁ ଶବ୍ଦ ଜରିଆରେ ବିପ୍ଳବ ସମ୍ଭବ ହୋଇପାରେ ? ଗ୍ଲାସ୍‌ରେ ଚା' ଢାଳୁ ଢାଳୁ ଭବନାଥ କହିଲା, ତୁ ତ ଶଳା ଏଷ୍ଟାବ୍ଲିଶମେଣ୍ଟର ଗୋଟାଏ କୁତ୍ତା, ତୁ କ'ଣ ବୁଝିବୁ ? ଭବନାଥ ପାଖରୁ ମୋର ସରକାରୀ ଚାକିରି ପ୍ରତି ଆକ୍ଷେପ କରି ଏପରି କଥା ଶୁଣିବା ପାଇଁ ମୁଁ ପ୍ରସ୍ତୁତ ନଥିଲି । ମୁଁ ରାଗିଯାଇ ହାତରେ ଧରିଥିବା ବହିଟା ତଳକୁ ଫିଙ୍ଗିଦେଇ ଉଠି ଠିଆହେଲି । ଭବନାଥ ଗୋଟାଏ ଗ୍ଲାସ୍ ଚା' ଆଣି ମୋ ପାଖରେ ରଖିଲା ଓ ମୋ ହାତ ଧରି ଖଟ ଉପରେ ବସାଇଲା । ନିର୍ଲିପ୍ତ ହସ ହସି ସେ ମତେ କହିଲା, ଦେଖିଲୁ, ଦି'ଚାରିଟା ଅସଂଲଗ୍ନ ଶବ୍ଦ କେମିତି ଜଣକୁ ରଗାଇ ଦେଇପାରେ ? ମତେ ପ୍ରକୃତିସ୍ଥ ହେବାକୁ ଯଦିଓ ବେଶ୍ କିଛି ସମୟ ଲାଗିଲା, ଭବନାଥ ତା'ର ଭାଷଣକୁ ବେଶ୍ ତୀକ୍ଷ୍ଣ ଏବଂ ସଠିକ ଭାବରେ ପହଞ୍ଚାଇ ପାରିଥିଲା ମୋ ପାଖରେ । ସେ ଯେତେବେଳେ ଶବ୍ଦର କ୍ଷମତା ବିଷୟରେ ମତେ ବୁଝାଇବାରେ ଲାଗିଲା, ମୁଁ ମିନିଟକ ତଳର କଥା ଭୁଲିଗଲି ଓ ଭବନାଥ ପ୍ରତି ମୋର ଏକ ସଶ୍ରଦ୍ଧ ଭାବ ଉପୁଜିଲା ।

ଶବ୍ଦ ହେଉଛି ଗୋଟାଏ ଅସ୍ତ୍ର, ମତେ ଭବନାଥ ବୁଝାଇଲା, ତାକୁ ଯେ ଯେତିକି ସଫଳ ଭାବରେ ବ୍ୟବହାର କରିପାରିଲା, ସେ ସେତିକି କ୍ଷମତାଶୀଳ। ଆଲିସ ଇନ୍ ଦି ଓଣ୍ଡରଲାଣ୍ଡରେ ହମ୍ପଟି-ଡମ୍ପଟି କ'ଣ କହିଥିଲା ? ମୁଁ ଯେତେବେଳେ ଗୋଟାଏ ଶବ୍ଦକୁ ବ୍ୟବହାର କରେ, ମୁଁ ଯାହା ଚାହେଁ ଶବ୍ଦ ତାହାହିଁ ବୁଝାଏ, ବେଶି ନୁହେଁ କି କମ୍

ନୁହେଁ । କିନ୍ତୁ କେତେଜଣ ଲେଖକ ଏକଥା କହିପାରିବେ ? ମୁଁ ଝିଅଟିକୁ ଭଲପାଉଛି ଓ ତା' ପାଖକୁ ଚିଠି ଲେଖୁଛି ପ୍ରେମ ନିବେଦନ କରି । କିନ୍ତୁ ମୋର ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ମୋର ଚିଠିମାନଙ୍କରୁ ଝିଅଟି ଏକଥା ବିଶ୍ୱାସ କରିବାକୁ ନାରାଜ ଯେ ମୁଁ ତାକୁ ପ୍ରକୃତରେ ଭଲପାଏ ବୋଲି । ଏଥିରୁ କଣ ଜଣାଗଲା ? ଏଥିରୁ ଜଣାଗଲା ଯେ ମୋର ଶବ୍ଦମାନଙ୍କ ଉପରେ କୌଣସି ନିୟନ୍ତ୍ରଣ ନାହିଁ ।

ଏହି କଥାର ଅବସରରେ ମୁଁ ଭବନାଥକୁ ପଚାରିଲି, କଲେଜରେ ପଢ଼ିବାବେଳେ ତୁ ସେଇ ଯୋଉ ଝିଅଟିକୁ ଭଲ ପାଉଥିଲୁ, କ'ଣ ହେଲା ? ଭବନାଥ ହଠାତ ଗମ୍ଭୀର ହୋଇଗଲା ଓ କହିଲା, ହଁ, ତତେ ସବୁକଥା କହିବି, କିନ୍ତୁ ଆଉଦିନେ କହିବି । ଭଲ ହେଲା, ପୁରୁଣା କଥାଟା ମନେ ପକେଇ ଦେଲୁ । ନହେଲେ ଆଜିକାଲି ଆଉ ମନେପଡ଼େ ନାହିଁ । ମୋ କବିତାରେ ତା'ର ଅମୂର୍ତ୍ତ ଛାଇ ସିନା ପଡ଼ିଥାଏ, ସେ ଆଉ ମନେପଡ଼େ ନାହିଁ ।

ମୁଁ ସେଦିନ ତା' ପାଖରୁ ଉଠି ଆସିଲି । ଜାଣେନା ତାକୁ ସେ କଥାଟା ପଚାରିବା ଠିକ୍ ହେଲା କି ନା । ମୋର ମନେହେଲା ହୁଏତ ଭବନାଥ ସେଦିନ ନ ଖାଇ ନ ପିଇ ଅନିଦ୍ରା ରହି ପୁରୁଣା କଥାସବୁ ଭାବିଥିବ, କାରଣ ମୁଁ ଫେରିଆସିବା ବେଳକୁ ସେ ସମ୍ପୂର୍ଣ୍ଣ ଅନ୍ୟମନସ୍କ ହୋଇଯାଇଥିଲା । ମୁଁ ଦେଖିଲି ମୁଁ ଏଥରକ ଭବନାଥ ପ୍ରତି କ୍ରମଶଃ ଶ୍ରଦ୍ଧାଶୀଳ ହୋଇଯାଇଛି । ଏ ଭିତରେ ମୁଁ ଭବନାଥର ପ୍ରକାଶିତ କବିତା ବହିଟି ମଧ୍ୟ ଆଣି ପଢ଼ିଲି । ଏଥିରୁ ଯଦିଓ ପ୍ରଥମେ ପ୍ରଥମେ କିଛି କବିତା ମୁଁ ବୁଝିବାକୁ ସମର୍ଥ ହେଲି, ତା'ର ପରବର୍ତ୍ତୀ ସମୟର କବିତା ମୋର ବୁଝିବାର ବାହାରେ ଥିଲା ।

କିଛିଦିନ ପରେ ମୁଁ ତା ଘରକୁ ଯାଇ ତା'ର କବିତାର ଦୁର୍ବୋଧ୍ୟତା ବିଷୟରେ କହିଲି । ସେ ସେଦିନ ଖୁବ୍ ଭଲ ମିଜାଜରେ ଥିଲା ଆଉ ମତେ କହିଲା, ତୋର ଯଦି ସମୟ ଅଛି, ଦି'ଚାରି ଘଣ୍ଟା ରହ, ସବୁ ବୁଝେଇ ଦେବି । ମୁଁ ବସିବାକୁ ଯାଉଥିଲି, ସେ କହିଲା, ନା, ଆଜି ବାହାରେ ଯାଇ ବସିବା । ତା' ଘରେ ତାଲା ଦେଇ ଆମେ ଦୁଇ ଚାରିଟା ଅନ୍ଧାର ଗଳି ଟପି ଯୋଉ ଜାଗାରେ ପହଞ୍ଚିଲୁ, ସେଇଟା ଗୋଟାଏ ନିର୍ଜନ ଜାଗା, ଯୋଉଠି ଗୋଟାଏ ପୁରୁଣା ଛୋଟ ପୋଖରୀ ଥିଲା । ସେଠାରେ ଆଉ କେହି ନଥିଲେ । ଚାରିପାଖରେ ଗଛ ସବୁ ଥିବାରୁ ବାହାରର ଆଲୁଅ ଏ ଜାଗାକୁ ଆସୁନଥିଲା । ଟର୍ଚ୍ଚ ଜାଳି ଭବନାଥ ପୋଖରୀ କୂଳରେ ଯୋଉ ଭଙ୍ଗା ସିମେଣ୍ଟ ବେଞ୍ଚ ଥିଲା ଦେଖାଇ ଦେଲା ଏବଂ ଆମେ ତା'ରି ଉପରେ ବସିଲୁ । ଟର୍ଚ୍ଚ ଲିଭାଇ ଦେବା ପରେ ସବୁ ପୁଣି ଅନ୍ଧାର ହୋଇଗଲା । ଭବନାଥ କହିଲା, ବ୍ୟସ୍ତ ହୁଅନା, ଟିକିଏ ପରେ ଜହ୍ନ ଉଠିବ ।

ତା'ପରେ ଭବନାଥ ଚୁପ୍ ରହିଲା । ମୋର କର୍ମବ୍ୟସ୍ତ ଜୀବନ ଭିତରେ ମୋ ପାଇଁ ଏ ଏକ ନୂଆ ଅଭିଜ୍ଞତା ଥିଲା । ମାଇଲିଏ ଦୂରରେ ମୋର ଗାଡ଼ି ରଖି ଗୋଟାଏ

କବି ସହିତ ଏମିତି ଆସି ପୋଖରୀ କୂଳରେ ବସି ଜହ୍ନକୁ ଅପେକ୍ଷା କରିବା ଏକ ଅଦ୍ଭୁତ ଅନୁଭୂତି । ଏଇ ଜନହୀନ ନିସ୍ତବ୍ଧତା ଭିତରେ ବସି ରହି ମୁଁ ଭବନାଥର କବିତା କଥା ଭାବିଲି । ତା'ର କବିତାର ଅସଂଲଗ୍ନ ଧାଡ଼ିସବୁ ମୋର ମୁଣ୍ଡ ଭିତରେ ପହଞ୍ଚିଲେ । ମତେ ଜଣାଗଲା ସେସବୁ ଯେମିତି ସମ୍ପୂର୍ଣ୍ଣ ଅସଂଲଗ୍ନ ନୁହନ୍ତି ଏବଂ ସେମାନଙ୍କର ପରସ୍ପର ସହ ଜଡ଼ି ହୋଇ ରହିଥିବା ଭିତରେ ଏକ ଗଭୀର ଅର୍ଥ ନିହିତ ଅଛି । ମୁଁ ଏପରି ଏକ ସ୍ଥିତିରେ ଥିଲି ଯେଉଁଠି ଦୁବଘାସ ବରଗଛ ପିମ୍ପୁଡ଼ି ଓ ହାତୀ ସମସ୍ତେ ସ୍ୱୟଂସଂପୂର୍ଣ୍ଣ ଓ ସାର୍ଥକ ।

ନୀରବତା ଭାଙ୍ଗି ଭବନାଥ ପ୍ରଥମେ କଥା କହିଲା । ତା'ର କବିତାର ଦୁର୍ବୋଧତା କଥା ନକହି ସେ ମୋତେ ତା'ର ପୁରୁଣା ପ୍ରେମକଥା କହିବାକୁ ଆରମ୍ଭ କଲା । ତୋର ସେ ଝିଅଟି କଥା ମନେ ଅଛି ? ସାଇନ୍‌ସ୍ ପଢୁଥିଲା । ଭବନାଥ ମୋତେ ପଚାରିଲା । ଏତେବର୍ଷ ପରେ ମୁଁ ଠିକ୍ ଭାବରେ ଝିଅଟି କଥା ମନେ କରି ପାରୁ ନଥିଲି, କିନ୍ତୁ ମୋ ମନ ଭିତରେ ଗୋଟିଏ ପୁରୁଣା କଲେଜବେଳର ଚେହେରାକୁ ବାଛି ନେଇଥିଲି, ଯୋଉଟା ହୁଏତ ସେ ଝିଅଟିର ନଥିଲା । ମୁଁ ସେ କାଳ୍ପନିକ ଝିଅଟିର ଚେହେରା ସହିତ ଭବନାଥର କଲେଜବେଳର ଚେହେରାକୁ ମିଶାଇ ଭବନାଥ କଥା ଶୁଣିବାକୁ ଲାଗିଲି । ସେତେବେଳକୁ ଗଛ ଉପରେ ଜହ୍ନର ସାମାନ୍ୟ ଅଂଶ ଦେଖା ଯାଉଥିଲା ଓ ପୋଖରୀର ଅଳ୍ପ ପାଣି ଚକ୍‌ଚକ୍ କରିବାକୁ ଆରମ୍ଭ କରିଥିଲା ।

କଲେଜରେ ପଢ଼ିବା ଚାରିବର୍ଷଯାକ ଆମେ ପରସ୍ପରକୁ କେତେ ଯେ ଚିଠି ଲେଖିଛୁ ତା'ର ସୀମା ନାହିଁ, ଭବନାଥ କହିଲା, ଏମିତି କି ଥରେ ଥରେ ଦିନକୁ ଦି' ଦି'ଟା ଚିଠି ବି ଲେଖିଛୁ । ସେ ଯେତେବେଳେ ଛୁଟିରେ ଘରକୁ ଚାଲିଯାଉଥିଲା, ଆଉ ଦି' ଚାରିଦିନ ତା' ପାଖରୁ ଚିଠି ଆସୁନଥିଲା, ମୋର ମନେ ହେଉଥିଲା ମୋର ନିଃଶ୍ୱାସ ବନ୍ଦ ହୋଇଯିବ ଆଉ ମୁଁ ମରିଯିବି । ଫାଇନାଲ ପରୀକ୍ଷା ଦେଇ ସେ ଘରକୁ ଚାଲିଯିବା ପରେ କିଛିଦିନ ଆଉ ଚିଠି ଆସିଲା ନାହିଁ । ମୁଁ ତା' ଘରକୁ ଯାଇ ତା'ର ଖବର ନେବା ଉଚିତ ହେବ କି ନାହିଁ ଏକଥା ଭାବୁ ଭାବୁ ତା'ର ଚିଠି ଆସିଲା ଯେ ତା'ର ବାହାଘର ଠିକ୍ ହୋଇଯାଇଛି । ମୋ ମୁଣ୍ଡରେ ବଜ୍ରପାତ ହେଲା । ମୁଁ ଖାଇବା ପିଇବା ଛାଡ଼ି ବିଛଣାରେ ପଡ଼ିରହି ଭାବିବାରେ ଲାଗିଲି । ଥରେ ଥରେ ମନେହେଲା ମୁଁ ଯାଇ ସେଠାରେ ପହଞ୍ଚି ବାହାଘର ବନ୍ଦ କରିଦେବି । ପୁଣି ଭାବିଲି ସେ ଯଦି ମତେ ଏ ବିଷୟରେ କିଛି ନଲେଖି ବାହାଘରର ଖବର ଦେଲା, ହୁଏତ ତା'ର ବାହା ହୋଇଯିବା ହିଁ ତା' ପାଇଁ ଭଲ ହେବ । ମୁଁ ଚୁପ୍ ରହିଲି ଓ ସେ ବାହା ହୋଇଗଲା ।

ଛ'ମାସ ପରେ ତା' ପାଖରୁ ଚିଠି ଆସିଲା । ସେ ଲେଖିଥିଲା ସେ ଆଉ ବଞ୍ଚିପାରିବ ନାହିଁ, ଭବନାଥ ଯେମିତି ଆସି ତାକୁ କୁଆଡ଼େ ନେଇଯାଉ । ପ୍ରଥମେ

ଭବନାଥ ବୁଝିପାରିଲା ନାହିଁ କ'ଣ କରିବ । ତା'ର ଚିଠି କାଳେ ଆଉ କାହା ହାତରେ ପଡ଼ିପାରେ ଜାଣି ବି ସେ ଗୋଟିଏ ସତର୍କତାପୂର୍ଣ୍ଣ ଚିଠି ଲେଖିଲା । ତା'ର ଜବାବ ବି ଆସି ପହଞ୍ଚିଲା ଅଳ୍ପଦିନ ଭିତରେ । ତା'ପରେ ସେମାନେ ପୁଣି ପୂର୍ବ ପରି ପତ୍ରାଳାପ କରିବାରେ ଲାଗିଲେ । ସେ ସବୁବେଳେ ଚିଠିରେ ଲେଖେ, ମତେ ଆସି ନେଇଯାଅ । ଭବନାଥ ତାକୁ ଅନେକ ବୁଝାଏ ଚିଠିରେ, ଆଉ ଭାବିଚିନ୍ତି ସବୁ କାମ କରିବାକୁ କହେ । କିନ୍ତୁ ଝିଅଟିର ସେଇ ଏକାକଥା ।

ଶେଷରେ ଭବନାଥ ନିଶ୍ଚୟ କଲା, ଯାହା ହେଉ ସେ ଝିଅ ପାଖକୁ ଯିବ ଏବଂ ସେ ଏକଥା ଝିଅ ପାଖକୁ ଲେଖିଲା । କିନ୍ତୁ ଏଇ ସମୟରେ ଝିଅ ପାଖରୁ ଚିଠି ଆସିଲା ଯେ ସେ ଖୁବ୍ ମନବ୍ୟସ୍ତରେ ଅଛି, କାରଣ ତା'ର ସ୍ୱାମୀଙ୍କ ଦେହ ଖରାପ । ଭବନାଥ ଭାବିଲା, ଯଦି ସେ ଲୋକଟି ମରିଯାଏ, ସବୁ ସମସ୍ୟାର ସମାଧାନ ହୋଇଯିବ ଏବଂ ସେ ଏକଥା ମଧ୍ୟ ଝିଅଟିକୁ ଚିଠିରେ ଜଣାଇଲା । ତା'ର ଅଳ୍ପ କିଛିଦିନ ପରେ ହିଁ ଝିଅର ଚିଠି ଆସିଲା ଯେ ତା'ର ସ୍ୱାମୀ ଭୁଲ ଔଷଧ ଖାଇ ମରିଗଲେ । ତା' ସହିତ ସେ ଏକଥା ବି ଲେଖିଥିଲା ଯେ ତାକୁ ତା'ର ଅନେକ ଗୋପନୀୟ କଥା କହିବାର ଅଛି । ଭବନାଥ ଯେପରି ତା' ସହିତ ସାକ୍ଷାତ କରେ ।

ଭବନାଥ ଏ ଚିଠିର ଅନେକଦିନଯାଏଁ ଜବାବ ଦେଲା ନାହିଁ କିମ୍ବା ଝିଅ ସହିତ ଦେଖା କରିବା ପାଇଁ କୌଣସି ଚେଷ୍ଟା କଲା ନାହିଁ । ସେ ପ୍ରତିଦିନ ଆଶା କରୁଥିଲା ଝିଅ ପାଖରୁ ଆଉ ଗୋଟିଏ ଚିଠି ଆସିବ । ଯେତେବେଳେ ଅପେକ୍ଷା କରି ଆଉ ଚିଠି ନଆସିଲା, ଭବନାଥ ବାହାରି ପଡ଼ିଲା । ସେ ଜାଣିନଥିଲା ଏତେଦିନ ହେଲା ସମ୍ପର୍କ ନଥିବା ଝିଅ ସହିତ ତା'ର କି ପ୍ରକାର ସାକ୍ଷାତ୍‌କାର ହେବ । ଅପରିଚିତ ସହରର ଅଜ୍ଞାତ ଘର ସାମନାରେ ପହଞ୍ଚି ସେ ଛୋଟ ପିଲାଟିଏ ହାତରେ ଝିଅକୁ ଖବର ଦେଲା । ପିଲାଟି ଆସି ଜଣାଇଲା ଯେ, ସେ ଭବନାଥକୁ ଦେଖା କରିପାରିବ ନାହିଁ । ତା'ର ଖବର ଦେବାରେ ଭୁଲ୍ ହୋଇଥିବ ଏଇ ଆଶାରେ ସେ ଠିଆ ହୋଇ ରହିଲା ଓ ଶେଷରେ ଝିଅର ନାଁ ଧରି ଡାକିଲା । ଝିଅ ଆସିଲା । ତାକୁ ଭବନାଥ ବିଧବାବେଶରେ ଦେଖିବ ବୋଲି ଭାବିଥିଲା, କିନ୍ତୁ ଝିଅଟି ଯେତେବେଳେ କବାଟ ଖୋଲିଲା ସେ ଅଳଙ୍କାରରେ ସୁସଜ୍ଜିତ ଥିଲା ଏବଂ ତା' ଦେହରେ ଲାଲରଙ୍ଗର ଶାଢ଼ି ଥିଲା । ଭବନାଥ ଘର ଭିତରକୁ ଯିବା ପାଇଁ ପାଦ ବଢ଼ାଇଲା । ଝିଅ ଥରେ ମାତ୍ର ତା' ଆଡ଼କୁ ଅନାଇ ଜୋରରେ 'ନା' ବୋଲି କହିଲା ଓ ତା'ର ମୁହଁ ଉପରେ କବାଟ ବନ୍ଦ କରିଦେଲା ।

ଏତିକି କହି ଭବନାଥ ଚୁପ୍ ରହିଲା । ସେତେବେଳକୁ ଜହ୍ନ ଉପରକୁ ଉଠିସାରିଥିଲା ଓ ସେଇ ନିର୍ଜନ ସ୍ଥାନଟି ଜହ୍ନ ଆଲୁଅରେ ଛମ ଛମ କରୁଥିଲା । ଏ ପରିବେଶ ସହିତ ଭବନାଥର ଗଳ୍ପ ଏକ ଐନ୍ଦ୍ରଜାଲିକ ବାତାବରଣ ସୃଷ୍ଟି କରିଥିଲା । ସେ

ଗପର ଚରିତ୍ରମାନଙ୍କ ସହିତ ଯେମିତି ଭବନାଥ ଓ ମୋର ମନେ ପଡୁଥିବା ଝିଅଟିର କୌଣସି ସମ୍ପର୍କ ନଥିଲା । ମୁଁ ଯେମିତି ମନ ଭିତରେ ଗୋଟିଏ କାଳ୍ପନିକ କାହାଣୀର ପୁନରାବୃତ୍ତି ହିଁ ଦେଖୁଥିଲି ।

ଏହି ଇନ୍ଦ୍ରଜାଲକୁ ହଠାତ କାଟିଦେଇ ଭବନାଥ କହିଲା, ତୁ ମତେ କବିତାର ଦୁର୍ବୋଧତା କଥା ପଚାରୁଥିଲୁ ପରା ? ମନେକର ମୁଁ ଯୋଉ କଥା ତତେ କହିଲି, ସେ କଥାଟାକୁ ନିଆଯାଉ । ଏହି କଥାରୁ ବର୍ତ୍ତମାନ ସବୁ ଚରିତ୍ରଙ୍କୁ ବାଦ ଦିଆଯାଉ । ହୁଏତ ଅନ୍ୟ ସମୟରେ ଭବନାଥର ଏକଥା ମତେ ଅସଂଲଗ୍ନ ଏବଂ ଅଯୌକ୍ତିକ ବୋଧ ହୋଇଥା'ନ୍ତା, କିନ୍ତୁ ମୁଁ ଦେଖିଲି ଏ କଥା ସମ୍ଭବ, ଏବଂ ମୁଁ ଭବନାଥ, ସେ ଝିଅ, ତା'ର ସ୍ୱାମୀ, ତା'ର ସଂସାରକୁ ସେଇ ଗପରୁ ଅଲଗା କରିଦେଲି ।

ଭବନାଥ କହିଲା, ବେଶ୍ । ଏଥରକ ସେଥିରୁ ସମସ୍ତ ସଂଳାପ, ସମସ୍ତ ଭାବପ୍ରବଣତାକୁ କାଟି ଦିଆଯାଉ । ମୁଁ ଆଖି ବନ୍ଦକରି ସେ ସବୁକୁ ଭୁଲିଗଲି । ଏଥରକ ଆଉ କ'ଣ ରହିଗଲା ? କ'ଣ ? କିଛି ଦୁଃଖ, କିଛି ଅନ୍ତର୍ଦାହ, କିଛି ବୁଝିବା ?

ଭବନାଥ ଏଥରକ ଉଠି ଠିଆହେଲା ଓ କହିଲା, ଏଥର ଚାଲ ଯିବା ଏବଂ ଆମେ ସେଇ ଜହ୍ନ ଆଲୁଅର ନିର୍ଜନ ଦ୍ୱୀପ ଭିତରୁ ବାହାରିବାବେଳେ କହିଲା, ଏଥର ବୁଝିଲୁ କବିତା କ'ଣ ? ଯାହା କିଛି ବାକି ରହିଗଲା, ତା' ହିଁ କବିତା ।

ଗାଡ଼ି ନେଇ ଘରକୁ ଫେରିବାବେଳେ ମୁଁ ଠିକ୍ କରିପାରୁ ନଥିଲି ଯେ ଭବନାଥ ମତେ ଯୋଉ ଗପଟି କହିଲା ସେ ତା'ର ଜୀବନରେ ଘଟିଥିବା ଘଟଣା, ନା ମତେ କବିତାର ଦୁର୍ବୋଧତାକୁ ବୁଝାଇବା ପାଇଁ ଗୋଟିଏ ଉଦାହରଣ ମାତ୍ର ଥିଲା । ତେବେ ସେଦିନ ରାତିରେ ମୁଁ ଭବନାଥର କବିତା ବହି ଖୋଲି ପଢ଼ିଲି ଏବଂ ଦେଖିଲି ଯେ ତା'ର ପ୍ରତ୍ୟେକ କବିତାର ତାତ୍ପର୍ଯ୍ୟ ଅଛି ଏବଂ ମୁଁ ତା'ର ସବୁ କବିତା ବୁଝିପାରୁଥିଲି ।

ତା'ପରେ ମୁଁ ସହରରେ ଥିବା ପର୍ଯ୍ୟନ୍ତ ଭବନାଥ ସହିତ ମଝିରେ ମଝିରେ ଦେଖା କରୁଥିଲି । ଭବନାଥ ନୂଆ କବିତା ଲେଖିଲେ ମତେ ପ୍ରଥମେ ଦେଖାଉଥିଲା, ମୁଁ ତା'ର ରସ ଆସ୍ୱାଦନ କରି ଖୁସି ହେଉଥିଲି । ମୋର ପୁଣି ଅନ୍ୟ ଜାଗାକୁ ବଦଳି ହୋଇଗଲା ପରେ ଭବନାଥ ମଝିରେ ମଝିରେ ଡାକରେ ମୋ ପାଖକୁ ଚିଠି ଲେଖୁଥିଲା ଓ ତା'ର ନୂଆ ନୂଆ କବିତାମାନ ପଠାଉଥିଲା । ମଝିରେ ଅନେକଦିନ ତା' ପାଖରୁ ଚିଠି ନପାଇ ମୁଁ ଥରେ ବ୍ୟସ୍ତ ହୋଇ ତା' ପାଖକୁ ଚିଠି ଲେଖିଲି । ଚିଠିର ଉତ୍ତର ଅନେକଦିନ ପରେ ଆସିଲା । ଚିଠି ସହିତ ଯୋଉ କବିତାଟି ଥିଲା, ପ୍ରଥମେ ମୁଁ ସେଇଟିକୁ ପଢ଼ିଲି । ଅଦ୍ଭୁତ ଧରଣର କବିତା ଥିଲା । ଏପରି ଅନେକ ଅକ୍ଷରର ସମଷ୍ଟିର ଶବ୍ଦ, ଯାହାର କୌଣସି ଅର୍ଥ ନାହିଁ । କୌଣସି ଶବ୍ଦର କୌଣସି ଶବ୍ଦ ସହିତ

ସମ୍ପର୍କ ନାହିଁ । କେବଳ କିଛି ଶ୍ରୁତିମଧୁର ଶବ୍ଦ । ଆଉ ଚିଠିରେ ଭବନାଥ ଲେଖିଥିଲା, ଶୁଣି ଖୁସି ହେବୁ ଯେ ମୁଁ ପୁଣି ପ୍ରେମରେ ପଡ଼ିଛି । ଏବେ ମୁଁ ପଢ଼ିଲି ଯେ, ଆମେରିକାରେ ଗବେଷଣା କରି ବୈଜ୍ଞାନିକମାନେ ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ ଦୁଇଜଣଙ୍କ ଭିତରେ ଭାବ ବିନିମୟର ମୋଟେ ସାତ ପ୍ରତିଶତ କାମ ଶବ୍ଦ ଜରିଆରେ ହୋଇଥାଏ, ଅଠତିରିଶ ପ୍ରତିଶତ ହୋଇଥାଏ ସ୍ୱର ଓ ବାକି ପଞ୍ଚାବନ ପ୍ରତିଶତ ମୁହଁର ଭାବଭଙ୍ଗୀରେ ।

ଏକଥା ପଢ଼ି ମୁଁ ହଠାତ ଠିକ୍ କରି ପାରିଲି ନାହିଁ ଏ କି ପ୍ରକାର ପ୍ରେମ । କ'ଣ ସେଇ ଆଗର ଝିଅଟି ସହିତ ? ନା ପୂର୍ବ ଘଟଣାଟି ଭଳି ଏ ଗୋଟିଏ ସନ୍ଦେହଜନକ ଜିନିଷ ? ଏଥରକ ମୁଁ ଆଉ ଭବନାଥର କବିତା କେଉଁଠାରେ ଦେଖୁ ନଥିଲି । ସେ ମଧ୍ୟ ମୋ ପାଖକୁ ଚିଠି ଲେଖିବା ବନ୍ଦ କରି ଦେଇଥିଲା । ଏହି ସମୟରେ ମତେ କିଏ ଖବର ଦେଲା ଯେ ଭବନାଥ ପାଗଳ ହୋଇଯାଇଛି ।

କିନ୍ତୁ ମୁଁ ଜାଣିଥିଲି, ଭବନାଥ ସୁସ୍ଥ ମାନସିକ ଅବସ୍ଥା ନେଇ ତା'ର ସେଇ ପୁରୁଣା ଘରେ ଅଛି । ଆଉ ମୁଁ ଯେତେବେଳେ ତା' ପାଖରେ ପହଞ୍ଚିବି, ଦେଖିବି ଯେ, ଏଥରକ ସେ ତା'ର ଅଭିଧାନଗୁଡ଼ାକୁ ଗୋଟିଏ ପାଖରେ ଘୁଞ୍ଚାଇ ରଖି ଦେଇଛି ଏବଂ ଗୋଟାଏ ଟେପ୍ ରେକର୍ଡ଼ର ସାମନାରେ ବସି ତା' ସହିତ ଗମ୍ଭୀର କଥୋପକଥନରେ ବ୍ୟସ୍ତ ଅଛି ।

# ମୃତ୍ୟୁବୋଧ

ମୃତ୍ୟୁ ଦୁଇ ପ୍ରକାରର ହୋଇପାରେ : ଗୋଟିଏ ହେଉଛି ଅନିଚ୍ଛାକୃତ ମୃତ୍ୟୁ, ଯାହା ଅଜ୍ଞ ଲୋକମାନଙ୍କର ମୃତ୍ୟୁ ଏବଂ ଯାହା କିଛି ଲୋକଙ୍କ ପାଇଁ ବାରମ୍ବାର ଘଟିଥାଏ । ବିଜ୍ଞ ଲୋକମାନଙ୍କର ମୃତ୍ୟୁ ହେଉଛି ସ୍ୱେଚ୍ଛାକୃତ ମୃତ୍ୟୁ, ଯାହା କେବଳ ଥରେ ମାତ୍ର ଘଟେ । ଯେତେବେଳେ ସାଧାରଣ ଜୀବନଯାପନ, ସେ ଯେକୌଣସି କାରଣରୁ ହେଉନା କାହିଁକି, ସମ୍ଭବ ହୁଏ ନାହିଁ, ବିଜ୍ଞଲୋକ ସ୍ୱଇଚ୍ଛାରେ ମୃତ୍ୟୁର ସମ୍ମୁଖୀନ ହୁଏ । ସେ ନିଜର ସମସ୍ତ କାମନାକୁ ମନ ଭିତରୁ ଦୂର କରିଦିଏ । ତା'ପରେ ସେ ଖାଦ୍ୟପେୟ ପରିତ୍ୟାଗ କରି ନିଜର ଶରୀରକୁ ବିଲୀନ ହୋଇଯିବାକୁ ଦିଏ । ତା'ର ଆତ୍ମା ଶରୀରରୁ ବିଚ୍ଛିନ୍ନ ହୋଇଯାଏ । ବିଭିନ୍ନ କର୍ମମାନେ, ଯାହା ଆତ୍ମା ସହିତ ଜଡ଼ିତ ରହିଥାନ୍ତି, ଆତ୍ମା ସେ ସମସ୍ତଙ୍କର ବନ୍ଧନରୁ ନିଜକୁ ମୁକ୍ତ କରିନିଏ । ଏ ହେଉଛି ଜୈନସୂତ୍ରରେ ଲିଖିତ ସଲ୍ଲେଖନାର ତତ୍ତ୍ୱ ।

ନିକଟ ଅତୀତରେ ଏଭଳି ସଲ୍ଲେଖନାର ଶପଥ ଗ୍ରହଣ କରିଥିଲେ ସୁଧର୍ମ ସାଗର ମୁନି, ୧୯୭୩ ମସିହା ଅଗଷ୍ଟ ୧୩  ତାରିଖରେ । ସେ ପ୍ରଥମେ ଖାଦ୍ୟ ପରିତ୍ୟାଗ କଲେ ଏବଂ ସେପ୍ଟେମ୍ବର ୯ ତାରିଖରେ ଶେଷଥର ପାଇଁ ଜଳ ସ୍ପର୍ଶ କଲେ । ଶପଥର ବୟାଳିଶ ଦିନ ପରେ ତାଙ୍କର ଦେହାନ୍ତ ହେଲା ସେପ୍ଟେମ୍ବର ୨୪ ତାରିଖରେ ।

ସଲ୍ଲେଖନା ଶପଥରେ ତିନିପ୍ରକାର ମରଣର ଉଲ୍ଲେଖ ଅଛି : ଭକ୍ତ ପ୍ରତ୍ୟାଖ୍ୟାନ ମରଣ, ଇଙ୍ଗିତ ମରଣ ଏବଂ ପାଦୋପଗମନ ମରଣ । ତମେ ବୋଧହୁଏ ବୋର ହୋଇଯାଇଛ, ନର୍ସ । ମୋ ଆଡ଼କୁ ଦେଖ । ପ୍ରଥମେ ପ୍ରଥମେ ମୁଁ ବି ଯେତେବେଳେ ଏ ବିଷୟରେ ପଢ଼ିବାକୁ ଆରମ୍ଭ କଲି, ମତେ ବି କ୍ଳାନ୍ତିକର ଲାଗୁଥିଲା । କିନ୍ତୁ ମୁଁ ଆସ୍ତେ ଆସ୍ତେ ଏ ବିଷୟରେ ଏତେ ମଜ୍ଜିତ ହୋଇଗଲି, ବାରମ୍ବାର ପଢ଼ିଲେ ବି ଆଉ ଏସବୁ ବିରକ୍ତିକର ଲାଗିଲା ନାହିଁ । ଆଚ୍ଛା, ଛାଡ଼ । ଏଥରକ ମୁଁ ଅନ୍ୟକଥା କହେ କିମ୍ବା ତମେ ତମର ବୟଫ୍ରେଣ୍ଡ କଥା କୁହ । ଦେଖିଲ, ମୁଁ ତମର ବନ୍ଧୁଙ୍କର ନାଁ ଉଚ୍ଚାରଣ କରୁ କରୁ  ତମର ମୁହଁର ବିରକ୍ତିଭାବ କେମିତି ହଠାତ ବଦଳିଗଲା ! ଠିକ୍

ମୃତ୍ୟୁର ଜୀବନର ପରିବର୍ତ୍ତନ ଭଳି, ନା ?

ଆଜି ମୁଁ ବେଶ୍ ଭଲ ଅଛି । ତମେ ବିଶ୍ୱାସ କରୁନାହଁ ବୋଧହୁଏ । ମୁଁ ଏତେଦିନ ଏତେ ପ୍ରକାର ବିକ୍ଷିପ୍ତ କଥା କହୁଥିବାରୁ ତମେ ବୋଧହୁଏ ଭାବୁଥିବ ଯେ ମୋର ମୁଣ୍ଡ ଭିତରେ କିଛି ଗୋଟାଏ ଗୋଳମାଳ ହୋଇଯାଇଛି । କିନ୍ତୁ ମୁଁ ସଂପୂର୍ଣ୍ଣ ସୁସ୍ଥମସ୍ତିଷ୍କ ଏବଂ ଅନୁଭବ କରୁଛି ଯେ ମୁଁ ମୋର ପୁରୁଣା ଅବସ୍ଥାକୁ ଫେରି ପାଇଛି । ଆଜି ତମକୁ ମୋ କଥା ଶୁଣିବାକୁ ହେବ । ମୁଁ କ'ଣ ସବୁକଥା ତମକୁ ଆଗରୁ କହିଛି ? ନା, ଆଜି ତମକୁ ପୁଣି ସବୁକଥା ଠିକ୍ ଭାବରେ ମୂଳରୁ କହିବି । ମୋର କମିଜ ପକେଟରୁ ସେ ପର୍ସଟା ଦବ ? ଦେଖ, ମୋ କାର୍ଡ଼ରେ କ'ଣ ଲେଖା ଅଛି :

ସନାତନ ପଣ୍ଡିତ

୧୯୩୮-୧୯୮୦

ହଁ, ୧୯୮୦ ମସିହା ବି ଚାଲିଗଲାଣି । କିନ୍ତୁ ମୁଁ ବଞ୍ଚିଛି ଏବଂ ସେଇ ଲାମାର ଭବିଷ୍ୟତବାଣୀ ଭୁଲ ହୋଇଯାଇଛି । ପ୍ରାୟ ପନ୍ଦରବର୍ଷ ତଳେ ବନାରସରେ ମୋର ସେଇ ଲାମା ସହିତ ଭେଟ ହୋଇଥିଲା । ସେ ତିବ୍ବତୀ ଲାମା ଲାସାରୁ କୌସାମ୍ବୀ ଯିବା ରାସ୍ତାରେ ବନାରସରେ କିଛିଦିନ ପାଇଁ ରହୁଥିଲା । ମୁଁ ବନାରସରେ ଦିନେ ସକାଳେ ବୁଲି ଯାଉ ଯାଉ ଲାମାକୁ ଗୋଟିଏ ଗଛତଳେ ବସିଥିବାର ଦେଖିଲି । ଖରାଦିନ ସତ୍ତ୍ୱେ ବି ଲାମା ମୋଟା ଉଲ୍‌ର ପୋଷାକ ପିନ୍ଧିଥିଲା ଏବଂ ତା' ପାଖରେ ତା'ର ଜଣେ ଭାରତୀୟ ଚେଲା ବସିଥିଲା । ମୁଁ ଲାମା ପାଖରେ ଯାଇ ବସିଲି । ଲାମା କୌଣସି ଭାରତୀୟ ଭାଷା ବୁଝୁ ନଥିଲା, କେବଳ ମୋ ଆଡ଼କୁ ଚାହିଁ ହସିଲା । ମୁଁ କହିଲି, ମୁଁ ମୋର ଭବିଷ୍ୟତ କଥା ଜାଣିବାକୁ ଚାହୁଁଛି । ଲାମା ପାଖରେ ବସିଥିବା ଲୋକଟି କହିଲା, ନା, ସେ ଜ୍ୟୋତିଷ ନୁହଁନ୍ତି । ମୁଁ ଏ କଥାରେ ସନ୍ତୁଷ୍ଟ ହେଲି ନାହିଁ, କାରଣ ଲାମା ତଥାପି ହସୁଥିଲା । ମୁଁ ବାରମ୍ବାର ପଚାରିବାରୁ ଲାମା ନିଜ ଭାଷାରେ ପାଖ ଲୋକଟିକୁ କିଛି କହିଲା ଏବଂ ଲୋକଟି ମତେ କହିଲା- ଡିସେମ୍ବର ୧୭, ୧୯୮୦ । ତା'ପରେ ଲାମା ହଠାତ୍ ଗମ୍ଭୀର ହୋଇଗଲା ଓ ଲୋକଟି ଆର ପାଖକୁ ମୁହଁ ବୁଲାଇ ବସିଲା । ମୁଁ ଜାଣିଲି ଆଉ ସେମାନଙ୍କୁ କିଛି ପ୍ରଶ୍ନ କରି ଲାଭ ନାହିଁ । ଭବିଷ୍ୟତର ଏଇ ତାରିଖଟିକୁ ହାତରେ ଧରି ମୁଁ ହୋଟେଲକୁ ଫେରି ଆସିଲି ।

ସତ କହିବାକୁ ଗଲେ ମୋର ଜ୍ୟୋତିଷ ଓ ସାମୁଦ୍ରିକ ବିଦ୍ୟା ଉପରେ ବିଶ୍ୱାସ ହେଲା ଯେତେବେଳେ ମୁଁ ନିଜର ଦୋକାନ ଖୋଲିଲି । ତା' ଆଗରୁ ମୁଁ ଖୁବ୍ ସାହସୀ ଥିଲି । ଭୂତପ୍ରେତ, ଈଶ୍ୱର, ଭାଗ୍ୟ, ପୁନର୍ଜନ୍ମ ଇତ୍ୟାଦି କାହାରିକି ମୋର ଭୟ ନଥିଲା । ଏପରିକି ମୃତ୍ୟୁକୁ ମଧ୍ୟ ନୁହେଁ । କିଏ ମଲେ ମୋ ଆଖିରୁ ଲୁହ ବୋହୁ ନଥିଲା । ମୁଁ ଭାବୁଥିଲି ମୃତ୍ୟୁ କିଛି ନୁହେଁ ଏବଂ ମୃତ୍ୟୁ ପରେ ବି କିଛି ନାହିଁ । ନିର୍ଲିପ୍ତ

ଭାବରେ ମୁଁ ସବୁକଥା ସ୍ୱୀକାର କରିନେଉଥିଲି । କିନ୍ତୁ ଯେତେବେଳେ ମୋ ଉପରେ ସାଂସାରିକ ଦାୟିତ୍ୱ ସବୁ ପଡ଼ିଲା, ମୁଁ ଭବିଷ୍ୟତ କଥା ଜାଣିବାକୁ ଚାହିଁଲି ।

ଏବଂ ଭବିଷ୍ୟତ କଥା ଜାଣିବା ହିଁ ହେଉଛି ନିଜର ମୃତ୍ୟୁ ତାରିଖ ଜାଣିବା । କାରଣ ଜୀବନଟା ହେଉଚି ଗୋଟିଏ ପରିସମାପ୍ତିର ପ୍ରସ୍ତୁତି ମାତ୍ର । ଜଣା ହଉ, ଅଜଣା ହଉ ମଣିଷ ଏଇ ପ୍ରସ୍ତୁତିରେ ଲାଗିଥାଏ । ଶେଷ ଋଣ ପରିଶୋଧ କରିବା ହିଁ ହଉଚି ମୃତ୍ୟୁ । କିନ୍ତୁ ତମେ କହିବ ମୃତ୍ୟୁ କେତେବେଳେ ଆସିବ ଓ କେଉଁଠାରେ ଆସିବ କିଏ ଜାଣିପାରିବ ? ବାଗଦାଦର ବଜାରରେ ବଣିକ ଦେହରେ ଯେଉଁ ବୃଦ୍ଧା ଧକ୍କା ଦେଲା, ସେ ନିଜେ ମୃତ୍ୟୁ ଥିଲା ଏବଂ ତା' ମୁହଁରେ ବିସ୍ମୟର ଭାବ ଥିଲା । ମୃତ୍ୟୁରୁ ମୁକୁଳିବା ପାଇଁ ବଣିକ ଘୋଡ଼ା ଛୁଟାଇ ସାମାରାକୁ ଚାଲିଗଲା । କିନ୍ତୁ ସାମାରାର ପାନ୍ଥଶାଳା ଭିତରେ ବୃଦ୍ଧା ତା' ପାଇଁ ଅପେକ୍ଷା କରିଥିଲା । ସାମାରାରେ ହିଁ ସେମାନଙ୍କର ଭେଟ ହେବାର ଥିଲା ।

ମୋର ଏତେ କଥା କହିବାର ଉଦ୍ଦେଶ୍ୟ ହେଉଚି, ନର୍ସ, ଯେ ମଣିଷ ଏଇ ଗୋଟିଏ ବିଷୟରେ ଅସହାୟ । ସେ ନିଜର ମୃତ୍ୟୁର ତାରିଖ ନିଜେ ଠିକ୍ କରି ପାରିବ ନାହିଁ : କିନ୍ତୁ ମୋର ସମ୍ପୂର୍ଣ୍ଣ ବିଶ୍ୱାସ ହୋଇଯାଇଥିଲା ଯେ, ମୁଁ ଡିସେମ୍ବର ୧୭ ତାରିଖ ୧୯୮୦ ବୁଧବାର ଦିନ ଦେହତ୍ୟାଗ କରିବି ଏବଂ ଏଥିପାଇଁ ମୁଁ ନିଜକୁ ପ୍ରସ୍ତୁତ କରୁଥିଲି ଯଦିଓ ୧୯୮୦ ଅନେକ ଦିନ ପରେ ଥିଲା । ମୁଁ ଜାଣିଥିଲି ମତେ ଏ ଦେହ ଛାଡ଼ିବାକୁ ପଡ଼ିବ ଯାହା ସହିତ ଏତେଦିନ ବିତିଗଲା ଏବଂ ଯାହା ସହିତ ପୃଥିବୀରେ ମୋର ସବୁଠାରୁ ବେଶି ଘନିଷ୍ଠ ସମ୍ପର୍କ । କିନ୍ତୁ ମୁଁ ଆହୁରି ମଧ ଜାଣିଥିଲି ଯେ ଏଇ ଦେହ ଛାଡ଼ିଲେ ପୁଣି ମୁଁ ମୁକ୍ତ ହୋଇଯିବି ଦୁଃଖ, ପ୍ରେମ, ବିଶ୍ୱାସଘାତକତାରୁ । ବୟସ, ଦାରିଦ୍ର୍ୟ ଓ ଯନ୍ତ୍ରଣାର ଦୌରାତ୍ମ୍ୟରୁ । ମୋର ଔଷଧ ଖାଇବାର ସମୟ ହେଲାଣି ? ଆଚ୍ଛା, ଦିଅ । ଏଥିରେ ନିଦର ବି ଔଷଧ ଅଛି ନା ? ଦେଖିବାକୁ ଗଲେ ନିଦ ବି ଗୋଟିଏ ଛୋଟକାଟର ମୃତ୍ୟୁ । ନିଦ୍ରା ଲୋଭନୀୟ, କିନ୍ତୁ ମୃତ୍ୟୁ ତା'ଠାରୁ ବି ଅଧିକ ଲୋଭନୀୟ ।

ମୋତେ ଆଉ କେତେଦିନ ରହିବାକୁ ହେବ, ନର୍ସ ? ମୁଁ ଭାବୁଚି ଶୀଘ୍ର ଫେରିଯିବି । କିନ୍ତୁ ପୁଣି ଭାବୁଛି ମୁଁ ତ ସବୁ ବନ୍ଦ କରିଦେଇ ଆସିଛି, ପୁଣି ମତେ ନୂଆ ଜୀବନ ଆରମ୍ଭ କରିବାକୁ ପଡ଼ିବ । ତମେ କହିପାର, ତାହେଲେ ବ୍ୟସ୍ତ ହବାର କ'ଣ ଅଛି ? ଆରେ, ତମେ ଯିବାକୁ ବସିଲ ଯେ । ମୁଁ ତ ଏପର୍ଯ୍ୟନ୍ତ ତମକୁ ସବୁକଥା କହିନାହିଁ । ନା, ଏଥରକ ଠିକ୍ ଠିକ୍ ତମକୁ ସବୁକଥା କହିବି ।

କିନ୍ତୁ ଏସବୁ କଥା କ'ଣ ଠିକ୍ ଭାବେ ବୁଝାଇ କହିହୁଏ ? ମୁଁ କ'ଣ ନିଜେ ନିଜକୁ ବୁଝିଛି ? କିମ୍ୱା ପ୍ରତ୍ୟେକ ଜିନିଷର କ'ଣ ଗୋଟାଏ ନିଜସ୍ୱ ରୂପ ଅଛି ? ଦେଖ,

ମୋର ନାଁକୁ ହିଁ ନିଅ । ପଣ୍ଡିତ ବି ମୋର ନିଜର ନାଁ ନୁହେଁ । ମୋର ବହିଦୋକାନ ଥିବାରୁ ଏବଂ ମୁଁ ସବୁବେଳେ ସମସ୍ତଙ୍କୁ ମୋର ଅଳ୍ପ ପଢ଼ିଥିବା ଜ୍ଞାନ ବିଷୟରେ କହୁଥିବାରୁ ମତେ ସମସ୍ତେ ଏଇ ନାଁ ଦେଇଥିଲେ ଏବଂ ମୁଁ ଏଇ ନାଁକୁ ଆଦରି ନେଇଥିଲି । ସମସ୍ତେ ମୋର ପ୍ରକୃତ ନାଁ ଭୁଲି ଯାଇଥିଲେ । ଯେମିତି ଦୀନନାଥର ପ୍ରକୃତ ନାଁ ବଦଳରେ ଆମେ ତାଙ୍କୁ ଖାଲି ଜାଣିଥିଲୁ ଦୀନା ମାଷ୍ଟର ବୋଲି !

ଦେଖ, ତମେ ଯିବାକୁ ବ୍ୟସ୍ତ, ଅଥଚ ମୁଁ ମୋ ନିଜ କଥା ଠିକ୍ ଭାବରେ ତମକୁ କହିପାରୁ ନାହିଁ । ନା, ମୁଁ ଏଥର ମୂଳରୁ ଆରମ୍ଭ କରେ, ମୋର ଜନ୍ମଠାରୁ । କିନ୍ତୁ ନିଜର ଜନ୍ମକଥା କ'ଣ କିଏ ଜାଣିଥାଏ ? ପ୍ରତିଟି ଲୋକ ପାଇଁ ଜନ୍ମ ସେତିକି ବିସ୍ମୟକର ଯେତିକି ତା'ର ମୃତ୍ୟୁ । ଯାହାହେଉ, ମୋର ଯେତେବେଳେ ହେତୁ ହେଲା, ମୁଁ ମୋର ଦାଦାଙ୍କ ପାଖରେ ରହୁଥିଲି । ପରେ ଜାଣିଲି ଯେ ମୋର ବାପା-ମା' ମରିଯାଇଥିବାରୁ ମୋ ଦାଦା ମତେ ପାଳୁଥିଲେ । ତାଙ୍କର ଅନେକ ପିଲାଝିଲା ଥିଲେ । ଦାଦା ଛୋଟ ସରକାରୀ ଚାକିରି କରୁଥିଲେ ଓ ଶାନ୍ତ ପ୍ରକୃତିର ଥିଲେ । କିନ୍ତୁ ଖୁଡ଼ୀ ବଡ଼ ରୁକ୍ଷ ପ୍ରକୃତିର ଥିଲେ ଓ ସବୁବେଳେ ସମସ୍ତଙ୍କ ଉପରେ ବିରକ୍ତ ହେଉଥିଲେ । ମୁଁ ଏବେ ବୁଝୁଛି ଯେ ତାଙ୍କର ଖରାପ ସ୍ୱାସ୍ଥ୍ୟ ଯୋଗୁଁ ବୋଧହୁଏ ସେ ଚିଡ଼ା ପ୍ରକୃତିର ଥିଲେ । ଖୁଡ଼ୀ କଥାକଥାକେ ମତେ ଗାଳି ଦେଉଥିଲେ ଏବଂ ମୁଁ କହିବି ଯେ ସେଥିପାଇଁ ମୋର ପିଲାଦିନ ଅଶାନ୍ତିରେ କଟିଥିଲା । ମୋର ଅନେକ ସମୟରେ ଧାରଣା ହେଉଥିଲା ଯେ ମୁଁ ତାଙ୍କର ନିଜର ପୁଅ ହୋଇ ନଥିବାରୁ ସେ ମୋ ଉପରେ ଏତେ ବିରକ୍ତ ହେଉଥିଲେ । କିନ୍ତୁ ମୁଁ ଯଦି ସେତେବେଳେ ଆଉ ଟିକିଏ ଭାବିଥା'ନ୍ତି, ଜାଣିପାରିଥା'ନ୍ତି ଯେ ଖୁଡ଼ୀ ତାଙ୍କ ନିଜ ପିଲାମାନଙ୍କ ଉପରେ ବି ଠିକ୍ ସେତିକି ବିରକ୍ତ ହେଉଥିଲେ । ଘରର ଅଶାନ୍ତି ଯୋଗୁଁ ମୁଁ ସ୍କୁଲରେ ପାଠପଢ଼ାରେ ବି ମନ ଦେଇପାରୁ ନଥିଲି । ଦିନେ ସକାଳେ ଏମିତି ଏକ ଅପ୍ରୀତିକର ଘଟଣା ପରେ ମୁଁ ଦାଦାଙ୍କ ଘର ଛାଡ଼ି ଚାଲିଆସିଲି ।

ରାସ୍ତାଘାଟରେ ବୁଲିବୁଲି ମୁଁ ସଞ୍ଜବେଳକୁ ଆସି ମ୍ୟୁନିସିପାଲିଟି ମାର୍କେଟ ପାଖରେ ଠିଆ ହୋଇଥିଲି । କାହାର ଜିନିଷ ବୋଝେଇ ଟ୍ରକ୍ ଆସି ଆଗରେ ରହିଲା । ପାଖରେ କେହି କୁଲି ନଥିଲେ । ଦୋକାନୀ ଆସି ଏପାଖ ସେପାଖ ଦେଖି କହିଲା, ଏ ଟୋକା, ଦେଖୁଚୁ କ'ଣ, ଟ୍ରକରୁ ଜିନିଷ ଓହ୍ଲା । ମୁଁ ଆଉ କିଛି ନ ଭାବି ଟ୍ରକ୍‌ରୁ ଜିନିଷ ଓହ୍ଲାଇବାରେ ଲାଗିଲି । ସୌଭାଗ୍ୟକୁ ସେ ଦୋକାନୀର ଲୋକ ଦରକାର ଥିଲା । ମୁଁ ଘରୁ ବାହାରି ଆସିବା ଦିନ ହିଁ ଚାକିରି ପାଇଲି, ଆଉ ସେଇ ଦୋକାନରେ ହିଁ ରହିବାରେ ଲାଗିଲି । କିଛିଦିନ ପରେ ଦାଦା ମତେ ଖୋଜି ଖୋଜି ଆସି ପହଞ୍ଚିଲେ । ମୁଁ କିନ୍ତୁ ତାଙ୍କୁ ସିଧା ସିଧା ମନା କରିଦେଲି ଯେ ମୁଁ ଆଉ ଘରକୁ ଫେରିବି ନାହିଁ ।

ଏଇ ଚାକିରିରୁ ଆରମ୍ଭ କରି ମୁଁ କେତେବର୍ଷ ଭିତରେ ହିଁ ମ୍ୟୁନିସିପାଲିଟି

ପଡ଼ିଆରେ ଖୋଲାରେ ବସି ମୋର ନିଜର ଛୋଟ ମନୋହାରୀ ଦୋକାନ ଆରମ୍ଭ କଲି । ଏ ଭିତରେ ଅନେକଥର ଦାଦା ଆସି ମତେ ଘରକୁ ଫେରିଯିବାକୁ କହନ୍ତି, କିନ୍ତୁ ମୁଁ ଆଉ ଯାଏ ନାହିଁ । ମୁଁ ଆସ୍ତେ ଆସ୍ତେ ମୋର ଦୋକାନକୁ ବଢ଼ାଇବାରେ ଲାଗିଲି । ଏଇ ସମୟରେ ମୋର ପରିଚୟ ହେଲା ଦୀନା ମାଷ୍ଟର ସହିତ। ଦୀନା ମାଷ୍ଟରଙ୍କର ଏଇ ଖୋଲା ପଡ଼ିଆରେ ବହିଦୋକାନ ଥିଲା । ଦୀନା ମାଷ୍ଟର ଖଦଡ଼ ପିନ୍ଧୁଥିଲେ, ଅତି ଶାନ୍ତ ଓ ଭଦ୍ର ପ୍ରକୃତିର ଥିଲେ ଏବଂ ସମସ୍ତଙ୍କ ସହିତ ଭଲ ସମ୍ପର୍କ ରଖୁଥିଲେ । କାହାର କିଛି ସମସ୍ୟା ହେଲେ ସେ ଦୀନା ମାଷ୍ଟର ପାଖକୁ ଯାଉଥିଲା ଏବଂ ଦୀନା ମାଷ୍ଟର ତାକୁ ସାହାଯ୍ୟ କରୁଥିଲେ ।

ଯୋଉଦିନ ମ୍ୟୁନିସିପାଲିଟିର ଲୋକମାନେ ଆସି ଆମକୁ ଟଙ୍କା ମାଗିଲେ, ଆମେ ବାହାରେ ଦୋକାନ କରିଥିବା ଲୋକମାନେ ଦୀନା ମାଷ୍ଟରଙ୍କ ପାଖକୁ ଗଲୁ । ଦୀନା ମାଷ୍ଟର କହିଲେ, ନା, ଆମେ ଲାଞ୍ଚ ଦେବାନାହିଁ । ଶେଷକୁ ମ୍ୟୁନିସିପାଲିଟିର ଲୋକ ଆମ ନାଁରେ କେଶ୍ କଲେ । ପୋଲିସ ଆସିଲା ଓ ଦୀନା ମାଷ୍ଟରଙ୍କ ଉପଦେଶକ୍ରମେ ଆମେ ପୋଲିସକୁ ବାଧା ଦେଲୁ । କିନ୍ତୁ ପୋଲିସ ଜବରଦସ୍ତି ଆମ ଦୋକାନସବୁ ଭାଙ୍ଗିଦେଲା । ଆମକୁ ଜେଲକୁ ପଠାଇ ଦିଆଗଲା । ଜେଲ ଭିତରେ ଆମେମାନେ ପୂରା ଅଠେଇଶ ଦିନ ଥିଲୁ । ସେଇ ସମୟଟି ଅତି ଅପ୍ରୀତିକର ହୋଇଥା'ନ୍ତା ଯଦି ଦୀନା ମାଷ୍ଟର ଆମ ସାଙ୍ଗରେ ନଥା'ନ୍ତେ । ଦୀନା ମାଷ୍ଟର ଆଗରୁ ଆନ୍ଦୋଳନବେଳେ ଜେଲ ଯାଇଥିଲେ ଏବଂ ଜେଲ ଭିତରେ ବି ମଣିଷ କିପରି ନିଜର ସମ୍ମାନ ରଖି ଚଳିପାରିବ ତା'ର ଉଦାହରଣ ଥିଲେ । ଆମେମାନେ ଟିକିଏ ଟିକିଏ କଥାରେ ବ୍ୟତିବ୍ୟସ୍ତ ହେଉଥିଲୁ, କିନ୍ତୁ ଦୀନା ମାଷ୍ଟରଙ୍କ ଶାନ୍ତ ପ୍ରକୃତିରେ ଟିକିଏ ବି ପରିବର୍ତ୍ତନ ହୋଇ ନଥିଲା । ଯଦିଓ ତାଙ୍କ ଉପରେ ତାଙ୍କର ପରିବାରର ଅନେକ ଦାୟିତ୍ୱ ଥିଲା, ସେ ଟିକିଏ ବି ବିଚଳିତ ନଥିଲେ ।

ଏହି ପୃଥିବୀ ବାହାରେ ଯେ ଜ୍ଞାନର ଏକ ସଂପୂର୍ଣ୍ଣ ପୃଥିବୀ ଅଛି ମୁଁ ସେକଥା ଦୀନା ମାଷ୍ଟରଙ୍କ ସଂସ୍ପର୍ଶରେ ଆସି ଜାଣିଲି । ଜେଲ ଗଲାବେଳେ ଦୀନା ମାଷ୍ଟର ତାଙ୍କ ଦୋକାନରୁ କିଛି ବହି ବ୍ୟାଗରେ ପୂରାଇ ଆଣିଥିଲେ । ସେଥିରୁ ଜେଲରେ ଥିବାବେଳେ ସେ ମତେ ପ୍ରଥମେ ସଂପୂର୍ଣ୍ଣ ମହାଭାରତ ପଢ଼ିବାକୁ ଦେଇଥିଲେ । ମୁଁ ଯଦିଓ ମହାଭାରତରୁ କିଛି କିଛି ଆଗରୁ ଜାଣିଥିଲି, ଜେଲର ବନ୍ଦ ପରିବେଶ ଭିତରେ ମହାଭାରତର ଗଳ୍ପମାନ ମତେ ଏକ ନୂଆ ଅଭିଜ୍ଞତା ଦେଲେ । କୌଣସି ବିଷୟରେ ମୋର ସନ୍ଦେହ ହେଲେ ମୁଁ ଯାଇ ଦୀନା ମାଷ୍ଟରଙ୍କୁ ପଚାରୁଥିଲି ଏବଂ ସେ ମତେ ସବୁକଥା ଅତି ପ୍ରାଞ୍ଜଳ ଭାବରେ ବୁଝାଇ ଦେଉଥିଲେ । ତାଙ୍କର ପ୍ରଭାବରୁ ହିଁ ମୋର ପଢ଼ିବା ପାଇଁ ଏକ ଅଦ୍ଭୁତ ଶ୍ରଦ୍ଧା ଜନ୍ମିଲା । ତା' ପରଠାରୁ ମୁଁ ସବୁ ପଢ଼ିବାରେ ଲାଗିଲି,

ଯାହାବି ବହି ହାତରେ ପଡ଼ିଲା । କହିବାକୁ ଗଲେ ମୋ ଭଳି ଗୋଟାଏ ନିଃସଙ୍ଗ ଲୋକ ପାଇଁ ବହିର ପୃଥିବୀ ହିଁ ଏକ ପଳାୟନର ଦେଶ ହୋଇଗଲା ।

କ'ଣ, ପୁଣି ଔଷଧ ଖାଇବାର ବେଳ ହୋଇଗଲା ? ସମୟ କେତେ ଶୀଘ୍ର ଚାଲିଯାଏ । ଦେଖୁ ଦେଖୁ ସକାଳ ଖରାବେଳ ଦେଇ ହଠାତ୍ ସନ୍ଧ୍ୟାବେଳ ଆସି ପହଞ୍ଚେ । କାଲି ସକାଳେ ବର୍ଷା ହେଉଥିଲା, କିନ୍ତୁ ଦେଖ, ଆଜି ସକାଳ କେମିତି ସୁନେଲି ଖରାରେ ଚକମକ କରୁଛି । ହୁଏତ ଇନ୍ଦ୍ରଧନୁ ବି ପଡ଼ିବ । ପୁଣି କାଲିର ସକାଳ କେମିତି ହେବ, କିଏ କହିବ ?

ମୁଁ ତମକୁ କଥା ଦଉଚି ନର୍ସ, ମୁଁ ତମ କଥା ମାନି ଚଳିବି । ଠିକ୍ ସମୟରେ ଔଷଧ ଖାଇବି ଏବଂ କାଲି ସକାଳକୁ ଆହୁରି କିଛି ଭଲ ହୋଇଯାଇଥିବି । କାଲିର ସକାଳ ଦେଖିବ ଆହୁରି ସୁନ୍ଦର ସକାଳ ଥିବ । ତମେ ଖାଲି ଦି ମିନିଟ ବସ, ନର୍ସ । ମୁଁ ତମକୁ ମୋ ନିଜକଥା ସଂକ୍ଷେପରେ କହିବି । ଭୀରୁ ଲୋକ ବାରମ୍ବାର ମୃତ୍ୟୁବରଣ କରେ ବୋଲି କୁହାଯାଇଥାଏ । ମୁଁ ସାହସୀ ଲୋକ ବୋଲି ନିଜକୁ ଭାବେ । ତା' ମାନେ କ'ଣ ମୁଁ ବାରମ୍ବାର ଜୀବନବରଣ କରିଥିଲି ? ମୋର ଗୋଟିଏ ଜୀବନ କ'ଣ ଅନେକ ଛୋଟ ଛୋଟ ଜୀବନର ସମଷ୍ଟି ଥିଲା ? ମୋର ମନୋହାରୀ ଦୋକାନ, ମୋର ଜେଲ ଯିବା, ମୋର ବିବାହ, ଏସବୁ କ'ଣ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଜୀବନ ଥିଲା ମୋ ପାଇଁ ?

ଜେଲରୁ ଆସି ବହି ଦୋକାନ ଖୋଲିବା କଥା ମୁଁ ତମକୁ କହିଥିଲି ନା? ଆମେ ସମସ୍ତେ ଆମର ଭୁଲ ପାଇଁ କ୍ଷମା ମାଗି ଭଲ ବ୍ୟବହାରର ବଣ୍ଡ ଲେଖି ଜେଲରୁ ବାହାରି ଆସିଲୁ । କେବଳ ଦୀନା ମାଷ୍ଟର ଭିତରେ ରହିଗଲେ, କାରଣ ସେ କାଗଜରେ ଦସ୍ତଖତ କଲେ ନାହିଁ । ପୁଣି ମ୍ୟୁନିସିପାଲିଟି ପଡ଼ିଆ ଉପରେ ଦୋକାନ ବସିଲା । ମ୍ୟୁନିସିପାଲିଟି ଏଥର ଏ ଦୋକାନ ସବୁକୁ ସ୍ୱୀକୃତି ଦେଲେ । ଦୀନା ମାଷ୍ଟରଙ୍କ ବଦଳରେ ଏଥରକ ବହିଦୋକାନ ମୋର ଥିଲା । ବ୍ୟବସାୟ ଭଲ ଚାଲିଲା । ଆମେମାନେ କିଛିଦିନ ପର୍ଯ୍ୟନ୍ତ ଜେଲକୁ ଯାଇ ଦୀନା ମାଷ୍ଟରଙ୍କୁ ଦେଖୁଥିଲୁ ଆଉ ତାଙ୍କ ପରିବାର କଥା ବୁଝୁଥିଲୁ । ତାଙ୍କର ସ୍ତ୍ରୀ କାହାଘରେ ଚାକରାଣୀ କାମ କରୁଥିଲେ ଏବଂ ତାଙ୍କର ପିଲାମାନଙ୍କର ସ୍କୁଲରୁ ନାଁ କଟିଯାଇଥିଲା । ଦୀନା ମାଷ୍ଟର କିନ୍ତୁ ଆଗଭଳି ଥିଲେ ଏବଂ ମକଦ୍ଦମାର ବିଭିନ୍ନ ତାରିଖ ଅପେକ୍ଷାରେ ଜେଲ ଭିତରେ ରହୁଥିଲେ । ତାଙ୍କ ନାଁରେ ପୋଲିସକୁ ବାଧା ଦେବା ଇତ୍ୟାଦି ବିଭିନ୍ନ ଦଫାରେ ମକଦ୍ଦମା ହୋଇଥିଲା । ସେ କିନ୍ତୁ ଅବିଚଳିତ ଥିଲେ ।

କ୍ରମେ କ୍ରମେ ଦୀନା ମାଷ୍ଟର ଏବଂ ତାଙ୍କ ପରିବାର ସହିତ ଆମର ସମ୍ପର୍କ କମି କମି ଆସିଲା । ଦୀନା ମାଷ୍ଟରଙ୍କୁ ଆମେ ଭୁଲିଗଲୁ । ଦିନେ ଖବର ପାଇଲୁ ଯେ ଦୀନା

ମାଷ୍ଟରଙ୍କର ସ୍ତ୍ରୀ ସହର ଛାଡ଼ି ତାଙ୍କ ଗାଁକୁ ଚାଲିଯାଇଛନ୍ତି । ଅନେକଦିନ ପରେ ସେ ପୁରୁଣା କେଶ୍ ବି ପ୍ରତ୍ୟାହୃତ ହୋଇଗଲା ଓ ଦୀନା ମାଷ୍ଟର ବି ଜେଲରୁ ବାହାରି ଗାଁକୁ ଚାଲିଗଲେ । ତାଙ୍କ ସହିତ ମୋର ଆଉ ଦେଖା ହେଲା ନାହିଁ । ଥରେ ଭାବିଲି ତାଙ୍କ ଗାଁର ଖବର ନେଇ ଯାଇ ତାଙ୍କୁ ଦେଖାକରି ଆସିବି । କିନ୍ତୁ ତା' ବି ହେଲା ନାହିଁ । ମୋର ଦୋକାନର କାମ ଭିତରେ ଆଉ ସମୟ ବାହାର କରିପାରିଲି ନାହିଁ । ଅନେକଦିନ ପରେ କିଏ ଆସି ଖବର ଦେଲା ଯେ ଦୀନା ମାଷ୍ଟର ମରିଗଲେଣି ।

ମୋର ଅନେକ ସମୟରେ ଦୀନା ମାଷ୍ଟରଙ୍କ କଥା ମନେପଡ଼େ । ମୁଁ ଜୀବନରେ ଯାହାକିଛି ପାଇଛି, ସବୁ ତାଙ୍କରି ଆଶୀର୍ବାଦରୁ । ସେ ମତେ ଗୋଟିଏ ନିତାନ୍ତ ସଂକୀର୍ଣ୍ଣ ସ୍ଥାନରୁ ଆଣି ଗୋଟିଏ ବିସ୍ତୃତ ପୃଥିବୀ ଉପରେ ପହଞ୍ଚାଇ ଦେଇ ଯାଇଥିଲେ । ସତ କହିବାକୁ ଗଲେ ମୋ ଜୀବନ ଉପରେ ତାଙ୍କରି ପ୍ରଭାବ ହିଁ ବେଶି ପଡ଼ିଥିଲା । ତାଙ୍କର ମରିବା ଖବର ପାଇ ଅନେକ ଦିନ ମତେ ଖରାପ ଲାଗିଲା ଏବଂ ଅନୁତାପ ହେଲା ଯେ ମୁଁ ତାଙ୍କ ପାଇଁ କିଛି କରିପାରିଲି ନାହିଁ ।

ଦୀନା ମାଷ୍ଟରଙ୍କ ମରିଯିବା ମୋ ପାଇଁ ମୃତ୍ୟୁର ପ୍ରଥମ ନିକଟ ଅଭିଜ୍ଞତା ଥିଲା। ମୁଁ ତାଙ୍କର ମରିବାକୁ ଠିକ୍ ଗ୍ରହଣ କରିନେଇ ପାରି ନଥିଲି । ମୋର ଅନେକ ସମୟରେ ମନେ ହେଉଥିଲା ଯେ ଦିନେ ସକାଳେ ହଠାତ୍ ଦୀନା ମାଷ୍ଟର ମୋ ଦୋକାନ ସାମନାରେ ଆସି ପହଞ୍ଚିବେ ଆଉ ତାଙ୍କ ବ୍ୟାଗରୁ ଆଉ କିଛି ବହି ବାହାର କରି ମତେ ଦେବେ । କିନ୍ତୁ ଯେତିକି ସମୟ ବିତିଲା, ଦୀନା ମାଷ୍ଟରଙ୍କର ସ୍ମୃତି ସେତିକି ଫିକା ପଡ଼ି ଆସିଲା ।

ଏଇ ସମୟରେ ଦିନେ ମୁଁ ମୋ ଖୁଡ଼ୀଙ୍କର ମରିଯିବାର ଖବର ପାଇଲି, ଆଉ ଅନେକବର୍ଷ ପରେ ଦାଦାଙ୍କ ଘରକୁ ଗଲି । ଦାଦାଙ୍କ ଘର, ଯୋଉଠି ମୁଁ ମୋର ପିଲାଦିନ କଟାଇଥିଲି, ବର୍ତ୍ତମାନ ମୋ ପାଇଁ ସଂପୂର୍ଣ୍ଣ ନୂଆ ଥିଲା । ସବୁ ସମ୍ପର୍କ ବର୍ତ୍ତମାନ ଔପଚାରିକ ହୋଇଯାଇଥିଲା । ତେବେ ତାଙ୍କ ଘରୁ ଫେରିବାବେଳେ ମୁଁ ପଛକଥା ଭାବି ଦେଖିଲି ଯେ ଖୁଡ଼ୀ ମତେ ପ୍ରକୃତରେ ଭଲ ପାଉଥିଲେ, ଆଉ ତାଙ୍କ ନିଜ ପିଲାଙ୍କ ପ୍ରତି ତାଙ୍କର ଯେତିକି ସ୍ନେହ ଥିଲା, ମୋ ପାଇଁ ବି ସେତିକି ସ୍ନେହ ଥିଲା । ଏଇ ଉପଲବ୍ଧି ପରେ ମୁଁ ନିଜ ମନ ଭିତରେ ଅନେକ ସାନ୍ତ୍ୱନା ପାଇଲି ଏବଂ ମୋର ନିଜର କୈଶୋର ଅବସ୍ଥା ପ୍ରତି ମୋର ଯେଉଁ ଆକ୍ରୋଶ ଥିଲା, ଦୂର ହୋଇଗଲା ।

ମୋର ବହି ଦୋକାନ ଭଲରେ ଚାଲିଲା । ମୁଁ ଅନେକ ପ୍ରକାରର ବହି ଆଣି ଦୋକାନରେ ରଖିଲି । ଅନେକ ସମୟରେ ସ୍କୁଲ କଲେଜ ପିଲାମାନେ ଆସି ଦୋକାନରେ ନୂଆ ନୂଆ ବହି ଓଲଟାଉ ଥିବା ଦେଖି ମୁଁ ବହିକୁ ଉଧାର ଦେବାର ବ୍ୟବସ୍ଥା କଲି । ଏକଥା ଆମ ସହରରେ ଏକ ନୂଆ ବ୍ୟବସ୍ଥା ଥିଲା । କ୍ରମେ କ୍ରମେ ମୋର ଦୋକାନ ବହି

ଉଧାର ଦେବା ଯୋଗୁଁ ହିଁ ବେଶ ଜଣାଶୁଣା ହୋଇଗଲା ଏବଂ ଛାତ୍ର ଛାତ୍ରୀମାନଙ୍କର ଏକ ଆଡ୍‌ଡ଼ା ମଧ୍ୟ । ମୁଁ ନିଜେ ବହୁତ ବହି ପଢ଼ିବାରେ ଲାଗିଲି ଏବଂ ବହି ନେବାପାଇଁ ଆସୁଥିବା ପିଲାମାନେ ମୋ ସହିତ ବହି ବିଷୟରେ ଆଲୋଚନା କରିବାରେ ଲାଗିଲେ । ମୁଁ କଲେଜରେ ପାଠ ପଢ଼ି ନଥିଲେ ବି ନିଜ ଉଦ୍ୟମରେ ଅନେକ ବିଷୟରେ ଅଧ୍ୟୟନ କରିଥିଲି । ଏଇ ସମୟରେ ସମସ୍ତେ ମତେ ପଣ୍ଡିତେ ବୋଲି ଡାକିବାରେ ଲାଗିଲେ ଏବଂ ମୁଁ ମଧ୍ୟ ଗ୍ରହଣ କରିନେଲି ଏଇ ନାଁକୁ ।

ତମକୁ କିନ୍ତୁ ଆଜି ହସିବାକୁ ହବ, ନର୍ସ । ମତେ ଦେଖ, ମରିବା ପାଖରୁ ଫେରିଆସି ବି ମୁଁ କେମିତି ଖୁସି ଅଛି। ମୁଁ ଯେଉଁଦିନ ତମକୁ ପ୍ରଥମେ ଦେଖିଲି, ଜାଣିଥିଲି ଯେ ତମର ନାଁ ମରିୟମ ହୋଇଥିବ । ଆଉ ତମେ ମତେ ନ କହିଥିଲେ ବି ମୁଁ ଜାଣେ ଯେ ତମର ମନ ଖରାପ । କିନ୍ତୁ ଦେଖ, ଆଜି ଦିନଟି କି ସୁନ୍ଦର ! ତମର ଚିଠି ନିଶ୍ଚୟ ଆସିବ । ଏମିତି ଗୋଟିଏ ସୁନ୍ଦର ଦିନ ବ୍ୟର୍ଥ ଯାଇପାରେନା ।

ମୁଁ ଆଜି ବେଶ୍ ଠିକ୍ ଅଛି, ନା ? ମତେ ଆଉ କେତେଦିନ ଲାଗିବ ଫେରିଯିବାକୁ ? ତମେ ମୋର ଏତେ ସେବା କଲଣି, ମୁଁ ତମର ଋଣୀ ହୋଇଗଲିଣି । ମୁଁ କିନ୍ତୁ ଯିବା ଆଗରୁ ତମକୁ ସବୁ କଥା କହିବି । ତମେ ମତେ ତମର ବାହାଘରର କାର୍ଡ଼ ପଠାଇବ ତ ? ମୁଁ ଯୋଉଠି ଥିଲେ ବି ଦେଖିବ ନିଶ୍ଚୟ ତମ ବାହାଘରେ ପହଞ୍ଚିବି । ମୁଁ ଜାଣେ ତମକୁ ଗୋଲାପ ଫୁଲ ଭଲ ଲାଗେ । ମୁଁ ସବୁଠାରୁ ସୁନ୍ଦର ଗୋଲାପ ଫୁଲ ଆଣିବି ତମ ପାଇଁ ।

ମୁଁ ତମକୁ ମୋ ବାହାଘର କଥା କହିଥିଲି ନା ? କ'ଣ ବା କୁହାଯାଇପାରେ ବର୍ଷକର ସଂକ୍ଷିପ୍ତ ଜୀବନ ବିଷୟରେ ? ଦିନେ ସକାଳେ ଦୋକାନରେ ବସିଚି, ଦାଦା ଆସି ପହଞ୍ଚିଲେ । ସେ ଆହୁରି ବୁଢ଼ା ହୋଇଯାଇଥିଲେ ଏଇ କେତେ ବର୍ଷ ଭିତରେ । ସେ ମୋର ବାହାଘରର ପ୍ରସ୍ତାବ ନେଇ ଆସିଥିଲେ । ମୋର ବୟସ ଅନେକ ହୋଇ ଯାଇଥିଲେ ବି ମୁଁ ବାହାହବା କଥା ଭାବି ନଥିଲି । ଦାଦାଙ୍କ କଥାରେ ରାଜି ହୋଇ ବାହା ହୋଇଗଲି । ମୁଁ ସେତେବେଳକୁ ଜାଣି ନଥିଲି ଯେ ମୁଁ ଯାହାକୁ ବାହାହବାକୁ ଯାଉଛି, ତା'ର ବୟସ ମୋର ବୟସରୁ ଅନେକ କମ୍ ଏବଂ ଏ ହେଉଚି ସେଇ ଝିଅଟି, ଯେ ଚୁପ୍‌ଚୁପ୍ ଆସି ମୋ ଦୋକାନରୁ କବିତା ବହି ଉଧାରରେ ନେଉଥିଲା ।

ବୈବାହିକ ଜୀବନ ଯେ ମଣିଷକୁ ଏତେ ପୂର୍ଣ୍ଣତା ଦେଇପାରେ ମୋର ଧାରଣା ନଥିଲା । ମତେ ଲାଗିଲା ଯେମିତି ମୋର ଜୀବନ ସଂପୂର୍ଣ୍ଣ ହୋଇଯାଇଛି । ମୋର ବ୍ୟବସାୟ ଏଥର ଭଲ ଭାବରେ ଚାଲିଲା । ମୁଁ ଦୋକାନ ପାଇଁ ଲୋକ ରଖିଲି । ବଡ଼ଘର ଭଡ଼ା ନେଇ ରହିଲି । ମୋର ଜୀବନ ସୁଚରିତା ଚାରିପାଖେ କେନ୍ଦ୍ରିତ ହୋଇଗଲା । ମୁଁ ଜୀବନରୁ ଆଉ କିଛି ଚାହୁଁ ନଥିଲି ଏଥରକ, କାରଣ ମତେ ସବୁକିଛି ମିଳିଯାଇଥିଲା ।

ଗୋଟିଏ ବର୍ଷରେ ମୋ ଜୀବନର ଏଇ ସୁଖର ଅଧ୍ୟାୟ ହଠାତ୍ ସରିଗଲା । ମୃତ୍ୟୁ ସହିତ ମୋର ଆଗରୁ ଘନିଷ୍ଠ ପରିଚୟ ନଥିଲା । ଖୁଡ଼ୀ ମରିଗଲାବେଳେ ମତେ କିଛି ବି ଲାଗିନଥିଲା । ଦୀନା ମାଷ୍ଟର କେବେ ମଲେ ମୁଁ ଜାଣିପାରି ନଥିଲି । କିନ୍ତୁ ସୁଚରିତା ମୋରି ଆଗରେ ଧୀରେ ଧୀରେ ଚାଲିଗଲା, ମୋରି କୋଳରେ ମଥାରଖି । ପ୍ରସବ ପରେ ହିଁ ସବୁ ଜଟିଳତା ଆରମ୍ଭ ହେଲା । ଜନ୍ମ ହୋଇଥିବା ଶିଶୁଟି ହିଁ ସୁଚରିତାର ମୃତ୍ୟୁର କାରଣ ହେଲା । ସୁଚରିତାର ବିଛଣା ପାଖରେ ବସି ତାକୁ ଧୀରେ ଧୀରେ ମତେ ଛାଡ଼ି ଦୂରକୁ ଚାଲିଯିବାର ଦେଖିବାବେଳେ ମୁଁ ଖାଲି ଗୋଟିଏ ମାତ୍ର କଥା ଭାବୁଥିଲି, ଏ ଛୁଆ ବି ମରିଯାଉ । ଶେଷରେ ମୋରି କଥା ହେଲା । ଶ୍ମଶାନରେ ସୁଚରିତାର ଅଠର ବର୍ଷର ଦେହ, ମୋର ସୁଖଶାନ୍ତିର ଭବିଷ୍ୟତ, ପୃଥିବୀରେ ସବୁ ସୁନ୍ଦର ସକାଳ-ସନ୍ଧ୍ୟାକୁ ଚିତା ଉପରେ ରଖି ଫେରି ଆସିବାର ଅଳ୍ପ କେତେଦିନ ଭିତରେ ହିଁ ପିଲାଟି ମରିଗଲା । ସୁଚରିତା ସହିତ ମୋର ସମସ୍ତ ବନ୍ଧନ କଟିଗଲା ।

କିନ୍ତୁ ବନ୍ଧନ ସବୁ କ'ଣ ଏମିତି ସହଜରେ କଟେ ? ମୋର ଜୀବନର ସବୁ କିଛି ବଦଳିଗଲା । ମୁଁ ସୁଚରିତା ପାଖକୁ ଚାଲିଯିବାକୁ ଚାହିଁଲି । ମୁଁ ଏଥରକ ମରିଯିବାର ଅଧିକାର ବିଷୟରେ ପଢ଼ିବାକୁ ଲାଗିଲି । କାଲିଫର୍ଣ୍ଣିଆର ହେମ୍‌ଲକ୍ ଏବଂ ଲଣ୍ଡନର ଏକଜିଟ୍ ସଂସ୍ଥାମାନଙ୍କ ସହିତ ପତ୍ରାଳାପ କଲି । ମୁଁ ଶେଷରେ ଏଇ ନିର୍ଣ୍ଣୟରେ ପହଞ୍ଚିଲି ଯେ ମୋର ନିଜର ଜୀବନକୁ ନେଇଯିବାର ଅଧିକାର ମୋର ଅଛି ଏବଂ ମୁଁ ସ୍ୱଇଚ୍ଛାରେ ମୋର ମୃତ୍ୟୁକୁ ବରଣ କରିବି ।

ଏତିକିବେଳେ ମୋର ସେଇ ତିବ୍‌ବତୀ ଲାମା କଥା ମନେ ପଡ଼ିଲା। ଡିସେମ୍ବର ସତର ତାରିଖ । ମୁଁ ଏଥରକ ମୋର ଜନ୍ମଦିନ ପାଳନ କରିବ । ବଦଳରେ ମୋର ମୃତ୍ୟୁଦିନ ପାଳନ କରିବାରେ ଲାଗିଲି । ମୋର ବୟସ ମୋର ଜନ୍ମଦିନଠାରୁ କେତେଦିନ ହେଲା ମୁଁ ସେକଥା ଭାବୁନଥିଲି । ମୁଁ ଭାବୁଥିଲି ମୃତ୍ୟୁଦିନଠାରୁ ମୋ ଜୀବନ ଆଉ କେତେଦିନ ଅବଶିଷ୍ଟ ଅଛି। ଏଥିପାଇଁ ମତେ କେହି କେହି ଉପହାସ ମଧ୍ୟ କରୁଥିଲେ। କିନ୍ତୁ ମୋର ସ୍ତ୍ରୀର ମୃତ୍ୟୁପରେ ମୁଁ ସାମାଜିକ ବନ୍ଧନ ସବୁ କାଟି ଦେଇଥିଲି ଏବଂ କାହାରି କିଛି କହିବା ପ୍ରତି ଭ୍ରୂକ୍ଷେପ କରୁ ନଥିଲି ।

ଯଦିଓ ମୋର ମରିବା ସମୟ ବେଶ୍ କିଛିଦିନ ବାକି ଥିଲା, ମୁଁ ସମ୍ପର୍କ ସବୁ କାଟିବାରେ ଲାଗିଲି । ଅବଶ୍ୟ ଏ କେବଳ ଏକ ମାନସିକ ଅବସ୍ଥା ମାତ୍ର ଥିଲା । କାରଣ ମଣିଷର ଯେତେ ଯାହା ହେଲେ ବି ତାକୁ ବଞ୍ଚିବାକୁ ହୁଏ ଏବଂ ତା'ର ବଞ୍ଚିବାର ଦାୟିତ୍ୱରୁ ମୁକ୍ତି ନାହିଁ । ମତେ ମୋର ଦୋକାନ ଚଳାଇବାକୁ ହେଲା ଏବଂ ଅନ୍ତତଃ କିଛି ଲୋକଙ୍କ ସହିତ ସମ୍ପର୍କ ରଖିବାକୁ ହେଲା । ମୁଁ ଏବେ ବେଶ୍ ଗମ୍ଭୀର ପ୍ରକୃତିର ହୋଇଯାଇଥିଲି ଏବଂ ସମସ୍ତଙ୍କ ସହିତ କମ୍ କଥାବାର୍ତ୍ତା କରୁଥିଲି । ଫଳରେ ମୋର ବନ୍ଧୁଙ୍କର ସଂଖ୍ୟା

ଅନେକ କମିଯାଇଥିଲା ।

ମୁଁ ଏଥର ସମୟ ବିନିଯୋଗ କରୁଥିଲି ମୃତ୍ୟୁ ବିଷୟରେ ଜାଣିବା ପାଇଁ । ମୁଁ ଏଇ ସମୟରେ ହିଁ ସଲ୍ଲେଖନା ସମ୍ବନ୍ଧରେ ପଢ଼ିଥିଲି ଏବଂ ଏକଜିଟ୍ ସଂସ୍ଥାରୁ ପାଇଥିବା କାଗଜମାନଙ୍କରୁ ଆତ୍ମହତ୍ୟା ବିଷୟରେ ଜାଣିବାକୁ ପାଇଥିଲି । ମୋର ମୃତ୍ୟୁ ମୁଁ କିଭଳି ବରଣ କରିବି, ସେ ବିଷୟରେ ମୋର ନିଜର ଏକ ନିର୍ଦ୍ଦିଷ୍ଟ ଧାରଣା ହୋଇସାରିଥିଲା । ମୁଁ ଅନେକ ଥର ମୋର ଉଇଲ ଲେଖିବା ପାଇଁ ଭାବି ମଧ ଶେଷରେ ଲେଖି ନଥିଲି । ମୋର ଯାହା କିଛି ସମ୍ବଳ ଥିଲା ତାକୁ ସବୁ ଦୀନା ମାଷ୍ଟରଙ୍କ ପରିବାର ନାଁରେ ଲେଖିଦେବା ପାଇଁ ମୋର ଇଚ୍ଛା ଥିଲା, କିନ୍ତୁ ଅନେକ ଚେଷ୍ଟା ସତ୍ତ୍ୱେ ମୁଁ ସେମାନଙ୍କର ଖୋଜ ଖବର ପାଇଲି ନାହିଁ । ତା'ପରେ ମୁଁ ଆଉ ମୋର ସମ୍ପତ୍ତିର ଭବିଷ୍ୟତ ବିଷୟରେ କିଛି ଭାବିଲି ନାହିଁ ।

ଆରେ, ତମେ ଜାଣୁଚ ନା କ'ଣ, ନର୍ସ ? ପାଖ କୋଠରିରେ ସେଇ ସ୍ତ୍ରୀ ଲୋକଟି ମରିଗଲା ବୋଲି ? ମଣିଷ କିନ୍ତୁ ଅସୀମ ଶକ୍ତି ଏବଂ ସହନଶୀଳତାର କେନ୍ଦ୍ର । ସ୍ତ୍ରୀଲୋକଟିର ସ୍ୱାମୀ ସନ୍ତାନ ସମସ୍ତେ ସ୍ୱୀକାର କରିନେବେ ତା'ର ମୃତ୍ୟୁକୁ । ପୃଥିବୀ ଅନ୍ତହୀନ ସମ୍ଭାବନାରେ ପରିପୂର୍ଣ୍ଣ । ଜୀବନ ପୁଣି ଘେରି ନେବ ସମସ୍ତଙ୍କୁ । ତମେ ବିଶ୍ୱାସ କରୁନାହଁ ? ଦେଖ, ମୁଁ ମୃତ୍ୟୁକୁ ଛୁଇଁ ଫେରି ଆସିଛି । ଯେତେବେଳେ ମୁଁ ମୃତ୍ୟୁବରଣ କରିବାର ନିଶ୍ଚୟ ନେଲି, ପ୍ରଥମେ ମୋର ଇଚ୍ଛାର ମୃତ୍ୟୁ ହୋଇଗଲା । ତା'ପରେ ସୁଖର ମୃତ୍ୟୁ । ଭୟର ମୃତ୍ୟୁ ; ଦୁଃଖର ମୃତ୍ୟୁ । କିନ୍ତୁ ମୃତ୍ୟୁକୁ ଛୁଇଁ ଆସିବା ପରେ କ'ଣ ହେଲା ଜାଣ ? ମୋର ଏବେ ଆଉ ଭୟ ନାହିଁ, ଇଚ୍ଛା ନାହିଁ, ଦୁଃଖ ନାହିଁ । କେବଳ ଏକ ଅପରିହାର୍ଯ୍ୟ ବଞ୍ଚିବାର ଶକ୍ତି । ଘଟଣାର ସ୍ରୋତରେ ପୁଣି ଜୀବନ ମଣ୍ଡିତ ହୋଇଯିବ ।

ମୋ ନିଜକୁ ଦେଖ । ମୁଁ ଯଦି ଆତ୍ମହତ୍ୟାର ଚେଷ୍ଟା କରିନଥା'ନ୍ତି, କ'ଣ ତମ ସହିତ ଦେଖା ହୋଇଥା'ନ୍ତା ? କାଲି ମୋ ପାଇଁ କ'ଣ ଆଣିବ ? କି ପ୍ରକାର ଦିନ ? ଏକଥା ଭାବିଲେ ବର୍ତ୍ତମାନ ମୁଁ ଅନେକ କିଛି ଦେଖି ପାରୁଛି । ଅନେକ ନୂଆ ଚେହେରା । ଅନେକ ନୂଆ ଜାଗା । ଅନେକ ନୂଆ ଅନୁଭୂତି । ଯାହାର କୌଣସି ଶେଷ ନାହିଁ । ବିକଳ୍ପ ନାହିଁ । ମୁଁ ଜାଣିପାରୁଛି ଯେ ମୋର ମୃତ୍ୟୁ ପାଇଁ ଯେତିକି ଅଧିକାର ଅଛି, ବଞ୍ଚିବାର ମଧ ସେତିକି ଅଧିକାର ଅଛି । ଜୀବନର କୌଣସି ସାମୟିକ ଅନୁଭୂତି ମୋ ପାଖରୁ ସେ ଅଧିକାରକୁ ଛଡ଼ାଇ ନେଇ ପାରିବ ନାହିଁ ।

ମୁଁ ସେଥିପାଇଁ ମୃତ୍ୟୁକୁ ଅସ୍ୱୀକାର କରିନେଲି । ନିଦର ଔଷଧ ମୋର ଗଭୀର ନିଦ୍ରାକୁ ମହାନିଦ୍ରାରେ ପରିଣତ କରିବା ଆଗରୁ ମୁଁ ମୋର ସିଦ୍ଧାନ୍ତକୁ ପ୍ରତ୍ୟାହାର କରିନେଲି । ମୋର ଅବଶ ହାତ ମୋର ଏଇ ନିର୍ଣ୍ଣୟକୁ ମାନି ଟେଲିଫୋନ ଉଠାଇଲା ।

ମୁଁ ମୋର ହୋଟେଲର କୋଠରିରୁ ଓହ୍ଲାଇ ଆସି ଡାକ୍ତରଖାନାର ଖଟ ଉପରେ ଶୋଇଗଲି ।

ମୋର ଆଉ ହାତ ନଥିଲା ; ହାତ ଦୁଇଟି ଡେଣାରେ ପରିଣତ ହୋଇ ଯାଇଥିଲା । ମୁଁ କୋଠରିର ଛାତ ପାଖରେ ଭାସୁଥିଲି । କ୍ରମଶଃ ଅନ୍ଧାର ମିଳେଇଗଲା ଏବଂ ସବୁ ସ୍ପଷ୍ଟ ଦେଖାଗଲା । ତଳେ ଶୋଇଥିବା ଲୋକଟି ନିଜେ ମୁଁ ଥିଲି । ତା'ପରେ ମୁଁ ପୁଣି ସୁଚରିତାକୁ ଦେଖିଲି । ସୁଚରିତା ମୋ ପାଖରେ ଉଡ଼ି ବୁଲୁଥିଲା । ମୁଁ ଏମିତି ରାସ୍ତା ଦେଇ ଯାଉଥିଲା ଯେଉଁଠାରେ ଆଉ କେହି ନଥିଲେ ଏବଂ ମୁଁ ହଠାତ ଜେଲଖାନା ଭିତରେ ପଶିଗଲି । ସେଠାରେ ଚିତା ଜଳୁଥିଲା ଆଉ ଚିତା ଭିତରୁ ଖୁଡ଼ୀ ମୋ ଆଡ଼କୁ ଚାହିଁ ହସୁଥିଲେ । ଲୋକଗହଳି ଭିତରେ ଦୀନା ମାଷ୍ଟର ନଥିଲେ କିନ୍ତୁ ସେଇ ଲୋକଟି ଥିଲା, ଯାହାକୁ ମୃତ୍ୟୁଦଣ୍ଡରୁ ବଞ୍ଚାଇବା ପାଇଁ ଦୀନା ମାଷ୍ଟର ଚେଷ୍ଟା କରୁଥିଲେ । ସଦ୍ୟଜାତ ଶିଶୁଟି ମୋ ଆଡ଼କୁ ହାତ ବଢ଼ାଉଥିଲା । ମ୍ୟୁନିସିପାଲିଟିର ଦୋକାନସବୁ ଭାଙ୍ଗି ପୋଲିସ ଠିଆ ହୋଇଥିଲେ, କିନ୍ତୁ ତାଙ୍କ ପଛରେ ନୂଆ ଦୋକାନଘର ସବୁ ନିଖୁଣ ଭାବରେ ରହିଥିଲା । ପିଲାମାନେ ଉଡ଼ିଉଡ଼ି ଆସି ମୋ ଦୋକାନରୁ ବହି ଉଠାଇ ଦେଖୁଥିଲେ ଏବଂ ମୁଁ ସୁଚରିତା ହାତକୁ ନୂଆ କବିତାର ବହି ବଢ଼ାଇ ଦେଉଥିଲି ।

ସୁଚରିତା ଫ୍ରକ୍ ପିନ୍ଧି ଠିଆ ହୋଇଥିଲା । ସୁଚରିତା ହସୁଥିଲା । ସୁଚରିତା ମଥାରେ ସିନ୍ଦୂର ଥିଲା । ସୁଚରିତା ସିନେମା ହଲରେ ମୋ ହାତ ଉପରେ ହାତ ରଖୁଥିଲା । ସୁଚରିତା ଗର୍ଭବତୀ ଥିଲା । ସୁଚରିତା ସୁନେଲି ଖରାରେ ଚକ୍‌ଚକ୍ କରୁଥିବା ଇନ୍ଦ୍ରଧନୁ ଉପରେ ଶୋଇଥିଲା । ହସପିଟାଲର ଫାଟକ ପାଖରେ ସୁଚରିତା ନର୍ସର ପୋଷାକ ପିନ୍ଧି ଠିଆ ହୋଇଥିଲା ।

ଜୀବନ ବି ଦୁଇ ପ୍ରକାରର ହୋଇପାରେ ; ଗୋଟିଏ ହେଉଛି ଅନିଚ୍ଛାକୃତ ଜୀବନ, ଯାହା ଅଜ୍ଞ ଲୋକମାନଙ୍କର ଜୀବନ । ବିଜ୍ଞ ଲୋକମାନଙ୍କର ଜୀବନ ହେଉଛି ସ୍ୱେଚ୍ଛାକୃତ ଜୀବନ । ତମେ ବୋଧହୁଏ ବୋର୍ ହୋଇଯାଉଛ, ନର୍ସ । ମୋ ଆଡ଼କୁ ଦେଖ । ଆରେ, ତମେ ତ ମରିୟମ ନୁହଁ ! କିନ୍ତୁ ମୁଁ ତମର ନାଁ ବି ଜାଣେ ।

# ସତ୍ୟାସତ୍ୟ

ପଦ୍ମଧର ହାତ ଉଠାଇ ଆଉଥରେ ଘଡ଼ିକୁ ଦେଖିଲା । ସେ ଯାହାକୁ ଅଧଘଣ୍ଟା ସମୟ ବୋଲି ଭାବିଥିଲା, ପ୍ରକୃତରେ ସାତ ମିନିଟ ମାତ୍ର ଥିଲା । ତା' ସହିତ ବିଶ୍ୱାସଘାତକତା କରି ସମୟ ଯେପରି ଅତି ଧୀର ମନ୍ଥର ଗତିରେ ଚାଲୁଥିଲା । ସେ ତା'ର ଓକିଲ ଆଡ଼କୁ ଅନାଇଲା, କିନ୍ତୁ ସେ ମଧ୍ୟ ଏଇ ସମୟ ଭିତରେ ଅନ୍ୟତ୍ର ଚାଲିଯାଇଥିଲା । ତା' ସାମନାରେ କଚେରିର କାର୍ଯ୍ୟକ୍ରମ ପୂର୍ବଭଳି ଅବ୍ୟାହତ ରହିଥିଲା ଏବଂ ସେଇ ସାକ୍ଷୀଟିର ଜବାନବନ୍ଦୀ ଏ ପର୍ଯ୍ୟନ୍ତ ସରି ନଥିଲା ।

ଏଇଟି ପଦ୍ମଧରର ଦ୍ୱିତୀୟ ତାରିଖ ଥିଲା । ମକଦ୍ଦମାର ପରିଣତି ଆଗରୁ ଜଣାଥିଲା । ତା'ର ଓକିଲ ତାକୁ କହିଥିଲା ଯେ ତାକୁ ସେ ଭଡ଼ାଘର ଛାଡ଼ିବାକୁ ହିଁ ପଡ଼ିବ, କିନ୍ତୁ ସେ ମକଦ୍ଦମା କରି ଏଇ ଘର ଛାଡ଼ିବା ସମୟକୁ ଦୁଇ ତିନିବର୍ଷ ଗଡ଼େଇ ଦେଇପାରିବ । ପଦ୍ମଧର ଆହୁରି ମଧ୍ୟ ଜାଣିଥିଲା ଯେ ଦୁଇ ତିନିବର୍ଷ ଆଗରୁ ହିଁ ଏଇ ସହରକୁ ତା'ର ବଦଳି ହୋଇଯାଇଥିବ ଏବଂ ତା'ର ଆଉ ଘରର ପ୍ରୟୋଜନ ନଥିବ । ଏସବୁ ଜାଣିବା ସତ୍ତ୍ୱେ ବି ପଦ୍ମଧରକୁ ଏଇ ନ୍ୟାୟ ବିଚାରର ବିଭିନ୍ନ ପର୍ଯ୍ୟାୟ ଦେଇ ଯିବାକୁ ପଡୁଥିଲା ।

ମକଦ୍ଦମାକୁ କିପରି ବିଳମ୍ବାନ୍ୱିତ କରାଯାଇପାରିବ, ତା'ର ଓକିଲ ସେ ବିଷୟରେ ସିଦ୍ଧହସ୍ତ ଥିଲା । ଓକିଲର କହିବା ଅନୁସାରେ ପଦ୍ମଧରର ମଙ୍ଗଳ ଥିଲା ମକଦ୍ଦମାର ଯେତେ ବେଶି ତାରିଖ ହୋଇପାରିବ ସେଥିରେ । ସେଥିପାଇଁ ଓକିଲ ଆସି ମଝିରେ ମଝିରେ ପଦ୍ମଧରକୁ କହୁଥିଲା : ଆମକୁ ଆଜି ଆଫିଡେଭିଟ୍ ଦେବାକୁ ପଡ଼ିବ ଅଥବା, ଆଜି ଆମର ଦେହ ଖରାପ ଥିବାରୁ ଆମକୁ ନୂଆ ତାରିଖ ପାଇଁ ଦରଖାସ୍ତ ଦେବାକୁ ହେବ । ଏଇ ଅସୁସ୍ଥତାକୁ ସାବ୍ୟସ୍ତ କରିବା ପାଇଁ ପଦ୍ମଧରକୁ କଲେଜରୁ ଛୁଟି ନେବାକୁ ମଧ୍ୟ ହେଉଥିଲା ।

ମକଦ୍ଦମା ଦାଖଲ ହେବାର ଛ'ମାସ ପର୍ଯ୍ୟନ୍ତ କୌଣସି ତାରିଖ ହୋଇ ନଥିଲା । ପଦ୍ମଧର ଜାଣିଥିଲା ଏ ତା'ର ଓକିଲର ବାହାଦୁରୀ । ଓକିଲ ଆସି ମଝିରେ ମଝିରେ ବିଭିନ୍ନ ପ୍ରକାର କାଗଜରେ ତା'ର ଦସ୍ତଖତ ନେଇଯାଉଥିଲା ଏବଂ ଯେତେବେଳେ

ପର୍ଯ୍ୟନ୍ତ ପଦ୍ମଧରକୁ କଚେରିକୁ ଯିବାକୁ ପଡ଼ିନଥିଲା ସେ ବେଶ୍ ଖୁସି ଥିଲା । କିନ୍ତୁ ଶେଷରେ ସମୟ ଆସିଲା ଓକିଲ ଆଉ ମକଦ୍ଦମାର ତାରିଖକୁ ଗଡ଼ାଇ ପାରିଲା ନାହିଁ । ଦିନେ ସଞ୍ଜବେଳେ ଓକିଲର ଲୋକ ଆସି ପଦ୍ମଧରକୁ ଖବର ଦେଲା, ଆମକୁ କାଲି କଚେରିକୁ ଯିବାକୁ ହେବ ।

ଏଇଟି ପଦ୍ମଧରର କଚେରି ଯିବାର ପ୍ରଥମ ଅଭିଜ୍ଞତା ଥିଲା । ସକାଳୁ ଖାଇପିଇ କଲେଜରୁ ଛୁଟି ନେଇ ସେ ଓକିଲ ଘରକୁ ଗଲା ଏବଂ ସେଠାରୁ ସେମାନେ କଚେରିକୁ ଗଲେ । କଚେରିରେ ପହଞ୍ଚି ଓକିଲ ପୁଣି ଅନେକ ପ୍ରକାର କାଗଜରେ ତା'ର ଦସ୍ତଖତ ନେଲା । ଯୋଉ ହାକିମଙ୍କ ପାଖରେ ତା'ର ମକଦ୍ଦମା ଥିଲା, ତାଙ୍କ କଚେରିଘର ଉପର ମହଲାରେ ଥିଲା । ସିଡ଼ି ପାର ହୋଇ ତାକୁ କଚେରି ଘରେ ବସାଇ ଦେଇ ଓକିଲ ଅନ୍ୟ କାମରେ ଚାଲିଗଲା । ହାକିମ ସେ ପର୍ଯ୍ୟନ୍ତ ଆସି ନଥିଲେ, କିନ୍ତୁ ପଦ୍ମଧର ଦେଖିଲା ଯେ, କଚେରି କାମରେ କୌଣସି ବ୍ୟତିକ୍ରମ ନଥିଲା । ସାକ୍ଷୀ, ପୁଲିସ, ଆସାମୀ, ମୋହରିର, ଓକିଲ, ମହକିଲ ସମସ୍ତେ ବ୍ୟସ୍ତ ଭାବରେ ଏପାଖ ସେପାଖ ଯିବା ଆସିବା କରୁଥିଲେ ଏବଂ ପଗଡ଼ିପିନ୍ଧା ପିଅନ ମଝିରେ ମଝିରେ ଥାକ ଥାକ ଫାଇଲକୁ ଏ ପାଖରୁ ସେ ପାଖକୁ କରୁଥିଲା । ବିଭିନ୍ନ ଲୋକ ବିଭିନ୍ନ କାଗଜ ଉପରେ ଦସ୍ତଖତ କରୁଥିଲେ। ପଦ୍ମଧରକୁ ଏ ଗୋଟିଏ ମେଳା ଭଳି ଲାଗୁଥିଲା, ଯେଉଁଠି ନ୍ୟାୟବିଚାର ନେବାକୁ ଆସିଥିବା ଲୋକମାନେ ଟିପଚିହ୍ନ, କୋର୍ଟ ଫି, ଷ୍ଟାମ୍ପ କାଗଜ, ତାରିଖ, ଓକାଲତନାମା ଓ ସମନ ଭଳି ସାମାନ୍ୟ ଜିନିଷମାନ କିଣିନେଇ ଚାଲିଯାଉଥିଲେ ।

ପ୍ରଥମ ତାରିଖ ଦିନ ପଦ୍ମଧରକୁ ସବୁ କିଛି ନୂଆ ନୂଆ ଲାଗିଥିଲା ଏବଂ କଚେରିର କାର୍ଯ୍ୟକଳାପ ତାକୁ ବିରକ୍ତିକର ଜଣାଯାଇ ନଥିଲା । ହାକିମ ସେଠାରେ ନଥିଲେ ଏବଂ ଯଦିଓ ଏକଥା କେହି ସେମାନଙ୍କୁ ସଠିକ ଭାବରେ ଜଣାଇ ନଥିଲା, ଲୋକମାନେ କଥାବାର୍ତ୍ତା କରୁଥିଲେ ଯେ, ହାକିମ ପହଞ୍ଚି ଯାଇଛନ୍ତି ଏବଂ ତାଙ୍କ ଚେମ୍ବରରେ ଅଛନ୍ତି । ଏକଥା ଶୁଣି ପଦ୍ମଧରର ମନେହୋଇଥିଲା ଯେ ହାକିମ ଖୁନ୍, ରାହାଜନୀ, ଜନାକାରୀ ଜାତୀୟ କୌଣସି ଗୁରୁତର ମକଦ୍ଦମାର କାଗଜପତ୍ର ନେଇ ଭିତରେ ବ୍ୟସ୍ତ ଅଛନ୍ତି । ଏଭଳି ଜଣେ ହାକିମଙ୍କ ପାଖରେ ସେ ତା'ର ଭଡ଼ାଘର ଭଳି ଅତି ଗୌଣ ମକଦ୍ଦମା ଦାଖଲ କରିଥିବାରୁ ମନେ ମନେ କ୍ଷୁଣ୍ଣ ଓ ଲଜ୍ଜିତ ହେଉଥିଲା ।

ଏଇ ସମୟରେ ଧଇଁସଇଁ ହୋଇ ତା'ର ଓକିଲ ଆସି ପହଞ୍ଚିଲା । ତା'ର ଓଠରୁ ପାନର ଧାର ବହିଯାଉଥିଲା ଓ ଝାଳ ଲାଗି ତା'ର କଳା କୋଟ ଛାପିଛାପିକା ଦେଖାଯାଉଥିଲା । ତା'ର ମକଦ୍ଦମା ଆରମ୍ଭ ହେବ ମନେକରି ପଦ୍ମଧର ସଜାଗ ହୋଇ ବସିଲା, କିନ୍ତୁ ଓକିଲ ତାକୁ ସମ୍ବାଦ ଦେଲା ଯେ, ଆଜି ହାକିମ ଆଉ ଆସିବେ ନାହିଁ । ଏତିକି କହି ଓକିଲ ଯାଇ କିରାଣି ପାଖରେ ଆସନ୍ତା ତାରିଖର ମୂଳ କଲା । ସେଠାରୁ

ଆସି ନିଜର ଛାପିଛାପିକା କୋଟରୁ ଅଦୃଶ୍ୟ ଧୂଳି ଝାଡୁ ଝାଡୁ ସେ ପଦ୍ମଧରର କାନରେ ଆଗାମୀ ତାରିଖଟି ଫୁସ୍‌ଫୁସ୍ କରି କହିଲା ଏବଂ ପୁଣି ବ୍ୟସ୍ତ ଭାବରେ ବାହାରି ଗଲା ।

କଚେରି ଘରୁ ବାହାରିବା ବେଳେ ପଦ୍ମଧର ହାକିମଙ୍କର ଚେମ୍ବର କୁହାଯାଉଥିବା କୋଠରିକୁ ଉଙ୍କିମାରି ଅନାଇଲା । କୋଠରିଟି ଅତି ସଂକୀର୍ଣ୍ଣ, ଅନ୍ଧକାରଚ୍ଛନ୍ନ ଓ ଆବର୍ଜନାପୂର୍ଣ୍ଣ ଥିଲା । କୋଠରିରେ ଥିବା ଟେବୁଲ ଉପରେ ସମୟ ଲାଗି ହଳଦିଆ ପଡ଼ିଯାଇଥିବା ବିଡ଼ା ବିଡ଼ା କାଗଜ, ପାଣି ନଥିବା ସୁରେଇ, ଭଙ୍ଗା ଗିଲାସ, ଅଧା ଶୋଇବା ଅବସ୍ଥାରେ ଥିବା ଦୁଆତ ଏବଂ ଅନେକବର୍ଷ ତଳରୁ ଛିଣ୍ଡା କ୍ୟାଲେଣ୍ଡର ଇତ୍ୟାଦି ଇତସ୍ତତଃ ଭାବରେ ରହିଥିଲା । ପାଖରେ ପଡ଼ିଥିବା ଚଉକିର ତିନୋଟି ଗୋଡ଼ ଥିଲା ଏବଂ କେତୋଟି ଇଟା ପରସ୍ପର ଉପରେ ଭରା ଦେଇ ଚତୁର୍ଥ ଗୋଡ଼ର କାମ ସମ୍ପାଦନ କରୁଥିଲେ । ଏଇ ଗୁପ୍ତ କୋଠରିକୁ ଦେଖିବା ପରେ ହାକିମଙ୍କର ପ୍ରତିପତ୍ତି ବିଷୟରେ ପଦ୍ମଧରର ସାମାନ୍ୟ ସନ୍ଦେହ ହେଲା । କିନ୍ତୁ ତାଙ୍କ ସମ୍ବନ୍ଧରେ ଓକିଲ କହିଥିବା ସର୍ବୋତ୍ତମ ବିଶେଷଣମାନଙ୍କ କଥା ମନେ ପକାଇ ପଦ୍ମଧର ନିଜ ମନ ଭିତରୁ ସନ୍ଦେହ ସବୁକୁ ଦୂର କରିଦେଲା ଏବଂ ସ୍ଥିର କରିନେଲା ଯେ ଏଇ ଛୋଟ କୋଠରି ଆରପାଖେ ଅନ୍ୟ ଏକ ସୁଦୃଶ୍ୟ ଓ ମନୋରମ ପ୍ରକୋଷ୍ଠ ଅଛି ଯାହା ହାକିମଙ୍କର ଖାସ୍ କମରା ।

ଦ୍ୱିତୀୟ ତାରିଖ ଦିନ ପଦ୍ମଧର ବସ୍ ଫେଲ ହେଲା ଏବଂ କଚେରିରେ ବିଳମ୍ବରେ ପହଞ୍ଚିଲା । ଅତି ସଂକୋଚର ସହିତ ସେ ଓକିଲଙ୍କୁ ଖୋଜିବାକୁ ଗଲା କାରଣ ମକଦ୍ଦମାରେ ଜିତିବା ହାରିବା ଅପେକ୍ଷା ଓକିଲ ସେ ଡେରିରେ ପହଞ୍ଚିଥିବାରୁ ତାକୁ ଗାଳି ଦେଇପାରେ, ସେ ବିଷୟରେ ପଦ୍ମଧର ବେଶି ସଚେତନ ଥିଲା । କିନ୍ତୁ ଓକିଲ ମଧ୍ୟ ସେ ପର୍ଯ୍ୟନ୍ତ ଆସି ନଥିଲା । ପଦ୍ମଧର ସାମାନ୍ୟ ଆଶ୍ୱସ୍ତ ହେଲା ଏବଂ କଚେରିର ପଛ ବେଞ୍ଚରେ ବସି ସେତେବେଳେ ଚାଲୁଥିବା ମକଦ୍ଦମାର ଧାରା ସହିତ ନିଜକୁ ସାମିଲ କରିବାକୁ ଚେଷ୍ଟା କଲା । ବିଚାରକ ତାଙ୍କ ଆସନରେ ଉପବିଷ୍ଟ ଥିଲେ । ତାଙ୍କ ମୁଣ୍ଡ ଉପରର ବିଜୁଳି ପଙ୍ଖାଟି ଅସମ୍ଭବ ଶବ୍ଦ କରି ଘୂର୍ଣ୍ଣାୟମାନ ଥିଲା ଏବଂ ପ୍ରତିବାଦୀ ଓକିଲ ଅତି ଉଚ୍ଚ ସ୍ୱରରେ ଜେରା କରୁଥିଲେ । ମକଦ୍ଦମାଟି ବିଶେଷ ଚିତ୍ତାକର୍ଷକ ଥିଲା ବୋଲି ପଦ୍ମଧରର ମନେହେଲା, କାରଣ ନିୟମିତ ଅନ୍ତରାଳରେ ପରଦାର, ସତୀତ୍ୱ ଓ ଛାଡ଼ପତ୍ର ଭଳି ଶବ୍ଦମାନ ଉଚ୍ଚାରିତ ହେଉଥିଲା ଏବଂ ଉପସ୍ଥିତ ଦର୍ଶକମାନଙ୍କର ହାସ୍ୟ ଉଦ୍ରେକ କରୁଥିଲା ।

କାଠଗଡ଼ା ଭିତରେ ଗୋଟିଏ ଛୋଟପିଲା ଠିଆ ହୋଇଥିଲା ଯେ କି ଏଇ ପରିବେଶ ଭିତରେ ବିଶେଷ ହତଚକିତ ଓ ମ୍ରିୟମାଣ ଦେଖାଯାଉଥିଲା । ବିଚାରକ ତା' ଆଡ଼କୁ କ୍ରୋଧିତ ନହେଲେ ବି ଗମ୍ଭୀର ଭାବରେ ଅନାଉଥିଲେ ଯାହା ଫଳରେ ପିଲାଟି ଆହୁରି ସଂକୁଚିତ ହୋଇଯାଉଥିଲା । ପ୍ରତିବାଦୀ ପକ୍ଷର ଓକିଲ, ପଦ୍ମଧରର ଓକିଲ ନୁହେଁ, ଜଣେ ନିପୁଣ ଧନୁର୍ଦ୍ଧର ଭଳି ପିଲାଟି ଆଡ଼କୁ ପ୍ରଶ୍ନର ତୀରସବୁ ନିକ୍ଷେପ

କରୁଥିଲା ଯାହା ହୁଏତ ଜଣେ ଅଭିଜ୍ଞ ସାକ୍ଷୀ ଏଡ଼ିଦେଇ ପାରିଥା'ନ୍ତା, କିନ୍ତୁ ପିଲାଟିକୁ ପୁନଃ ପୁନଃ କ୍ଷତବିକ୍ଷତ କରୁଥିଲା । ପଦ୍ମଧର ଏ ପର୍ଯ୍ୟନ୍ତ ଏଇ ମକଦ୍ଦମାରେ ମନଯୋଗ କରିପାରି ନଥିଲା, କିନ୍ତୁ ହଠାତ ହାସ୍ୟରୋଳର ଏକ ଉଚ୍ଚ ବିସ୍ଫୋରଣ ପରେ ସେ ଉତ୍‌କର୍ଣ୍ଣ ହୋଇ ବସିଲା । ଲାଇଟ ଲିଭାଇ ଦେବା ପରେ ତମର ମା' ଓ ସେ ଲୋକଟି କ'ଣ କଲେ, ଓକିଲ ପିଲାଟିକୁ ପଚାରିଲା ।

ବିପକ୍ଷ ଓକିଲ ଯେମିତି ଏଇ ପ୍ରଶ୍ନଟିର ଅପେକ୍ଷାରେ ଥିଲା । ହଠାତ ଠିଆ ହୋଇପଡ଼ି ସେ ନିଜର ବକ୍ତୃତା ଆରମ୍ଭ କଲା : ମାନ୍ୟବର ବିଚାରପତି, ଇତ୍ୟାଦି ଇତ୍ୟାଦି । ଦର୍ଶକବୃନ୍ଦ ଏକ ରୋଚକ ବିବରଣୀରୁ ବଞ୍ଚିତ ହୋଇ ହତାଶ ହେବା ଭଳି ମନେହେଲେ ଏବଂ ବିରକ୍ତିସୂଚକ ଶବ୍ଦରେ କୋଠରିଟି ପ୍ରତିଧ୍ୱନିତ ହେଲା । ଏଇଭଳି ଏକ ବିଶ୍ରାନ୍ତିର ସୁଯୋଗ ନେଇ ପଦ୍ମଧର ସିଡ଼ିରେ ଓହ୍ଲାଇ ବାହାରକୁ ଆସିଲା । ଭାଗ୍ୟକୁ ସିଡ଼ି ତଳେ ତା'ର ଓକିଲ ଠିଆ ହୋଇଥିଲା । ସେ ତାକୁ ସମ୍ବାଦ ଦେଲା ଯେ ତା'ର ମକଦ୍ଦମା ଡେରିରେ ଆରମ୍ଭ ହେବ ।

ସମୟ କଟାଇବା ପାଇଁ ପଦ୍ମଧର କଚେରି ସାମନାର ଭ୍ରାମ୍ୟମାଣ ଦୋକାନୀମାନଙ୍କ ଆଗରେ କିଛି ସମୟ ପଦଚାରଣା କଲା । ଏଠାରେ ଯେଉଁସବୁ ସାମଗ୍ରୀ ବିକ୍ରୟ ହେଉଥିଲା ସେସବୁ ଅଦ୍ଭୁତ ଧରଣର ଥିଲା ଯାହାକି ସଚରାଚର ଅନ୍ୟ ସ୍ଥାନରେ ବିକ୍ରୟ ହେଉନଥିଲା । ଉଦାହରଣସ୍ୱରୂପ, ଶିଳାଜିତ୍, ମୃତସଞ୍ଜୀବନୀ, କାୟାକଳ୍ପ ବଟି ଇତ୍ୟାଦି ଅନେକ ବୟସ ଓ ଶକ୍ତିବର୍ଦ୍ଧକ ଔଷଧ ଥିଲା ଗୋଟିଏ ଦୋକାନରେ ଯାହାର ବିକ୍ରେତା ସ୍ୱପ୍ନଦୋଷ, ଧ୍ୱଜଭଙ୍ଗ ଇତ୍ୟାଦି ବିଷୟରେ ବକ୍ତୃତା ଦେଉଥିଲା । ତା'ର ଜଣେ ସଫଳ ପ୍ରତିଦ୍ୱନ୍ଦ୍ୱୀ ବାଘ ନଖ, ଓଟ ଦୁଧ, କୋଚିଲାଖାଇ ରକ୍ତ, ବଜ୍ରକାପ୍ତା କାଠି ଓ କୃକଳାସ ତୈଳ ପ୍ରମୁଖ ଦୁର୍ଲଭ ଜିନିଷର ଗୁଣଗାନ କରୁଥିଲା । ତା' ପାଖରେ ସାମୁଦ୍ରିକ ବିଦ୍ୟାର ଦୋକାନ ଥିଲା ଯେଉଁଠାରେ ଏକ ରେଖାବହୁଳ ପାପୁଲିର ବୃହତ ଚିତ୍ର ତଳେ ଗୋଟିଏ ଶୁକପକ୍ଷୀ ଧାଡ଼ି ହୋଇ ରହିଥିବା କାଗଜରୁ ଗୋଟିଏ ଉଠାଇ ଗ୍ରାହକମାନଙ୍କର ଭାଗ୍ୟ ନିର୍ଦ୍ଧାରଣ କରୁଥିଲା । ବିଷନାଶକ ଔଷଧର ବିକ୍ରେତା ନିଜର ମହୌଷଧିର ଉପାଦେୟତା ପ୍ରମାଣିତ କରିବା ପାଇଁ ଗୋଟିଏ ଗୃହପାଳିତ ବୃଶ୍ଚିକ ଦ୍ୱାରା ନିଜକୁ ଆହତ ଓ ମୃତ କରୁଥିଲା ଏବଂ ତତ୍‌କ୍ଷଣାତ୍ ସଞ୍ଜୀବନୀ ପ୍ରୟୋଗ ପରେ ପୁନର୍ଜୀବିତ ହେଉଥିଲା । ଅନ୍ୟ ଏକ ଦିଗରେ ଏକ ପରୋପକାରୀ ଦୋକାନୀ ହୀରା, ନୀଳା, ମୋତି, ମାଣିକ୍ୟ, ପଦ୍ମରାଗ, ଗୋମେଦ ଇତ୍ୟାଦି ବହୁମୂଲ୍ୟର ପଥର ସବୁ ପାଣି ମୂଲ୍ୟରେ ବିକ୍ରି କରୁଥିଲା । ଏସବୁ ପଦ୍ମଧରର ପ୍ରୟୋଜନୀୟ ନଥିବାରୁ ସେ ପାଖର ବହି ଦୋକାନକୁ ଗଲା ଯେଉଁଠାରେ ଅନେକ ଅଶ୍ଳୀଳ ଓ କାମୋଦ୍ଦୀପକ ବହିର ଥାକ ତଳେ ଅନେକ ପୁରୁଣା ବହି ଜମା ହୋଇଥିଲା । ଅନେକ ଖୋଜିବା ପରେ ସେ

ନିଜର ପରିସ୍ଥିତି ସହିତ ଖାପ ଖାଉଥିବା ଶୀର୍ଷକର ଗୋଟିଏ ବହି କିଣିଲା ଯାହାର ନାଁ ଥିଲା ଦି ଟ୍ରାୟାଲ ଏବଂ ଯାହାର ଲେଖକ କୌଣସି ଫ୍ରାଞ୍ଜ୍ କାଫ୍‌କା ଥିଲେ ।

କଚେରିର ପଛ ବେଞ୍ଚରେ ଆଗ୍ରହୀ ଦର୍ଶକମାନଙ୍କ ଭିତରେ ବସି ପଦ୍ମଧର ବହିଟି ପଢ଼ିବା ପାଇଁ ଚେଷ୍ଟା କଲା, କିନ୍ତୁ ସଫଳ ହେଲା ନାହିଁ । ଆଗରୁ ଚାଲିଥିବା ମକଦ୍ଦମାର ଧାରା ବର୍ତ୍ତମାନ ଆଉ ଚିତ୍ତାକର୍ଷକ ନଥିଲା ଏବଂ ଦର୍ଶକମାନଙ୍କ ଭିତରୁ ଅଧିକାଂଶ ଚାଲିଯାଇଥିଲେ । ଓକିଲ, ପଦ୍ମଧରର ଓକିଲ ନୁହେଁ, ବର୍ତ୍ତମାନ ତା'ର ଧାର ନଥିବା ତୀରସବୁ ନିସ୍ପୃହ ଭାବରେ ଫିଙ୍ଗୁଥିଲା, ଯାହାକୁ ସାକ୍ଷୀ ଅନାୟାସରେ ଏଡ଼ାଇ ଚାଲିଥିଲା । କାଠଗଡ଼ାରେ ବର୍ତ୍ତମାନ ଜଣେ ପୋଷ୍ଟମ୍ୟାନ ଛିଡ଼ା ହୋଇଥିଲା ଏବଂ ପ୍ରଶ୍ନମାନ ଥିଲା ସ୍ତ୍ରୀଲୋକଟିକୁ ପଠାଯାଇଥିବା ପ୍ରେମପତ୍ରମାନଙ୍କ ସମ୍ପର୍କରେ । ବିପକ୍ଷ ଓକିଲ ଡାକବିଭାଗ ନିୟମାବଳୀ ବିଷୟରେ ପରିଭାଷିକ ପ୍ରଶ୍ନମାନ ଉତ୍‌ଥାପନ କରୁଥିଲା ଯାହା ସମସ୍ତ କାର୍ଯ୍ୟକ୍ରମକୁ ଅତି ନୀରସ କରି ଦେଇଥିଲା । ବହିଟି ବନ୍ଦ କରି ପଦ୍ମଧର ହାତ ଉଠାଇ ଆଉଥରେ ଘଡ଼ିକୁ ଦେଖିଲା । ସେ ଯାହାକୁ ଅଧଘଣ୍ଟା ସମୟ ବୋଲି ଭାବିଥିଲା, ପ୍ରକୃତରେ ସାତ ମିନିଟ ମାତ୍ର ଥିଲା ।

ଏଥରକ ସମୟ କଟାଇବା ପାଇଁ ପଦ୍ମଧର ନିଜର କଳ୍ପନାର ଆଶ୍ରୟ ନେଲା । ହାକିମଙ୍କ ଚନ୍ଦାମୁଣ୍ଡ ଉପରେ ସେ ଗୋଟିଏ ବିଚାରକର ନକଲି ବାଳ ଖଞ୍ଜିଦେଲା ଓ ଉପରେ ଚାଲୁଥିବା ପଙ୍ଖାଟିକୁ ଖୋଲିଦେଇ ହାତଟଣା ପଙ୍ଖା ଲଗାଇଦେଲା । କଚେରିର ପିଅନକୁ ସେ ବରକନ୍ଦାଜର ପୋଷାକ ପିନ୍ଧାଇଲା । ଡାକବାଲାର ଖାକି ପୋଷାକ ଖୋଲିନେଇ ସେ ତା ହାତରେ ଝୁମ ଝୁମ କରୁଥିବା ବାଡ଼ି ଦେଇ ପୁରୁଣା କାଳର ରନର୍ କରିଦେଲା । ଓକିଲମାନଙ୍କ ମୁହଁରେ ଲାଲ ରଙ୍ଗ ଲଗାଇ ସେ ସେମାନଙ୍କୁ ଗୋରା ସାହେବ କରିଦେଲା ଏବଂ କଚେରି ଘର ଚାରିପାଖେ ସେ ସେମାନଙ୍କୁ ଘୋଡ଼ସବାର ସୈନିକ ସଜାଇ ଦେଲା । ମକଦ୍ଦମା ବର୍ତ୍ତମାନ ସିପାହି ବିଦ୍ରୋହ ବେଳର ଘଟଣା ଥିଲା ଏବଂ ତାନ୍ତିଆଟୋପେଙ୍କର କୌଣସି ଚିଠି ବିଷୟରେ ଜବାବ ସୁଆଲ ହେଉଥିଲା ।

ପଦ୍ମଧର ଏଥିରେ ବିଶେଷ ସନ୍ତୁଷ୍ଟ ହେଲା ନାହିଁ, କାରଣ ସିପାହି ବିଦ୍ରୋହ ବିଷୟରେ ତା'ର ଜ୍ଞାନ ଅତ୍ୟନ୍ତ ସୀମିତ ଥିଲା । ସେ ଘଟଣାଟିକୁ ଆହୁରି ସମସାମୟିକ କରିବା ପାଇଁ ଚେଷ୍ଟା କଲା । ଏଥିପାଇଁ ସେ ବିଚାରକଙ୍କ ମୁଣ୍ଡ ଉପରୁ ନକଲି ବାଳ ଖୋଲିନେଲା ଓ ବିଜୁଳି ପଙ୍ଖାର ସୁଇଚ୍ ଚଳାଇଲା । କଚେରିର ସମସ୍ତଙ୍କୁ ସେ ସେମାନଙ୍କର ପୋଷାକମାନ ଫେରାଇଦେଲା । ଓକିଲ ବର୍ତ୍ତମାନ ଡାକବାଲାକୁ ପ୍ରଶ୍ନ କରୁଥିଲା : ନକ୍‌ସାଲବାଡ଼ିରୁ ଆସିଥିବା ସେଇ ଚିଠିଟି ତମେ କାହାକୁ ଦେଇଥିଲ ? ବିପକ୍ଷ ଓକିଲ ଯେପରି ଏଇ ପ୍ରଶ୍ନର ଅପେକ୍ଷାରେ ଥିଲା । ହଠାତ ଠିଆ ହୋଇପଡ଼ି ସେ ନିଜର ବକ୍ତୃତା ଆରମ୍ଭ କଲା : ମାନ୍ୟବର ବିଚାରପତି, ଇତ୍ୟାଦି ଇତ୍ୟାଦି । ଏଇ ସମୟରେ

କଚେରି ଘରେ ବୋମା ଫୁଟିବାର ଶବ୍ଦ ହେଲା । ଅସମ୍ଭବ କୋଳାହଳ କରି ଅନେକ ଲୋକ କଚେରିକୁ ଘେରିଗଲେ । ହାତରେ ବନ୍ଧୁକ ଧରି କିଛି ଲୋକ ହାକିମଙ୍କ ଚେମ୍ବର ଭିତରୁ ବାହାରି ଆସିଲେ ଓ ଚିତ୍କାର କରି କହିଲେ, ଆମର ଏ ଆଇନକାନୁନ ଓ ବିଚାର ପଦ୍ଧତିରେ ବିଶ୍ୱାସ ନାହିଁ ।

ପଦ୍ମଧର ଘଟଣାସବୁକୁ ଆହୁରି ପ୍ରାଞ୍ଜଳ ଭାବରେ ଦେଖିବା ପାଇଁ ଚେଷ୍ଟା କଲା । କିନ୍ତୁ ତା'ର କ୍ଳାନ୍ତି, ଅପେକ୍ଷାଜନିତ ବିରକ୍ତି, ଉପରେ ପଙ୍ଖାର ଶବ୍ଦ, ଖରାବେଳ ସବୁ ମିଶି ତା'ର ଆଖିକୁ ବନ୍ଦ କରିଦେଲେ । ସେ ତା'ର ବେଞ୍ଚ ଉପରେ ଆଉଜି ଗଲା । ସେ ଏଥରକ ଦେଖିଲା ଯେ ହାକିମ ଗୋଟିଏ କାଠର ପୁତ୍ତଳିକା ପାଲଟି ଯାଇଛନ୍ତି । ତାଙ୍କ ହାତରୁ ସୂତାସବୁ ଯାଇ ଛାତ ଉପରେ ଅଦୃଶ୍ୟ ହୋଇଯାଇଛି । ଚାବି ଦିଆଯାଇଥିବା ଖେଳନା ଭଳି ଓକିଲ ଦୁହେଁ ଅଭିନୟ କରି ଯାଉଛନ୍ତି ଏବଂ କାଠଗଡ଼ାର ଲୋକଟି ନିଦରେ ଶୋଇ ଅର୍ଥହୀନ କଥା ସବୁ କହୁଛି । ଚେମ୍ବର ଘର ଭିତରୁ ଗଧ ବୋବାଇବାର ଶବ୍ଦ ଆସୁଛି ଏବଂ ଛାତ ଉପରେ ଶାଗୁଣା ଉଡୁଛନ୍ତି । ଝରକା ଭିତର ଦେଇ କଳାମେଘ ଆସି କଚେରି ଘରକୁ ଆବୃତ କରିଦେଉଛି ଏବଂ ସବୁକିଛି ଅନ୍ଧକାରାଚ୍ଛନ୍ନ ହୋଇଯାଉଛି ।

କିଏ ଆସି ପଦ୍ମଧରକୁ ହଲାଇଲା ଏବଂ ତା'ର ନିଦ ଭାଙ୍ଗିଗଲା । ସେ ଉଠି ଦେଖିଲା ଯେ, ହାକିମ ଚାଲିଗଲେଣି ଏବଂ କଚେରି ଘର ପ୍ରାୟ ଜନଶୂନ୍ୟ । ସେ ତା'ର ଓକିଲକୁ ଅନେକ ଖୋଜି ମଧ ପାଇଲା ନାହିଁ ଏବଂ ଶେଷରେ ସେଇ କିରାଣି ପାଖରୁ ତୃତୀୟ ତାରିଖ ସଂଗ୍ରହ କଲା । ସିଡ଼ିଦେଇ ତଳକୁ ଓହ୍ଲାଇବା ବେଳେ ତା'ର ମନେପଡ଼ିଲା ଯେ ତାକୁ ସ୍ତ୍ରୀ କହିଥିଲା ନିଦ ଔଷଧ କିଣିବା ପାଇଁ । ସେ ବିଷୟରେ ସେ ନିଜକୁ ସ୍ମରଣ କରାଇଲା ଓ ରାସ୍ତା ଉପରକୁ ଓହ୍ଲାଇଲା । ଅନ୍ୟସବୁ ଦୋକାନ ବନ୍ଦ ହୋଇଯାଇଥିଲେ ବି ବହି ଦୋକାନ ଏ ପର୍ଯ୍ୟନ୍ତ ଖୋଲା ଥିଲା । ପଦ୍ମଧର ଯାଇ ସକାଳେ କିଣିଥିବା ବହିଟି ଦୋକାନୀକୁ ବିକ୍ରି କରିଦେଲା । ହିସାବ କରି ଦେଖିଲା ଯେ ତା'ର ଏଇ କ୍ରୟ-ବିକ୍ରୟରେ ତା'ର ବିଶେଷ କିଛି କ୍ଷତି ହୋଇନଥିଲା ।

ତା' ହାତରେ ବେଶ୍ କିଛି ସମୟ ଥିବାରୁ ସେ ବସ୍ ନ ନେଇ ପାଦରେ ଚାଲି ଘରକୁ ଫେରିବା ପାଇଁ ଠିକ୍ କଲା । ସେ ସେଦିନ ପାଇଁ ମଧ କଲେଜରୁ ଛୁଟି ନେଇଥିଲା । ତା'ର ଛୁଟି ଦରଖାସ୍ତ ଠିକ୍ ସମୟରେ ଠିକ୍ ଜାଗାରେ ପହଞ୍ଚିଲା କି ନାହିଁ ସେ ବିଷୟରେ ସେ ବର୍ତ୍ତମାନ ସାମାନ୍ୟ ଚିନ୍ତିତ ହେଲା, କିନ୍ତୁ ଶେଷରେ ସ୍ଥିର କଲା ଯେ ସେକଥା ଚିନ୍ତାକରି ଆଉ ଲାଭ ନାହିଁ । କଲେଜରୁ ଏଇପରି ଗୋଟିଏ ଦିନ ଛୁଟିନେଇ ଆସିପାରିଥିବାରୁ ତାକୁ ମନ୍ଦ ଲାଗୁ ନଥିଲା । କଲେଜର ପ୍ରତିଟି କ୍ଲାସ୍ ତା' ପାଇଁ ଏକ ବିରକ୍ତିକର ଅନୁଭୂତି ଥିଲା । ତାକୁ ଏଭଳି ବିଷୟବସ୍ତୁମାନ ପଢ଼ାଇବାକୁ ହେଉଥିଲା ଯେଉଁ ବିଷୟରେ ଛାତ୍ରମାନଙ୍କର ଆଦୌ ସ୍ପୃହା ନଥିଲା । ସେ କ୍ଲାସ୍ ନେଲାବେଳେ

ଛାତ୍ରମାନେ ସଂପୂର୍ଣ୍ଣ ଅନ୍ୟମନସ୍କ ରହୁଥିଲେ ତଥା ନିଜ ନିଜ ମଧ୍ୟରେ କଥୋପକଥନରେ ବ୍ୟସ୍ତ ରହୁଥିଲେ । କିନ୍ତୁ ପଦ୍ମଧର ଯଥାସାଧ୍ୟ ଉଚ୍ଚଗଳାରେ ତା'ର ଶିକ୍ଷକର କାର୍ଯ୍ୟ ସମାପନ କରୁଥିଲା । ଏଇ ସମୟମାନଙ୍କରେ ତା'ର ମନେହେଉଥିଲା ଯେପରି ସେ ଓ ତା'ର ଛାତ୍ରଙ୍କ ମଝିରେ ଗୋଟିଏ କାଚର ପରଦା ରହିଛି । ଥରେ ଥରେ ଇଚ୍ଛାକରି ସେ ଏଇ କାଚଟିକୁ ଆହୁରି ସ୍ଥୂଳ ଏବଂ ଅସ୍ୱଚ୍ଛ କରିଦେଉଥିଲା, ଯାହା ଫଳରେ ପିଲାମାନଙ୍କର ଚେହେରା ଏବଂ କୋଳାହଳ ତା'ଠାରୁ ଆହୁରି ଦୂରକୁ ଚାଲିଯାଉଥିଲା ।

କାଚର ଗୋଟାଏ କୋଣକୁ ସଫାକରି ପଦ୍ମଧର ଝିଅମାନେ ବସିଥିବା ବେଞ୍ଚ ଆଡ଼କୁ ଅନାଇଲା । ସେ ନିଜର ମୁହଁର ଅଭିବ୍ୟକ୍ତିକୁ ଆହୁରି କୋମଳ ଏବଂ ସ୍ୱରକୁ ମୁଲାୟମ କରିବାକୁ ଚେଷ୍ଟାକଲା । କିନ୍ତୁ ଝିଅମାନେ ସେତେବେଳେ ଗୋଟାଏ ଫିଲ୍ମ ପତ୍ରିକାର ପୃଷ୍ଠାକୁ ନେଇ କୌଣସି ଗଭୀର ଆଲୋଚନାରେ ବ୍ୟସ୍ତ ଥିଲେ । ନିଜର ଅସଫଳତାରେ ବ୍ୟର୍ଥମନୋରଥ ହୋଇ ପଦ୍ମଧର କାଚରେ ଏକ ଛିଦ୍ର କରି ସେଥିରେ ଏକ ସ୍ଥାୟୀ ଝରକା ଲଗାଇବାର ଇଚ୍ଛାରୁ ନିବୃତ୍ତ ହେଲା ଏବଂ ପୁଣି ନିଜର ମୁହଁ ଏବଂ କଣ୍ଠସ୍ୱରକୁ ସ୍ୱାଭାବିକ କରିନେଲା ।

ତା'ର କଲେଜ ଜୀବନର ଏକମାତ୍ର ଆନନ୍ଦଦାୟକ ଅନୁଭୂତି ଥିଲା ବସୁଧା । ଯଦିଓ ତା'ର ବସୁଧା ସହିତ ପରିଚୟ ଅତି ସାମାନ୍ୟ ଓ ସାଧାରଣ ଥିଲା, ପଦ୍ମଧର ଏଇ ଘଟଣାକୁ ଜୀବନର ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା ବୋଲି ମନେ କରୁଥିଲା । ଘଟଣାଟି ହେଲା ଯେ ଅନେକ ବର୍ଷ ପୂର୍ବେ ଟିଉଟୋରିଆଲ କ୍ଲାସ୍ ନେଇସାରିବା ପରେ ପଦ୍ମଧର ଦେଖିଥିଲା ଯେ ବସୁଧା କ୍ଲାସ୍‌ରୁ ଚାଲି ନଯାଇ ଏକା ବସି ରହିଛି । ବସୁଧା ଅନନ୍ୟା ଥିଲା ଏବଂ ପଦ୍ମଧର ଆଗରୁ କେବେ ତାକୁ ଲକ୍ଷ୍ୟ କରିନଥିଲା । ତେବେ ଖାଲି କ୍ଲାସ୍ ପରେ ଏକାକୀ ବସିଥିବା ଝିଅଟି ତାକୁ ଅସାମାନ୍ୟା ଓ ରହସ୍ୟମୟୀ ମନେହେଲା । ଏ ତା'ର ପ୍ରଥମ ଅନୁଭୂତି ଥିବାରୁ କିପରି ଭାବରେ କଥାବାର୍ତ୍ତା ଆରମ୍ଭ କରିବ ସେ ଠିକ୍ କରିପାରୁ ନଥିଲା । ତା'ର ସଂକୋଚକୁ ଦୂର କରି ଝିଅଟି ତା ଆଡ଼କୁ ଗୋଟିଏ ବହି ବଢ଼ାଇ ଦେଲା ଏବଂ କହିଲା : ମତେ ଏଇ ପାରାଗ୍ରାଫ୍‌ଟା ଟିକିଏ ବୁଝାଇଦେବେ ?

ପଦ୍ମଧରର ମୁଣ୍ଡ ଭିତରେ ସବୁକିଛି ଅସ୍ତବ୍ୟସ୍ତ ହୋଇଗଲା । ତା'ର ତଣ୍ଟି ଶୁଖିଗଲା, ପାଦ ନିର୍ଜୀବ ହୋଇଗଲା ଏବଂ ହାତ ଥରିବାକୁ ଆରମ୍ଭ କଲା । ପାରାଗ୍ରାଫ୍‌ଟିର ଅକ୍ଷରସବୁ ଜୀବନ୍ତ ହୋଇ ପୃଷ୍ଠା ଉପରେ ଉଡ଼ିବାକୁ ଲାଗିଲେ । ମୁହଁ ଉପରେ ହଠାତ ଜମିଯାଇଥିବା ବିନ୍ଦୁ ବିନ୍ଦୁ ଝାଳକୁ ହାତ ପାପୁଲିରେ ପୋଛୁ ପୋଛୁ ପଦ୍ମଧର ଯାହା ସବୁ କହିଲା ସେ କଥାର କୌଣସି ଅର୍ଥ ନଥିଲା । ବହିର ସେଇ କଷ୍ଟସାଧ୍ୟ ପରିଚ୍ଛେଦର ବାଖ୍ୟା ତା ନିଜକୁ ଆହୁରି ଦୁଷ୍କର ମନେହେଲା । ଝିଅଟିର ମୁହଁ ସାମାନ୍ୟ ଲଜ୍ଜା ଏବଂ ଅତ୍ୟଧିକ ଆମୋଦରେ ଆରକ୍ତ ହୋଇଗଲା ଏବଂ ପଦ୍ମଧର ହାତରୁ ବହିଟି ନେଇ ସେ

କ୍ଲାସ୍‌ରୁ ବାହାରିଗଲା । ବାସ୍, ଏତିକି ।

ଏଇ ଘଟଣାଚିତ୍ରକୁ ପଦ୍ମଧର ଅନେକଦିନ ଧରି ମନେ ମନେ ଦୋହରାଇଲା । ସେ ବର୍ତ୍ତମାନ ଝିଅଟିର ନାଁ ଓ ଠିକଣା ଜାଣିଥିଲା ଏବଂ ଏହି ସୂଚନା ତାକୁ ଭାବିବାରେ ବେଶ୍ ସହାୟକ ହେଉଥିଲା । ଏହି ଘଟଣାଚିତ୍ର ଫ୍ଲାସ୍‌ବ୍ୟାକ୍‌ରେ ଦେଖିବାବେଳେ ପଦ୍ମଧର ତାକୁ ବାରମ୍ବାର ବିଶେଷ ସମ୍ପାଦନ କରିନେଉଥିଲା ଏବଂ ସେଇ କଥୋପକଥନ ବିହୀନ ଚଳଚ୍ଚିତ୍ରକୁ ସେ ଅନେକ ସଂଳାପମାନ ଦେଇ ସବାକ କରିଦେଉଥିଲା । ଉଦାହରଣସ୍ୱରୂପ, ସେ ବସୁଧାର ସେଇ କ୍ଲାସ୍‌ଘର ଭିତରକୁ ଆସିବାର ଏକ ନାଟକୀୟ ପ୍ରବେଶର ରୂପ ଦେଉଥିଲା । ବସୁଧା ଅଧିକ ସୁନ୍ଦର ଦେଖାଯାଉଥିଲା ଏବଂ ତା'ର ରୂପସଜ୍ଜା କୌଣସି ଚିତ୍ରତାରକାଠାରୁ କମ୍ ନଥିଲା । କ୍ଲାସ୍ ଭିତରକୁ ଆସି ସେ ପଦ୍ମଧରକୁ ନମସ୍କାର କଲା ଏବଂ ଠିକ୍ ତା ସାମନାରେ ଆସି ବସିଲା । କହିବା ବାହୁଲ୍ୟ, ଚିତ୍ରରେ ପଦ୍ମଧର ନିଜର ସବୁଠାରୁ ସୁନ୍ଦର ପୋଷାକରେ ପରିହିତ ଥିଲା ଏବଂ ତା'ର ମୁଖମଣ୍ଡଳରେ ଥିଲା ଏକ ଅଦ୍ଭୁତ ପ୍ରସନ୍ନତା । କେବେ କେବେ ପଦ୍ମଧର ଇଚ୍ଛା କଲେ ତା'ର କ୍ଲାସ୍ ଘରକୁ ବିନାଦ୍ୱିଧାରେ ବଦଳାଇ ଦେଇ ଏକ ପାର୍ବତ୍ୟ ମନୋରମ ପରିବେଶ ମଧ୍ୟ ସୃଷ୍ଟି କରିଦେଉଥିଲା ।

କ୍ରମେ କ୍ରମେ ପଦ୍ମଧର ଅଧିକ ସାହସୀ ହେଲା ଏବଂ ବସୁଧାକୁ, ଯାହାକୁ ବର୍ତ୍ତମାନ କେବଳ ସୁଧା ବୋଲି ସମ୍ବୋଧନ କରୁଥିଲା, ସେ ସିନେମା ଯିବା ପାଇଁ ମଧ୍ୟ ଦ୍ୱିଧା କଲା ନାହିଁ । ସିନେମା ଘରର ଅନ୍ଧାର ଭିତରେ ସେ ଏଥରକ ବସୁଧାର ହାତ ଉପରେ ହାତ ରଖୁଥିଲା ଏବଂ ପର୍ଦ୍ଦା ଉପରେ ଅଭିନୀତ ହେଉଥିବା ନାୟକ ନାୟିକାଙ୍କୁ ନିଜେ ଓ ବସୁଧା ଭାବରେ କଳ୍ପନା କରି ବେଶ୍ ଆନନ୍ଦ ପାଉଥିଲା । ବସୁଧା ସହିତ ତା'ର ସମ୍ପର୍କ କ୍ରମଶଃ ଘନିଷ୍ଠ ହୋଇ ଆସିଲା । ଶେଷରେ ଦିନେ ସେ ବସୁଧାକୁ ନେଇ କୌଣସି ହିଲ୍ ଷ୍ଟେସନକୁ ଯିବାପାଇଁ ସ୍ଥିର କଲା । ସେ ସେତେବେଳକୁ ତା'ର ଟିଉଟୋରିଆଲ କ୍ଲାସ୍ ଘରେ ଏକା ବସିଥିଲା ଏବଂ ବିଭିନ୍ନ ସ୍ଥାନର ରମଣୀୟତା ବିଷୟରେ ତୁଳନାତ୍ମକ ଚିନ୍ତା କରିବାବେଳେ ଚିତ୍ରରେ ଦେଖିଥିବା ପ୍ୟାରିସ ସହରର କଥା ମଧ୍ୟ ଭୁଲି ନଥିଲା ।

ବର୍ତ୍ତମାନ ରାସ୍ତାରେ ଚାଲି ଯାଉ ଯାଉ ସେ ପୁଣି ବସୁଧାକୁ ନେଇ ଭ୍ରମଣରେ ଯିବା କଥା ମନେପକେଇବାକୁ ଚେଷ୍ଟା କଲା । କିନ୍ତୁ ଅନେକ ଦିନ ତଳେ ଟିଉଟୋରିଆଲ କ୍ଲାସ୍ ଘରେ ଯେଉଁ ବିଷୟ ଅତି ସହଜ ମନେହେଉଥିଲା, ବର୍ତ୍ତମାନ ସହରର ସଂକୀର୍ଣ୍ଣ ଗଳିରେ ଦିନସାରା କଚେରିରେ କଟାଇବା ପରେ କ୍ଳାନ୍ତ ହୋଇ ଘରକୁ ଫେରିବା ବେଳେ ସେ କଥାଟି ସୁବିଧାରେ ଅଗ୍ରସର ହେଉନଥିଲା । ବାଁ ପାଖର ଔଷଧ ଦୋକାନ ଆଡ଼କୁ ଦେଖିବାକୁ ଅସ୍ୱୀକାର କରିଦେଇ ସେ ଦୂରରେ ଆକାଶରେ ଜଳୁଥିବା କୌଣସି ଫିଲ୍ମର ନାୟକ-ନାୟିକାଙ୍କର ନିଅନ ଆଲୁଅରେ ଲେଖାହୋଇଥିବା ନାଁ ଆଡ଼କୁ ଅନାଇଲା ।

ବିରକ୍ତିର ସହିତ ସେ ବିଜ୍ଞାପନଟିରୁ ଦୁଇଟିଯାକ ନାଁ କାଟିଦେଇ ତା ଜାଗାରେ ପଦ୍ମଧର-ବସୁଧା ବୋଲି ଲେଖିଲା । ଚାଲୁ ଚାଲୁ ସେ ସାମାନ୍ୟ ସନ୍ତୋଷର ସହିତ ଏଇ ନିଅନ ବିଜ୍ଞାପନକୁ ଦେଖିଲା ଏବଂ ସେଥିରୁ ଏଥରକ ଧର ଓ ବ କାଟିଦେଲା । ପଦ୍ମ-ସୁଧାରେ କ'ଣ ଗୋଟିଏ ଅସୁବିଧା ରହିଯାଉଛି ବୋଲି ତା'ର ମନରେ ସଂଶୟ ହେଲା ଏବଂ ସେଥିପାଇଁ ସେ ଆଖି ପଲକରେ ହାଇଫେନ୍‌ଟିକୁ ଉଡ଼ାଇଦେଲା ।

ସେତେବେଳକୁ ସେ ନିଜ ଘରର ରାସ୍ତା ଛାଡ଼ି ଅନ୍ୟ ଦିଗରେ ଚାଲିଯିବାକୁ ଆରମ୍ଭ କରିଥିଲା, ଯାହା ବସୁଧାର ଘରର ରାସ୍ତା ଥିଲା । ସେ ନିଜକୁ ପ୍ରବୋଧନା ଦେଲା ଯେ ସେ ବାସ୍ତବରେ ନୂଆ ଭଡ଼ାଘର ଖୋଜିବା ପାଇଁ ବାହାରିଥିଲା । ତାକୁ କୌଣସି ଭଦ୍ରବ୍ୟକ୍ତି ଉପଦେଶ ଦେଇଥିଲେ ଯେ ସନ୍ଧ୍ୟାବେଳେ ଆଲୁଅ ଜଳୁନଥିବା ଘର ହିଁ ଭଡ଼ା ପାଇଁ ଉପଲଭ୍ୟ ଖାଲିଘର ହୋଇଥିବାର ସମ୍ଭାବନା ଅଧିକ। ଯଦିଓ ବର୍ତ୍ତମାନ ବେଳ ବେଶି ହୋଇନଥିଲା, ଶୀତଦିନ ହୋଇଥିବା ହେତୁ ଅନ୍ଧାର ହୋଇସାରିଥିଲା ଏବଂ ଘରମାନଙ୍କରେ ଆଲୁଅ ଜଳିବା ଆରମ୍ଭ ହୋଇଥିଲା । ଏଇଟି ପଦ୍ମଧରର ବିଶେଷ ଅଜଣା ରାସ୍ତା ନଥିଲା, କାରଣ ସେ ବେଶ୍ କିଛି ଥର କୌଣସି ନା କୌଣସି ଛଳରେ ଏଇ ରାସ୍ତାରେ ଯିବା ଆସିବା କରିଥିଲା, ଯଦିଓ କେବେହେଲେ ବସୁଧାର ଘରକୁ ଯାଇ ତାକୁ ଦେଖା କରିବାର ସାହସ ତା'ର ହୋଇ ନଥିଲା । ଆଜି କିନ୍ତୁ ବସୁଧାର ଘର ହିଁ ଅନ୍ଧାର ଥିଲା ଏବଂ ଖାଲି ଘର ସହିତ ଭଡ଼ାଘରର ଉପଲଭ୍ୟତାର ସମ୍ପର୍କ ତାକୁ ଅଯୌକ୍ତିକ ମନେହେଲା ଏବଂ ସେ ଭଦ୍ରବ୍ୟକ୍ତିଙ୍କର ଉପଦେଶକୁ ସେଇ ମୁହୂର୍ତ୍ତରେ ପ୍ରତ୍ୟାଖ୍ୟାନ କରିଦେଲା ।

ବସଷ୍ଟାଣ୍ଡକୁ ଆସି ସେଠାରୁ ଘରକୁ ଫେରିବାର ବସ୍ ଧରିବାବେଳେ ପଦ୍ମଧରର ନିଦ ଔଷଧ କଥା ମନେପଡ଼ିଲା । ପାଖରେ କିନ୍ତୁ କୌଣସି ଔଷଧ ଦୋକାନ ନଥିଲା । ତେଣୁ ସେ ପାନ ଦୋକାନରୁ ମୁଣ୍ଡବଥା ଔଷଧ କିଣିଲା ଏବଂ ତାକୁ ଖୋଳରୁ ବାହାର କରି ସାଦା କାଗଜରେ ଗୁଡ଼ାଇ ପକେଟରେ ରଖିଲା । ପଦ୍ମଧର ବର୍ତ୍ତମାନ ବେଶ୍ କ୍ଳାନ୍ତ ଥିଲା ଏବଂ ତା ସହିତ ଆହୁରି ଗୋଟିଏ ଦିନ କଟିଗଲା ବୋଲି ଆଶ୍ୱସ୍ତ ମଧ୍ୟ ହେଉଥିଲା । ଘରେ ପହଞ୍ଚିବାକୁ ଆହୁରି ଅଧଘଣ୍ଟା ସମୟ ଥିଲା ; କାଲି ସକାଳ କ୍ଲାସ୍ ପାଇଁ ପନ୍ଦର ଘଣ୍ଟା, ତୃତୀୟ ତାରିଖ ପାଇଁ ସତେଇଶ ଦିନ ଏବଂ ଭଡ଼ାଘର ଛାଡ଼ିବା ପାଇଁ ଅନ୍ୟୂନ ଦୁଇବର୍ଷ । ଅନ୍ୟପକ୍ଷରେ, ସେ ବସୁଧାର ଘରକୁ ବସ୍‌ରେ ସାତ ମିନିଟ ପଛରେ ଛାଡ଼ି ଆସିଥିଲା । ସିନେମାର ପ୍ରଥମ ଶୋ'କୁ ଛାଡ଼ି ଆସିଥିଲା ଦେଢ଼ଘଣ୍ଟା ଓ ସିପାହୀ ବିଦ୍ରୋହକୁ ଶହେବର୍ଷରୁ ବେଶି ପଛରେ ।

ବାହାର ଅଣ୍ଡାରୁ ଆସି ସେ ତା'ର ଭଡ଼ାଘର ଭିତରେ ପଶିଲା । ଯନ୍ତ୍ରଚାଳିତ ଭଳି ସେ ଖାଇପିଇ ବସ୍‌ଷ୍ଟାଣ୍ଡରୁ କିଣିଥିବା ଖବରକାଗଜ ପଢ଼ିଲା ଏବଂ ଶୋଇବାକୁ

ଗଲା । ପାଖ ଖଟରେ ତା'ର ସ୍ତ୍ରୀ ନିଦ ଔଷଧ ଖାଇ, ଯାହାକି ପ୍ରକୃତରେ ନିଦ ଔଷଧ ନଥିଲା, ଗଭୀର ନିଦରେ ଶୋଇଯାଇଥିଲା । ଖଟ ଉପରେ ଶୋଇ ପଦ୍ମଧର କଟିଯାଇଥିବା ଦିନ କଥା ଭାବିଲା ଏବଂ ଏକଥା ଭାବୁ ଭାବୁ ସେ ପୁଣି ସେଇ ପୁରୁଣା ରାସ୍ତା ଧରି ବସୁଧାର ଘର ପାଖରେ ପହଞ୍ଚିଲା । ଏଥରକ ଘରେ ଆଲୁଅ ଜଳୁଥିଲା ଏବଂ ବସୁଧା ବ୍ୟତୀତ ଘରେ ଆଉ କେହି ନଥିଲେ । ବସୁଧା ଆସି ତା ପାଖରେ ବସିଲା ଏବଂ ପଦ୍ମଧର ଆନନ୍ଦ ଓ ତୃପ୍ତିରେ ଆଖି ବନ୍ଦ କରିନେଲା । ଏଇ ଅବସ୍ଥାରେ ସେ କିନ୍ତୁ ତା'ର ବାହୁ ଭିତରେ ନିଜର ସ୍ତ୍ରୀକୁ ହିଁ ଦେଖିଲା । ଏହି ଅନିଚ୍ଛାକୃତ ଅନୁଭୂତିରୁ ବାହାରି ଆସିବା ପାଇଁ ସେ ଆଖି ଖୋଲିଲା ଏବଂ ଆଲୁଅ ଲିଭାଇ ଦେଇ ପାଖରେ ବସିଥିବା ବସୁଧାକୁ ନିଜର ବାହୁ ବନ୍ଧନରେ ବାନ୍ଧିଦେଲା ।

ପଦ୍ମଧର ଯେତେବେଳେ ପୁଣି ଆଖି ଖୋଲିଲା, ଦେଖିଲା ଯେ ତା'ର ହାତ ନିଘୋଡ଼ ନିଦରେ ଶୋଇଥିବା ତା ସ୍ତ୍ରୀ ଉପରେ ରହିଥିଲା । ଏଥରକ ପଦ୍ମଧର ଅତି ସତର୍କତାର ସହିତ ପୁଣି ଆଖି ବନ୍ଦକରି ବସୁଧା ଆଡ଼କୁ ହାତ ବଢ଼ାଇବାକୁ ଚେଷ୍ଟା କଲା ।

# ନିର୍ଦ୍ଧାରିତ ସ୍ଥାନ

ଅନେକ ସମୟ ଏପାଖ ସେପାଖ ଅନାଇ ହରିରାମ ଶେଷରେ ସବୁଠାରୁ ଦୂରରେ ଗୋଟାଏ କଣରେ ପଡ଼ିଥିବା ଚଉକିରେ ଯାଇ ବସିଲା । ତା ଭଳି ଆହୁରି ଅନେକ ଲୋକ ସେ କୋଠରିରେ ବସି ଇଣ୍ଟରଭିଉର ଡାକରା ପାଇଁ ଅପେକ୍ଷା କରୁଥିଲେ । ସମସ୍ତଙ୍କ ମୁହଁ ଉଦ୍‌ବେଗରେ ପରିପୂର୍ଣ୍ଣ ଥିଲା ଏବଂ ଅପେକ୍ଷାର ଏହି ସମୟକୁ କଟାଇବା ପାଇଁ ସମସ୍ତେ ପରସ୍ପର ସହିତ ପରିଚୟ ଓ ସୌଜନ୍ୟ ବିନିମୟରେ ବ୍ୟସ୍ତ ଥିଲେ । ସମସ୍ତେ ନିଜ ନିଜର ସବୁଠାରୁ ଭଲ ପୋଷାକ, ବ୍ୟବହାର ଓ ଆଚରଣ ପିନ୍ଧି ଆସିଥିଲେ ଏବଂ ଏଇ ପରିବେଶ ଭିତରେ ହରିରାମ ନିଜକୁ ଖାପଛଡ଼ା ମନେ କରୁଥିଲା ।

ହରିରାମ ଜାଣିଥିଲା ଯେ ନିଜର ଅନେକ ଚେଷ୍ଟା ସତ୍ତ୍ୱେ ବି ସେ ଏମାନଙ୍କର ସମକକ୍ଷ ହୋଇପାରି ନଥିଲା । ସେ କୃଷ୍ଣକାୟ ଥିଲା ଏବଂ ନିଜକୁ କୁରୂପ ମନେ କରୁଥିଲା । ତା'ର ପୋଷାକ, ଚାଲିଚଳନ, ଉଚ୍ଚାରଣ ସବୁ ଯେପରି ଏକ ନ୍ୟୂନତାର ପରିଚାୟକ ଥିଲା । ସେ ନିଜର ନୀଚ ଜାତିରେ ଜନ୍ମ, ଦରିଦ୍ର ପିତା, ଅଶିକ୍ଷିତା ସ୍ତ୍ରୀ ଓ ପରଶ୍ରୀକାତରତା ଜ୍ଞାତିମାନଙ୍କୁ ମନେ ମନେ ଧିକ୍‌କାର କଲା ଏବଂ ନିଜର ନ୍ୟୂନବୋଧରେ ନିଜକୁ ଆହୁରି ସଂକୁଚିତ କରିନେଲା ।

ନିଜକୁ ଏତେ ହେୟ ଜ୍ଞାନ କରିବା ମୂଳରେ ହରିରାମର କୌଣସି ଯୁକ୍ତି ନ ଥିଲା, କାରଣ ସେ ବର୍ତ୍ତମାନ ଯେଉଁଠାରେ ପହଞ୍ଚିଥିଲା ତାହା ଏକ ଗୌରବର ବିଷୟ ଥିଲା । ସେ ସେମାନଙ୍କ ଗାଁର ଏବଂ ସେମାନଙ୍କ ଜାତିର ସବୁଠାରୁ ଉଚ୍ଚଶିକ୍ଷିତ ଥିଲା । ତା'ର ବାପା ମୋଚିକାମ କରୁଥିଲା ଏବଂ ତା'ର ପୂର୍ବପୁରୁଷମାନଙ୍କ ଭିତରୁ କେହି ପାଠ ପଢ଼ିନଥିଲେ । ହରିରାମ ଜାଣିଥିଲା ଯେ ସେ ନିଜର ଅଦମ୍ୟ ନିଷ୍ଠା ଏବଂ ଅଧ୍ୟବସାୟ ବଳରେ ହିଁ ତା'ର ଗାଁ ଲୋକ ଜ୍ଞାତି-ପରିଜନଙ୍କଠାରୁ ଅନେକ ଉପରକୁ ଚାଲି ଆସିପାରିଥିଲା । କିନ୍ତୁ ବର୍ତ୍ତମାନ ତାକୁ ଏକ ଅନତିକ୍ରମଣୀୟ ହତୋତ୍ସାହ ଆଚ୍ଛନ୍ନ କରି ରଖିଥିଲା । ଏଇ ମୁହୂର୍ତ୍ତରେ ତା'ର ଇଚ୍ଛା ହେଲା ସେ ସେଇ ଅନ୍ୟ ଯୁବକଟି ଭଳି ହୋଇପାରନ୍ତା କି, ଯେ ନିଜର ସମସ୍ତ ଅଭାବମାନଙ୍କୁ ଗୋଟିଏ ଗୋଟିଏ ଗୁଣରେ ପରିଣତ କରିଦେଇଥିଲା ।

ଏଇପରି ଅନ୍ୟ କୌଣସି ଇଣ୍ଟରଭିଉର ଅପେକ୍ଷା କରିବା ବେଳେ ଯୁବକଟି ଆସି ପହଞ୍ଚିଥିଲା । ତା ମୁହଁରେ ଅସମ୍ଭବ ପ୍ରତ୍ୟୟ ଥିଲା ଏବଂ ହରିରାମ ସମେତ ଆଉ କେତେଜଣକ ଆଗରେ ଠିଆ ହୋଇ ସିଗାରେଟ ଧୂଆଁ ଉଡ଼ାଇ ଯୁବକଟି କହିଲା, ତମେମାନେ ବୃଥା ସମୟ ନଷ୍ଟ କରୁଛ, ଚାକିରିଟି ମୋର । କିଏ ଜଣେ ପଚାରିଲା, ମନ୍ତ୍ରୀଙ୍କର ଲୋକ ? ଯୁବକଟି କହିଲା, ମୋର ଏତେ ଯୋଗ୍ୟତା ଅଛି ଯେ ମୋର କୌଣସି ସୁପାରିସର ପ୍ରୟୋଜନ ନାହିଁ। ଆଉ ଜଣେ ବ୍ୟଙ୍ଗ କରି କହିଲା, ତମେ ତା ହେଲେ ହରିଜନ ହୋଇଥିବ । ଏ ପ୍ରଶ୍ନରେ ହରିରାମ ଛାତିରେ ହଠାତ ଆଘାତ ଲାଗିଲା ଏବଂ ତା'ର ହୃତ୍‌ସ୍ପନ୍ଦନ ଦ୍ରୁତ ହୋଇଗଲା । କିନ୍ତୁ ଯୁବକ ଅନାୟାସରେ କହିଲା, ହଁ, କିନ୍ତୁ ମୁଁ ଦରଖାସ୍ତରେ ଲେଖିଦେଇଛି ମୁଁ ମୋର ନୀଚ ଜାତି ପାଇଁ କୌଣସି ବିଶେଷ ସୁବିଧା ଚାହେଁ ନାହିଁ । ମୁଁ ନିଜର ଯୋଗ୍ୟତା ଉପରେ ହିଁ ବିବେଚିତ ହେବି । ଯୁବକ ଏଥରକ କିଛି ସମୟ ଚୁପ୍ ରହିଲା । ପୁଣି ସିଗାରେଟରୁ ଧୂଆଁ ଉଡ଼ାଇ ସମସ୍ତଙ୍କ ଆଡ଼କୁ ଅବଜ୍ଞାର ସହିତ ଅନାଇ ହସିଲା । କହିଲା, ମୋର ବାପା ସଫାଇବାଲା କାମ କରନ୍ତି । ସଫାଇବାଲା ଗୋଟାଏ ଭଦ୍ର ଶବ୍ଦ ମାତ୍ର । ପ୍ରକୃତ କାମ ହଉଚି ମେହେନ୍ତର । ମୋର ମା' ବି ମେହେନ୍ତରାଣୀ ।

ହରିରାମ ଜାଣିଥିଲା ଯେ ସେ କେବେହେଲେ ସେଇ ଯୁବକଟି ଭଳି ହୋଇପାରିବ ନାହିଁ । ନିଜର ନୀଚକୁଳର ଜନ୍ମ ବିଷୟରେ ଗର୍ବ କରିବା ତ ଦୂରକଥା, ଏକଥାକୁ କାହାକୁ କହିବାବେଳେ ସେ ସଂକୁଚିତ ହୋଇଯାଉଥିଲା । ସେ ଭାବିଲା ହୁଏତ ସହରଠାରୁ ଦୂରରେ ମଫସଲ ଗାଁର ଜାତିଆଣ ପରିବେଶ ଭିତରେ ବଢ଼ିଆସିଥିବା ତା'ର ସଂକୋଚର କାରଣ ଥିଲା । ତା'ର ନିଜର ପିଲାଦିନ କଥା ମନେପଡ଼ିଲା । ଯଦିଓ ସେ ପିଲାଦିନୁ ଭଲ ପାଠ ପଢୁଥିଲା, ତାକୁ ସବୁ ପିଲାମାନଙ୍କଠାରୁ ଦୂରରେ ଅନ୍ୟ ଜାଗାରେ ବସିବାକୁ ପଡୁଥିଲା । ଖେଳଛୁଟିରେ ସେ ଅନ୍ୟମାନଙ୍କଠାରୁ ଦୂରରେ ରହୁଥିଲା ଏବଂ ଛୁଟି ହେଲେ ସିଧା ଘରକୁ ଫେରି ନିଜ ବାପାକୁ କାମରେ ସାହାଯ୍ୟ କରୁଥିଲା । ତା'ର ମାଷ୍ଟର ତା'ର ପାଠପଢ଼ାରେ ଖୁସି ଥଲେ ମଧ୍ୟ ଗୋଟିଏ ହରିଜନ ପିଲା ଭଲ ପାଠ ପଢୁଛି, ଏ ବିଷୟରେ କେବେହେଲେ ସନ୍ତୁଷ୍ଟ ନଥିଲେ ।

ତାଙ୍କ ଅଞ୍ଚଳର ସବୁଠାରୁ ଧନୀ ଲୋକ ଥିଲା ସେ ଗାଁର ଖଣି ମାଲିକ ଯାହାକୁ ସମସ୍ତେ ସେଠ୍ ବୋଲି କହୁଥିଲେ । ସେ କେଉଁ ଜାତିର ଥିଲା ସେ ବିଷୟରେ କେହି ସଠିକ ଜାଣିନଥିଲେ ମଧ୍ୟ ତାକୁ ଉଚ୍ଚ ଜାତିରେ ଗଣୁଥିଲେ ଏବଂ ସେଠ୍‌ର ପିଲାମାନେ ବ୍ରାହ୍ମଣତ୍ୱ ଦାବି କରିବା କଥାକୁ ମଧ୍ୟ କେହି ପ୍ରତିବାଦ କରୁନଥିଲେ । ହରିରାମର ପିଲାଦିନର କଥା ମନେପଡ଼ିଲା, ଯେଉଁଦିନ ହଠାତ ବର୍ଷା ହେବାରୁ ସ୍କୁଲରୁ ଦୌଡ଼ି ଦୌଡ଼ି ଘରକୁ ଆସିବାବେଳେ ଅଜାଣତରେ ତା'ର ଧକ୍‌କାରେ ସେଠ୍‌ର ପିଲା ତଳକୁ

ପଡ଼ିଯାଇଥିଲା । ସ୍କୁଲର ମାଷ୍ଟର ତାକୁ ଏଥିପାଇଁ ମାଡ଼ ଦେଇଥିଲା ଏବଂ ସେ ଯେତେବେଳେ ଘରେ ଯାଇ ଏକଥା କହିଲା, ତା ବାପା ତାକୁ ଗାଳିଦେଲା । ତା'ପରେ ତା ବାପା ତାକୁ ନେଇ ସେଠ୍ ଘରକୁ ଗଲା ଏବଂ ସେଠାରେ ସମସ୍ତଙ୍କ ଆଗରେ ତାକୁ ମାଡ଼ ଦେଲା । ସେତେବେଳେ ସେ ଅନେକ କାନ୍ଦିଥିଲା ଏବଂ ବାପ ଉପରେ କ୍ରୋଧ କରିଥିଲା । ପରେ ଅବଶ୍ୟ ସେ ବୁଝିପାରିଥିଲା ଯେ ତା'ର ବାପା ତା'ର ଭଲ ପାଇଁ ଏକଥା କରିଥିଲା । କାରଣ ତା'ର ବାପା ଯଦି ତାକୁ ସେଇ ସାମାନ୍ୟ ମାଡ଼ ଦେଇ ନଥା'ନ୍ତା, ତାହେଲେ ତାକୁ ସେଠ୍‌ର ଚାକରମାନଙ୍କ ପାଖରୁ ଆହୁରି ବେଶି ମାଡ଼ ଖାଇବାକୁ ହୋଇଥା'ନ୍ତା ।

ହରିରାମ ହାଇସ୍କୁଲ ବି ପାଶ୍ କଲା । ସେ ବର୍ତ୍ତମାନ ଦେଶର ସ୍ୱାଧୀନତା, ଅସ୍ପୃଶ୍ୟତା ନିବାରଣ ଇତ୍ୟାଦି ବିଷୟରେ କିଛି କିଛି ଜାଣୁଥିଲେ ବି ଏ କଥା ବୁଝୁଥିଲା ଯେ ତାଙ୍କର ଗାଁରେ ଏସବୁ କଥାର କୌଣସି ମାନେ ନାହିଁ । ତା'ର ବାପା ଏ ପର୍ଯ୍ୟନ୍ତ ମୋଚି କାମ କରୁଥିଲା, ସେମାନଙ୍କର ଆର୍ଥିକ ଅବସ୍ଥାର କୌଣସି ଉନ୍ନତି ହୋଇ ନଥିଲା ଏବଂ ସେମାନଙ୍କ ଜାତିର ଲୋକମାନେ ଏ ପର୍ଯ୍ୟନ୍ତ ଗାଁମୁଣ୍ଡରେ ଭାଙ୍ଗି ପଡୁଥିବା ନୁଆଁଣିଆ ଚାଳଘରେ ଅନ୍ୟମାନଙ୍କଠାରୁ ଅଲଗା ରହୁଥିଲେ । ସେ ଯୋଉଦିନ ମାଟ୍ରିକ ପରୀକ୍ଷା ପାଶ୍ କଲା ତା'ର ବାପା ତାକୁ ନେଇ ସେଠ୍ ଘରକୁ ଗଲା । ସେଠ୍ ଘର ବାରଣ୍ଡାରେ ଖାଲି ଦେହରେ ବସିଥିଲା । ହରିରାମର ବାପା ମାଟି ଉପରେ ଉପରେ ଶୋଇଯାଇ ତାକୁ ସାଷ୍ଟାଙ୍ଗ ନମସ୍କାର କଲା । ତା ଦେଖାଦେଖି ନିଜର ସଫା ପ୍ୟାଣ୍ଟକୁର୍ତ୍ତା କଥା ନ ଭାବି ହରିରାମ ମଧ୍ୟ ତଳେ ପଡ଼ି ନମସ୍କାର କଲା । ସେଠ୍ ନିଜର ମୋଟା ଦେହକୁ ପଙ୍ଖାରେ ବିଞ୍ଚି ବିଞ୍ଚି ହରିରାମର ମାଟ୍ରିକ ପାଶ୍ କରିଥିବା ଖବର ଶୁଣି ଖୁସି ହେଲା ଏବଂ କହିଲା, ଶଳା ଯୁଗ ଓଲଟା ହେଲା, ଆମ ପିଲାସବୁ ପାଠ ନ ପଢ଼ି ଘରେ ବସୁଛନ୍ତି, ଏଣେ ମୋଚିପିଲା ମାଟ୍ରିକ ପାଶ୍ କଲାଣି । ହରିରାମ ଏକଥା ଶୁଣି ପୁଣି ହାତଯୋଡ଼ି ସେଠ୍‌କୁ ନମସ୍କାର କଲା କହିଲା, ହଜୁର ଏ ପିଲାର କିଛି ଗୋଟାଏ ବ୍ୟବସ୍ଥା କରି ଦିଅନ୍ତୁ ।

ସେଠ୍ ହରିରାମକୁ ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ଥରେ ଦେଖିନେଲା । ବାପା ତାକୁ ଠାରିଲା ଏବଂ ହରିରାମ ତଳକୁ ମୁଣ୍ଡ ପୋତି ପୁଣିଥରେ ହାତ ଯୋଡ଼ିଲା । ସେଠ୍ ବେଶ୍ ପ୍ରସନ୍ନ ଥିଲା ଏବଂ କହିଲା, କ'ଣ, ଆଉ ପାଠ ପଢ଼ିବୁ ? ଏ ମୋଚିପିଲା ମାଇନିଙ୍ଗ୍ ସ୍କୁଲରେ ପଢ଼ିବ । ତା ବାପକୁ ମାସକୁ ମାସ ଖର୍ଚ୍ଚ ଦେଇଦେବ । ହରିରାମର ବାପା ପୁଣି ତଳେ ଶୋଇ ସେଠ୍‌କୁ ଜୁହାର କଲା ଏବଂ ଏଇପରି ଭାବରେ ହରିରାମ ପୁଣି ପାଠ ପଢ଼ିଲା ।

ସ୍କୁଲ ହଷ୍ଟେଲରେ ହରିରାମ ଏକମାତ୍ର ଅଛୁଆ ପିଲା ଥିଲା ଏବଂ ସେ

ସମୟରେ ଅପମାନଜନକ ଓ ଯାତନାପୂର୍ଣ୍ଣ ଅନୁଭବସବୁ ଭୁଲିଯିବାକୁ ସେ ଶ୍ରେୟସ୍କର ମନେକରୁଥିଲା । ସେ ଅନ୍ୟ ପିଲାମାନଙ୍କଠାରୁ ଯେତେଦୂର ସମ୍ଭବ ଅଲଗା ରହୁଥିଲା ଓ ପାଠପଢ଼ାରେ ମନ ଦେଉଥିଲା । ଖୁବ୍ ଭଲ ପାଠ ପଢୁନଥିଲେ ବି ଠିକ୍ ସମୟରେ ସେ ପରୀକ୍ଷାମାନଙ୍କରେ ପାଶ୍ କରୁଥିଲା ଏବଂ ଦେଖୁଦେଖୁ ମାଇନିଙ୍ଗ ସ୍କୁଲର ପାଠ ବି ଶେଷ କରିଦେଲା । ପୁଣି ବାପ ପୁଅ ଯାଇ ହାତଯୋଡ଼ି ସେଠ ଆଗରେ ଠିଆ ହେଲେ । ସେଠ୍ ସେତେବେଳକୁ ବେମାର ଥିଲା, କିନ୍ତୁ ଏମାନଙ୍କୁ ଦେଖି ଖୁସି ହେଲା । ହରିରାମର ବାପା କହିଲା, ଆପଣଙ୍କ ଦୟାରୁ ଏ ପିଲା ମଣିଷ ହେଲା, ଆପଣଙ୍କ ଟଙ୍କାରେ ପାଠ ପଢ଼ିଲା । ଟିକିଏ କାମରେ ଲଗାଇ ଦିଅନ୍ତୁ । ପଛେ ଦରମା ନ ପାଉ, କାମ ଶିଖୁ ।

ସେଠ୍ କହିଲା, ମୁଁ ତାକୁ ଟଙ୍କା ଦେଇ ପାଠ ପଢ଼ାଇଛି ସେକଥା ଭୁଲିଯାଅ । ଯଦି ସେ ଆଉ କୋଉଠି ଭଲ ଚାକିରି ପାଉଛି, ଯାଇ ଚାକିରି କରୁ । କିନ୍ତୁ ମୋ ପାଖରେ ଯଦି କାମ କରିବ ତାହେଲେ ଦିନମଜୁରିରେ ହିଁ କାମ କରିବ । କାମ ଥିଲା ଦିନଯାକ ଦରମା ପାଇବ, କାମ ନଥିଲେ ମଜୁରି ନାହିଁ । ଦେଖ, ତମର ଇଚ୍ଛା । ହରିରାମ ତା ବାପା ମୁହଁକୁ ଅନାଇଲା, ଏବଂ ବାପା କହିଲା, ନା, ସେ ଆପଣଙ୍କ ପାଖରେ କାମ କରିବ। ସେଠ୍ ଖୁସି ହେଲା, କହିଲା, କିଛି ଜୋର ଜବରଦସ୍ତି ନାହିଁ, ଯେମିତି ତମର ଇଚ୍ଛା । ମୁଁ ଭଲ ମଜୁରି ଦେବି । ଦିନକୁ ସାତଟଙ୍କା । ବାପ ପୁଅ ତାକୁ ପୁଣି ନମସ୍କାର କଲେ । ସେଠ୍ ମ୍ୟାନେଜରକୁ ଡାକି କହିଲା, ଏ ମୋଚିପିଲା ପାଇଁ ବାହାରେ ଗୋଟାଏ ଚଉକି ପକାଇ ଦିଅ ।

ଏଇ ତା'ର ଚାକିରି ଜୀବନର ଆରମ୍ଭ ଥିଲା । ଅଛୁଆଁ ଥିବାରୁ ସେ ଅଫିସ୍‌ର ଅନ୍ୟମାନଙ୍କ ସାଙ୍ଗରେ ନ ବସି ବାହାରେ ବସୁଥିଲା । ଯଦିଓ ସେ ଅନ୍ୟମାନଙ୍କ ଅପେକ୍ଷା ଅଧିକ ଦରମା ପାଉଥିଲା, ତାକୁ ସମସ୍ତେ, ଏପରିକି ତା'ର ଅଧସ୍ତନମାନେ ମଧ୍ୟ ହେୟଦୃଷ୍ଟିରେ ଦେଖୁଥିଲେ ଏବଂ ଏକଥା ତା'ର କାମରେ ଅସୁବିଧା ସୃଷ୍ଟି କରୁଥିଲା । ହରିରାମ ବର୍ତ୍ତମାନ ଏକଥା ବୁଝିଥିଲା ଯେ ତା'ର ଏତେ ପାଠ ପଢ଼ିଥିବା ସତ୍ତ୍ୱେ ବି ସେ ତା'ର ଜାତି ଓ ପରିବାରର ନିମ୍ନ ସାମାଜିକ ସ୍ତରରୁ ଉପରକୁ ଯାଇପାରି ନଥିଲା ଏବଂ ତା'ର ମାଇନିଙ୍ଗ ପାଠ କାମ ସତ୍ତ୍ୱେ ସେ ପ୍ରକୃତରେ ମୋଚି ହିଁ ଥିଲା ।

ଏଇ ଅବସ୍ଥାରୁ ବାହାରିଯିବା ପାଇଁ ସେ ଘରୋଇ ଭାବରେ ପାଠ ପଢ଼ିଲା ଏବଂ କେତେ ବର୍ଷ ଭିତରେ ଡିପ୍ଲୋମା ପାଇବାରେ ସମର୍ଥ ହେଲା । ଏଇ ଭିତରେ ସେ ଗୋଟିଏ ଅଶିକ୍ଷିତା ଝିଅକୁ ବାହା ହୋଇଥିଲା ଏବଂ ତା'ର ପିଲାମାନେ ଏକ ଅସୁସ୍ଥ ଓ ଦାରିଦ୍ର୍ୟଗ୍ରସ୍ତ ବାୟୁମଣ୍ଡଳରେ ବଢୁଥିଲେ । ସେ ଭାବିଲା ତା ଗାଁର ପରିବେଶ ଭିତରୁ ବାହାରିଗଲେ ସେ ଏଇ ଶ୍ୱାସରୁଦ୍ଧ କରୁଥିବା ତା'ର ଜନ୍ମଜାତ ନୀଚସ୍ତରରୁ ମୁକ୍ତି ପାଇଯିବ । ତେଣୁ ସେ ତା'ର ଦିନମଜୁରି ଚାକିରି ଛାଡ଼ି ସହରରେ ଚାକିରି ପାଇଁ

ଚେଷ୍ଟା କରିବା ଠିକ୍ କଲା ।

କିନ୍ତୁ ଚାକିରି ଏତେ ସହଜରେ ମିଳିବାର ନଥିଲା । ବାରମ୍ବାର ଇଣ୍ଟରଭିଉ ଦେବା ପରେ ସେ ବୁଝିଲା ଯେ ଅଧିକାଂଶ କ୍ଷେତ୍ରରେ ଏହା କେବଳ ଲୋକଦେଖାଣିଆ ବ୍ୟବସ୍ଥା ଥିଲା, କାରଣ ଚାକିରିରେ କାହାକୁ ନିଆଯିବ, ସେ ବିଷୟ ଆଗରୁ ନିର୍ଣ୍ଣୀତ ହୋଇଯାଉଥିଲା । ଇଣ୍ଟରଭିଉବେଳେ ତାକୁ ଅନେକ ବିଦ୍ରୂପାତ୍ମକ ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡୁଥିଲା । ତା'ର ଦିନମଜୁରିର ଚାକିରି ବିଷୟରେ ମନ୍ତବ୍ୟ ହେଉଥିଲା ଏବଂ ଶେଷକୁ ସେ ମନୋନୀତ ହେଉ ନଥିଲା । ସେ ସେଠ୍‌ର ଅଫିସକୁ ଫେରିଯାଉଥିଲା । ସେଠ୍ ଭଲଲୋକ ଥିଲା ଏବଂ ତା'ର କାମରେ ସନ୍ତୁଷ୍ଟ ଥିଲା । କେବଳ ତାକୁ ଥଟ୍ଟା କରି କହୁଥିଲା, କ'ଣ ପୁଣି ଫେରି ଆସିଲୁ ? ମ୍ୟାନେଜର ତା ପାଇଁ ପୁଣି ବାହାରେ ଚଉକିର ବ୍ୟବସ୍ଥା କରୁଥିଲା ।

ଏଭଳି ଅନେକ ବର୍ଷ ଚାଲିଗଲା ଏବଂ ହରିରାମ ବାରମ୍ବାର ବିଭିନ୍ନ ଇଣ୍ଟରଭିଉରୁ ଫେରିଆସି ପୁଣି ବାରଣ୍ଡାରେ ପଡ଼ିଥିବା ଚଉକିରେ ଆସି ବସୁଥିଲା । ତା'ର ବୟସ ଚାଲି ଯାଇଥିଲା ଏବଂ ସେ ଜାଣିଥିଲା ଯେ ଆଉ ଇଣ୍ଟରଭିଉ ପାଇଁ ମଧ୍ୟ ଡାକରା ଆସିବ ନାହିଁ । ଏଇଟି ତା'ର ଶେଷ ଇଣ୍ଟରଭିଉ ଥିଲା । ଘରୁ ବାହାରିବାବେଳେ ଜଣାଅଜଣା ସବୁ ଦେବଦେବୀଙ୍କୁ ନମସ୍କାର କରି ସେ ତା'ର ବାପାର ଆଶୀର୍ବାଦ ନେଇ ଆସିଥିଲା । ଏଇ ଶେଷ ଇଣ୍ଟରଭିଉ ତା ପାଇଁ ଏକ ଅନ୍ୟପ୍ରକାର ଭବିଷ୍ୟତର ଅନ୍ତିମ ପ୍ରବେଶଦ୍ୱାର ଥିଲା ।

ଅପେକ୍ଷା କରି କରି ସେ ଯେତେବେଳେ ସମ୍ପୂର୍ଣ୍ଣ କ୍ଳାନ୍ତ ହୋଇଯାଇଥିଲା, ତାକୁ ଭିତରକୁ ଯିବାପାଇଁ ଡାକରା ଆସିଲା । ଇଣ୍ଟରଭିଉ କୋଠରିର କବାଟ ଭିତରକୁ ଖୋଲିବ କି ବାହାରକୁ ସେକଥା ସବୁବେଳେ ତା ପାଇଁ ଏକ ସମସ୍ୟା ହେଉଥିଲା । ଯାହାହେଉ ସେ ଭିତରକୁ ଯାଇ ପାଞ୍ଚଜଣ ବିଜ୍ଞ ବ୍ୟକ୍ତିଙ୍କ ବୋର୍ଡ଼ର ସମ୍ମୁଖୀନ ହେଲା । ତାକୁ ବସିବାକୁ କହିବା ପରେ ପ୍ରଶ୍ନର ବାଣ ସବୁ ଆରମ୍ଭ ହେଲା । ତା'ର ଜନ୍ମ, ବିଦ୍ୟା, ବୁଦ୍ଧି, ଅଧ୍ୟୟନ ଓ ଚାକିରିର ତାଲିକା ନେବା ପରେ ଶେଷକୁ ସେଇ ଅନିବାର୍ଯ୍ୟ ପ୍ରଶ୍ନ ହେଲା, ତମେ ଏତେଦିନ ଦିନମଜୁରିର ଚାକିରି କାହିଁକି କରୁଛ, ଭଲ ଚାକିରି କାହିଁକି ପାଇନାହଁ ? ହରିରାମ ଯଦିଓ ଏ ପ୍ରଶ୍ନ ଆସିବ ବୋଲି ଜାଣିଥିଲା, ତା ପାଇଁ ଏ ପ୍ରଶ୍ନର ଉତ୍ତର ଏତେ ସହଜ ନଥିଲା । ସେ କହିବାକୁ ଆରମ୍ଭ କଲା, ମୋର ଜନ୍ମ ଗୋଟିଏ ନିପଟ ମଫସଲ ଗାଁରେ । ମୁଁ ଗୋଟିଏ ନିତାନ୍ତ ଗରିବ ହରିଜନ ପରିବାରରେ ଜନ୍ମ ହୋଇଥିଲି...।

ଏତିକି କହି ସେ ତା'ର ପ୍ରଶ୍ନକର୍ତ୍ତାଙ୍କ ମୁହଁକୁ ଅନାଇଲା । ସେ ଗୋଟାଏ କାଗଜରେ କ'ଣ ଲେଖିବାରେ ନିବିଷ୍ଟ ଥିଲେ । ଆଉ ଦୁଇଜଣ ନିଜ ନିଜ ଭିତରେ

କଥୋପକଥନରେ ବ୍ୟସ୍ତ ଥିଲେ । ଜଣେ ତାଙ୍କ ପାଇପ୍ ସଫା କରୁଥିଲେ । ତା କଥାକୁ ଶୁଣୁଥିବା ଏକମାତ୍ର ଭଦ୍ରବ୍ୟକ୍ତି ବିରକ୍ତିର ସହ ତା କଥା ଶୁଣୁଥିଲେ ଏବଂ ତାକୁ କହିଲେ, ଏତେ ଭୂମିକାର ଦରକାର ନାହିଁ । ସଂକ୍ଷେପରେ ଉତ୍ତର ଦିଅ ।

ହରିରାମ ତାଙ୍କ ମୁହଁକୁ ଅନାଇଲା । ଭଦ୍ରବ୍ୟକ୍ତିଙ୍କ ଅସହିଷ୍ଣୁ ପ୍ରଶ୍ନ ଓ ବିରକ୍ତ ମୁହଁ ତାକୁ ହତୋତ୍ସାହ କରିଦେଲା । ସେ ନିଜକୁ ନିଜ ଭିତରେ ଆହୁରି ସଙ୍କୁଚିତ କରିନେଲା ଏବଂ କହିଲା ସଂକ୍ଷେପରେ କହିବାକୁ ଗଲେ... । ତା'ପରେ ସେ ଚୁପ୍ ରହିଲା । ଏତେକଥାକୁ କିପରି ସଂକ୍ଷେପରେ କୁହାଯାଇପାରେ : ଅନେକ ଶତାବ୍ଦୀର ଶୋଷଣ, କୁସଂସ୍କାର, ଅତ୍ୟାଚାର, ଦାରିଦ୍ର୍ୟ, ଋଗ୍‌ବେଦ, ବ୍ରହ୍ମାଙ୍କର ପାଦ, ମନୁ, ବ୍ରହ୍ମବୈବର୍ତ୍ତ ପୁରାଣ, ଗାନ୍ଧି, ଅସ୍ପୃଶ୍ୟତା ଆଇନ, ଆମ୍ବେଦକର, ମନ୍ଦିର ପ୍ରବେଶ, ମୋଚି ସାହି, ସନାତନ ହିନ୍ଦୁ ଧର୍ମ, ଛୁଆଁ ଅଛୁଆଁ, ପଞ୍ଚାମୃତ, ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ, ଭଙ୍ଗୀ କଲୋନୀ, ବେଠି ବେଗାରି, ସଦ୍‌ଗତି, ମୁକ୍ତିମଣ୍ଡପ ପଣ୍ଡିତ ସଭା, ଶ୍ରୀୟା ଚଣ୍ଡାଳୁଣୀ, ସ୍ଥାନ ସଂରକ୍ଷଣ, ଅଲଗା କୂଅ, ଧର୍ମାନ୍ତର ଗ୍ରହଣ, ତଫସିଲଭୁକ୍ତ, ଶୁଦ୍ଧି, ହରିଜନ, ଅପରିଚ୍ଛନ୍ନ ବୃତ୍ତି, ବେଲଛି ? ହରିରାମ ଚୁପ୍ ରହିଲା ଏବଂ ଜାଣିଲା ଯେ ସେ ଅକୃତକାର୍ଯ୍ୟ ହୋଇଛି । ତା'ର ଭବିଷ୍ୟତ ବର୍ତ୍ତମାନ ନିଶ୍ଚିତ ଓ ନିର୍ଦ୍ଧାରିତ ଥିଲା ଯାହାକୁ ହରିରାମ ବର୍ତ୍ତମାନ ଇଣ୍ଟରଭିଉ କୋଠରିରେ ନିର୍ବାକ ବସି ରହିଥିବାବେଳେ ସ୍ପଷ୍ଟ ଭାବରେ ଦେଖିପାରୁଥିଲା ।

କୋଠରିର କବାଟ ବାହାରକୁ ଖୋଲୁଥିଲା, ଯାହାକୁ ଅନାୟାସରେ ଖୋଲି ସେ ବାହାରକୁ ଆସିଲା । ସେଠାରୁ ଚାଲି ଚାଲି ସେ ବସ୍‌ଷ୍ଟପ୍ ଗଲା, ପୁଣି ବସ୍‌ରୁ ଓହ୍ଲାଇ ଉପରବେଳାର ଟ୍ରେନ୍, ସନ୍ଧ୍ୟାବେଳେ ଗାଁର ରାସ୍ତା ଧରି ଘରେ କାହାରି ସହିତ କିଛି କଥା ନ କହି ଗୋଟିଏ ରାତି କଟାଇଲା । ଆର ଦିନ ସକାଳେ ସେ ଯାଇ ସେଠ୍‌ର ଘରେ ହାତଯୋଡ଼ି ଛିଡ଼ାହେଲା । ସେଠ୍ ଅନେକଦିନୁ ମରିଯାଇଥିଲା । ତା'ର ପୁଅ, ଯେ କି ବର୍ତ୍ତମାନ ବ୍ୟବସାୟ କଥା ବୁଝୁଥିଲା, ସାଫାରି ସୁଟ ପିନ୍ଧୁଥିଲା ଏବଂ ସୁସଜ୍ଜିତ କୋଠରିରେ ବସୁଥିଲା । ଅତି ସନ୍ତର୍ପଣରେ ହରିରାମ ତାକୁ ଯାଇ ନମସ୍କାର କଲା । ତାକୁ ଦେଖି ସେଠ୍‌ର ପୁଅ ହସିଲା କହିଲା, କ'ଣ ପୁଣି ଫେରି ଆସିଲୁ ? ଏବଂ ମ୍ୟାନେଜରକୁ ଡାକି କହିଲା, ମୋଚି ପାଇଁ ବାହାରେ ଚଉକି ପକାଇ ଦିଅ ।

# ପିକନିକ

ଟୁର୍‌ରୁ ଫେରି ଜୟଦେବ ଘରେ ପାଦ ଦେଇଛି କି ନାହିଁ ସୁନନ୍ଦା ତାକୁ କହିଲା, ବୁଝିଲ, କାଲି ଆମେ ପିକନିକରେ ଯାଇଥିଲୁ । ଜୟଦେବ ଅଫିସ୍ କାମ ନେଇ ସାମାନ୍ୟ ଚିନ୍ତାଗ୍ରସ୍ତ ଥିଲା ଏବଂ କହିଲା, ଆଚ୍ଛା, ତା ପରେ ସେ ସୁନନ୍ଦାକୁ ତା'ର ଅନୁପସ୍ଥିତିରେ କେଉଁ କେଉଁଠାରୁ ଟେଲିଫୋନ ଆସିଥିଲା ସେକଥା ପଚାରିଲା । ତା'ର ଏତେବଡ଼ ଖବରଟା ଜୟଦେବର ବିନା ପ୍ରତିକ୍ରିୟାରେ 'ଆଚ୍ଛା'ରେ ଏପରି ବ୍ୟର୍ଥ ଯିବ, ଏକଥା ସୁନନ୍ଦାକୁ ଭଲ ଲାଗିଲା ନାହିଁ । ତେଣୁ ସେ ଅଳ୍ପ ସମୟ ପରେ ଜୟଦେବକୁ ଖାଇବାକୁ ଦଉ ଦଉ କହିଲା, ଲେକ୍ ପାଖରେ ଏତେ ଭଲ ପିକନିକ କରିବାର ଜାଗା ଅଛି, ଆମେ ନିଶ୍ଚେ କେବେ ଯିବା । ଅଫିସ୍ ସମୟ ହୋଇ ଆସୁଥିବାରୁ ଜୟଦେବ ଘଡ଼ିକୁ ଦେଖିଲା ଏବଂ କହିଲା, ହଁ, ଆର ରବିବାରକୁ ଗଲେ ହେବ ।

ସୁନନ୍ଦା ଭାବିଥିଲା ଯେ ସେ ପିକନିକ କଥା କହିବା ମାତ୍ରେ ଜୟଦେବ ତାକୁ କେବେ କେଉଁଠାରେ କିଏ କିଏ ଆସିଥିଲେ ଇତ୍ୟାଦି ପ୍ରଶ୍ନମାନ କରି ବ୍ୟସ୍ତ କରିଦେବ। କିନ୍ତୁ ଜୟଦେବ ଥିଲା ଭିନ୍ନ ପ୍ରକୃତିର, ଅଯଥା କୌତୂହଳହୀନ ଲୋକ । ସୁନନ୍ଦାର ମନେପଡ଼ିଲା ଅନେକ ଦିନ ତଳେ, ତା'ର ବାହାଘରର ଅଳ୍ପ କିଛିଦିନ ପରେ, ସେ ଜୟଦେବକୁ ତା'ର ଖୋଲୁ ନଥିବା ଛୋଟ ସୁଟକେସକୁ ଖୋଲିବାକୁ କହିଥିଲା । ଏଇ ଛୋଟ ସୁଟକେସରେ ତା'ର ଅନେକ ଛୋଟ ଛୋଟ ବ୍ୟକ୍ତିଗତ ଜିନିଷମାନ ଥିଲା, ଯଥା ତା'ର ଭିନ୍ନ ଭିନ୍ନ ବୟସର ଫଟୋ, ସାଙ୍ଗମାନଙ୍କ ପାଖରୁ ଆଣି ଲୁଚାଇ ପଢୁଥିବା ବହି, କିଏ ଦେଇଥିବା ରୁମାଲ, ଗୋଲାପୀ ଓ ନୀଳ କାଗଜର ଚିଠି ଇତ୍ୟାଦି । ସୁଟକେସର ଚାବି ହଜି ଯାଇଥିଲା, କିନ୍ତୁ କଣ୍ଟା ଦେଇ ଜୟଦେବ ଅତି ସହଜରେ ସୁଟକେସକୁ ଖୋଲିଦେଲା । ସୁନନ୍ଦା ଆଶା କରିଥିଲା, ଜୟଦେବ ସୁଟକେସକୁ ଖୋଲି ତା ଭିତରେ ଥିବା ବିଭିନ୍ନ ଅହେତୁକ ଜିନିଷ ସମ୍ପର୍କରେ ପ୍ରଶ୍ନ କରିବ ଏବଂ ସେମାନଙ୍କ ବିଷୟରେ ଧାରା ବିବରଣୀ ଦେଇ ସୁନନ୍ଦା ନିଜର ସଂପୂର୍ଣ୍ଣ ଅତୀତକୁ ଜୟଦେବ ଆଗରେ ଖୋଲି ରଖିଦେବ । କିନ୍ତୁ ତାଲା ଖୋଲିଦେବା ପରେ ଜୟଦେବ ସୁଟକେସର ଡାଲା ଖୋଲିବାକୁ ମଧ୍ୟ ଚେଷ୍ଟା କଲା ନାହିଁ । ବରଂ ସୁନନ୍ଦା ଯେତେବେଳେ ତା'ର ଦୃଷ୍ଟି ଆକର୍ଷଣ କରିବା

ପାଇଁ ସୁଟକେସ ଭିତରୁ ଗୋଲାପୀ ଓ ନୀଳ ଚିଠିମାନ ବାହାର କରିବାରେ ଲାଗିଲା, ଜୟଦେବ ସେଠାରୁ ଉଠି ନିଜ କାମରେ ଚାଲିଗଲା ।

ସେଦିନ ଜୟଦେବ ଅଫିସକୁ ଚାଲିଯିବା ପରେ ସୁନନ୍ଦା ସେଇ ପୁରୁଣା ବାକ୍ସ ଖୋଲି ତା'ର ବହୁଦିନର ଗଚ୍ଛିତ ଜିନିଷସବୁ ବାହାର କରି ଦେଖିଲା । ସେ ଦେଖିବାକୁ ଚାହୁଁଥିଲା ଏସବୁ ଜିନିଷ ଭିତରେ ଅରବିନ୍ଦ ସମ୍ପର୍କୀୟ କ'ଣ ଥାଇପାରେ । ସେ ମଳିନ ପଡ଼ିଯାଇଥିବା ରୋମାଞ୍ଚକର ଉପନ୍ୟାସଟି ପଢ଼ିବାକୁ ଆରମ୍ଭ କଲା । କିଛି ପୃଷ୍ଠା ପଢ଼ିବା ପରେ ସେ ଜାଣିଲା ଯେ ଯେଉଁ ବହିଟିକୁ କଲେଜରେ ପଢ଼ିବାବେଳେ ସେ ଅତ୍ୟନ୍ତ ଅଶ୍ଳୀଳ ବହି ବୋଲି ମନେ କରିଥିଲା, ସେଇଟି ପ୍ରକୃତରେ ଏକ ଫିକା ପ୍ରେମ କାହାଣୀ ଥିଲା । ତଥାପି ସେ ବହିଟିକୁ ଶେଷ ପର୍ଯ୍ୟନ୍ତ ପଢ଼ିଲା ଏବଂ ଶେଷରେ ବିରକ୍ତ ହୋଇ ତାକୁ ଚିରିଦେଲା । ତା'ପରେ ସେ ତା'ର ଚିଠିସବୁ ଖୋଲି ଦେଖିଲା । ଏଥିରୁ ଅନେକ ଚିଠି ଏପରି ବନ୍ଧୁମାନଙ୍କ ପାଖରୁ ଥିଲା, ଯେଉଁମାନଙ୍କ କଥା ତାର ଆଦୌ ମନେ ନଥିଲା । ଚିଠିମାନଙ୍କ ମଧ୍ୟରୁ ଅଧିକାଂଶ 'ତମର ମାନସୀ' ପାଖରୁ ଥିଲା ଏବଂ ସେ ସବୁରେ ଅତି ସଂଯତ ଭାଷାରେ ଭଲପାଇବାର ପ୍ରଚ୍ଛନ୍ନ ପ୍ରତିଶ୍ରୁତି ଓ ନିବେଦନ ଥିଲା । ସୁନନ୍ଦାର ବର୍ତ୍ତମାନ ଯେତେଦୂର ମନେପଡ଼ିଲା, ତା'ର ଜଣେ ବାନ୍ଧବୀ ତାକୁ ସେମାନଙ୍କର ଗୋପନ ଚୁକ୍ତି ଅନୁଯାୟୀ 'ମାନସୀ' ଛଦ୍ମ ନାମରେ ଚିଠିସବୁ ଲେଖିଥିଲା । ଅନ୍ୟ ଚିଠି ଭିତରୁ ଅନେକ ଚିଠି ନିତାନ୍ତ ମାମୁଲି ସୌଜନ୍ୟପୂର୍ଣ୍ଣ ଚିଠି ଥିଲା, ଯାହା ସୁନନ୍ଦା ବୋଧହୁଏ ସେତେବେଳେ ସେଇ ବନ୍ଧୁମାନଙ୍କ ସହିତ ତା'ର ଗଭୀର ସମ୍ପର୍କ ଦୃଷ୍ଟିରୁ ସଞ୍ଚୟ କରି ରଖିଥିଲା । କିନ୍ତୁ ସେମାନଙ୍କ ସହିତ ବର୍ତ୍ତମାନ ତା'ର କୌଣସି ସମ୍ପର୍କ ନଥିଲା ଏବଂ ସୁନନ୍ଦା ଏ ଚିଠିଗୁଡ଼ିକ ମଧ ଚିରିଦେଲା । ପୁରୁଣା ବନ୍ଧୁମାନଙ୍କ ଭିତରୁ ବର୍ତ୍ତମାନ ତା'ର ସମ୍ପର୍କ ଥିଲା ଏକମାତ୍ର ସମିତା ସହିତ, ଯେ କି ସେମାନଙ୍କ ଘର ପାଖରେ ରହୁଥିଲା । କିନ୍ତୁ ସେ ପୁରୁଣା ଚିଠି ଭିତରେ ସମିତାର କୌଣସି ଚିଠି ନଥିଲା ।

ବହି ଓ ଚିଠିସବୁକୁ ଚିରିଦେଇ ସେ ଅଧା ବ୍ୟବହାର ହୋଇଥିବା ନୀଳ ରଙ୍ଗର ଚିଠିଲେଖା କାଗଜ ପ୍ୟାଡ଼କୁ ଅଲଗା କରି ରଖିଲା ଓ ବାକ୍ସରେ ଥିବା ଅନ୍ୟ ଜିନିଷମାନଙ୍କରେ ମନ ଦେଲା । ବର୍ତ୍ତମାନ ଚିହ୍ନିପାରୁନଥିବା ଏବଂ ଚିହ୍ନି ପାରିଲେ ମଧ ତା'ର କୌଣସି କୌତୂହଳ ନଥିବା ଅନେକ ମୁହଁର ଫଟୋଗ୍ରାଫକୁ ସେ ଚିରିଦେଲା ଓ ଅବଶିଷ୍ଟ ନିଜସ୍ୱ ଫଟୋସବୁ ନେଇ ସେମାନଙ୍କର ନୂଆ ଆଲବମ୍ ଭିତରେ ରଖିଲା । ମୀନାକାମର ଛୋଟ କୃଷ୍ଣଙ୍କର ଚିତ୍ରକୁ ସେ ନେଇ ପୂଜାଘରେ ରଖିଲା ଏବଂ ତା'ର ସ୍କୁଲବେଳର ଗାର୍ଲ ଗାଇଡ଼ର ବ୍ୟାଜ୍‌ଟିକୁ ସେ ଝରକା ଦେଇ ବାହାରକୁ ଫିଙ୍ଗିଦେଲା । ଏଇପରି ଭାବରେ ସଂପୂର୍ଣ୍ଣ ବାକ୍ସଟି ଖାଲି ହୋଇଯିବା ପରେ ମଧ ସେଥିରୁ ଅରବିନ୍ଦ

ସମ୍ପର୍କୀୟ କୌଣସି ଜିନିଷ ବାହାରିଲା ନାହିଁ ଦେଖି ସୁନନ୍ଦା ଏକାଧାରରେ ସାମାନ୍ୟ ନିରାଶ ଓ ଆନନ୍ଦିତ ହେଲା ।

ଅରବିନ୍ଦ ସହିତ ତା'ର କଲେଜ ବେଳର ସଂପର୍କକୁ ସୁନନ୍ଦା ବର୍ତ୍ତମାନ ସମୟର ନିରାପଦ ଦୂରତ୍ୱରୁ ସଠିକ ଭାବରେ ଅନୁଧ୍ୟାନ କରିବାକୁ ଚେଷ୍ଟା କଲା । ଅରବିନ୍ଦ ତା'ର ଦୁଇ କ୍ଲାସ- ନା, ଗୋଟିଏ କ୍ଲାସ୍, ନା, ଦୁଇ କ୍ଲାସ୍ ଉପରେ ପାଠ ପଢୁଥିଲା । ସେ ସୌମ୍ୟଦର୍ଶନ ଥିଲା ଏବଂ କଲେଜ ପତ୍ରିକାରେ କବିତା ଲେଖୁଥିଲା । ଏଇ ପିଲାଟି ସହିତ ତା'ର ସାମାନ୍ୟ ମାତ୍ର ପରିଚୟ ଥିଲା, କିନ୍ତୁ ସୁନନ୍ଦା ନିଜର ମନ ଭିତରେ ତାକୁ ନେଇ ଏକ ରୋମାଣ୍ଟିକ ସମ୍ପର୍କର କଳ୍ପନା କରି ନେଇଥିଲା । ସେମାନଙ୍କର ମଝିରେ ମଝିରେ ସାକ୍ଷାତ ହେଉଥିଲା କଲେଜ କରିଡ଼ରରେ । ସେ ସମୟରେ କଲେଜର ଝିଅମାନେ ପ୍ରତିରକ୍ଷା ଦୃଷ୍ଟିରୁ ଦଳ ଦଳ ହୋଇ ଯିବା ଆସିବା କରୁଥିଲେ ଏବଂ ଏଇ ଗୋଷ୍ଠୀରୁ ବାହାରି ଅରବିନ୍ଦ ପାଖକୁ ଯିବାବେଳେ ସୁନନ୍ଦାର ମୁହଁ ଲାଜ ଓ ଝାଳରେ ଆଚ୍ଛନ୍ନ ହୋଇଯାଉଥିଲା । ସେମାନଙ୍କର ସାକ୍ଷାତ୍‌କାର 'ଆପଣ ଆଉ କ'ଣ କବିତା ଲେଖିଛନ୍ତି' ଏବଂ 'ଆପଣଙ୍କର ପଢ଼ାପଢ଼ି କେମିତି ଚାଲିଛି' ଭଳି ସୌଜନ୍ୟ ବିନିମୟରେ ସୀମିତ ଥିଲା । ବର୍ଷକ ପରେ ମଧ୍ୟ ସେମାନଙ୍କ କଥାବାର୍ତ୍ତାର ବ୍ୟକ୍ତିଗତ ଘନିଷ୍ଠତା 'ଆପଣଙ୍କ ଭାଇଙ୍କ ସହ ଦେଖା ହୋଇଥିଲା' ଠାରୁ ଆଉ ଆଗକୁ ଯାଇପାରୁ ନଥିଲା । ତଥାପି ସୁନନ୍ଦାକୁ ଏଇ ସାମାନ୍ୟ ସାକ୍ଷାତ୍‌କାର ଅତି ଆନନ୍ଦ ଦେଉଥିଲା ଏବଂ ତା'ର ବାନ୍ଧବୀମାନଙ୍କର ଈର୍ଷା ବୋଧହୁଏ ଏଇ ଆନନ୍ଦର ଅନ୍ୟତମ କାରଣ ଥିଲା ।

ବିବାହର ପନ୍ଦର ବର୍ଷର ଅଭିଜ୍ଞତା ପରେ କଲେଜ ବେଳର କଥା ସୁନନ୍ଦାକୁ ବର୍ତ୍ତମାନ ଅତି ଅଦ୍ଭୁତ ମନେ ହେଉଥିଲା । ଅତି ସାଧାରଣ ସମ୍ପର୍କକୁ ସେ ଅତିରଞ୍ଜିତ କରି କାହିଁକି ଯେ ଏପରି ଏକ ରୋମାଞ୍ଚକର ରୂପ ଦେଇଥିଲା ଏବଂ ଅରବିନ୍ଦ ଓ ନିଜକୁ ନେଇ ଚମତ୍କାର ସ୍ୱପ୍ନମାନ ଦେଖୁଥିଲା, ସେ ବର୍ତ୍ତମାନ କଳ୍ପନା କରିପାରୁ ନଥିଲା । କଲେଜବେଳେ ସୁନନ୍ଦା ଅରବିନ୍ଦକୁ ଅନେକ ଦୀର୍ଘଚିଠି ଲେଖୁଥିଲା ଏବଂ ଚିଠିସବୁ ରୋମାଞ୍ଚିତ ଭାବନାରେ ଭରପୂର ଥିଲା । ସୁନନ୍ଦା ଚିଠିର ପ୍ରାରମ୍ଭରେ ଅରବିନ୍ଦ ପାଇଁ ପ୍ରିୟତମ ହୃଦୟେଶ୍ୱର ଇତ୍ୟାଦି ପ୍ରାଚୀନ ସମ୍ବୋଧନରୁ ଆରମ୍ଭ କରି ଡାର୍ଲିଂ ଓ ସୁଇଟହାର୍ଟ ପର୍ଯ୍ୟନ୍ତ ବ୍ୟବହାର କରୁଥିଲା ଏବଂ ଯଦିଓ ସାକ୍ଷାତ ସମୟରେ ସେମାନେ ପରସ୍ପରକୁ ଆପଣ ବୋଲି କହୁଥିଲେ, ଚିଠିରେ ସେ ତାକୁ ତମେ ବୋଲି ଲେଖୁଥିଲା । ଏ ଚିଠିଗୁଡ଼ିକୁ ସେ ସଂପୂର୍ଣ୍ଣ କରିବା ସଙ୍ଗେ ସଙ୍ଗେ ଚିରି ଦେଉଥିଲା, କିନ୍ତୁ ଏଇ ଏକପକ୍ଷୀୟ ଚିଠିମାନଙ୍କ ମାଧ୍ୟମରେ ସେ ଅରବିନ୍ଦକୁ ନିଜ ପାଖକୁ ଆଣି ପାରୁଛି ବୋଲି ମନେ କରୁଥିଲା । ରାତିରେ ଶୋଇବାବେଳେ ଅନେକ ସମୟଯାଏଁ ସେ ଅରବିନ୍ଦ କଥା ଭାବୁଥିଲା ଏବଂ ଏହା ତା'ର ସୁଖର ଏକ ସୁନ୍ଦର ମାଧ୍ୟମ ହେଉଥିଲା । ଅରବିନ୍ଦକୁ ଏଇ ସମୟମାନଙ୍କରେ

ନିଜର ଭାବୀପତି ଭାବରେ କଳ୍ପନା କରି ସୁନନ୍ଦା ଲଜ୍ଜିତା ଓ ପୁଲକିତ ହେଉଥିଲା ।

ଯେତେବେଳେ ସୁନନ୍ଦା ଅରବିନ୍ଦକୁ ପ୍ରଥମ ପ୍ରକୃତ ଚିଠି ଲେଖିଲା, ସେଇଟି ଅତି ଛୋଟ ଏବଂ ରୋମାଞ୍ଚରହିତ ଥିଲା । ସୁନନ୍ଦା ଲେଖିଥିଲା, ପ୍ରିୟ ଅରବିନ୍ଦ ବାବୁ, ଆପଣ ଭାଇଙ୍କ ପାଖକୁ ଦେଇଥିବା ଚିଠିଟି ପାଇବା ପୂର୍ବରୁ ଭାଇ ଏଠାରୁ ଚାଲି ଯାଇଥିଲେ । ମୁଁ ଚିଠିଟି ତାଙ୍କ ନୂଆ ଠିକଣାରେ ପଠାଇ ଦେଇଛି । ଆପଣ ତଳଲିଖିତ ଠିକଣାରେ ତାଙ୍କ ପାଖକୁ ଲେଖିପାରନ୍ତି । ନମସ୍କାର ସହ, ଆପଣଙ୍କର ସୁନନ୍ଦା । ଏତିକି ଲେଖିଲାବେଳେ ସୁନନ୍ଦାର ହାତ ଥରୁଥିଲା ଏବଂ ସେ ଭାବୁଥିଲା ଯେ କୌଣସି ଅଲୌକିକ ପ୍ରେରଣା ବଳରେ ଅରବିନ୍ଦ ତା'ର ଚିଠିରୁ ସେ କହିବାକୁ ଚାହୁଁଥିବା ଅନ୍ତର୍ନିହିତ ମର୍ମ ବୁଝିପାରିବ ଏବଂ ସେ ଲେଖିଥିବା ଶବ୍ଦମାନଙ୍କରୁ ପ୍ରିୟତମ, ତମେ, ସ୍ନେହର ସହିତ ଇତ୍ୟାଦି ଗୋପନୀୟ ଅର୍ଥ ଆହରଣ କରିପାରିବ । ସୁନନ୍ଦା ଏ ଚିଠିର କୌଣସି ଉତ୍ତର ପାଇନଥିଲା, କିନ୍ତୁ ଅନେକ ଦିନ ପର୍ଯ୍ୟନ୍ତ ସେ ଅରବିନ୍ଦର ଚିଠିଟି, ଯାହାକୁ ସେ ଭାଇ ପାଖକୁ ପଠାଇ ନଥିଲା, ନିଜ ପାଖରେ ରଖିଥିଲା, ବାରମ୍ବାର ପଢ଼ି, ଦେଖି, ଛୁଇଁ ଅରବିନ୍ଦକୁ ନିଜର ନିକଟତର କରିବାକୁ ଚେଷ୍ଟା କରିଥିଲା । ଅବଶ୍ୟ ସେ ଚାହିଁଥିଲେ ସ୍ୱାଭାବିକ ଭାବରେ ଭାଇକୁ ଅରବିନ୍ଦ ବିଷୟରେ ପଚାରି ପାରିଥା'ନ୍ତା, କିନ୍ତୁ ସେ ଏ ବିଷୟରେ ଅହେତୁକ ଲଜ୍ଜା ଅନୁଭବ କରୁଥିଲା ଏବଂ ଅରବିନ୍ଦ ବିଷୟରେ ଆଉ କୌଣସି ଖବର ରଖିପାରି ନଥିଲା ।

ହଠାତ ସେଦିନ, ଏତେ ବର୍ଷର ବ୍ୟବଧାନ ପରେ, ଅରବିନ୍ଦର ଖବର ଦେଲା ସମିତା । ଅରବିନ୍ଦ ସମିତାର ସ୍ୱାମୀର ବନ୍ଧୁ ଥିଲା ଏବଂ କାମରେ ତାଙ୍କ ସହରକୁ ଆସି ସମିତା ଘରେ ରହୁଥିଲା । ସମିତା ମଝିରେ ମଝିରେ ସୁନନ୍ଦାକୁ ଟେଲିଫୋନ କରୁଥିଲା ଏବଂ ତାକୁ ଅରବିନ୍ଦର ଆସିବା ଖବର ଜଣାଇଥିଲା । ଜୟଦେବ କାମରେ ସହର ବାହାରକୁ ଯାଇଥିବାବେଳେ ଅରବିନ୍ଦର ଏପରି ସେମାନଙ୍କ ସହରରେ ପହଞ୍ଚିବା ସୁନନ୍ଦାକୁ କିପରି ଅଦ୍ଭୁତ, ଦୈବପ୍ରେରିତ ମନେହେଲା । ଅରବିନ୍ଦକୁ ଦେଖା କରିବା ପାଇଁ ତା ମନରେ ପ୍ରବଳ ଇଚ୍ଛା ଥିଲା, କିନ୍ତୁ ସେ ନିଜର ସ୍ୱାମୀର ଉପସ୍ଥିତିରେ ହିଁ ଅରବିନ୍ଦ ସହିତ ସାକ୍ଷାତ କରିଥିଲେ ଖୁସି ହୋଇଥାନ୍ତା । ସେ ଯେପରି ଅଧିକ ଆଗ୍ରହୀ ଥିଲା ଜୟଦେବର ଅରବିନ୍ଦ ସହିତ ପରିଚୟ ବିଷୟରେ ; କିନ୍ତୁ ପରଦିନ ହିଁ ଅରବିନ୍ଦ ଚାଲିଯିବାର ଥିଲା ଏବଂ ସେମାନଙ୍କର ସାକ୍ଷାତ୍କାର ସମ୍ଭବ ନଥିଲା । ସମିତା ଯେତେବେଳେ ତାକୁ ରବିବାର ଦିନ ପିକନିକ ଯିବା କଥା କହିଲା, ସୁନନ୍ଦା ପ୍ରଥମେ ମନା କରିଦେଲା । କିନ୍ତୁ ପୁଣି ସମିତା ଯେତେବେଳେ ଅରବିନ୍ଦଙ୍କୁ ତାଙ୍କ ଘରକୁ ନେଇ ଆସିବା କଥା କହିଲା, ସୁନନ୍ଦା କହିଲା, ଆଚ୍ଛା, ମୁଁ ପିକନିକକୁ ଆସିବି । ସେଇଠାରେ ଦେଖାହେବ ।

ସେମାନେ ଯେତେବେଳେ ରବିବାର ଦିନ ତାକୁ ସାଙ୍ଗରେ ନେବା ପାଇଁ ତା

ଘରକୁ ଆସିଲେ, ସୁନନ୍ଦାର ଅନେକ ବର୍ଷ ପରେ ଅରବିନ୍ଦ ସହିତ ଦେଖାହେଲା । ଅରବିନ୍ଦ ଜୟଦେବଠାରୁ ବେଶି ବୟସ୍କ ଦେଖାଯାଉଥିଲା ଏବଂ ସେ ବର୍ତ୍ତମାନ ଚଷମା ଲଗାଉଥିଲା, କିନ୍ତୁ ତା'ର ଚଷମା ଜୟଦେବର ଚଷମା ଭଳି ବାଇଫୋକାଲ୍ ଚାଳିଶା ଚଷମା କି ନା ସୁନନ୍ଦା ଜାଣିପାରିଲା ନାହିଁ । ଅରବିନ୍ଦ ବ୍ୟାଙ୍କରେ ଚାକିରି କରୁଥିଲା । ହୁଏତ ବହୁତ ଦିନରୁ ବିବାହ ମଧ୍ୟ କରି ସାରିଥିଲା ଏବଂ ଆଉ କବି ଭଳି ଦେଖାଯାଉ ନଥିଲା । ଜୟଦେବ ସହିତ ତାକୁ ବହୁତ ଭାବରେ ତୁଳନା କରିସାରିବା ପରେ ସୁନନ୍ଦା ସବୁ ବିଷୟରେ ଜୟଦେବକୁ ବେଶି ମାର୍କ ଦେଲା, କିନ୍ତୁ ଅରବିନ୍ଦ ତାକୁ ଯେତେବେଳେ କେମିତି ଅଛ- କେମିତି ଅଛନ୍ତି ନୁହେଁ-ବୋଲି ପଚାରିଲା, ସୁନନ୍ଦାର ହୃଦୟର ଗତି ସାମାନ୍ୟ ଚଞ୍ଚଳ ହୋଇଗଲା । ଗାଡ଼ିରେ ବସିବାବେଳେ ସୁନନ୍ଦା ଅତି ସତର୍କତାର ସହିତ ଅରବିନ୍ଦର ସ୍ପର୍ଶରୁ ନିଜର ଦେହକୁ ଯଥାସମ୍ଭବ ଦୂରରେ ରଖିଲା ଏବଂ ଲେକ୍ ପାଖରେ ଓହ୍ଲାଇ ଘାସ ଉପରେ ବସିବା ବେଳେ ମଧ୍ୟ ସେ ଏକଥା ପ୍ରତି ସଚେତନ ରହିଲା ।

ଅବଶ୍ୟ ସୁନନ୍ଦାର ଏତେ ସତର୍କତାର କୌଣସି ପ୍ରୟୋଜନ ନଥିଲା, କାରଣ ଅରବିନ୍ଦର ତା ପ୍ରତି କୌଣସି ଆଗ୍ରହ ବା କୌତୂହଳ ଥିବାର ଜଣାପଡୁନଥିଲା । ଅରବିନ୍ଦ ସମିତାର ସ୍ୱାମୀକୁ ସେମାନଙ୍କ ଚାକିରିର ଭଲମନ୍ଦ ବିଷୟରେ କହୁଥିଲା ଏବଂ ସେମାନେ ପରସ୍ପରର ଦରମା, ମହଙ୍ଗାଭତ୍ତା ଇତ୍ୟାଦି ବିଷୟରେ ଗଭୀର ଆଲୋଚନାରେ ବ୍ୟସ୍ତ ଥିଲେ । ସୁନନ୍ଦା ସେମାନଙ୍କର କଥା ଶୁଣି ବୋର୍ ହେଉଥିଲା ଏବଂ ସେଠାରେ ଜୟଦେବର ଉପସ୍ଥିତି ଚାହୁଁଥିଲା । ସେ ଭାବିଥିଲା, ସମିତା ଆସି ସେମାନଙ୍କର କଲେଜ ବେଳର କଥା ମନେ ପକାଇ କଥାର ମୋଡ଼କୁ ବଦଳାଇବ, କିନ୍ତୁ ସମିତା ଖାଇବା ଜିନିଷକୁ ସଜାଡ଼ିବାରେ ବ୍ୟସ୍ତ ଥିଲା । ଏଇପରି ଭାବରେ ପିକନିକଟି ସୁନନ୍ଦା ପାଇଁ ଆନନ୍ଦରହିତ ଥିଲା ଏବଂ ଅରବିନ୍ଦ ସହିତ ତା'ର କଥାବାର୍ତ୍ତା ଆଦୌ ଭାବ-ଉଦ୍ଦୀପକ ନଥିଲା । ସୁନନ୍ଦାର ମନେପଡ଼ିଲା କଲେଜବେଳେ ସମିତା ତା'ର ଓ ଅରବିନ୍ଦର ସମ୍ପର୍କକୁ ନେଇ ତାକୁ ଅନେକ ପ୍ରକାର ପରିହାସ କରୁଥିଲା । ସୁନନ୍ଦା ଆଶା କରୁଥିଲା ସମିତା ତାକୁ ସେଇ କଲେଜ କଥା ମନେ ପକାଇ ଲଜ୍ଜିତ କରାଇବ । କିନ୍ତୁ ହୁଏତ ସମିତା ସେସବୁ କଥା ଭୁଲି ଯାଇଥିଲା ଅଥବା ବର୍ତ୍ତମାନ ଜାଣିଶୁଣି ସେ ସୁନନ୍ଦା ଶୁଣିବାକୁ ଚାହୁଁଥିବା କଥାରୁ ତାକୁ ବଞ୍ଚିତ କରୁଥିଲା ।

ପିକନିକରୁ ଫେରି ସୁନନ୍ଦା ଅତ୍ୟନ୍ତ ନିରାଶ ବୋଧ କଲା । ସେ ଭାବିଥିଲା ଅରବିନ୍ଦ ସହିତ ପୁନର୍ବାର ସାକ୍ଷାତ୍‌କାର ତା'ର ଅନେକ ଦିନ ତଳର ରୋମାଞ୍ଚକର କଳ୍ପନାର ଏକ ପୁନରାବୃତ୍ତି ହେବ ଏବଂ ଏଥିପାଇଁ ସେ ଜୟଦେବ ପାଖରେ ନିଜକୁ ଅପରାଧୀ ମନେକରିବ । କିନ୍ତୁ ବର୍ତ୍ତମାନର ଅନୁଭୂତି ତା ପାଇଁ କେବଳ ରୋମାଞ୍ଚରହିତ ନୁହେଁ ବରଂ ଅତ୍ୟନ୍ତ ଗଦ୍ୟମୟ ଥିଲା, ଯାହା ତା'ର ପୁରୁଣା ଜୀବନର ଭାବପ୍ରବଣ

ଅନୁଭବର ଯଥାର୍ଥତା ପ୍ରତି ସନ୍ଦେହ ଜନ୍ମାଉଥିଲା । କିନ୍ତୁ ସୁନନ୍ଦା କଲେଜବେଳେ ଅରବିନ୍ଦ ପାଖକୁ ଲେଖିଥିବା ଅସଂଖ୍ୟ ପ୍ରେମପତ୍ର କଥା ମନେ ପକାଇଲା ଏବଂ ମନେ ମନେ ଜୟଦେବ ପାଖରୁ କ୍ଷମା ଚାହିଁଲା ।

ସେଦିନ ଜୟଦେବ ଅଫିସ୍‌ରୁ ଫେରିବା ପରେ ସୁନନ୍ଦା ପୁଣି ଥରେ ସେମାନଙ୍କର ପିକନିକ କଥା ଉପସ୍ଥାପିତ କରି ତାକୁ କହିଲା, ଆମେ ପିକନିକ ଯିବା ଦିନ ସମିତାର ସ୍ୱାମୀ ତମକୁ କାହିଁକି ଖୋଜୁଥିଲେ । ପିକନିକ କଥାକୁ ଏଡ଼ାଇ ଦେଇ ଜୟଦେବ କହିଲା, କୋଉ ବିଷୟରେ କିଛି କହୁଥିଲେ କି ? ସୁନନ୍ଦା ସାମାନ୍ୟ ବିରକ୍ତିର ସହ କହିଲା, ନା । ସେଦିନ ଶୋଇ ଶୋଇ ବହି ପଢୁଥିବାବେଳେ ସୁନନ୍ଦା ଜୟଦେବକୁ କହିଲା, ଆଉ ରବିବାର ଦିନ ପିକନିକ ଯିବାକଥା ମନେ ରହିଲା ତ ? ଜୟଦେବ ଅନ୍ୟମନସ୍କ ଭାବରେ କହିଲା, ଚବିଶ ତାରିଖ ତ ? ତମେ ସମସ୍ତଙ୍କୁ ଖବର ଦେଇଦେବା କିନ୍ତୁ ରବିବାର ଦିନ ପିକନିକ ଯିବା କଥା ହେଲା ନାହିଁ । ପ୍ରକୃତ ପକ୍ଷରେ ସୁନନ୍ଦା ହିଁ ଏଥିପାଇଁ କୌଣସି ଯତ୍ନ କଲା ନାହିଁ । କାରଣ ଏତେ ଶୀଘ୍ର ପୁଣି ଥରେ ପିକନିକ ଯିବା ପାଇଁ ସମିତାକୁ ଡାକିବା ତାକୁ ଆଦୌ ଯୁକ୍ତିଯୁକ୍ତ ମନେ ହେଲା ନାହିଁ।

ତା'ପରେ ବିଭିନ୍ନ ପ୍ରକାର ଭାବରେ ସୁନନ୍ଦା ଜୟଦେବ ଆଗରେ ସେମାନଙ୍କର ପିକନିକ ଯାଇଥିବା କଥା ଉତ୍‌ଥାପନ କରିବାକୁ ଚେଷ୍ଟା କଲା । ଯଥା, ଆମେ ଯୋଉଦିନ ପିକନିକ ଯାଇଥିଲୁ, ତା'ପରେ ଆଉ ବର୍ଷା ହୋଇନାହିଁ । ଅଥବା ଲେକ୍ ଯିବାର ରାସ୍ତା ବହୁତ ଖରାପ । ଅଥବା, ସମିତା ଖୁବ୍ ଭଲ ସ୍ୟାଣ୍ଡଉଇଚ୍ ତିଆରି କରିପାରେ । ଜୟଦେବ, ଯେକି ଅତ୍ୟନ୍ତ ସିଧା ପ୍ରକୃତିର ଥିଲା, ସୁନନ୍ଦାର ଇଙ୍ଗିତପୂର୍ଣ୍ଣ କଥାସବୁ ବୁଝିପାରୁନଥିଲା ଏବଂ ଏପରି ସବୁ ଉତ୍ତର ଦେଉଥିଲା ଯାହା ସୁନନ୍ଦା ପାଇଁ ନୈରାଶ୍ୟଜନକ ଥିଲା । ଯଥା, ଖବରକାଗଜରେ ବାହାରିଥିଲା ମନସୁନ୍ ଏଥର ଦଶଦିନ ଡେରିରେ ଆସିବା ଅଥବା ମ୍ୟୁନିସିପାଲିଟିର ନୂଆ ରେସ୍ତୋରାଁରେ ଖାଇଛ ? ଏପରିକି ଯୋଉଦିନ ସୁନନ୍ଦା ଜୟଦେବକୁ ବାଧକରି ସମିତା ଘରକୁ ନେଇଗଲା, ସେଠାରେ ମଧ୍ୟ କେହି କଥାବାର୍ତ୍ତାରେ ପିକନିକ କଥା ଅଥବା ସେଥିରେ ତା'ର ଓ ଅରବିନ୍ଦର ଏକତ୍ର ଉପସ୍ଥିତିର ଦୈବ ସଂଯୋଗ ବିଷୟରେ କହିଲେ ନାହିଁ । ସୁନନ୍ଦା ଯେତେବେଳେ ସମିତାକୁ ଆମେ ଆଉ ଥରେ ପିକନିକ ଯିବା ବୋଲି କହିଲା, ସେଇ ମୁହୂର୍ତ୍ତରେ ସମିତାର ସ୍ୱାମୀ ଅଫିସ୍‌ର କୌଣସି ଏକ ଗୁରୁତର କଥା କହି ଜୟଦେବର ଧ୍ୟାନ ଆକର୍ଷଣ କରିନେଲା ।

ଏପରି ଭାବରେ ବାରମ୍ବାର ବିଫଳ ହୋଇ ସୁନନ୍ଦା ଶେଷରେ ସିଧାସଳଖ ଜୟଦେବକୁ ପିକନିକ କଥା କହିବ ବୋଲି ଠିକ୍ କଲା । ଜୟଦେବ ଅଫିସକୁ ବାହାରିବାବେଳେ ଅନେକ ସାହସ ସଞ୍ଚୟ କରି ସୁନନ୍ଦା ତାକୁ ତମ ସାଙ୍ଗରେ ଜରୁରୀ କଥା ଅଛି, ଅଫିସରୁ ଫେରିଲେ କହିବି ବୋଲି କହିଲା । ଯଦି ଅଫିସରୁ ଫେରି

ଜୟଦେବ ତାକୁ ସେଇ ଜରୁରୀ କଥା ବିଷୟରେ ପଚାରିଥା'ନ୍ତା, ସୁନନ୍ଦା ହୁଏତ ତାକୁ ସବୁକଥା କହିଥା'ନ୍ତା । କିନ୍ତୁ ଜୟଦେବ ତାକୁ କିଛି ପଚାରିଲା ନାହିଁ ଏବଂ ସୁନନ୍ଦା ପକ୍ଷରେ ଏକଥା ଉଠାଇବା ସମ୍ଭବ ହେଲା ନାହିଁ । ସୁନନ୍ଦା ଏଥରକ ବେଶି ବେଶି ବ୍ୟତିବ୍ୟସ୍ତ ହେଲା ଏବଂ ପିକନିକ ଘଟଣାଟି ତା'ର ମନ ଭିତରେ ଏକ ଭାରସ୍ୱରୂପ ରହିଲା । ସେଦିନ ଜୟଦେବ ଅଫିସ ଚାଲିଯିବା ପରେ ସେ ନିଜର ମନ ସ୍ଥିର କଲା ଏବଂ ସେଇ ପୁରୁଣା ନୀଳରଙ୍ଗର କାଗଜ ଆଣି ଜୟଦେବ ପାଖକୁ ଚିଠି ଲେଖିବାକୁ ବସିଲା ।

ପ୍ରିୟତମ ହୃଦୟେଶ୍ୱର ଇତ୍ୟାଦି ଦେଇ ଆରମ୍ଭ କରିଥିବା ଚିଠିମାନ ସେ ଚିରି ଦେଲା ଏବଂ ଏଥରକ ସେ ସାଦାସିଧା ଚିଠି ଲେଖିଲା - ମୁଁ ତମକୁ ଅନେକ ଦିନରୁ ସେ ଦିନର ପିକନିକ ଯିବାକଥା କହିବି କହିବି ବୋଲି କହିପାରୁ ନାହିଁ । ପିକନିକରେ ଅରବିନ୍ଦ ମଧ୍ୟ ଥିଲା, ଯେ ମୋର କଲେଜବେଳର ଚିହ୍ନା । ଯଦିଓ ମୋର ବନ୍ଧୁମାନେ ଅରବିନ୍ଦ ଓ ମତେ ନେଇ ଅନେକ ପ୍ରକାର କଥା କହୁଥିଲେ, ବିଶ୍ୱାସ କର, ଆମ ଭିତରେ ସେଭଳି କୌଣସି ସମ୍ପର୍କ ନଥିଲା । ଏପରିକି ସେଦିନ ପିକନିକରେ ମଧ୍ୟ ମୁଁ ଅରବିନ୍ଦ ସହିତ ବେଶି କଥାବାର୍ତ୍ତା କରି ନଥିଲି । ତଥାପି ତମର ଅନୁପସ୍ଥିତିରେ ଅରବିନ୍ଦ ସହିତ ସେଇ ପିକନିକକୁ ଯିବା ମୋର ଉଚିତ୍ ନଥିଲା । ଆଶା, ତମେ ଭୁଲ ବୁଝିବ ନାହିଁ । ସେ ଚିଠିଟିକୁ ବାରମ୍ବାର ପଢ଼ିଲା ଓ ଶେଷରେ ନେଇ ଜୟଦେବର ଟେବୁଲ ଉପରେ ରଖିଲା ।

ଏବଂ ସେଦିନ ଜୟଦେବ ଅଫିସରୁ ଫେରିବା ପୂର୍ବରୁ ସେ ସେଠାରୁ ଚିଠିଟି ନେଇ ଆସି କଲେଜବେଳେ ଅରବିନ୍ଦ ପାଖକୁ ଲେଖିଥିବା ଅସଂଖ୍ୟ ଚିଠି ଭଳି ତାକୁ ମଧ୍ୟ ଚିରି ପକାଇ ଦେଲା ।

# ନିଜତ୍ୱ

ଉର୍ମିଳା ସୁଶ୍ରୀ, ଉଚ୍ଚଶିକ୍ଷିତା, ବୁଦ୍ଧିମତୀ ଓ ଅଧ୍ୟବସାୟୀ ଥିଲା । କିନ୍ତୁ ଏସବୁ ଗୁଣମାନ ତାକୁ ଉପଯୁକ୍ତ ଚାକିରି ପାଇବାରେ କୌଣସି ସହାୟତା କଲେ ନାହିଁ । ଏମ୍.ଏ. ଓ ଏମ୍.ଫିଲ୍. କରିସାରିବା ପରେ ଅନ୍ୟ କିଛି କାମ ମିଳି ନଥିବାରୁ ସେ ପିଏଚ୍.ଡି. ପାଇଁ ପ୍ରସ୍ତୁତି କରୁଥିଲା ଏବଂ ଚାକିରି ଖୋଜୁଥିଲା । ସେ ନାରୀମାନଙ୍କ ପାଇଁ ସ୍ୱାତନ୍ତ୍ର୍ୟ ଓ ସମାନତା ତଥା ଉଇମେନ୍ସ ଲିବ୍‌ରେ ବିଶ୍ୱାସ କରୁଥିଲା ଏବଂ ସ୍ଥିର କରିଥିଲା ଯେ ନିଜର ବିଦ୍ୟାବୁଦ୍ଧି ବଳରେ ଚାକିରି କରି ପୁରୁଷମାନଙ୍କ ସହିତ ସମକକ୍ଷ ହେବ । ଯଦିଓ ତା'ର ଘରେ ଏଥିପାଇଁ କୌଣସି ବାଧବାଧକତା ନଥିଲା ଏବଂ ତାକୁ ବାହା କରାଇ ଦେଇଥିଲେ ତା'ର ବାପା-ମା' ଖୁସି ହୋଇଥା'ନ୍ତେ, ସେ ନିଜର ସ୍ୱାଧୀନ ଭାବରେ ଜୀବନ କଟାଇବାର ନିର୍ଣ୍ଣୟରେ ଅଟଳ ଥିଲା ।

ନିଜର ଭବିଷ୍ୟତର ଯୋଜନାମାନଙ୍କରେ ଉର୍ମିଳା ଯେଉଁ ବିଷୟକୁ ହିସାବକୁ ନେଇ ନଥିଲା, ସେଇଟି ଥିଲା ସାମାଜିକ ଅବସ୍ଥା । କଲେଜର ଅଡ଼ିଟୋରିୟମରେ ବକ୍ତୃତା ଦେଲାବେଳେ ସମସ୍ୟା ସବୁ ସିଧାସଳଖ ଓ କଳାଧଳାରେ ପର୍ଯ୍ୟବସିତ ଥିଲା, ପ୍ରତିଟି ପ୍ରଶ୍ନର ଦୁଇଟି ଦିଗ ଥିଲା ଏବଂ ଉର୍ମିଳା ପାଇଁ କୌଣସି ଦ୍ୱନ୍ଦ୍ୱ ନଥିଲା ସଠିକ ରାସ୍ତା ଖୋଜି ନେବାରେ । କିନ୍ତୁ ଉଇମେନ୍ସ କଲେଜର ପାଚେରି, ଲେଡ଼ିଜ୍ ସ୍ପେଶାଲ ବସ୍ ଓ ସହପାଠିନୀ ବାନ୍ଧବୀମାନଙ୍କ ବାହାରେ ଯେଉଁ ପୃଥିବୀଟି ଥିଲା ତା ଉର୍ମିଳାର ସଂପୂର୍ଣ୍ଣ ଅପରିଚିତ ଥିଲା । ଏଇ ନୂତନ ପୃଥିବୀ ସହିତ ଉର୍ମିଳାର ପ୍ରଥମ ପରିଚୟ ହେଲା ସେ ଯେତେବେଳେ ଚାକିରି ଖୋଜିବା ପାଇଁ ବାହାରିଲା ।

ସର୍ବସାଧାରଣଙ୍କର ବସ୍ ତାଙ୍କର କଲେଜକୁ ଯାଉଥିବା ଲେଡ଼ିଜ୍ ସ୍ପେଶାଲ ଭଳି ଆଦୌ ନଥିଲା । ତା ଭିତରକୁ ଯିବା ପାଇଁ କୁସ୍ତି କସରତ କରିବାକୁ ପଡୁଥିଲା ଏବଂ ଏ ବସମାନଙ୍କରେ ଯାତ୍ରୀ ଓ କର୍ମଚାରୀମାନଙ୍କର ବ୍ୟବହାର ଶାଳୀନତା ବହିର୍ଭୁତ ଥିଲା । ବସ୍‌ରେ ଝିଅମାନଙ୍କ ପ୍ରତି ଅଶ୍ଳୀଳ ଆଚରଣ ବିଷୟରେ ଉର୍ମିଳା ଖବରକାଗଜରେ ପଢ଼ିଥିଲା, କିନ୍ତୁ ବର୍ତ୍ତମାନ ସେ ଏହାର ଅନୁଭବ କରୁଥିଲା ନିଜେ ପ୍ରଥମ ଥର ପାଇଁ । ବସ୍ ଭିତରକୁ ପଶିବାବେଳେ ଅଥବା ବସ୍ ଭିତରେ ଭିଡ଼ରେ ଛିଡ଼ା ହୋଇଥିବାବେଳେ

କେହି କେହି ତା'ର ଛାତିରେ ହାତ ଲଗାଇ ଦେଉଥିଲେ । ପ୍ରଥମ ଥର ଉର୍ମିଳାକୁ ଏ ବ୍ୟବହାର ଅତି ଘୃଣା ଓ ଅପମାନଜନକ ମନେ ହୋଇଥିଲା ଏବଂ ସେ ହତଚକିତ ହୋଇଯାଇଥିଲା । ଗୋଟାଏ ମୁହୂର୍ତ୍ତ ପାଇଁ ସେ ଭାବିଲା ସେ ଚିତ୍କାର କରି ଏଇ ଲୋକଟିର ମୁହଁରେ ଚପେଟାଘାତ କରିବ । କିନ୍ତୁ ସାମାନ୍ୟ ଚିନ୍ତା କରି ସେ ଦେଖିଲା ଯେ ଏଇଭଳି ଗୋଟାଏ ଶସ୍ତା ତୃତୀୟ ଶ୍ରେଣୀର ଇତର ଲୋକ ପାଇଁ ସେ ନିଜର ସମୟ ଆଉ ଶ୍ରମ ଅପବ୍ୟୟ କରି ନାଟକୀୟ ପରିସ୍ଥିତିର ସୃଷ୍ଟି କରିବ ନାହିଁ । କିଛିଦିନ ବସ୍‌ରେ ଯିବାଆସିବା ପରେ ସେ ଏକଥା ମଧ୍ୟ ଜାଣିଲା ଯେ ସ୍ତ୍ରୀଲୋକଙ୍କ ପାଇଁ ବସ୍‌ରେ ଯାତାୟାତ କରିବ । ଏହିଭଳି ତିକ୍ତ ଅନୁଭୂତିସାପେକ୍ଷ, କାରଣ ସାମାନ୍ୟ ସୁଯୋଗ ପାଇଲେ କିଛି ଲୋକ ସ୍ତ୍ରୀଲୋକମାନଙ୍କର ଛାତି, ଜଙ୍ଘ ଓ ଦେହକୁ ଆଘାତ କରୁଥିଲେ । ଏ କଥାରେ ବର୍ତ୍ତମାନ ଉର୍ମିଳା ଆଉ ଆଶ୍ଚର୍ଯ୍ୟାନ୍ୱିତ, ବିରକ୍ତ କିମ୍ବା ଅପମାନିତ ବୋଧ କରୁ ନଥିଲା । କେବଳ ମନ ଭିତରେ ସେଇ ଅଭଦ୍ର ଲୋକ ଉଦ୍ଦେଶ୍ୟରେ କହୁଥିଲା- ବାଷ୍ଟାର୍ଡ୍ ।

ଏହି ଅଶାଳୀନତା କେବଳ ବସ୍ ଭିତରେ ହିଁ ସୀମିତ ନଥିଲା । ରାସ୍ତାଘାଟ, ଦୋକାନ ବଜାର, ଅଫିସ, ହୋଟେଲ, ରେଳ ଷ୍ଟେସନ ସବୁଆଡ଼େ ପରିବ୍ୟାପ୍ତ ଥିଲେ ଏଇ ଜାରଜମାନେ । ଯେପରିକି ଜଣେ ସ୍ତ୍ରୀଲୋକ ପକ୍ଷେ ସମ୍ମାନର ସହିତ ଚଳପ୍ରଚଳ କରିବା ଏ ଦେଶରେ ଅସମ୍ଭବ ! ଉର୍ମିଳା କ୍ରମଶଃ ସ୍ୱୀକାର କରିନେଲା ଯେ ରାସ୍ତାରେ ଯିବାବେଳେ ନର୍ଦ୍ଦମାର ରୋମିଓମାନେ ଅଶ୍ଳୀଳ ଇଙ୍ଗିତ କରିବେ, ଦୋକାନରେ ଲୋକେ ଅଯଥା ନିଜର ହେବାକୁ ଚେଷ୍ଟା କରିବେ ଏବଂ ପଡ଼ୋଶୀ ବୟସ୍କ ବ୍ୟକ୍ତି ବ୍ୟଙ୍ଗ ପରିହାସ କରିବାକୁ ନିଜର ଅଧିକାର ମନେ କରିବେ । ଉର୍ମିଳା କିନ୍ତୁ ହାର ମାନିବାକୁ ପ୍ରସ୍ତୁତ ନଥିଲା । ସେ ନିଜକୁ କହିଲା, ସେ କେବେହେଲେ ନିଜର ନିର୍ଣ୍ଣୟରୁ ଓହ୍ଲାଇ ଯିବ ନାହିଁ ଏବଂ ଏଇ ପୁରୁଷପ୍ରଧାନ ସମାଜରେ ନିଜର ସ୍ଥାନ ନିର୍ଦ୍ଧାରିତ କରିବ ହିଁ କରିବ ।

ଚାକିରି ପାଇଁ ଆଉ କାହାରି ସହାୟତା ନନେଇ ସେ ନିଜେ ଖବରକାଗଜରୁ ବିଜ୍ଞପ୍ତିମାନ ଦେଖି ବିଭିନ୍ନ ସ୍ଥାନକୁ ଦରଖାସ୍ତ ଦେଲା । ତା'ର ପ୍ରଥମ ଇଣ୍ଟରଭିଉ ଥିଲା କୌଣସି ଏକ ଏକ୍ସପୋର୍ଟ ହାଉସ୍‌ର ଚାକିରି ପାଇଁ । ଇଣ୍ଟରଭିଉର ଜାଗା ଥିଲା କମ୍ପାନୀ ଡାଇରେକ୍ଟରଙ୍କର ବ୍ୟକ୍ତିଗତ ଘର, ଯାହାର ବାହାର କୋଠରିରେ ତା ଭଳି ଆଉ କେତେଜଣ ଝିଅ ଅପେକ୍ଷା କରୁଥିଲେ । ଡାକରା ପାଇ ସେ ଯେତେବେଳେ ଭିତରକୁ ଗଲା, ଦେଖିଲା ସେଇଟି ଗୋଟିଏ ସୁଦୃଶ୍ୟ ଡ୍ରଇଂରୁମ ମାତ୍ର । ଏଇ କୋଠରିର ସୋଫା ଉପରେ ତିନିଜଣ ଭଦ୍ରବ୍ୟକ୍ତି ବସିଥିଲେ, ଯେଉଁମାନଙ୍କର ଚେହେରା ସହିତ ହିନ୍ଦୀ ଫିଲ୍ମର ଖଳନାୟକଙ୍କର ଅନେକ ସାମଞ୍ଜସ୍ୟ ଥିଲା । ଏହି ଦୃଶ୍ୟକୁ ସଂପୂର୍ଣ୍ଣ କରିବା ପାଇଁ ସେମାନଙ୍କ ସାମନାରେ ମଦବୋତଲ, ଗ୍ଲାସ୍ ଓ ସୋଡ଼ା ରଖା ହୋଇଥିଲା ଏବଂ ସେମାନେ ହାତରେ ଗ୍ଲାସ୍ ଧରି

ନିଜ ନିଜ ଭିତରେ କୌଣସି ରୋଚକ ଆଲୋଚନାରେ ବ୍ୟସ୍ତ ଥିଲେ । ଉର୍ମିଳା ବସିବାକ୍ଷଣି ଏହି ଦଳର ସର୍ଦ୍ଦାର ଭଳି ଦେଖାଯାଉଥିବା ଲୋକଟି ତା ହାତକୁ ଗୋଟିଏ ଗ୍ଲାସ୍ ବଢ଼ାଇଦେଇ କହିଲା, ପ୍ଲିଜ୍... ।

ଉର୍ମିଳା ଏ ପରିସ୍ଥିତିରେ ସାମାନ୍ୟ ହତଚକିତ ହେଲା ଏବଂ ପାଖ କୋଠରିରେ ଆଉ କେତେଜଣ ଝିଅ ବସି ନଥିଲେ ସେ ବୋଧହୁଏ ଆତଙ୍କିତ ବୋଧ କରିଥା'ନ୍ତା । ଯାହାହେଉ, ସେ ବର୍ତ୍ତମାନ ନିଶ୍ଚିତ କରିନେଲା ଯେ ସେ ଏଇ କମ୍ପାନୀରେ ଚାକିରି କରିବାକୁ ଯାଉନାହିଁ । ତଥାପି ସେ ତା'ର ଇଣ୍ଟରଭିଉକୁ କେମିତି ହେଲେ ଶୀଘ୍ର ନିର୍ବାହ କରିବାକୁ ଚାହୁଁଥିଲା । ସେ କହିଲା, ନା, ମୁଁ ପିଏ ନାହିଁ ।

ସର୍ଦ୍ଦାର କହିଲା, ଦେଖନ୍ତୁ ଉର୍ମିଳା ଦେବୀ, ଆମର ହେଲା ଏକ୍ସପୋର୍ଟ ବିଜିନେସ୍ । ସମୟ ଅସମୟରେ ଆମର ଫରେନ ବାୟର୍ସ ଆସନ୍ତି । ତା'ଛଡ଼ା ଏଠାରେ ସରକାରୀ ଅଫିସରଙ୍କ ସାଙ୍ଗରେ ଆମର ସବୁବେଳେ କାମ । ସେମାନଙ୍କୁ ଏଣ୍ଟରଟେନ ତ କରିବାକୁ ହେବ ! ଆମେ ଯୋଉ ପୋଷ୍ଟ୍ ପାଇଁ ବିଜ୍ଞପ୍ତି ଦେଇଥିଲୁ, ସେ ଚାକିରିର ପ୍ରଧାନ କାମ ହେଲା ଏଇ ଅତିଥିମାନଙ୍କର ଯତ୍ନ କରିବା... ।

ଉର୍ମିଳା କହିଲା, ଧନ୍ୟବାଦ । ମୁଁ ଏ କାମ କରିପାରିବି ନାହିଁ । ସର୍ଦ୍ଦାର କହିଲା, ଭାବି ଦେଖନ୍ତୁ । ଆମର ଦରମା ଭଲ । ତା' ଛଡ଼ା... । ଉର୍ମିଳା କହିଲା, ନା, ମୋର ଏ ଚାକିରି ଦରକାର ନାହିଁ । ସର୍ଦ୍ଦାର ଗ୍ଲାସ୍‌ରେ ମଦ ଢାଳୁ ଢାଳୁ କହିଲା, ଆପଣଙ୍କର ଯେମିତି ଇଚ୍ଛା । କ'ଣ ଚା' କି କଫି କିଛି ପିଇବେ ? ଉର୍ମିଳା କହିଲା, ନା, ଧନ୍ୟବାଦ ।

କୋଠରିରୁ ବାହାରି ସେ ଅନ୍ୟ ଝିଅମାନଙ୍କ ପାଖରେ ଆସି କିଛି ସମୟ ବସିଲା। ସେ ଜାଣିଥିଲା ତା ଅପେକ୍ଷା କାହାର ଚାକିରିର ପ୍ରୟୋଜନ ବେଶି ଥିବ ଏବଂ କେହି ନା କେହି ଚାକିରିଟି ଗ୍ରହଣ କରିବ। ଉର୍ମିଳା ପୁଣି ଭାବିଲା, ହୁଏତ ସେଇ ଲୋକଟି ଠିକ୍ କହୁଥିଲା ଚାକିରି ବିଷୟରେ । ଏକ୍ସପୋର୍ଟ ଧନ୍ଦାରେ ନିଶ୍ଚୟ ଲୋକମାନଙ୍କୁ ଆପ୍ୟାୟିତ କରିବାକୁ ପଡୁଥିବ ଏବଂ ହୋଷ୍ଟେସମାନଙ୍କର ଆବଶ୍ୟକତା ଥିବ । ଉର୍ମିଳା ନିଜକୁ ସେଇ ତିନିଜଣ ଲୋକଙ୍କ ପାଖରେ ବସି ଏଇ କାମ ପାଇଁ ଗୋଟିଏ ଝିଅକୁ ବାଛିବାର କଳ୍ପନା କଲା ଏବଂ ସେଠାରୁ ବାହାରି ଆସିବାବେଳେ କଣରେ ବସିଥିବା ଲାଲସ୍ୱେଟରପିନ୍ଧା ସୁନ୍ଦରୀ ଝିଅଟିକୁ ମନେ ମନେ ଏଇ କାମ ପାଇଁ ପସନ୍ଦ କଲା ।

ଏ ଥିଲା ଉର୍ମିଳା ପାଇଁ ପ୍ରଥମ ପାଠ । ଏଇ ଅଭିଜ୍ଞତାରୁ ସେ ଶିଖିଲା ଯେ ସେ ଆଉ ଏକ୍ସପୋର୍ଟ ହାଉସ ଭଳି ସନ୍ଦେହଜନକ ଅଫିସ୍‌ର କାମ ପାଇଁ ଦରଖାସ୍ତ କରିବ ନାହିଁ, କେବଳ ସରକାରୀ ଓ ଅର୍ଦ୍ଧସରକାରୀ ଅଫିସରେ ହିଁ ଚେଷ୍ଟା କରିବ । ସେଥିପାଇଁ ତାକୁ ସରକାରୀ ଶ୍ରମ ବିନିଯୋଗ ଅଫିସରେ ନିଜ ନାଁ ରେଜିଷ୍ଟର କରିବାକୁ

ହେଲା ଏବଂ ବିଭିନ୍ନ ପ୍ରକାରର ପ୍ରତିଯୋଗିତାମୂଳକ ପରୀକ୍ଷା ଦେବାକୁ ପଡ଼ିଲା । ଏଇ ପରୀକ୍ଷାମାନ ଦେବାପାଇଁ ସେ ନିଜର ପିଏଚ୍.ଡି. କାମ ଛାଡ଼ିଦେଲା ଏବଂ ଚାକିରି ଖୋଜିବାରେ ନିଜର ସମସ୍ତ ସମୟ ବିନିଯୋଗ କଲା ।

ଏଇଭଳି ପ୍ରାୟ ଗୋଟିଏ ବର୍ଷ ବିତିଗଲା, କିନ୍ତୁ ତାକୁ କୌଣସି ଚାକିରି ମିଳିଲା ନାହିଁ । ସେ ପୁଣି ଛୋଟ ଛୋଟ ଅଫିସମାନଙ୍କୁ ଦରଖାସ୍ତ କରି ବିଭିନ୍ନ ପ୍ରକାରର ଇଣ୍ଟରଭିଉର ସମ୍ମୁଖୀନ ହେଲା । ଅନେକ ଇଣ୍ଟରଭିଉକୁ ଯଦିଓ ସେ ସଫଳତାପୂର୍ବକ ନିର୍ବାହ କରୁଥିଲା, ଜଣେ ଝିଅ ହୋଇଥିବା ହିଁ ତା ବିପକ୍ଷରେ ଯାଉଥିଲା । ତାକୁ ଏଭଳି ଅନେକ ପ୍ରଶ୍ନ ପଚରା ଯାଉଥିଲା : ଏ ଚାକିରିରେ ଅନେକ ଟୁର୍ କରିବାକୁ ପଡ଼ିବ, ଆପଣ ଯାଇ ପାରିବେ ତ ? ଅଥବା, ଆମେମାନେ ଆପଣଙ୍କର ଟ୍ରେନିଂରେ ଅନେକ ଟଙ୍କା ଖର୍ଚ୍ଚ କରିବୁ, ଆପଣ ବାହାସାହା ହୋଇ ଚାକିରି ଛାଡ଼ିଦେବେ ନାହିଁ ତ ? ଅଥବା ଏ କାମରେ ଫିଲ୍ଡ଼କୁ ଯାଇ ଘଣ୍ଟା ଘଣ୍ଟା ଧରି ଠିଆ ହୋଇ କାମ ତଦାରଖ କରିବାକୁ ହେବ, ପାରିବେ ? ଉର୍ମିଳାର କହିବାକୁ ଇଚ୍ଛା ହେଉଥିଲା, ହଁ, ପାରିବି । ଏଇ ବାହାରେ ଇଣ୍ଟରଭିଉ ଦବାକୁ ବସିଥିବା ଅଧମରା ଯୁବକମାନଙ୍କଠାରୁ ମୁଁ କୌଣସି ଗୁଣରେ ନ୍ୟୂନ ନୁହେଁ । ମୁଁ ବାହା ହେବି ନାହିଁ । ଚାକିରି କରିବି । ଟୁର୍‌ରେ ଯିବି । ଖରାରେ ଛିଡ଼ାହୋଇ କୋଡ଼ିଏ ଜଣ ପୁରୁଷଙ୍କର କାମକୁ ତତ୍ତ୍ୱାବଧାନ କରିବି । ମତେ କାମ ଦେଇ ତ ଦେଖ !

କିନ୍ତୁ ତାକୁ କେହି ଚାକିରି ଦେଲେ ନାହିଁ। ସେ ବିରକ୍ତ ହୋଇ ଶର୍ଟହ୍ୟାଣ୍ଡ ଓ ଟାଇପିଙ୍ଗ କୋର୍ସ କଲା । କ୍ଲାସ୍‌ରେ ଟାଇପ୍‌ରାଇଟର ସାମନାରେ ବସି କାମ ଶିଖୁଥିଲାବେଳେ ପାଖରେ ବସିଥିବା ଯୁବକମାନଙ୍କୁ ଦେଖି ସେ ନିଜର କୌଣସି ନ୍ୟୂନତା ଅନୁଭବ କରିପାରୁନଥିଲା । ବରଂ ତା ସହିତ ଆତ୍ମୀୟତା କରିବାକୁ ଚେଷ୍ଟା କରୁଥିବା ଯୁବକମାନଙ୍କୁ ସେ ବିରକ୍ତି ଅଥବା କ୍ରୋଧରେ ନୁହେଁ, ଦୟାର ସହିତ ଦେଖୁଥିଲା ।

ଯଦିଓ ସେ ଚାକିରି ପାଇବାରେ ସମର୍ଥ ହୋଇନଥିଲା, ଏଇ ବର୍ଷଟି ଉର୍ମିଳା ପାଇଁ ଅଭିଜ୍ଞତାବହୁଳ ଥିଲା ଏବଂ ସେ ପୃଥିବୀକୁ ଏକ ସଂପୂର୍ଣ୍ଣ ନୂତନ ଏବଂ ବ୍ୟାବହାରିକ ଦୃଷ୍ଟିକୋଣରୁ ଦେଖିବାକୁ ଆରମ୍ଭ କଲା । ଏଇ ନୂଆ ଆଭିମୁଖ୍ୟରେ ରୋମାଞ୍ଚକ ବିଦ୍ରୋହର ଭାବ ଅଥବା ତା'ର କଲେଜବେଳର ଅନାବଶ୍ୟକ ଦାମ୍ଭିକତା ନଥିଲା । ରାସ୍ତାକଡ଼ ରୋମିଓର ଅଶ୍ଳୀଳ ଟିପ୍‌ପଣୀକୁ ସେ ବର୍ତ୍ତମାନ ଅଶୁଣା କରିଦେଉଥିଲା ଏବଂ ବସ୍‌ର ଭିଡ଼ରେ ତା ଦେହରେ କେହି ହାତ ଲଗାଇଲେ ସେ ଲଜ୍ଜା ଅଥବା ବିରକ୍ତି ପ୍ରକାଶ ନକରି ଲୋକ ଆଡ଼କୁ ଉଗ୍ର ଭାବରେ ଅନାଉଥିଲା ଏବଂ ସେଠାରୁ ଘୁଞ୍ଚି ଆସୁଥିଲା । ଇଣ୍ଟରଭିଉରେ ତାକୁ କିଏ କୌଣସି ବ୍ୟକ୍ତିଗତ ପ୍ରଶ୍ନ ପଚାରିଲେ ସେ ଆଉ ବିଚଳିତ ହେଉ ନଥିଲା । ଅନେକ ସମୟରେ ତାକୁ ପଚାରୁଥିଲେ, ବିବାହ ବିଷୟରେ ଆପଣ କ'ଣ ଭାବୁଛନ୍ତି ? ଶାନ୍ତ ଭାବରେ ଉର୍ମିଳା ଜବାବ ଦେଉଥିଲା, ମୁଁ ଠିକ୍ କରିଛି ବିବାହ କରିବି ନାହିଁ ।

ଉର୍ମିଳାର ଏ ଉତ୍ତର କେବଳ ଔପଚାରିକ ଉତ୍ତର ଥିଲା, ଏକଥା ସତ ନଥିଲା । ସେ ଅନେକ ଦିନରୁ ଉଦୟନକୁ ଭଲ ପାଉଥିଲା ଏବଂ ତାକୁ ହିଁ ବାହା ହେବ ବୋଲି ଠିକ୍ କରିଥିଲା । କିନ୍ତୁ ଉଦୟନ ଯେତେବେଳେ ମଝିରେ ମଝିରେ ତାକୁ ବାହାହେବା କଥା କହୁଥିଲା, ଉର୍ମିଳା ତା କଥାକୁ ଟାଳି ଦେଉଥିଲା । କହୁଥିଲା, ମୁଁ ପ୍ରଥମେ ଚାକିରି କରିନିଏ । ଉଦୟନ ସହିତ ତା'ର ସମ୍ପର୍କରେ ସେ ସମାନତାର ବିଶ୍ୱାସ କରୁଥିଲା, ତେଣୁ ବାହାହୋଇ ସେ ସ୍ୱାମୀ ଉପରେ ଏକ ଭାର ହେବାକୁ ଚାହୁଁ ନଥିଲା । ଉଦୟନ ଚାକିରି କରି ପାଖ ସହରରେ ରହୁଥିଲା । ସେମାନେ ନିୟମିତ ପତ୍ର ବିନିମୟ କରୁଥିଲେ ଏବଂ ମଝିରେ ମଝିରେ ଉଦୟନ ତା ପାଖକୁ ଆସୁଥିଲା । ଚାକିରି ଖୋଜିବା ସହିତ ଉଦୟନର ପତ୍ରକୁ ଅପେକ୍ଷା କରିବା ଉର୍ମିଳାର ଏକ ଦୈନିକ କାର୍ଯ୍ୟକ୍ରମ ଥିଲା । ସେ ତା'ର ପ୍ରତିଦିନର କୌତୁକପୂର୍ଣ୍ଣ ଅଭିଜ୍ଞତାମାନ ଉଦୟନ ପାଖକୁ ବିସ୍ତାର ଭାବରେ ଲେଖୁଥିଲା । ଉଦୟନ ଅନେକ ସମୟରେ ବ୍ୟସ୍ତ ହୋଇ ଲେଖୁଥିଲା, ତମର ଚାକିରି ଖୋଜିବା ଅନେକ ହେଲା । ଏଥରକ ସବୁ ଛାଡ଼ିଦେଇ ଚାଲିଆସ । ଉର୍ମିଳା ଉତ୍ତରରେ ଲେଖୁଥିଲା, ନା, ମୁଁ ପ୍ରଥମେ କିଛିଦିନ ଚାକିରି କରିନିଏ । ତା'ପରେ ପଛେ ତମ ପାଖକୁ ଚାଲି ଆସିବି ।

ଚାକିରି ପାଇବାରେ ଅସମର୍ଥ ହୋଇ ଏଥରକ ଉର୍ମିଳା ମନରେ ବ୍ୟର୍ଥତା ଉପୁଜିଲା । ଥରେ ଥରେ ମନେହେଲା ସେ ତା'ର ଏଇସବୁ ପ୍ରଚେଷ୍ଟାକୁ ଛାଡ଼ିଦେଇ ଉଦୟନ ପାଖକୁ ଚାଲିଯିବ । କିଏ ଆଉ ଏତେ ସହିପାରିବ ବାରମ୍ବାର ପ୍ରତ୍ୟାଖ୍ୟାନ, ରାସ୍ତାଘାଟର ଟୀକା ଟିପ୍ପଣୀ ଏବଂ ଝିଅ ହୋଇଥିବାର ସାର୍ବଜନୀନ ଅବମାନନା ? ଯେଉଁଦିନ ଅଫିସ ସାମନାରେ ପାଞ୍ଚଘଣ୍ଟା ବସିବା ପରେ ସେ ଜାଣିଲା ଯେ ସେ ଇଣ୍ଟରଭିଉରେ ଡାକରା ପାଇ ମଧ୍ୟ ମନୋନୀତ ହୋଇନାହିଁ, ତା'ର ମନ ଅବସନ୍ନ ହୋଇଗଲା ଓ ସେ ଘରକୁ ଫେରି ଉଦୟନ ପାଖକୁ ଦୀର୍ଘ ଚିଠି ଲେଖିଲା । କିନ୍ତୁ କିଛି ସମୟ ପରେ ପ୍ରକୃତିସ୍ଥ ହୋଇ ସେ ଚିଠିଟିକୁ ଚିରିଦେଲା ଏବଂ ସ୍ଥିରକଲା ଯେ ସେ ନିଜ ଜୀବନକୁ ଏପରି ଉଦ୍ଦେଶ୍ୟହୀନ ଭାବରେ ଇତସ୍ତତଃ ବିକ୍ଷିପ୍ତ ହେବାକୁ ଦେବନାହିଁ ।

ଉର୍ମିଳାର ସୌଭାଗ୍ୟ ଯେ ଘରେ ତାକୁ କେହି ତା'ର କାର୍ଯ୍ୟକଳାପରେ ବାଧା ଦେଉ ନଥିଲେ । ସେମାନେ ଉଦୟନକୁ ଜାଣିଥିଲେ ଏବଂ ଉର୍ମିଳା ସହ ତା'ର ସମ୍ପର୍କ ବିଷୟରେ ଅବଗତ ଥିଲେ । ଉଦୟନ ମଝିରେ ମଝିରେ ଆସି ଉର୍ମିଳା ସହିତ ସାକ୍ଷାତ କରୁଥିଲା ଏବଂ ଉର୍ମିଳା ଏକଥା କାହାରି ଆଗରେ ଅଜ୍ଞାତ ରଖି ନଥିଲା । ସେଥର ଛୁଟିରେ ଆସି ଉର୍ମିଳା ସହିତ ଦେଖା କଲାବେଳେ ଉଦୟନ ପୁଣି ସେଇକଥା ଉଠାଇଲା । କହିଲା, ମୁଁ ଆଉ ତମକୁ ଛାଡ଼ି ରହିପାରିବି ନାହିଁ । ତମେ ମୋ ପାଖକୁ ଚାଲିଆସ । ଉର୍ମିଳା ହସିଲା । କହିଲା, ଆଚ୍ଛା ହଉ, ମୁଁ ଚାଲିଆସି ତମ ପାଖରେ ରହିବି । କିନ୍ତୁ ଆମେ

ବାହାହେବା ମୁଁ ଚାକିରି କରିସାରିଲେ । ଉଦୟନ କହିଲା, କିଏ ତମକୁ ମନା କରୁଛି ବାହାହେବା ପରେ ଚାକିରି କରିବାକୁ ? ତମେ ସେଇ କଲେଜ ଦିନର ଡିବେଟିଂ ସୋସାଇଟିର ତର୍କ କରିବା ଭଳି କଥା କହୁଛ । ତମେ ନିଜେ ଜାଣ ମୋ ଚାକିରି ପାଇଁ କେତେ କଷ୍ଟ କରିବାକୁ ହେଲା । ପୁଣି ତମେ ଚାକିରି ପାଇଲେ ବି କୋଉଠି ଚାକିରି ମିଳିବ କିଛି ଠିକ୍ ନାହିଁ । କେମିତି ଏକାଠି ରହିବା ? ତା'ର ଯୁକ୍ତିସବୁକୁ ହସରେ ଉଡ଼ାଇଦେଇ ତା ହାତକୁ ହାତମୁଠାରେ ନେଇ ଊର୍ମିଳା କହିଲା, ତମେ ଦେଖିବ ସବୁ ଠିକ୍ ହୋଇଯିବ । ଟିକିଏ ଖାଲି ଅପେକ୍ଷା କରିଯାଅ ।

ଶେଷରେ ଊର୍ମିଳାର ଅଧ୍ୟବସାୟର ଶେଷ ହେଲା ଏବଂ ତାକୁ ଭଲ ଚାକିରି ମିଳିଲା । ଏକ ସରକାରୀ ସଂସ୍ଥାରେ ଗବେଷଣା କାମ । ଚାକିରିରେ ଯୋଗ ଦେବାକୁ ଗଲାବେଳେ ରାସ୍ତାରେ ଡାକଘରକୁ ଯାଇ ସେ ଉଦୟନକୁ ଛୋଟ ଚିଠି ଲେଖିଲା, ଏଥର ଆମର ଅପେକ୍ଷାର ଶେଷ ହେଲା । ପ୍ରଥମ ଦିନ ଅଫିସରେ କାଗଜପତ୍ର ସବୁ ଦସ୍ତଖତ କରିସାରିବା ପରେ ସେ ବଡ଼ବାବୁଙ୍କ ସହିତ ଦେଖାକରି ତା'ର ବସିବାର ଜାଗା ଠିକ୍ କଲା । ଟେବୁଲ ଉପରେ ଜମା ହୋଇଥିବା ଫାଇଲକୁ ଓଲଟାଇ ଦେଖିଲା । ନିଜ ଚାରିପାଖେ ବସିଥିବା ଅନ୍ୟ ଅଫିସରମାନଙ୍କୁ ଅନାଇ ସେମାନଙ୍କୁ ଅନୁଶୀଳନ କଲା । ଉପରବେଳା ବଡ଼ବାବୁ ଆସି ତାକୁ କହିଲେ, ଆପଣ ଯାଇ ଡାଇରେକ୍ଟରଙ୍କୁ ଦେଖାକରି ଆସନ୍ତୁ ।

ଡାଇରେକ୍ଟର ଏଇ ଅଫିସ୍‌ର ସର୍ବୋଚ୍ଚ କର୍ତ୍ତା ଥିଲେ । ଊର୍ମିଳା ନିଜର କଲମ ବନ୍ଦ କରି ଉଠି ଠିଆହେଲା । ବଡ଼ବାବୁ ତାକୁ ଡାଇରେକ୍ଟରଙ୍କ କୋଠରି ପର୍ଯ୍ୟନ୍ତ ସାଙ୍ଗରେ ନେଇଗଲେ ଏବଂ କବାଟ ପାଖରେ ଛାଡ଼ି ଦେଉ ଦେଉ କହିଲେ, ଡାଇରେକ୍ଟର ଖୁବ୍ ଭଲଲୋକ, କିନ୍ତୁ କାମରେ ବେଶ୍ କଡ଼ା । ଊର୍ମିଳା ମନେ ମନେ ଭାବିଲା, ସେଇ ଭଲ । ସେ ଭିତରକୁ ଗଲାବେଳକୁ ଡାଇରେକ୍ଟର କ'ଣ କାମ କରୁଥିଲେ । କହିଲେ, ବସ । ଊର୍ମିଳା ଭଦ୍ରବ୍ୟକ୍ତିଙ୍କ ମୁହଁକୁ ଅନାଇ ଦେଖିଲା । ଏଭଳି ବିଭିନ୍ନ ଅଫିସ୍‌ର କର୍ତ୍ତାମାନଙ୍କ ସହିତ ବିଭିନ୍ନ ଇଣ୍ଟରଭିଉ ପର୍ବମାନଙ୍କ ଦେଇ ତା'ର ଆଗରୁ ପରିଚୟ ଥିଲା । ଡାଇରେକ୍ଟରଙ୍କ ମୁହଁ ଦେଖି ତାଙ୍କର ଚରିତ୍ରକୁ ବିଶ୍ଳେଷଣ କରିବାକୁ ଚେଷ୍ଟା କଲା ଊର୍ମିଳା । ହଁ, ଭଲଲୋକ । କିନ୍ତୁ କାମରେ ରୁକ୍ଷ ଓ କଠୋର ହୋଇଥାଇପାରେ । କାଗଜ ଉପରୁ ମୁହଁ ଉଠାଇ ଏଥର ଭଦ୍ରବ୍ୟକ୍ତି ତାକୁ କହିଲେ, ତମେ ଆଜି କାମରେ ଜଏନ କଲ ବୋଧହୁଏ । ତମକୁ ଏଠାରେ ବହୁତ କାମ କରିବାକୁ ପଡ଼ିବ । କଲେଜରେ କ'ଣ ପଢୁଥିଲ ? ଇକନମିକ୍‌ସରେ ଏମ୍.ଏ. ଓ ଏମ୍.ଫିଲ୍. ପରେ ପିଏଚ୍.ଡି. କରୁଥିଲି, କହିଲା ଊର୍ମିଳା । ଷ୍ଟାଟିଷ୍ଟିକ୍‌ସ ଥିଲା ? ହଁ, ବି.ଏ.ରେ ବି, ଏମ୍.ଏ.ରେ ବି । ବେଶ୍ ଭଲ, ସେ ମନ୍ତବ୍ୟ ଦେଲେ, ତମର କାମରେ ଲାଗିବ ।

ତା'ପରେ ଡାଇରେକ୍ଟର ତାକୁ ଆଉ କୌଣସି ପ୍ରଶ୍ନ ପଚାରିଲେ ନାହିଁ ଏବଂ କେତୋଟି ମୁହୂର୍ତ୍ତ ଏମିତି ଚୁପ୍‌ଚାପ୍ କଟିଗଲା । ସେ ତାକୁ ଯିବାକୁ ମଧ୍ୟ କହିଲେ ନାହିଁ ଏବଂ ଉପରକୁ ମୁହଁ ଉଠାଇ ଉର୍ମିଳା ଦେଖିଲା ଯେ ସେ ତା'ର ମୁହଁକୁ ଚାହିଁ ରହିଛନ୍ତି । ଏଥରକ ତାଙ୍କ ମୁହଁରେ କେମିତି ଏକ ଶୂନ୍ୟ ଅଭିବ୍ୟକ୍ତି ଥିଲା ଏବଂ ସେ ତା ଆଡ଼କୁ ଅପଲକ ଅନାଇଥିଲେ । ସାମାନ୍ୟ ଅପ୍ରତିଭ ହୋଇ ଉର୍ମିଳା ଉଠି ଛିଡ଼ାହେଲା । କହିଲା, ମୁଁ ତାହେଲେ ଯାଉଛି । ସେ ବାହାରି ଯିବାକୁ ପାଦ ବଢ଼ାଇଛି, ଭଦ୍ରବ୍ୟକ୍ତି କହିଲେ, ଶୁଣ ! ଉର୍ମିଳା ପୁଣି ତାଙ୍କ ଆଡ଼କୁ ମୁହଁ ବୁଲାଇଲା । ଭଦ୍ରବ୍ୟକ୍ତି ତା ଆଡ଼କୁ ଚାହିଁ ସାମାନ୍ୟ ଇତସ୍ତତଃ ହୋଇ କହିଲେ, ତମେ ଆଜି ସନ୍ଧ୍ୟାରେ ଫ୍ରି ଅଛ ?

ଓଃ, ନୋ, ଉର୍ମିଳା ମନକୁ ମନ କହିଲା । ପୁଣି ସେଇ ପୁରୁଷ ପ୍ରାଧାନ୍ୟ ପୁନରାବୃତ୍ତି । ତାକୁ ହେୟ ଓ ବ୍ୟକ୍ତିତ୍ୱରହିତ କରିଦେଉଥିବା ନିମନ୍ତ୍ରଣ । ସେ ଯେ ଗୋଟିଏ ଅସହାୟ ସ୍ତ୍ରୀ ମାତ୍ର, ତା ପ୍ରମାଣ କରିବାର ପ୍ରଚେଷ୍ଟା । ନା, ଏଇ କଥାର ଏଇଠାରେ ପରିସମାପ୍ତି କରିବା ଦରକାର । ସବୁଦିନ ପାଇଁ । ସାମାନ୍ୟ ବି ବିଚଳିତ ନ ହୋଇ ଉର୍ମିଳା ଭଦ୍ରବ୍ୟକ୍ତିଙ୍କ ଆଖିକୁ ସିଧାସଳଖ ଅନାଇଲା ଏବଂ କହିଲା, ନା, ମୁଁ ଆଜି ସନ୍ଧ୍ୟାରେ ଫ୍ରି ନାହିଁ । ତା ଛଡ଼ା ମୁଁ କାହାରି ନିମନ୍ତ୍ରଣ ରଖି କୁଆଡ଼େ ଯାଏ ନାହିଁ । ତା ସ୍ୱର ବେଶ୍ ଦୃଢ଼ ଓ ନିଶ୍ଚିତ ଥିଲା ଏବଂ ଭଦ୍ରବ୍ୟକ୍ତିଙ୍କ ମୁହଁ ସାମାନ୍ୟ ବିବର୍ଣ୍ଣ ହୋଇଗଲା । ହତଭମ୍ବ ହୋଇ ସେ ପୁଣି କାଗଜ ଉପରକୁ ମୁହଁ ନୁଆଇଁ ନେଲେ । ବିଜୟ ଦର୍ପରେ କୋଠରିରୁ ବାହାରି ଆସୁ ଆସୁ ଉର୍ମିଳା ମନକୁ ମନ କହିଲା, ବାଷ୍ଟାର୍ଡ଼ ! ଡାଇରେକ୍ଟରଙ୍କ କୋଠରିରୁ ତା ନିଜ ଟେବୁଲକୁ ଆସିବାର ଅଳ୍ପ କେତୋଟି ପାଦର ଦୂରତ୍ୱ ଭିତରେ ସେ ନିଜର ମନକୁ ଠିକ୍ କରିନେଲା । ସେ ସରକାରୀ କାମ କରୁଛି, କାହାରି ବ୍ୟକ୍ତିଗତ କାମ ନୁହେଁ । ସେ ନିଜକୁ ଅପମାନିତ ହେବାକୁ ଦେବ ନାହିଁ ଏବଂ ଭଲ କାମ କରି ପ୍ରମାଣ କରିଦେବ ଯେ ସେ ଅନ୍ୟମାନଙ୍କର ସମକକ୍ଷ । ନିଜ ଟେବୁଲ ପାଖକୁ ଆସି ସେ ସ୍ୱସ୍ତିର ନିଃଶ୍ୱାସ ନେଲା ଏବଂ ନିଜର କାମକୁ ବୁଝିବାକୁ ଚେଷ୍ଟା କଲା ।

ବସ୍‌ରେ ଘରକୁ ଫେରିବାବେଳେ ସେ ସେଦିନ ଅଫିସରୁ ପାଇଥିବା ଆଇଡେ଼ନ୍‌ଟିଟି କାର୍ଡ଼କୁ ଓଲଟାଇ ଦେଖିଲା । ତା'ର ବର୍ତ୍ତମାନ ଏକ ସ୍ୱତନ୍ତ୍ର ଆଇଡେ଼ନ୍‌ଟିଟି, ଏକ ସ୍ୱତନ୍ତ୍ର ପରିଚୟ ଥିଲା । ସେ କେବଳ କାହାରି କନ୍ୟା ବା ପ୍ରିୟତମା ନଥିଲା । ସେ ଥିଲା ଗୋଟିଏ ସରକାରୀ ସଂସ୍ଥାର ରିସର୍ଚ୍ଚ ଅଫିସର । ତା'ର ବର୍ତ୍ତମାନ ନିଜସ୍ୱ ରୋଜଗାର ଥିଲା ଏବଂ ସେ କାହାରି ଉପରେ ନିର୍ଭର ନ କରି ନିଜ ଗୋଡ଼ରେ ଛିଡ଼ା ହୋଇଥିଲା । ଏଇ ଛୋଟ କାଗଜଟି ତା ଭିତରେ ଆଣିଦେଲା ଅନେକ ଶାନ୍ତି ଓ ତୃପ୍ତି । ଏପରିକି ସେ ଡାଇରେକ୍ଟରଙ୍କର ସେଇ ସାମୟିକ ବିଚ୍ୟୁତିକୁ ମଧ୍ୟ ମନେ ମନେ କ୍ଷମା କରିଦେଲା । ମନେ ମନେ କହିଲା, ମୁଁ ମୋର ଏଇ ନିଜସ୍ୱକୁ କେବେହେଲେ ହାତରୁ ଛାଡ଼ି ଦେବିନାହିଁ ।

ନା ସୁରକ୍ଷା ପାଇଁ, ନା ସ୍ୱଚ୍ଛନ୍ଦତା ପାଇଁ । ଏପରିକି ପ୍ରେମ ପାଇଁ ମଧ୍ୟ ନୁହେଁ । ଘରକୁ ଯାଇ ସେ ଉଦୟନ ପାଖକୁ ଲମ୍ବା ଚିଠି ଲେଖିଲା ଏବଂ ଶେଷରେ ଲେଖିଲା, ତମେ ଏଥରକ ଆସିଲେ ଆଉ ସେଇ ସାଙ୍ଗ ଘରେ ରହିବ ନାହିଁ । ଏଥରକ କୋଉ ହୋଟେଲରେ ରୁମ୍ ନେଇ ରହିବ । ମୁଁ ତମକୁ ସେଇଠି ଦେଖା କରିବି ।

ପରଦିନଠାରୁ ସେ ନିଜର କାମରେ ମଜ୍ଜିତ ହୋଇଗଲା ଏବଂ ଅଳ୍ପଦିନ ଭିତରେ ସେ ଏକଥା ମଧ୍ୟ ଜାଣିପାରିଲା ଯେ ତା'ର କାମରେ ସେ କାହାରିଠାରୁ ନ୍ୟୂନ ନୁହେଁ । ଏକଥା ତା ମନରେ ଏକ ନୂଆ ପ୍ରତ୍ୟୟ ଆଣିଦେଲା । ଉଦୟନ ପାଖକୁ ସେ ଚିଠି ଲେଖିଲା, ମୁଁ ମୋର ଚାକିରିରେ ଖୁବ୍ ଖୁସି ଅଛି । ତମେ ଆସିଲେ ଅଫିସର ସବୁ ମଜା ମଜା କଥା ତମକୁ କହିବି । ମାସକ ପରେ ଉଦୟନ ଯେତେବେଳେ ଆସି ତାକୁ ଅଫିସ୍‌ରେ ଦେଖାକଲା, ଉର୍ମିଳା ଗୋଟାଏ ବଡ଼ ଷ୍ଟେଟମେଣ୍ଟ ନେଇ କାର୍ଯ୍ୟବ୍ୟସ୍ତ ଥିଲା । ଉଦୟନକୁ ପାଖ ଚଉକିରେ ବସାଇ ଉର୍ମିଳା କହିଲା, ତମେ ଟିକିଏ ଅପେକ୍ଷା କର, ମୁଁ ଏଇ ଫାଇଲଟାକୁ ଡାଇରେକ୍ଟରଙ୍କ ପାଖକୁ ପଠାଇଦେଲେ ବାହାରକୁ ଯିବା । ଉଦୟନ ସାମାନ୍ୟ ବିରକ୍ତ ଜଣାପଡ଼ିଲା, କିନ୍ତୁ ତା ପାଖରେ ବସି ଅପେକ୍ଷା କଲା । ସେମାନେ ଯେତେବେଳେ ବାହାରକୁ ଆସିଲେ, ଉର୍ମିଳା କହିଲା, ତମକୁ ଆମ ଅଫିସ କେମିତି ଲାଗିଲା ? ଅଫିସର ଯେଉଁ କୋଠରିରେ ଉର୍ମିଳା ବସୁଥିଲା, ସେଠାରେ ଆଉ କେହି ଝିଅ ବସୁ ନଥିଲେ ଏବଂ ଏତେ ପୁରୁଷମାନଙ୍କ ଭିତରେ ଉର୍ମିଳାର ବସି ରହିଥିବା ଉଦୟନକୁ କେମିତି ଅପ୍ରୀତିକର ଲାଗିଥିଲା । ତଥାପି ସେ କହିଲା, ଭଲ ଅଫିସ ।

ଉର୍ମିଳା କହିଲା, ମୁଁ ତମକୁ କହିଥିଲି ହୋଟେଲରେ ରହିବ ବୋଲି ତମେ ପୁଣି ସେଇ ସାଙ୍ଗ ଘରେ ରହିଲ କାହିଁକି ? ଉଦୟନ କହିଲା, କାହିଁକି ମୁଁ ଏତେ ଟଙ୍କା ଖର୍ଚ୍ଚ କରିଥା'ନ୍ତି ? ଉର୍ମିଳା କହିଲା, ତମେ ଭୁଲି ଯାଉଛ ଯେ ଆମେ ଦି'ଜଣଯାକ ଏଥର ରୋଜଗାର କରୁଛେ ! ଏବେ କୋଉଠି ଦେଖା କରିବା କୁହ । କାହିଁକି ? ଆଗରୁ ଯେମିତି ଦେଖା କରୁଥିଲେ, ଜବାବ ଦେଲା ଉଦୟନ । ତମେ କିଛି ବି ବୁଝିବ ନାହିଁ, ଉର୍ମିଳା କହିଲା, ମୁଁ ତମକୁ ଭିନ୍ନ ଭାବରେ ଦେଖା କରିବାକୁ ଚାହୁଁଥିଲି, ଚାଲ, ଚା' ପିଇବା ।

ଚା' ପିଉ ପିଉ ଉର୍ମିଳା ଉଦୟନକୁ ତା'ର ନିଜ ଅଫିସ କଥା କହିଲା । ଉଦୟନ ପଚାରିଲା, ତମର ବସ କେମିତି ଲୋକ ? ଉର୍ମିଳା କହିଲା, ଭଲ ଲୋକ । ଏକଥା କହିସାରି ସେ ଉଦୟନକୁ ତା'ର ପ୍ରଥମ ଦିନର ଅଭିଜ୍ଞତା କଥା ମଧ୍ୟ କହିଲା । ଶୁଣିସାରି ଉଦୟନ କହିଲା, ଶଳା... ଏବଂ ରୁକ୍ଷ ହୋଇ ଉର୍ମିଳାକୁ କହିଲା, ଏଇ ଲୋକଟାକୁ କେମିତି ଭଲଲୋକ ବୋଲି କହୁଛ ? ଉର୍ମିଳା କହିଲା, ସେଦିନ କେମିତି କ'ଣ କହି ଦେଇଥିଲେ, କିନ୍ତୁ ତା'ପରଠାରୁ ମୋ ସହିତ ସେ ସମ୍ମାନର ସହିତ କଥାବାର୍ତ୍ତା

କରନ୍ତି । କାମରେ ସେ ମୋ ଉପରେ ସନ୍ତୁଷ୍ଟ । ଅଫିସରେ ବି ସମସ୍ତେ ତାଙ୍କୁ ଭଲପା'ନ୍ତି । ଉଦୟନ ଏକଥା ପରେ କେମିତି ଅନ୍ୟମନସ୍କ ହୋଇଗଲା ଏବଂ ଉର୍ମିଳା ତାକୁ ବିଭିନ୍ନ ବିଷୟରେ ପଚାରିବାବେଳେ ତାକୁ ସଂକ୍ଷେପରେ ଜବାବ ଦେଲା । କିଛି ସମୟ ପରେ ଉଦୟନ ପଚାରିଲା, ତମେ କ'ଣ ଫାଇଲ ସବୁ ସିଧାସଳଖ ଡାଇରେକ୍ଟରଙ୍କ ପାଖକୁ ପଠାଅ ? ପ୍ରଥମେ ପ୍ରଥମେ ଆଉ ଜଣେ ଅଫିସରଙ୍କ ବାଟଦେଇ ଫାଇଲ ଯାଉଥିଲା, କିନ୍ତୁ ମୋର ଭଲ କାମ ଦେଖି ଡାଇରେକ୍ଟର ତାଙ୍କ ପାଖକୁ ସିଧା ଫାଇଲ ପଠାଇବାକୁ ଅର୍ଡ଼ର କରିଦେଲେ । ଉର୍ମିଳା ଏକଥା ବେଶ୍ ଗର୍ବର ସହିତ କହିଲା, କିନ୍ତୁ ଉଦୟନ କେବଳ କହିଲା, ହୁଁ ।

ପୂର୍ବଥରମାନଙ୍କରେ ସେମାନେ ଯାଇ ପାର୍କରେ ବସୁଥିଲେ ଏବଂ ଅନ୍ଧାର ହୋଇଯିବା ପରେ ବି ସେଠାରେ ବସିରହିବା ପାଇଁ ଉଦୟନ ତାକୁ ବାଧ କରୁଥିଲା । ପାର୍କରେ ଅନ୍ଧାରରେ ଉଦୟନ ତାକୁ ଛୁଇଁବାକୁ ଚେଷ୍ଟା କରୁଥିଲା ଏବଂ ତାକୁ ସଂଯତ କରିବା ଉର୍ମିଳା ପାଇଁ ସବୁବେଳେ ଏକ ସମସ୍ୟା ଥିଲା । ଆଜି କିନ୍ତୁ ସନ୍ଧ୍ୟାବେଳେ ଚା' ପିଇସାରିବା ପରେ ଉଦୟନ କାମ ଅଛି ବୋଲି କହି ଚାଲିଯିବାକୁ ବସିଲା । ଉର୍ମିଳା କହିଲା, ଚାଲ , ଅଳ୍ପ ସମୟ ବି ହଉ, ପାର୍କରେ ଯାଇ ବସିବା । ପାର୍କରେ ପରିଚିତ ଓ ଆତ୍ମୀୟ ପରିବେଶ ଭିତରେ ବସି ଆଜି ସେମାନେ ପୁଣି ପଛକୁ ଫେରିଗଲେ । ଉଦୟନ କହିଲା, ଦେଖ ଉର୍ମିଳା, ଆଉ ବେଶି ଡେରି ନକରି ଚାଲ ଶୀଘ୍ର ବାହା ହୋଇଯିବା । ଉର୍ମିଳା କହିଲା, ଏତେ ବ୍ୟସ୍ତ କାହିଁକି ? ମୁଁ ତ ଏଇମାତ୍ର ଚାକିରିରେ ଯୋଗ ଦେଲି । କିଛିଦିନ ଯାଉ । ଉଦୟନ ସାମାନ୍ୟ ବିରକ୍ତ ହୋଇ କହିଲା, ମୁଁ ଆଉ ଏତେଦିନ ଅପେକ୍ଷା କରିପାରିବି ନାହିଁ । ଉର୍ମିଳା ତାକୁ ବ୍ୟଙ୍ଗ କରି କହିଲା, ତାହେଲେ ଯାଇ ଆଉ କାହାକୁ ବାହାହୋଇ ପଡ଼ ।

ଉଦୟନ ଗମ୍ଭୀର ହୋଇଯାଇ ତା ପାଖରୁ ଘୁଞ୍ଚି ବସିଲା ଏବଂ ଉର୍ମିଳା ଯେତେ ଚେଷ୍ଟା କଲେ ବି ଆଉ ତା ସହିତ ହସଖୁସିରେ କଥାବାର୍ତ୍ତା କଲା ନାହିଁ । ଯେତେବେଳେ ପାର୍କ ଅନ୍ଧାର ହୋଇଗଲା, ସେତେବେଳେ ମଧ ଉଦୟନ ଉର୍ମିଳା ପାଖକୁ ଲାଗି ଆସିଲା ନାହିଁ । ତମର କ'ଣ ହେଲା କହି ଉର୍ମିଳା ବରଂ ତା ପାଖକୁ ଘୁଞ୍ଚିଯାଇ ବସିଲା ଏବଂ ତାକୁ ଛୁଇଁବାକୁ ଚେଷ୍ଟା କଲା । ତଥାପି ନ ତରଳିବାରୁ ଉର୍ମିଳା କହିଲା, ଚାଲ, ଏବେ ତମେ ଯାଇ କୋଉ ହୋଟେଲରେ ରୁମ୍ ନିଅ । ନିରୋଳାରେ ବସି କଥାବାର୍ତ୍ତା କରିବା । ଉଦୟନ କହିଲା, ଏଠାରେ ବି ନିରୋଳା ଅଛି । ତାକୁ ଚିଡ଼ାଇବା ପାଇଁ ଉର୍ମିଳା କହିଲା, କିନ୍ତୁ ସବୁକଥା ପାଇଁ ନୁହେଁ ।

ସେମାନେ ପାର୍କରୁ ବାହାରିବାବେଳେ ଉଦୟନ କହିଲା, କାଲି କେମିତି କୋଉଠି ଦେଖାହେବ ? ମୁଁ ସନ୍ଧ୍ୟାବେଳେ ଚାଲିଯିବି । ଉର୍ମିଳା କହିଲା, ତମେ ଲଞ୍ଚ ଛୁଟିବେଳେ

ଆମ ଅଫିସକୁ ଆସ । ଉଦୟନ କହିଲା, ମୁଁ ତମ ଅଫିସକୁ ଆସି ପାରିବି ନାହିଁ । ତମେ ବରଂ ଛୁଟି ନେଇଆସ । ଉର୍ମିଳା କହିଲା, ମୁଁ ତ ଏଇମାତ୍ର ଚାକିରିରେ ଜଏନ୍ କରିଛି । ଛୁଟି କେମିତି ମାଗିବି ? ତମେ ବରଂ ଛୁଟି ନେଇ ଆଉ ଦିନେ ରହିଯାଅ । ଉଦୟନ କହିଲା, ଅଫିସରେ ମୋର ବି ଜରୁରୀ କାମ ଅଛି । ଆଉ ଆମ ହାକିମ ତମ ଡାଇରେକ୍ଟରଙ୍କ ଭଳି ଏତେ ଭଲ ଲୋକ ନୁହଁନ୍ତି । ବେଶ୍ କଡ଼ା ଲୋକ । ଯାହାହେଉ, ବିଦାୟ ନେବା ଆଗରୁ ଉର୍ମିଳା ତାକୁ ପରଦିନ ତା'ର ଅଫିସକୁ ଆସିବାକୁ ରାଜି କରାଇଲା ।

ତା ପରଦିନ ତାକୁ ଅଳ୍ପ ସମୟ ଦେଖାକରି ଉଦୟନ ଚାଲିଗଲା । ପୁଣି ଅଫିସ କାମରେ ମନ ଦେଉ ଦେଉ ଉର୍ମିଳା ଭାବିଲା, ଉଦୟନ ବଡ଼ ଅଦ୍ଭୁତ ଲୋକ । ବିନା କାରଣରେ ରାଗ କରୁଛି । ଯାହାହେଉ ଚିଠି ଲେଖି ସବୁକଥା ବୁଝାଇଦେବି । କିନ୍ତୁ ବେଶ୍ କିଛିଦିନ ଉର୍ମିଳା ତା ପାଖକୁ ଚିଠି ଲେଖି ପାରିଲା ନାହିଁ, କାରଣ ଅଫିସ୍‌ର କିଛି କାମ ତାକୁ ଘରକୁ ଆଣିବାକୁ ହେଲା । ଯେତେବେଳେ ସେ ଉଦୟନ ପାଖକୁ ଚିଠି ଲେଖିବାର ଅବସର ପାଇଲା, ହାତରେ ସମୟ କମ୍ ଥିଲା ଏବଂ ସେ ମାତ୍ର କେତୋଟି ଧାଡ଼ିରେ ଚିଠି ଲେଖିଲା, ଯୋଉଥିରେ ସେ ଯେତେ ଯାହାସବୁ ଲେଖିବାକୁ ଚିନ୍ତା କରିଥିଲା, କିଛି ବି ଲେଖିବା ସମ୍ଭବ ହେଲା ନାହିଁ ।

ଏଥରକ ଅଫିସରେ ଉର୍ମିଳାର କାମ ବଢ଼ିଚାଲିଲା । ସରକାରୀ ଅଫିସରେ ଗୋଟିଏ ନିୟମ ଅଛି ଯେ, ଯେ ଭଲ କାମ କରେ, ତାକୁ ବେଶି ବେଶି କାମ ଦିଆଯାଏ । ଉର୍ମିଳା ଏଇ ନିୟମର ଶିକାର ହୋଇଗଲା । ତା'ର ଏଥିପାଇଁ କୌଣସି କ୍ଷୋଭ ନ ଥିଲା, କାରଣ ସେ କାମରେ ତା'ର ପାରଙ୍ଗମତା ପ୍ରମାଣ କରିବା ପାଇଁ ସୁଯୋଗ ଚାହୁଁଥିଲା । ବର୍ତ୍ତମାନ କୌଣସି ଜଟିଳ ବିଷୟରେ ଆଲୋଚନା କରିବାକୁ ହେଲେ ଡାଇରେକ୍ଟର ତାକୁ ଡାକୁଥିଲେ ଏବଂ ତାଠାରୁ ପରାମର୍ଶ ନେଉଥିଲେ । ତାଙ୍କ ବ୍ୟବହାରରେ ସେ ବର୍ତ୍ତମାନ କୌଣସି ଅସଂଯମ ଦେଖିବାକୁ ପାଉ ନଥିଲା । ଡାଇରେକ୍ଟର ତାକୁ ଅଫିସର ଅନ୍ୟମାନଙ୍କ ଭଳି ସମାନ ଦୃଷ୍ଟିରେ ଦେଖୁଥିଲେ ଏବଂ ସେ ସ୍ତ୍ରୀ ହୋଇଥିବା ତା ପାଇଁ କୌଣସି ସୁବିଧା ଅଥବା ଅସୁବିଧାର କାରଣ ନଥିଲା । ଅଫିସରେ ଅନ୍ୟମାନଙ୍କ ସହିତ ରୋମାଞ୍ଚକ ଭାବରେ ଆତ୍ମୀୟ ହେବାକୁ ଚେଷ୍ଟା କରିଥିଲେ, ସେମାନେ ମଧ୍ୟ ବର୍ତ୍ତମାନ ତାକୁ ଚିହ୍ନି ସାରିଥିଲେ ଏବଂ ନିଜକୁ ସଂଯତ କରି ନେଇଥିଲେ । ସେ ଅଫିସର ସହକର୍ମୀମାନଙ୍କ ସହିତ ସବୁଦିଗରୁ ସମକକ୍ଷ ଥିଲା ଏବଂ ସେମାନେ ମଧ୍ୟ ବର୍ତ୍ତମାନ ତାକୁ ଆଉ କେବଳ ତା'ର ସ୍ତ୍ରୀତ୍ୱ ଦୃଷ୍ଟିରୁ ଦେଖୁ ନଥିଲେ ।

ଅଫିସ କାମ ବ୍ୟତୀତ ଉର୍ମିଳାର ଅଫିସରେ ଆଉ ଯେଉଁ କାମ ପ୍ରତି ଆଗ୍ରହ ଥିଲା, ତା ହେଉଛି ତାଙ୍କ ଅଫିସରେ ତଳତଳିଆ ଚାକିରି କରୁଥିବା ସ୍ତ୍ରୀ ଲୋକମାନଙ୍କର ଭଲମନ୍ଦ ବୁଝିବା । କିନ୍ତୁ ସେମାନଙ୍କ ସହିତ କଥାବର୍ତ୍ତା କରି ସେ ଅଳ୍ପ ସମୟ ଭିତରେ

ଜାଣିପାରିଥିଲା ଯେ ଏଇ ସ୍ତ୍ରୀଲୋକମାନେ ନିଜର ଭାଗ୍ୟକୁ ଆଦରି ଯେ ଯେଉଁଠାରେ ରହିଯାଇଥିଲେ । ସେମାନଙ୍କର ନିଜ ତଥା ନିଜ କାମ ବିଷୟରେ କୌଣସି ଅଭିମାନ ନଥିଲା ଏବଂ ସେମାନେ ସ୍ତ୍ରୀ ହୋଇଥିବାଜନିତ ଦ୍ୱିତୀୟ ଶ୍ରେଣୀର ନାଗରିକତ୍ୱକୁ ସଂପୂର୍ଣ୍ଣ ଭାବେ ସ୍ୱୀକାର କରି ନେଇଥିଲେ । ସେମାନଙ୍କ ଭିତରୁ କେହି କେହି ନିଜର କାମରେ ଦୟାଭିକ୍ଷା କରୁଥିଲେ ଏବଂ ଅନ୍ୟ କେହି କେହି ନିଜର ନାରୀତ୍ୱର ଚପଳ ରସିକତା ବିନିମୟରେ କାମରେ ସୁବିଧା ସୁଯୋଗ ନେବାକୁ ଚେଷ୍ଟା କରୁଥିଲେ । ଏମାନଙ୍କ ପାଇଁ ଉର୍ମିଳା ଆଉ କୌଣସି ସ୍ୱାଭିମାନୀ ଭବିଷ୍ୟତ ଦେଖିପାରୁ ନଥିଲା । ଶେଷରେ ଉର୍ମିଳା ଏମାନଙ୍କର ପୃଷ୍ଠପୋଷକ ଓ ସହାୟକ ହେବାର ଇଚ୍ଛାରୁ ନିଜକୁ ଦୂରରେ ରଖିଲା ।

ତା'ର ଚାକିରିକୁ ନେଇ ତା'ର ସବୁଠାରୁ ବେଶି ସମସ୍ୟା ହେଉଥିଲା ଉଦୟନ ସହିତ । ଉଦୟନ ତାକୁ ବାରମ୍ବାର ପ୍ରତ୍ୟକ୍ଷ ଓ ପରୋକ୍ଷରେ କହୁଥିଲା ସେ ଚାକିରି ଛାଡ଼ିଦେଇ ତାକୁ ବାହା ହୋଇ ଘରସଂସାର କରୁ । ଉର୍ମିଳା ତାକୁ ବୁଝାଉଥିଲା, ଦେଖ, କେତେ କଷ୍ଟରେ ଚାକିରି ମିଳିଲା । ହଠାତ ଛାଡ଼ିଦେବା କ'ଣ ଉଚିତ ହେବ ? ଉଦୟନ ତାକୁ କେବେ କେବେ କହୁଥିଲା, ତମର ବୋଧହୁଏ ବାହାହେବାର ଇଚ୍ଛା ନାହିଁ । ମତେ ଠିକ୍ କରି ତାରିଖ କହିଦିଅ, କେବେ ବାହା ହବା । ଉର୍ମିଳା କହୁଥିଲା, ଏତେ ବ୍ୟସ୍ତ କାହିଁକି ? ମୁଁ ତ ତମକୁ କହୁଚି ମଝିରେ ମଝିରେ ଏଠି ଆସି ହୋଟେଲରେ ରୁହ । ନହେଲେ ଚାଲ ଆମେ କୁଆଡ଼େ ଲମ୍ବା ଛୁଟି ନେଇ ଚାଲିଯିବା । ଆଉ ତିନିମାସ ଗଲେ ମତେ ଲିଭ ଟ୍ରାଭେଲ କନ୍‌ସେସନ ବି ମିଳିବ ।

କେବେ କେବେ ଉର୍ମିଳା ତା'ର ଅଫିସ କଥା କହୁ କହୁ କହୁଥିଲା, ବୁଝିଲ, ମତେ ଆମ ଡାଇରେକ୍ଟର କହୁଥିଲେ ଏଥର ଫିଲଡ଼୍ କାମ ପାଇଁ ଟୁର୍‌ରେ ପଠାଇବେ । ମୁଁ ପ୍ରଥମେ ତମ ସହରକୁ ହିଁ ପ୍ରୋଗ୍ରାମ କରିବି । ଉଦୟନ କହୁଥିଲା, ତମେ ଏକା କେମିତି ଟୁର୍‌ରେ ଯିବ ? ଉର୍ମିଳା କହୁଥିଲା, ତମେ ବ୍ୟସ୍ତ ହୁଅନାହିଁ, ସବୁ ବ୍ୟବସ୍ଥା ମୁଁ କରିଦେବି, ତମକୁ ସେକଥା ମୋଟେ ଭାବିବାକୁ ପଡ଼ିବ ନାହିଁ । ଦିନେ ଉର୍ମିଳା କହିଲା, ଏ ବର୍ଷର କ୍ୟାରେକ୍ଟର ରୋଲରେ ମତେ ସବୁଠାରୁ ଭଲ ମନ୍ତବ୍ୟ ମିଳିଛି । ଉଦୟନ କହିଲା, କାହିଁକି ? ଉର୍ମିଳା, ଯାହାର କି ନିଜର କାମ ବିଷୟରେ ଗର୍ବ ଥିଲା, କହିଲା, କାହିଁକି ମାନେ କଣ ? ଅଫିସରେ ମୁଁ ସବୁଠାରୁ ଭଲ କାମ କରେ ବୋଲି । ଉଦୟନ କହିଲା ସବୁ ଅଫିସରେ ଝିଅମାନେ ଏମିତି ଭଲ ମନ୍ତବ୍ୟ ପାଇଥାଆନ୍ତି । ଉର୍ମିଳା କହିଲା, ତମେ କିଛି ବି ଜାଣ ନାହିଁ । ଆମ ଅଫିସ୍‌ର ସବୁ ଲେଡ଼ି ଆସିଷ୍ଟାଣ୍ଟମାନଙ୍କର ସି.ସି.ଆର. ଖରାପ । ସେମାନଙ୍କୁ କେହି ବି ନିଜ ସେକ୍‌ସନକୁ ନେବାକୁ ଚାହାଁନ୍ତି ନାହିଁ ।

ଏଥରକ ଉର୍ମିଳା ବେଶି ବେଶି ଅଫିସ କାମରେ ମଜ୍ଜିତ ହୋଇଗଲା ଏବଂ ଛୋଟ ଛୋଟ ଅସୁବିଧା ସବୁ ଆଉ ତାକୁ ଗୁରୁତର ଜଣାଗଲା ନାହିଁ । ରାସ୍ତାଘାଟର

ମନ୍ତବ୍ୟ ସବୁକୁ ସେ ଅଗ୍ରାହ୍ୟ କରିଦେଲା, କାରଣ ଏ ସବୁ ଅତି ଇତର ଜିନିଷ ଥିଲା, ଯାହାକି ସେ ଚିନ୍ତା ଅଥବା ଉଦ୍‌ବେଗର ଉପଯୁକ୍ତ ଭାବୁ ନଥିଲା । ଅଫିସ କାମରେ ସେ ନିଜର ମନପ୍ରାଣ ଲଗାଉଥିଲା ଏବଂ ଡାଇରେକ୍ଟରଙ୍କ ସହିତ ତର୍କ କରିବା ପାଇଁ ସେ ଆଉ ଦ୍ୱିଧା କରୁ ନଥିଲା । ଡାଇରେକ୍ଟର ମଧ୍ୟ ତାକୁ ତା'ର ଭଲ କାମ ପାଇଁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଭୁଲ ପାଇଁ ଗାଳି ଦେବାକୁ କୁଣ୍ଠିତ ହେଉ ନଥିଲେ । ତାଙ୍କ ସହିତ ଉର୍ମିଳାର ସମ୍ପର୍କ ଏକ ସୁସ୍ଥ ଉପରିସ୍ଥ ଓ ଅଧସ୍ତନ କର୍ମଚାରୀର ଥିଲା । ଡାଇରେକ୍ଟର ଜଣେ ସଚ୍ଚୋଟ, କାର୍ଯ୍ୟଦକ୍ଷ ଓ ମିତଭାଷୀ ଭଦ୍ରଲୋକ ଥିଲେ ଏବଂ ଉର୍ମିଳା ତାଙ୍କୁ ସମ୍ମାନର ସହିତ ଦେଖୁଥିଲା । ତାଙ୍କ ଅଫିସରେ ଯେତେବେଳେ ଗୋଟିଏ ନୂଆ ଉଚ୍ଚ ଦରମାର ଚାକିରି ଖାଲି ହେଲା, ତା'ର ଡାଇରେକ୍ଟର ହିଁ ତାକୁ ଉପଦେଶ ଦେଲେ ସେ ଦରଖାସ୍ତ କରୁ, କାରଣ ଚାକିରି ପାଇଁ ତା'ର ସମସ୍ତ ଉପଯୁକ୍ତ ଯୋଗ୍ୟତା ଥିଲା ।

ଉର୍ମିଳା ଯେତେବେଳେ ଉଦୟନକୁ ତା'ର ଦରଖାସ୍ତ କଥା କହିଲା, ଉଦୟନ ପଚାରିଲା, ସେ ଚାକିରିର ଦରମା କେତେ ? ତାକୁ ସେ କଥା ନକହି ଉର୍ମିଳା କହିଲା, ଏତେଦିନ ହେଲାଣି ମୁଁ ତମକୁ ପଚାରି ନାହିଁ ତମେ କେତେ ଦରମା ପାଉଛ ବୋଲି । ତମେ କେତେ ପାଅ ?

ଉଦୟନ କହିଲା, ତମେ ଯୋଉ ଚାକିରି ପାଇଁ ଦରଖାସ୍ତ କରିଛ, ତାଠାରୁ ମୁଁ ବହୁତ କମ୍ ଦରମା ପାଉଛି । ଟିକିଏ ପରେ କହିଲା, ତମେ କ'ଣ ମୋର କମ ଦରମା ଯୋଗୁଁ ମତେ ବାହା ହେବାକୁ ରାଜି ହେଉ ନାହଁ ?

ତମେ କେମିତି ଏକଥା ଭାବୁଛ ? ଉର୍ମିଳା କହିଲା, ମୁଁ ତ ଜାଣି ବି ନଥିଲି ତମେ କେତେ ଦରମା ପାଅ, ନ ପାଅ । ଠିକ୍ ଅଛି, ଆମେ ଏଇ ବର୍ଷ ବାହା ହୋଇଯିବା ।

ତମେ ଯଦି ସେଇ ନୂଆ ଚାକିରିଟା ପାଅ ?

କ'ଣ ହେଲା ସେ ଚାକିରି ପାଇବା ନ ପାଇବାରେ ?

ଉଦୟନ ଚୁପ୍ ରହିଲା, କିନ୍ତୁ ଉର୍ମିଳାର ମନେହେଲା ସେ ଯେମିତି ଚାହେଁ ଉର୍ମିଳା ସେ ବଡ଼ ଚାକିରିଟି ନ ପାଉ । ସେ କହିଲା, କାହିଁକି, ତମେ କ'ଣ ଭାବୁ ନାହଁ ଯେ ମୁଁ ସେଇ ଚାକିରିଟି ପାଇଲେ ଆମର ସୁବିଧା ହେବ ବୋଲି ?

ଉଦୟନ କହିଲା, ମୁଁ ସେ କଥା ଜାଣେ ନାହିଁ । କିନ୍ତୁ ମୁଁ ଦେଖୁଛି ଚାକିରି କରିବା ଦିନୁ ତମେ ବଦଳି ଯାଇଛ ।

ସେ ତ ସ୍ୱାଭାବିକ କଥା, ଉର୍ମିଳା କହିଲା, ମୋର ବର୍ତ୍ତମାନ ନିଜର ସ୍ୱତନ୍ତ୍ର ପରିଚୟ ଅଛି । ମୁଁ ଆଉ କାହାରି ଆଶ୍ରିତ ବା ନିର୍ଭରଶୀଳ ନୁହେଁ ।

ତମେ କ'ଣ ଭାବୁଛ ବାହା ହୋଇଗଲେ ତମେ ତମର ଆଇଡେନ୍‌ଟିଟି ହରାଇ ଦେବ ?

ନା, କିନ୍ତୁ ଚାକିରି ଛାଡ଼ିଦେଲେ ମୁଁ ପୁଣି ପରାଶ୍ରିତ ହୋଇଯିବି ।

ବାହା ହେଲେ ଯଦି ଚାକିରି ଛାଡ଼ିବାକୁ ପଡ଼େ ?

ଉର୍ମିଳା ଜବାବ ଦେଲା, ମୁଁ ଚାକିରି ଛାଡ଼ିବି ନାହିଁ । ଯାହା ପଛେ ହେଉ ।

ଉଦୟନ କିଛି ସମୟ ଗମ୍ଭୀର ହୋଇ ବସିଲା ଓ ତା'ପରେ କିଛି ନକହି ଉଠି ଚାଲିଗଲା । ଉର୍ମିଳା ମନକୁ ମନ କହିଲା, ନା, ମୁଁ ମୋର ନିଜତ୍ୱକୁ ହାତମୁଠାରୁ ଛାଡ଼ିଦେବି ନାହିଁ ।

ସେଇ ନୂଆ ଚାକିରି ପାଇଁ ଦରଖାସ୍ତ କରିବା ଦିନରୁ ଉର୍ମିଳା ପାଇଁ ଅଫିସରେ ଅନେକ ସମସ୍ୟା ଉପୁଜିଲା । ଏଇ ଚାକିରିଟି ପାଇଁ ତା ଅଫିସରୁ ହିଁ ଆହୁରି ଅନେକ ପ୍ରାର୍ଥୀ ଥିଲେ ଏବଂ ସେମାନେ ଜାଣିଥିଲେ ଯେ ଉର୍ମିଳାର ଯୋଗ୍ୟତା ସେମାନଙ୍କଠାରୁ ବେଶି ଥିଲା । ତାକୁ ସେମାନେ ବାରମ୍ବାର ବିଭିନ୍ନ ପ୍ରକାର ଭାବରେ ଏ ବିଷୟ ନେଇ ଆକ୍ଷେପ କରି କହୁଥିଲେ । ଯଥା, ଆମେମାନେ ଦରଖାସ୍ତ କରିଛୁ ସିନା, ଚାକିରି ଆପଣଙ୍କର । ଆଜିକାଲି ସବୁଠାରେ ସ୍ତ୍ରୀଲୋକମାନଙ୍କର ଅଗ୍ରାଧିକାର । କିମ୍ବା, ଡାଇରେକ୍ଟର ଆପଣଙ୍କୁ ଏତେ ଭଲପା'ନ୍ତି, ସେ ନିଶ୍ଚୟ ଚାକିରିଟି କରାଇଦେବେ । ଏସବୁ ମନ୍ତବ୍ୟ ମୂଳରେ ଯେଉଁ ବ୍ୟଙ୍ଗ ଥିଲା, ତା ହେଲା, ଆପଣ ଯଦି ଚାକିରିଟି ପାଆନ୍ତି, ତା ହେବ ଆପଣ ସ୍ତ୍ରୀ ହୋଇଥିବାର ଏକମାତ୍ର ଯୋଗ୍ୟତା ବଳରେ । ତା ପରେ ପରେ ସେମାନେ ତାକୁ ଛୋଟ ଛୋଟ ହଇରାଣ କରିବାକୁ ଆରମ୍ଭ କଲେ । ତା ବିଷୟରେ ମିଛସତ କଥାବାର୍ତ୍ତା କଲେ, ତା ବିରୁଦ୍ଧରେ ଡାଇରେକ୍ଟରଙ୍କ ପାଖରେ ଅମୂଳକ ଅଭିଯୋଗ କଲେ । ଉର୍ମିଳା ବୁଝିଲା ଯେ ଯେଉଁ ପର୍ଯ୍ୟନ୍ତ ସ୍ତ୍ରୀ ଗୋଟିଏ ଗୌଣ ଭୂମିକା ନେଇ ରହିଛି, ଠିକ୍ ଅଛି, କିନ୍ତୁ ଯେତେବେଳେ ସେ ସେମାନଙ୍କର ସମକକ୍ଷ ହେଉଛି କିମ୍ବା ଉପରକୁ ଯାଉଛି, ଏକଥା କାହାରି ସହ୍ୟ ହେଉ ନାହିଁ ।

ଏସବୁ ଶୁଣି ଉର୍ମିଳା ବିରକ୍ତ ହେଲା, ହତୋତ୍ସାହିତ ନୁହେଁ । ସେ ଏଇ ପୁରୁଷ ଆଧିପତ୍ୟମୟ ପୃଥିବୀରୁ ଆଉ କ'ଣ ବା ଆଶା କରିଥା'ନ୍ତା ? କେବଳ ମଝିରେ ମଝିରେ ଉଦୟନର ବ୍ୟବହାର ତାକୁ ବ୍ୟତିବ୍ୟସ୍ତ କରୁଥିଲା । ସେ ମଧ୍ୟ ଏଇ ପୁରୁଷପ୍ରଧାନ ସମାଜର ପ୍ରତିନିଧି ଥିଲା । ଏଥିପାଇଁ ଉର୍ମିଳାର କେବେ କେବେ ଉଦୟନ ଉପରେ କ୍ରୋଧ ମଧ୍ୟ ହେଉଥିଲା । କିନ୍ତୁ ସେମାନଙ୍କର ଏତେ ବର୍ଷର ସମ୍ପର୍କକୁ ମନେ ପକାଇ ସେ ନିଜକୁ ସମ୍ବରଣ କରୁଥିଲା । ପୁଣି ଭାବୁଥିଲା, ଏଥରକ ଦେଖାହେଲେ ସେ ଉଦୟନକୁ ଭଲଭାବରେ ବୁଝାଇବ । କିନ୍ତୁ ଗୋଟିଏ ବିଷୟରେ ଉର୍ମିଳା ଦୃଢ଼ ସଂକଳ୍ପ ଥିଲା । ଯାହାହେଉ ପଛେ, ସେ ନିଜର ସ୍ୱାଧୀନତାକୁ ହରାଇ ଦେବ ନାହିଁ ।

ଶେଷକୁ କିନ୍ତୁ ଉର୍ମିଳାର ସେ ଚାକିରିଟି ହେଲା ନାହିଁ । ଡାଇରେକ୍ଟର ତାକୁ ଡାକି ଅନେକ ଦୁଃଖପ୍ରକାଶ କଲେ । କହିଲେ, ଏସବୁ ଚାକିରି ପାଇଁ ପ୍ରାର୍ଥୀ ବାଛିବାରେ

ଅନେକ ପ୍ରକାରର ପ୍ରଭାବ ଅଛି । ତମେ ବ୍ୟସ୍ତ ହୁଅ ନାହିଁ । ପୁଣି ନୂଆ ପୋଷ୍ଟ ତିଆରି ହେବ । ଅଫିସ୍‌ର ସହକର୍ମୀମାନେ ପୁଣି ତା ସହିତ ଭଲ ବ୍ୟବହାର କରିବାକୁ ଆରମ୍ଭ କଲେ । କିନ୍ତୁ ଉର୍ମିଳା ମନରେ ଏକ ଗଭୀର ଦୁଃଖ ରହିଗଲା । ସେ ଯେତେବେଳେ ଏକଥା ଉଦୟନକୁ କହିଲା, ଲକ୍ଷ୍ୟକଲା ଯେ ତା'ର ସେଇ ଚାକିରିଟି ନ ପାଇବାରେ ଉଦୟନ ଯେପରି ଖୁସି ଥିଲା । ଏକଥା ମଧ୍ୟ ଉର୍ମିଳାକୁ ଭଲ ଲାଗିଲା ନାହିଁ । ସେ ଘରେ ବସି ବସି ଅନେକ ଭାବିଲା । କ'ଣ ଚାକିରି ଛାଡ଼ିଦେଇ, ବାହା ହୋଇ, ପିଲା ଜନ୍ମକରି ଗୃହିଣୀ ହୋଇଯିବ ? ନା, ପୁଣି ନୂଆ ଚାକିରି ପାଇଁ ଚେଷ୍ଟା କରିବ । ଉଦୟନ କ'ଣ ତାକୁ ସତରେ ଭଲପାଏ ? ଯଦି ଭଲପାଏ ତେବେ ଉର୍ମିଳାର ଇଚ୍ଛା, ଆଗ୍ରହ, ଲକ୍ଷ୍ୟ, ଉଚ୍ଚାଭିଳାଷ ପ୍ରତି ସେ ବିମୁଖ କାହିଁକି ? କାହାକୁ ସେ ଏକଥା ସବୁ କହିବ ? ବାପା ମା'ଙ୍କୁ ? ତା'ର ଶୁଭାକାଙ୍କ୍ଷୀ ତା ଅଫିସ୍‌ର ଡାଇରେକ୍ଟରଙ୍କୁ ?

ଯେତେ ଏକଥା ଭାବିଲା, ସେତିକି ସେ ଅବସାଦରେ ବୁଡ଼ି ରହିଲା । ପୁଣି ଛୋଟ ଛୋଟ ଜିନିଷ ତାକୁ ବ୍ୟସ୍ତ କଲେ । ବସରେ ତା ଦେହରେ କେହି ଘଷି ହୋଇଗଲେ ସେ ବିରକ୍ତ ହେଲା ଓ ରାସ୍ତା କଡ଼ରେ ମନ୍ତବ୍ୟ କରୁଥିବା ଲୋକଙ୍କୁ ସେ ମୁହଁ ବୁଲି ଅନାଇଲା । ଅଫିସରେ ସେ କାହାରି ସହିତ ଭଲରେ କଥାବାର୍ତ୍ତା କଲା ନାହିଁ ଏବଂ ଖାଇବା ଛୁଟିବେଳେ ଯେତେବେଳେ ତା'ର ସହକର୍ମୀ ତାକୁ ଚା' ପିଇବାକୁ ଡାକିଲା, ତାକୁ ରୋକଠୋକ ମନା କରିଦେଲା । ତା'ର ଦୁର୍ଭାଗ୍ୟକୁ ଉଦୟନ ପାଖରୁ ମଧ୍ୟ ଅନେକ ଦିନ ଚିଠି ଆସିଲା ନାହିଁ ଏବଂ ଏକଥା ଆହୁରି ଏକ ବିଷାଦର କାରଣ ହେଲା । ସେ ଆଉ ଡାଇରେକ୍ଟରଙ୍କ ସହିତ ଭଲରେ କଥାବାର୍ତ୍ତା କଲା ନାହିଁ ଏବଂ ସେ ଯେତେବେଳେ ତାକୁ ଆଦରରେ କ'ଣ କହିଲେ, ତାଙ୍କୁ ରୁକ୍ଷ ଭାବରେ ଜବାବ ଦେଲା । ଏଇପରି ଏକ ଅବସାଦପୂର୍ଣ୍ଣ ମୁହୂର୍ତ୍ତରେ ସେ ଅଫିସରେ ବସି ବସି ତା'ର ଇସ୍ତଫାପତ୍ର ଲେଖିଲା ଏବଂ ଉଦୟନକୁ ଚିଠି ଲେଖିଲା ଯେ ସେ ଚାକିରି ଛାଡ଼ିଦେବ ଏବଂ ଯୋଉଦିନ ଠିକ୍ କରିବ ସେଇଦିନ ସେ ତାକୁ ବାହା ହୋଇଯିବ ।

ଚିଠି ଦୁଇଟି ଲେଖିସାରିବା ପରେ ତାକୁ ଅତ୍ୟନ୍ତ ହାଲୁକା ଓ ନିଶ୍ଚିନ୍ତ ଲାଗିଲା । ଯେମିତି ତା'ର ଅନେକ ଦିନର ସଂଗ୍ରାମର ଏଇଠାରେ ହଠାତ ପରିସମାପ୍ତି ହୋଇଗଲା । ସେ ଚିଠିକୁ ହାତରେ ନେଇ ଉଠି ଠିଆହେଲା, ଚାରିଆଡ଼କୁ ଅନାଇଲା ଏବଂ କାହାରି ପ୍ରତି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନ ଥାଇ ମନେ ମନେ କହିଲା, ବାଷ୍ଟାର୍ଡ୍‌ସ୍ ! ତା'ପରେ ସେ ଡାଇରେକ୍ଟରଙ୍କ କୋଠରିର କବାଟ ଖୋଲି ଭିତରକୁ ଗଲା । କୋଠରିରେ ସେତେବେଳେ ଆଉ କେହି ନଥିଲେ । ଡାଇରେକ୍ଟର କାର୍ଯ୍ୟବ୍ୟସ୍ତ ଥିଲେ ଏବଂ ତାକୁ ଦେଖି କହିଲେ, ବସ, ମୁଁ ଗୋଟାଏ ମିନିଟରେ ଏଇ ଫାଇଲଟା ସାରିନିଏ । ସାମନା ଚଉକି ଉପରେ ବସି ଉର୍ମିଳା ନିଜ କଥା ଭାବିଲା । ଅନେକ ହୋଇଗଲା, ଆଉ ନୁହେଁ । ସେ ପୁରୁଣା

କଥା ମନେ ପକାଇଲା : ତା'ର କଲେଜର ସାହସିକ ଦିନମାନ, ରାସ୍ତାଘାଟର କଟୁ ଅନୁଭବ, ଇଣ୍ଟରଭିଉର ଅନିଶ୍ଚିତ ମୁହୂର୍ତ୍ତ, ସହକର୍ମୀମାନଙ୍କର ଈର୍ଷା, ଉଦୟନର ଅସହିଷ୍ଣୁତା, ତା ନିଜର ସ୍ୱତନ୍ତ୍ର ପରିଚୟ । ନା, ସେ ନିଜ ଜୀବନକୁ ଏପରି ଉଦ୍ଦେଶ୍ୟହୀନ ଭାବରେ ଇତସ୍ତତଃ ବିକ୍ଷିପ୍ତ ହେବାକୁ ଦେବ ନାହିଁ । ଯାହା ତା'ର ପ୍ରାପ୍ୟ, ତାକୁ ସେ ହାତମୁଠାରେ ଧରି ରଖିବ । ଯାହା ତା'ର ନିଜର ଜୀବନ, ତାକୁ ନେଇ ଆଉ କାହାରିକି ଖେଳିବାକୁ ଦେବ ନାହିଁ, ସେ ନିଜେ ନିୟନ୍ତ୍ରଣ କରିବ ତା'ର ଜୀବନକୁ, ନିଜର ଇଚ୍ଛା ଅନୁଯାୟୀ ।

ଡାଇରେକ୍ଟର ଫାଇଲ ବନ୍ଦକରି ମୁହଁ ଉଠାଇଲେ ଏବଂ ଉର୍ମିଳା ଆଡ଼କୁ ଚାହିଁ କହିଲେ, ୟେସ୍ ।

ଉର୍ମିଳା ତାଙ୍କର ଚିନ୍ତାଗ୍ରସ୍ତ ମୁହଁକୁ ସହାନୁଭୂତିର ସହିତ ଅନାଇଲା ଏବଂ ତା ମୁହଁରେ ହସ ଫୁଟି ଉଠିଲା । ସାମାନ୍ୟ ଚୁପ୍ ରହି ସେ ତାଙ୍କ ଆଖିକୁ ଅନାଇ ଅବିଚଳିତ ସ୍ୱରରେ କହିଲା, ଆପଣ ଆଜି ସନ୍ଧ୍ୟାରେ ଫ୍ରି ଅଛନ୍ତି ?

# ମଲା ଲୋକ

ମୈତ୍ରେୟୀ କୋଠରିର ଗୋଟିଏ କଣରେ ଶୂନ୍ୟକୁ ଅନାଇ ବସିଥିଲା । ତା ଚାରିପାଖେ ଅନେକ ସ୍ତ୍ରୀଲୋକ ତାକୁ ଘେରି ବସିଥିଲେ ଏବଂ ସେମାନଙ୍କ ଭିତରୁ ଅନେକ ରୁମାଲରେ ଆଖି ପୋଛୁଥିଲେ । ମୈତ୍ରେୟୀର ଆଖିରେ କିନ୍ତୁ ଲୁହ ନଥିଲା । ସେ ବର୍ତ୍ତମାନ ନିରୋଳାରେ ବସି କିଛି ଭାବିବାକୁ ଚାହୁଁଥିଲା, କିନ୍ତୁ ଏକା ସମ୍ଭବ ନଥିଲା । ପୂର୍ବ ରାତିରୁ ହିଁ ଦଳଦଳ ସ୍ତ୍ରୀଲୋକ ପାଳି କରି ତାକୁ ଘେରି ରହିଥିଲେ ଏବଂ ତାକୁ ମୁହୂର୍ତ୍ତେ ବି ଏକାକୀ ହେବା ସୁଯୋଗ ଦେଇ ନଥିଲେ ।

ସନ୍ଧ୍ୟାବେଳେ ଆଦିତ୍ୟର ମରିବା ଖବର ପାଇ ବି ସେ କାନ୍ଦି ନଥିଲା । ବରଂ ଘରେ ଯେତେବେଳେ ସମସ୍ତେ କାନ୍ଦିବାକୁ ଆରମ୍ଭ କଲେ, ସେ ନିର୍ବାକ ହୋଇଯାଇଥିଲା । ତା'ର ହଠାତ ମନେ ହୋଇଥିଲା, ଯେପରି ନିଜର ମରିବାରେ ବି ଆଦିତ୍ୟ ତା ପାଖରୁ ଏହି ବିଶେଷ ଖବରଟି ଜାଣିଶୁଣି ଗୋପନୀୟ ରଖି ଦେଇଥିଲା । ତା'ର ଆଉ ମଧ ମନେ ହୋଇଥିଲା ଯେମିତି ଆଦିତ୍ୟ ମରିବା ପୂର୍ବରୁ ନିଜର ପ୍ରିୟ-ପରିଜନ ପୃଥିବୀର ଜଣାଅଜଣା ସବୁ ଲୋକଙ୍କୁ ନିଜର ସବୁ ସ୍ନେହ ଶ୍ରଦ୍ଧା ବାଣ୍ଟି ଦେଇଥିଲା, କେବଳ ତା'ଛଡ଼ା । ଏକଥା ବର୍ତ୍ତମାନ ମୈତ୍ରେୟୀ ପାଇଁ କ୍ଷୋଭର କାରଣ ଥିଲା ଏବଂ ମୃତ୍ୟୁର ଶୋକ ଅପେକ୍ଷା ବେଶି ଅପ୍ରାପ୍ତିର ଏକ ଦୁଃଖ ମୈତ୍ରେୟୀକୁ ଅଭିଭୂତ କରୁଥିଲା ।

ମୈତ୍ରେୟୀର ଆଦିତ୍ୟକୁ ବହୁତ କିଛି ପଚାରିବାର ଥିଲା ଏବଂ ତାକୁ ସେ ସୁଯୋଗ ନଦେଇ ହଠାତ ଚାଲିଯିବା ଆଦିତ୍ୟର ତା ପାଇଁ ଯେପରି ଥିଲା ଶେଷ ବିଶ୍ୱାସଘାତକତା । ସକାଳେ କଲେଜକୁ ଯିବା ପରେ ମୈତ୍ରେୟୀ ଆଦିତ୍ୟକୁ ଦେଖିଥିଲା ଦିନ ଚାରିଟାବେଳେ ହସପିଟାଲ ଖଟ ଉପରେ । ସେତେବେଳେ ସେ ଇନ୍‌ଟେନସିଭ କେୟାର ଇଉନିଟ୍‌ରେ ଥିଲା ଏବଂ ତା ପାଖକୁ କାହାରିକୁ ଛାଡ଼ି ଦିଆ ହେଉ ନଥିଲା । ମୈତ୍ରେୟୀ ସନ୍ଧ୍ୟାବେଳେ ଅଳ୍ପ ସମୟ ପାଇଁ ଘରକୁ ଆସି ପୁଣି ହସପିଟାଲକୁ ଯିବ ବୋଲି ଭାବିଥିଲା, କିନ୍ତୁ ତା'ର ଆଉ ଆବଶ୍ୟକତା ପଡ଼ିଲା ନାହିଁ । ତା ଘରକୁ ଫୋନ ଆସିଲା ଯେ ଆଦିତ୍ୟ ଆଉ ନାହିଁ ।

ସେ ଯେତେବେଳେ ସେଠାରୁ ବାଥରୁମ୍‌କୁ ଗଲା, ତା ସାଙ୍ଗରେ ଦୁଇଜଣ

ସ୍ତ୍ରୀଲୋକ ଗଲେ ଏବଂ କବାଟ ପାଖରେ ତାକୁ ଅପେକ୍ଷା କରି ରହିଲେ । ମୁହଁ ଧୋଉ ଧୋଉ ମୈତ୍ରେୟୀ ତାଙ୍କ କଥା ଠିକ୍ ଶୁଣି ପାରୁଥିଲା । ଜଣେ କହିଲା, ମୈତ୍ରେୟୀର କାନ୍ଦିବା ଉଚିତ ଥିଲା । ଯଦି ସେ ବହୁତ କାନ୍ଦିପାରନ୍ତା, ମନ ହାଲୁକା ହୋଇଯା'ନ୍ତା । ଆଉ ଜଣେ କହିଲା, ନା, ସେ କାନ୍ଦିଥିଲେ ଝିଅକୁ କିଏ ବୁଝାଇଥା'ନ୍ତା ? ମୈତ୍ରେୟୀକୁ ଏ କଥୋପକଥନ ହାସ୍ୟକର ମନେହେଲା ଏବଂ ସେ ଆଦିତ୍ୟ ସହିତ ନିଜର ସମ୍ପର୍କକୁ ମନେ ପକାଇ ପୁଣି ଆଦିତ୍ୟ ଓ ନିଜ ଉପରେ ରୁଷ୍ଟ ହେଲା ।

ଝିଅ ରାନୁର କିନ୍ତୁ ଏ ସମସ୍ୟା ନଥିଲା । ସ୍କୁଲରୁ ଫେରି ସେ ବାପା ହସପିଟାଲରେ ଥିବା ଖବର ପାଇଥିଲା ଏବଂ ସନ୍ଧ୍ୟାବେଳେ ଘରେ କାନ୍ଦକଟା ହେବାରୁ ତା'ର ବାପା ମରିଯାଇଥିବାର ଜାଣିଥିଲା । ସେଦିନ ସେ ସ୍କୁଲରେ ଅନେକ ସମୟ ଧରି ଖେଳିଥିବାରୁ ସନ୍ଧ୍ୟାରେ ବହୁତ କ୍ଲାନ୍ତ ଥିଲା ଏବଂ ରାତିରେ ତାକୁ ଖୁଆଇ ପିଆଇ ଦେବାପରେ ସେ ଅତି ଶୀଘ୍ର ଶୋଇଯାଇଥିଲା । ରାତିରେ ତା'ର ଶୋଇବା ଅବସ୍ଥାରେ ହିଁ ଆଦିତ୍ୟର ଶବକୁ ଘରକୁ ଅଣା ହୋଇଥିଲା ଏବଂ ସକାଳେ ଘରସାରା ଲୋକଭର୍ତ୍ତି ଶୋକାର୍ତ୍ତ ମୁହଁ ସବୁ ଦେଖି ରାନୁ ପୁଣି ସାମାନ୍ୟ କାନ୍ଦିଥିଲା । ତା'ପରେ ସେ ଚୁପ୍‌ଚାପ୍ ହୋଇଯାଇଥିଲା । ଏପରିକି ଯେତେବେଳେ ପୁଣି ପଡ଼ୋଶୀ ଭଦ୍ରମହିଳା ତାକୁ କୁଣ୍ଢାଇ ଧରି ନିଜେ କାନ୍ଦିବାକୁ ଆରମ୍ଭ କଲେ, ସେତେବେଳେ ବି ରାନୁ କାନ୍ଦି ନଥିଲା ।

ସତ କହିବାକୁ ଗଲେ ରାନୁ ଏ ପର୍ଯ୍ୟନ୍ତ ବାପାର ମରିବାକୁ ଠିକ୍ ଭାବରେ ଗ୍ରହଣ କରିପାରୁ ନଥିଲା । ତା'ର ମନେ ହେଉଥିଲା ଯେମିତି ବାପା କୋଉଠିକି ଯାଇଛନ୍ତି, ଦି'ଚାରିଦିନ ଭିତରେ ପୁଣି ଫେରି ଆସିବେ । ଘରସାରା ଏପାଖ ସେପାଖ ପଡ଼ିଥିବା ଆଦିତ୍ୟର ଜାମାପଟା, ଚଟି ଜୋତା, ବହିପତ୍ର ତାକୁ ଏ ବିଷୟରେ ଆଶ୍ୱସ୍ତ କରୁଥିଲେ । ସେ ଜାଣିଥିଲା ଏକଥା ସତ ନୁହେଁ, ତଥାପି ନିଜ ମନରୁ ଏକଥା ଦୂର କରିପାରୁ ନଥିଲା ଯେ ତା'ର ବାପା ଯେମିତି ସମୟ ଅସମୟରେ ଘରେ ଆସି ପହଞ୍ଚନ୍ତି, ସେଭଳି ଭାବରେ ଆସି ପହଞ୍ଚିବେ । ଘରର କଲିଂବେଲ୍ ବାଜିବାରୁ ରାନୁ ଜାଣିପାରିବ ଯେ ତା'ର ବାପା ହିଁ ଡାକୁଛନ୍ତି । ଥରେ ଜୋରରେ ଏବଂ ଠିକ୍ ପରେ ପରେ ଦୁଇଥର ଧୀରେ ଧୀରେ କଲିଂବେଲ୍ ବାଜିବ ଏବଂ ରାନୁକୁ ଡାକି ବାପା ଭିତରକୁ ଆସିବେ । ଯଦି ସେ ବାହାରକୁ କେଉଁଠାକୁ ଯାଇଥିବେ, ତାହେଲେ ନିଶ୍ଚୟ କିଛି ନା କିଛି, ସେ ଗୋଟାଏ ନୂଆ ବହି ହଉ ବା ଘର ସଜାଇବାର କୌଣସି ଜିନିଷ ହଉ, ତା ପାଇଁ ଆଣିଥିବେ । ଘରେ ଯଦି ସବୁ କିଛି ଅବ୍ୟବସ୍ଥାରେ ନଥା'ନ୍ତା, ରାନୁ ସବୁଦିନ ଭଳି ଖାଇପିଇ ତା'ର ବ୍ୟାଗ୍ ଧରି ସ୍କୁଲକୁ ବାହାରି ଯାଇଥା'ନ୍ତା ।

ରାନୁର ମାମୁ, ଯାହାର ଆଦିତ୍ୟ ସହିତ ମାମୁଲି ସମ୍ପର୍କ ମାତ୍ର ଥିଲା, ସେ ବର୍ତ୍ତମାନ ଘରର ସମସ୍ତ ଦାୟିତ୍ୱ ନିଜ ଉପରକୁ ନେଇ ଯାଇଥିଲେ । ତାଙ୍କ ଉପରେ

ଦୁଃଖର ସାମାନ୍ୟ ବି ଛାୟା ନଥିଲା, କେବଳ ହଠାତ ଏପରି ବିନା ନୋଟିସରେ ତାଙ୍କ ଉପରେ ଏତେ ଦାୟିତ୍ୱ ସବୁ ଆସି ପଡ଼ିଥିବାରୁ ସେ ଚିନ୍ତାଶୀଳ ଜଣା ପଡୁଥିଲେ । ସେ ବୟସରେ ଆଦିତ୍ୟଠାରୁ ବଡ଼ ଥିଲେ ଏବଂ ଅନେକ ସମୟରେ ଆଦିତ୍ୟକୁ ବିଭିନ୍ନ ପ୍ରକାରର ଉପଦେଶ ଦେଉଥିଲେ । ଆଦିତ୍ୟ ସ୍ୱାଧୀନ ପ୍ରକୃତିର ଥିଲା ଏବଂ ତାଙ୍କର ଉପଦେଶ ମାନିବାକୁ ପ୍ରସ୍ତୁତ ନଥିଲା । ଏହି କାରଣରୁ ଆଦିତ୍ୟ ତାଙ୍କ ସହିତ କମ ସମ୍ପର୍କ ରଖୁଥିଲା ।

ମାମୁ ବର୍ତ୍ତମାନ କଲେଜର ଆକାଉଣ୍ଟାଣ୍ଟ ସହିତ ଠିଆହୋଇ ଆଦିତ୍ୟର ପ୍ରାପ୍ୟ ବିଷୟରେ ଆଲୋଚନା କରୁଥିଲେ । ଆକାଉଣ୍ଟାଣ୍ଟ ଆଦିତ୍ୟକୁ ଭଲ ପାଉଥିଲା ଏବଂ ତା'ର ମୃତ୍ୟୁରେ ମ୍ରିୟମାଣ ଥିଲା । କିନ୍ତୁ ତା ମନ ଭିତରେ ଯେଉଁ ଚିନ୍ତାଟି ତାକୁ ବ୍ୟତିବ୍ୟସ୍ତ କରୁଥିଲା, ସେଇଟି ଥିଲା ଆଦିତ୍ୟ ତା ପାଖରୁ ଆଡ଼ଭାନସ୍ ନେଇଥିବା ବିଷୟରେ । ସେଇଟି ବର୍ତ୍ତମାନ କିପରି ଆଡ଼ଜଷ୍ଟ ହେବ, ତା'ହିଁ ଥିଲା ଆକାଉଣ୍ଟାଣ୍ଟର ଚିନ୍ତାର ବିଷୟ । ତଥାପି ସେ ଆଦିତ୍ୟର ପରିବାର କେତେ ପେନସନ, ପ୍ରଭିଡ଼େଣ୍ଟ ଫଣ୍ଡ ଇତ୍ୟାଦି ପାଇବେ ତା'ର ଏକ ମୋଟାମୋଟି ହିସାବ ଦେଲା, ଯାହା ମାମୁଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ । ସେ କହିଲେ, ଏବେ କଣ ସବୁ ନୂଆ ହୋଇ ଇନ୍‌ସ୍ୟୁରାନସ ହୋଇଚି ନା କଣ, ସେଥିରୁ କେତେ ଟଙ୍କା ମିଳିବ ? ଆକାଉଣ୍ଟାଣ୍ଟ କହିଲା, ଆଦିତ୍ୟବାବୁ ସେଇଟି ନେଇ ନଥିଲେ । ମାମୁ, ଯେ କି ଏ ବିଷୟରେ କେବେ ବି ଆଦିତ୍ୟ ସହିତ କଥାବାର୍ତ୍ତା କରି ନଥିଲେ, କହିଲେ, ମୁଁ ତାକୁ ବାରମ୍ବାର କହୁଚି ଇନ୍‌ସ୍ୟୁରାନସ ନେଇ ଯା, ସେ କଣ ମୋ କଥା ଶୁଣିବ ? ସେ ପଛ ତାରିଖ ପକାଇ ଯଦି କେହି ଆଦିତ୍ୟର ଦସ୍ତଖତରେ ଏଥିପାଇଁ ଦରଖାସ୍ତ କରେ, ତାହେଲେ ଚଳିବ କି ବୋଲି ପଚାରିଲେ, କିନ୍ତୁ ଆକାଉଣ୍ଟାଣ୍ଟ ଏଭଳି ଅତି ଅସଙ୍ଗତ ପ୍ରସ୍ତାବ ପ୍ରତି ଆଦୌ ଆଗ୍ରହୀ ହେଲା ନାହିଁ ।

ମାମୁ ସାମାନ୍ୟ ବିରକ୍ତିର ସହିତ ସେଠାରୁ ଉଠିଯାଇ ଘର ଭିତରକୁ ପଶିଲେ ଏବଂ ସେଠାରେ ଛିଡ଼ା ହୋଇଥିବା ଛୋଟ ଦଳଟିକୁ ଉଦ୍ଦେଶ୍ୟ କରି କହିଲେ, ଭାନୁ କେତେବେଳେ ଆସିବ ବୋଲି ଆଶା ? ଆଦିତ୍ୟର ପୁଅ ବମ୍ବେରେ ପାଠ ପଢୁଥିଲା ଏବଂ ସନ୍ଧ୍ୟାବେଳେ ହିଁ ତା ପାଖକୁ ଟେଲିଗ୍ରାମ ଯାଇଥିଲା । ଏଥିରେ ତା'ର ବାପା ସିରିଅସ ବୋଲି ଲେଖା ହୋଇଥିଲା, କିନ୍ତୁ ସମସ୍ତେ ମନେ କରୁଥିଲେ ଯେ ସେ ବାର୍ତ୍ତାର ତାତ୍ପର୍ଯ୍ୟ ବୁଝିପାରିବ ଏବଂ କେମିତି କୁଆଡୁ ଟଙ୍କା ଯୋଗାଡ଼ କରି ପ୍ଲେନ୍‌ରେ ଆସି ପହଞ୍ଚିବ । କିନ୍ତୁ ପ୍ଲେନ୍ ସମୟ ଆହୁରି ଚାରିଘଣ୍ଟା ପରେ ଥିଲା । ମାମୁ ଅନୁଭବୀ ଲୋକ ଥିଲେ ଏବଂ ଜାଣିଥିଲେ ଯେ ଭାନୁର ଆସିବା ଆଶା କମ୍ । ସେ କହିଲେ, ସେ ଆସୁ ନଆସୁ ଦି'ଟାବେଳେ ଶ୍ମଶାନକୁ ଯିବାର ବ୍ୟବସ୍ଥା ହେବ । ପାଖରେ ଛିଡ଼ା ହୋଇଥିବା ଭଦ୍ରବ୍ୟକ୍ତି, ଯାହାଙ୍କୁ ସେଠାରେ କେହି ଚିହ୍ନିଥିବା ପରି ଜଣାପଡୁନଥିଲା, କହିଲେ, ହଁ,

ଅପେକ୍ଷା କରି କିଛି ଲାଭ ନାହିଁ । ସେଥର ମାଇନିଂ ମିଶ୍ରବାବୁ ମରିଗଲେ ; ତାଙ୍କ ପୁଅ ପାଇଁ ଘରେ ଅପେକ୍ଷା କଲେ । ଏଆରଲାଇନ୍ ଷ୍ଟ୍ରାଇକ ଯୋଗୁଁ ସେ ଦି'ଦିନ ପରେ ଆସି ପହଞ୍ଚିଲା । ଯେତେ ବରଫ ଦେଲେ ବି ଡେଡ୍‌ବଡ଼ି ପଚିଗଲା । ପୁଅ ଆସି ବିରକ୍ତ ହେଲା । ଏପରିକି ସେ ବାଳ କାଟିବାକୁ ବି ମନା କରିଦେଲା । ମାମୁଙ୍କୁ ଏକଥା ଭଲ ଲାଗିଲା ନାହିଁ । ଭଦ୍ରବ୍ୟକ୍ତିଙ୍କ କଥାକୁ ଅବଜ୍ଞା କରି ସେ କହିଲେ, ଯେତେହେଲେ ବଡ଼ପୁଅ ନଥାଇ କେମିତି କ'ଣ କରାହେବ ? ଅପେକ୍ଷା ତ କରିବାକୁ ହେବ ।

ମାମୁଙ୍କର ଅଜ୍ଞାତରେ ଆଦିତ୍ୟର ପଡ଼ୋଶୀ ଏଥିମଧ୍ୟରେ ମୈତ୍ରେୟୀ ପାଖରୁ ଯାଇ ଟଙ୍କା ମାଗିଆଣି କୋକେଇ ତିଆରିର ବ୍ୟବସ୍ଥା କରୁଥିଲେ । ସେ ଜଣେ ସଂପୂର୍ଣ୍ଣ ବିଷୟବୁଦ୍ଧିସଂପନ୍ନ ଲୋକ ଥିଲେ ଏବଂ ବିବାହ, ବ୍ରତ ଇତ୍ୟାଦି ଉତ୍ସବମାନଙ୍କରେ ତାଙ୍କୁ ସମସ୍ତେ ଲୋଡୁଥିଲେ । ସେ ଆଜି ଦିନଟି ଅଫିସରୁ ଛୁଟି ନେଇଥିଲେ ଏବଂ ଏ ଭିତରେ ବାଉଁଶ ମଗାଇ ତାକୁ କାଟିବାର ପର୍ବକୁ ତଦାରଖ କରୁଥିଲେ । ଘର ପାଖରୁ ଟିକିଏ ଦୂରରେ ଛିଡ଼ାହୋଇ ସେ ପାଟି କରୁଥିଲେ : ବାଉଁଶକୁ ଏତେ ଛୋଟ ଛୋଟ କରି କାଟିବାକୁ କିଏ କହିଲା, ଅଥବା, ଦଉଡ଼ି ଆସିଲା କି ନାହିଁ ? ଅଥବା, ବଜାରକୁ କିଏ ଯାଇଛି ଇତ୍ୟାଦି । ମଝିରେ କିଏ ଆସି ତାଙ୍କୁ ପଚାରିଲା, କ'ଣ ଆଜ୍ଞା, ଶ୍ମଶାନ କାମ ପାଇଁ ଆଉ କିଛି ଦରକାର ଅଛି ? ଭଦ୍ରବ୍ୟକ୍ତି ବିରକ୍ତିର ସହିତ କହିଲେ, ଦରକାର ବେଳେ କେହି କୁଆଡ଼େ ନଥିବେ, କାମ ବେଳକୁ ସମସ୍ତେ ପଚାରିବାକୁ ଆସିବେ । ନାଇଁ, ମୁଁ ସବୁକଥା ବୁଝୁଛି । ଆଉ କାହାରିକି ମୁଣ୍ଡ ଖେଳାଇବା ଦରକାର ନାହିଁ ।

ଏପାଖ ସେପାଖ ଠିଆ ହୋଇଥିବା ଦଳମାନଙ୍କ ଭିତରୁ ଯେଉଁ ଦଳଟି ସବୁଠାରୁ ମୁଖର ଥିଲା, ସେଇଟି ଆଦିତ୍ୟର ସହକର୍ମୀମାନଙ୍କର ଦଳ । ତାଙ୍କ ଭିତରୁ ଜଣେ ମତ ଦେଲେ ଯେ ଯଦି ଠିକ୍ ସମୟରେ ଆଦିତ୍ୟ ପ୍ରମୋଶନ ପାଇ ଯାଇଥାନ୍ତା, ତେବେ ତା'ର ଦୁଶ୍ଚିନ୍ତା ହୋଇ ନଥାନ୍ତା କିମ୍ବା ତାକୁ ହୃଦୟ ରୋଗ ହୋଇ ନଥାନ୍ତା । ଏହି ସୂତ୍ରରେ ଅନ୍ୟ ଜଣେ କଲେଜ ତଥା ବିଶ୍ୱବିଦ୍ୟାଳୟ କର୍ମକର୍ତ୍ତାମାନଙ୍କର ଜାତିଆଣ ମନୋଭାବ, ପ୍ରିୟାପ୍ରୀତିତୋଷଣ ଇତ୍ୟାଦି କଥା ଉଠାଇଲେ । କଥାବାର୍ତ୍ତା ବର୍ତ୍ତମାନ ଆଦିତ୍ୟ ପାଖରୁ ଯାଇ ବିଶ୍ୱବିଦ୍ୟାଳୟ କୁପରିଚାଳନା ବିଷୟରେ ପହଞ୍ଚିଲା । ସହକର୍ମୀମାନେ ଯେତେବେଳେ ବିଚାରାଧୀନ ଥିବା ବିବଦମାନ ବିଶ୍ୱବିଦ୍ୟାଳୟ ଆଇନ ସଂଶୋଧନ ବିଲର ଭଲମନ୍ଦ ବିଷୟରେ ଆଲୋଚନା କରିବାରେ ଲାଗିଲେ, କାଳେ କଥା ପୁଣି ଆସି ଆଦିତ୍ୟର ଠିକ୍ ସମୟରେ ପ୍ରମୋଶନ ପାଇ ନଥିବାରେ ପହଞ୍ଚିବ, ଏହି ଭୟରେ ତା ବଦଳରେ ପ୍ରମୋଶନ ପାଇଥିବା ଭଦ୍ରବ୍ୟକ୍ତି ସେଠାରୁ ଉଠି ଅନ୍ୟ ଦଳକୁ ଚାଲିଗଲେ ।

ସେଠାରେ ଆଦିତ୍ୟର ଜଣେ ବିଧାୟକ ବନ୍ଧୁ ଅନ୍ୟମାନଙ୍କୁ ପ୍ରାଦେଶିକ

ରାଜନୀତିର ସୂକ୍ଷ୍ମ ଅନୁଷଙ୍ଗମାନଙ୍କ ବିଷୟରେ ବୁଝାଉଥିଲେ । ସେ ସ୍କୁଲ ଓ କଲେଜରେ ଆଦିତ୍ୟର ସହପାଠୀ ଥିଲେ ଏବଂ ଉଭୟଙ୍କର ବିଭିନ୍ନ ପ୍ରକାରର ଜୀବନ ଗ୍ରହଣ କରିନେଇଥିବା ସତ୍ତ୍ୱେ ବି ଦୁହେଁ ମଝିରେ ମଝିରେ ପରସ୍ପରକୁ ଭେଟୁଥିଲେ । ବିପଦ ଆପଦବେଳେ ଆଦିତ୍ୟ ଏହି ବନ୍ଧୁଙ୍କର ସହାୟତା ନେଉଥିଲା ଏବଂ ମୈତ୍ରେୟୀ ମଧ୍ୟ ଆଦିତ୍ୟର ଏହି ବନ୍ଧୁଙ୍କ ସହିତ ଭଲଭାବରେ ପରିଚିତ ଥିଲା । ବନ୍ଧୁ କିନ୍ତୁ ଥରେ ମାତ୍ର ମୈତ୍ରେୟୀକୁ ସାକ୍ଷାତ କରି ବାହାରକୁ ଚାଲି ଆସିଥିଲେ ଏବଂ ବର୍ତ୍ତମାନ ତାଙ୍କର କଥୋପକଥନର କୌଣସି ସମ୍ପର୍କ ନଥିଲା ଆଦିତ୍ୟର ମରିଯିବା ସହିତ । ଯେଉଁମାନେ ସେଠାରେ ଛିଡ଼ାହୋଇ ତାଙ୍କ କଥା ଶୁଣୁଥିଲେ, ସେମାନେ ମଧ୍ୟ ବର୍ତ୍ତମାନ ଆଦିତ୍ୟ କଥା ଭୁଲିଯାଇ ରାଜନୀତିର ଗମ୍ଭୀର ସମସ୍ୟା ବିଷୟରେ ମନୋନିବେଶ କରି ସାରିଥିଲେ ।

ସେଠାରେ ଥିବା ଲୋକମାନଙ୍କ ଭିତରୁ ଯିଏ ସମସ୍ତଙ୍କର କୌତୂହଳକୁ ଆକର୍ଷଣ କରି ପାରିଥିଲା, ସେ ଥିଲା ସେଇ ଛାତ୍ରଟି, ଯେ କି ଆଦିତ୍ୟ କ୍ଲାସ୍‌ରୁମରେ ପଡ଼ିଯିବାଠାରୁ ଆରମ୍ଭ କରି ହସପିଟାଲ ଯିବା ପର୍ଯ୍ୟନ୍ତ ଆଦିତ୍ୟ ସହିତ ଥିଲା । ସେ ଏ ପର୍ଯ୍ୟନ୍ତ ତିନୋଟି ବିଭିନ୍ନ ବିଭିନ୍ନ ଦଳକୁ ଆଦିତ୍ୟର ଶେଷ ସମୟର ଏକ ଧାରାବାହିକ ବିବରଣୀ ଦେଇ ସାରିଥିଲା ଏବଂ ବର୍ତ୍ତମାନ ଆହୁରି ଗୋଟିଏ ଦଳ ଲୋକଙ୍କୁ କହୁଥିଲା, ପାଞ୍ଚ ମିନିଟ କ୍ଲାସ୍ ନେଇଛନ୍ତି କି ନାହିଁ, ସାର୍ ହଠାତ ଚୁପ ହୋଇଗଲେ, ଆମେ ଭାବିଲୁ... । ସେ ଏଥରକ ଅନର୍ଗଳ ଭାବରେ ବର୍ଣ୍ଣନା କରିବାକୁ ଆରମ୍ଭ କଲା ଏବଂ ପୂର୍ବ ବର୍ଣ୍ଣନାମାନଙ୍କରେ ଯେଉଁ କେତୋଟି ଛୋଟ ଛୋଟ ଘଟଣା କହିବାକୁ ଭୁଲିଯାଇଥିଲା, ତାକୁ ବିଶଦ ଭାବରେ ବର୍ଣ୍ଣନା କଲା । ସେଠାରେ ଛିଡ଼ା ହୋଇଥିବା ଡାକ୍ତର ଯେତେବେଳେ ତାକୁ ଡାକ୍ତରଖାନା ଭିତରେ କ'ଣ ହେଲା ସେ ବିଷୟରେ ପ୍ରଶ୍ନ କରିବାକୁ ଆରମ୍ଭ କଲେ, ପିଲାଟି ଡାକ୍ତରଖାନା କୋଠରି ଭିତରକୁ ଯାଇ ନଥିଲେ ବି ଯେତେଦୂର ସମ୍ଭବ କଳ୍ପନାକୁ ମିଶାଇ ତାଙ୍କ ପ୍ରଶ୍ନର ଉତ୍ତର ଦେଲା । ଡାକ୍ତର ଜଣକ ଆଦିତ୍ୟର ଚିକିତ୍ସା ପଦ୍ଧତିରେ ଅନେକ ତ୍ରୁଟି ଦେଖିବାକୁ ପାଇଲେ ଏବଂ ଏକଥା ଏକ ନୂଆ ଆଲୋଚନାର ବିଷୟବସ୍ତୁ ହେଲା ।

ଆଦିତ୍ୟର ପ୍ରକାଶକ, ଯାହା ସହିତ ତା'ର ଆଦୌ ଭଲ ସଂପର୍କ ନଥିଲା, ସେ ମଧ୍ୟ ଏହି ଅବସରରେ ସେଠାରେ ପହଞ୍ଚି ଶୋକ ପ୍ରକାଶ କରି ଅନ୍ୟମାନଙ୍କ ଆଗରେ ନିଜର ଉଦାରହୃଦୟତା ଦେଖାଇବାକୁ ଚେଷ୍ଟା କରୁଥିଲେ । ନିଜ ହାତରେ ଧରିଥିବା ବିଡ଼ାଏ କାଗଜ ସେ ସମସ୍ତଙ୍କୁ ଦେଖାଉଥିଲେ ଏବଂ ଯଦିଓ ସେଥିରେ ଆଦିତ୍ୟ ବହିର କୌଣସି ହିସାବ ନଥିଲା, ସେ ସମସ୍ତଙ୍କୁ କହୁଥିଲେ, ମୁଁ ଆଜି ଆଦିତ୍ୟ ବାବୁଙ୍କୁ ତାଙ୍କ ବହିର ହିସାବ ବୁଝାଇବାକୁ ଆସିଥିଲି, କିନ୍ତୁ ବିଧିର ବିଧାନ ଅନ୍ୟ ପ୍ରକାର ।

ବର୍ତ୍ତମାନ ଅଫିସ ସମୟ ହେଇ ଆସୁଥିଲା ଏବଂ ଲୋକମାନେ ସେଠାରୁ

ଚାଲିଯିବା ପାଇଁ ବ୍ୟତିବ୍ୟସ୍ତ ହେଉଥିଲେ । ଆଦିତ୍ୟ ଘର ସାମନାରେ ଭିଡ଼ ଦେଖି ରାସ୍ତାରେ ଯାଉଥିବା ଜଣେ ଲୋକ ସାଇକେଲରୁ ଓହ୍ଲାଇ ସେଠାରେ ଛିଡ଼ା ହେଲା ଓ ପଚାରିଲା, ଆଜ୍ଞା, ଏଠିକି ବାବାଙ୍କର ଆସିବାର ଥିଲା, କଣ ଆସିଗଲେ କି ? ତାକୁ ଯେତେବେଳେ ଆଦିତ୍ୟର ମରିବା ଖବର କୁହାଗଲା, ଲୋକଟି ଆଦିତ୍ୟର ବୟସ କେତେ ହୋଇଥିଲା ଓ ପିଲାଝିଲା କେତୋଟି ସେ ଖବର ନେଲା । ତା'ପରେ କହିଲା, ହଁ, ପୁଅ ତ ଏଥର ଚାକିରିବାକିରି କରିବ । ହେଲେ ଝିଅ ପାଇଁ ଯାହା ଟିକିଏ ଚିନ୍ତା । ଯାହା ହେଉ, ଭଗବାନ ଚଳାଇ ନେବେ । ଏତିକି କହି ସେ ପୁଣି ଯେମିତି ଆସିଥିଲା ସେମିତି ସାଇକେଲ ଚଢ଼ି ଚାଲିଗଲା ।

ଆଦିତ୍ୟ ଛାତ୍ରମାନଙ୍କର ପ୍ରିୟ ଥିଲା, କିନ୍ତୁ ତା'ର ଛାତ୍ରମାନେ କେହି ତା ଘର ପାଖରେ ନଥିଲେ । ସେମାନେ ଯାଇଥିଲେ ସେଦିନ କଲେଜ ଛୁଟି କରାଇବାର ବ୍ୟବସ୍ଥା କରିବା ପାଇଁ । କଲେଜ ବିଭିନ୍ନ ପ୍ରକାରର ଦଳୀୟ ରାଜନୀତିର ପୀଠସ୍ଥଳୀ ଥିଲା ଏବଂ ଆଦିତ୍ୟର ମରିଯିବା ଆଳରେ ଯଦିଓ ସମସ୍ତେ ଗୋଟିଏ ଦିନ ଛୁଟି ଚାହୁଁଥିଲେ, ଏହି ନିଷ୍ପତ୍ତି ନେବାପାଇଁ ଅନେକ ପ୍ରକାରର ତର୍କ ବିତର୍କ ହେଲା । ଜଣେ କେହି ଅତୀତରେ ଜଣେ ଅଧ୍ୟାପକ ମରିଯାଇଥିବାବେଳେ ଛୁଟି ନ ହୋଇଥିବାର ଦର୍ଶାଇଲା । ଏହି ଉପଲକ୍ଷ୍ୟରେ ପ୍ରିନ୍‌ସିପାଲଙ୍କର ଛାତ୍ରମାନଙ୍କ ସହିତ ବଚସା ହେଲା । କିଛି ପିଲା ଉପରୁ ଏ ବିଷୟରେ ଆଦେଶ ଆଣିବା ପାଇଁ ସଚିବାଳୟକୁ ଗଲେ । ଏହିପରି ଭାବରେ ଶେଷରେ ଛୁଟି ହେବାର ନିଷ୍ପତ୍ତି ହେଲା ଏବଂ ପିଲାମାନେ 'ଆଦିତ୍ୟ ସାର୍ ଜିନ୍ଦାବାଦ' ଭଳି ନିରର୍ଥକ ସ୍ଲୋଗାନ ଦେଇ ଆଦିତ୍ୟର ଘର ପାଖରେ ପହଞ୍ଚିଲେ ।

ଆଦିତ୍ୟ ସେତେବେଳକୁ ତା'ର ବସିବା କୋଠରିରେ ତିନିଟି ବଡ଼ ବରଫ ଖଣ୍ଡ ଉପରେ ଶୋଇଥିଲା । ସେ ବର୍ତ୍ତମାନ ଆଖପାଖରେ ଘଟୁଥିବା ଆଳାପ ଆଲୋଚନା ଓ ବିଚାରବିମର୍ଷର ସମ୍ପୂର୍ଣ୍ଣ ଉର୍ଦ୍ଧ୍ୱରେ ଥିଲା । ବଞ୍ଚିଥିଲାବେଳେ ସେ ସ୍ୱର୍ଗ ନର୍କ ପୁନର୍ଜନ୍ମ ଆତ୍ମାର ଅବନିଶ୍ୱରତା ଇତ୍ୟାଦିରେ ବିଶ୍ୱାସ କରୁ ନଥିଲା । ତେଣୁ ମରିବା ପୂର୍ବରୁ ଏସବୁ ପ୍ରଶ୍ନ ତାକୁ ବିଚଳିତ କରି ନଥିଲେ । ତଥାପି ଶେଷ କେତୋଟି ମୁହୂର୍ତ୍ତ ତା ପାଇଁ ଅତ୍ୟନ୍ତ ଶାରୀରିକ ଯନ୍ତ୍ରଣାଦାୟକ ଥିଲା । ମରିବାର ସମୟ ଯଦି ତାକୁ ଜ୍ଞାତ ଥାଆନ୍ତା ଏବଂ ତାକୁ ସୁବିଧା ଦିଆହୋଇଥା'ନ୍ତା, ତେବେ ସେ ଅନ୍ୟ ପ୍ରକାରର ମୃତ୍ୟୁ ଚାହିଁଥାନ୍ତା, ଏବଂ ଅନ୍ତତଃ ଥରେ ହେଲେ ସୁଜାତାକୁ ଦେଖା କରିବାକୁ ଚେଷ୍ଟା କରିଥାନ୍ତା । ସୁଜାତା ବର୍ତ୍ତମାନ ପାଞ୍ଚଶହ ମାଇଲ ଦୂରରେ ଥିଲା ଏବଂ ତା'ର ମୃତ୍ୟୁର ସମ୍ବାଦ ପାଇ ନଥିଲା । ତେବେ ଠିକ୍ ମରିବା ଆଗରୁ ନିଜର ସଂଜ୍ଞା ଥିବା ଅବସ୍ଥାରେ ହଠାତ ଗୋଟିଏ ମୁହୂର୍ତ୍ତ ପାଇଁ ଆଦିତ୍ୟ ସୁଜାତାକୁ ମନେ ପକାଇଥିଲା ଏବଂ ତା'ର ପ୍ରାଣହୀନ ମୁହଁରେ ବର୍ତ୍ତମାନ ସେଇ କ୍ଷଣିକ ସ୍ମରଣର ସୂଚନା ସ୍ୱରୂପ ଏକ କ୍ଷୀଣ ହସ ରହିଯାଇଥିଲା ।

# ଅମରତ୍ୱ

ପାଠ ପଢ଼ିବାବେଳେ ଅନିରୁଦ୍ଧ କବି ହେବାର ଦୁରାକାଙ୍କ୍ଷା ରଖିଥିଲା ଏବଂ ଭାବିଥିଲା ଯେ କବିତା ଲେଖିବାର ମାଧ୍ୟମ ଦେଇ ସେ ବିଖ୍ୟାତ ହୋଇଯିବ । ସାହିତ୍ୟର ଛାତ୍ର ହିସାବରେ ସେ ଏହାକୁ ଏକ ସମ୍ଭବ ଇଚ୍ଛା ବୋଲି ଭାବୁଥିଲା, ଯଦିଓ କବିତା ଲେଖିବାକୁ ବସିବାବେଳେ ସେ ଦୁଇ ଚାରି ଧାଡ଼ିରୁ ଆଗକୁ ଯିବାକୁ ସମର୍ଥ ହେଉ ନଥିଲା । କଲେଜ ଛାଡ଼ିବା ବେଳକୁ ତା'ର ସମୁଦାୟ ସାହିତ୍ୟିକ କୃତି ଥିଲା କଲେଜ ପତ୍ରିକାରେ ପ୍ରକାଶିତ ଗୋଟିଏ ମାତ୍ର କବିତା । ତଥାପି ଅନିରୁଦ୍ଧ କବି ହେବାର ଇଚ୍ଛା ଛାଡ଼ି ନଥିଲା । ସେ ଠିକ୍ କରିଥିଲା ଯେ ଚାକିରି ନେଇ ବସବାସ କରି ସାରିଲେ ସେ ଆରାମରେ ବସି କେବଳ କବିତା ହିଁ ଲେଖିବ ।

ଅନିରୁଦ୍ଧ ଶେଷରେ ପ୍ରଶାସନ ସେବାରେ ଯୋଗ ଦେଲା ଏବଂ ଚାକରି କରିବା ସହିତ କିପରି ପିଲାଦିନର ଇଚ୍ଛାକୁ ଫଳବତୀ କରିବ ସେକଥା ଭାବିଲା । ଚାକିରିରେ ବହୁତ ପ୍ରକାରର ସମସ୍ୟା ଥିଲା ଏବଂ ଦିନସାରା କାମ କରିସାରିବା ପରେ ସେ ତା'ର ମନକୁ କବିତା ଲେଖିବା ପାଇଁ ନିୟୋଜିତ କରିପାରୁ ନଥିଲା । ତଥାପି ଏକାକୀ ବସିଥିବାବେଳେ କବିତା ଲେଖି ପ୍ରସିଦ୍ଧ ହେବାର ଇଚ୍ଛା ତାକୁ ମଝିରେ ମଝିରେ ବ୍ୟସ୍ତ କରୁଥିଲା । ସେ ମନ ଭିତରେ ନିଜେ ଏକ ଖ୍ୟାତନାମା କବି ହୋଇଥିବାର ସ୍ୱପ୍ନ ଦେଖୁଥିଲା ଏବଂ ତା'ର କବିତାକୁ ଶହେବର୍ଷ ପରେ ଅନେକ ପାଠକ କୌତୂହଳତାର ସହିତ ପାଠ କରୁଥିବାର କଳ୍ପନା କରୁଥିଲା । ଯଦିଓ ସେ ନିଜକୁ ନୋବେଲ ପ୍ରାଇଜ ଇତ୍ୟାଦି ପାଇବାର ଚିନ୍ତାରୁ ଦୂରରେ ରଖୁଥିଲା, ତାକୁ ଯେଉଁ ଇଚ୍ଛାଟି ସବୁବେଳେ ବ୍ୟାକୁଳ କରୁଥିଲା ସେଇଟି ଥିଲା କବି ହୋଇ ଅମରତ୍ୱ ଲାଭ କରିବାର ଇଚ୍ଛା ।

ଚାକିରି ଯଦି ଅନିରୁଦ୍ଧର କବି ହେବାର ପ୍ରଥମ ପ୍ରତିବନ୍ଧକ ଥିଲା, ତା'ର ଏଇ ଉଚ୍ଚାକାଙ୍କ୍ଷାର ଦ୍ୱିତୀୟ ପ୍ରତିବନ୍ଧକ ହେଲା ତା'ର ବିବାହ । ତା'ର ସ୍ତ୍ରୀ ମଧ୍ୟ ସାହିତ୍ୟର ଛାତ୍ରୀ ଥିଲା, କିନ୍ତୁ ତା'ର କବିତାରେ କୌଣସି ଆଗ୍ରହ ନଥିଲା । ଖ୍ୟାତିଲାଭ ପାଇଁ ତା'ର ପରିକଳ୍ପନା ଥିଲା ଅନ୍ୟ ପ୍ରକାରର । ସେ ଚାହୁଁଥିଲା ସେମାନେ ବିଭିନ୍ନ ପ୍ରକାରର ସ୍ଥାବର ଅସ୍ଥାବର ସମ୍ପତ୍ତି ଏକତ୍ରିତ କରି ଅନିରୁଦ୍ଧର ସହକର୍ମୀ ଓ ପ୍ରତିବେଶୀମାନଙ୍କର

କେବଳ ସମକକ୍ଷ ନୁହେଁ, ସେମାନଙ୍କ ଉର୍ଦ୍ଧ୍ୱକୁ ଚାଲିଯିବେ । ପ୍ରଥମେ ପ୍ରଥମେ ଅନିରୁଦ୍ଧକୁ ଏ ଯୋଜନା ବିଶେଷ ଆକର୍ଷିତ କରିନଥିଲା, ତଥାପି ସ୍ତ୍ରୀର ଉତ୍ସାହରେ ସେ କ୍ରମେ କ୍ରମେ ତା'ର ବସିବା ଘରକୁ ସଜାଇବା, ନୂଆ ଡାଇନିଂ ସେଟ୍ କିଣିବା, ସରକାରୀ ଜମି ପାଇଁ ଦରଖାସ୍ତ କରିବା ଇତ୍ୟାଦି କାମରେ ମନ ଦେଲା ।

ଏସବୁ କାମ ସହିତ ସେ ଯେ ସ୍ତ୍ରୀକୁ କବିତା ଆଡ଼କୁ ଆକର୍ଷିତ କରୁ ନଥିଲା ତା ନୁହେଁ । କିନ୍ତୁ ତା'ର ସ୍ତ୍ରୀ ଅଳ୍ପ ବୟସରୁ ହିଁ ବିଷୟବୁଦ୍ଧିସଂପନ୍ନା ଥିଲା ଏବଂ କବିତା ଭଳି ମୂଲ୍ୟହୀନ ଜିନିଷରେ ସମୟ ନଷ୍ଟ ନକରି ପଡ଼ୋଶୀମାନଙ୍କୁ ନିଜର ସଂପନ୍ନ ଅବସ୍ଥା ସଂପର୍କରେ ଅବଗତ କରାଇ ସମୟର ସଦୁପଯୋଗ କରୁଥିଲା । ଦିନେ ସାହସ ସଂଚୟ କରି ଅନିରୁଦ୍ଧ ତା'ର ସ୍ତ୍ରୀକୁ ଅନେକ ଦିନ ତଳେ କଲେଜ ପତ୍ରିକାରେ ପ୍ରକାଶ ପାଇଥିବା ତା'ର କବିତାଟି ଦେଖାଇଲା । ସ୍ତ୍ରୀ କୌଣସି ଆଗ୍ରହ ନ ଦେଖାଇ କହିଲା, ମୋ ତକିଆ ତଳେ ରଖିଦିଅ ; ମୁଁ ରାତିରେ ପଢ଼ିବି । ପତ୍ରିକାଟିକୁ ତତ୍‌କ୍ଷଣାତ୍ ନେଇ ସ୍ତ୍ରୀର ମୁଣ୍ଡତଳେ ରଖିଦେବା ଠିକ୍ ହୋଇଥା'ନ୍ତା । କିନ୍ତୁ ଦୁର୍ଭାଗ୍ୟକୁ ଅନିରୁଦ୍ଧ ସ୍ତ୍ରୀ ଆଗରେ ବସି କବିତାଟିକୁ ପୁନର୍ବାର ପଢ଼ି ତା'ର ରସ ଆସ୍ୱାଦନ କରିବାର ଧୃଷ୍ଟତା କଲା । କବିତା ଏବେ ବି ତାକୁ ଭଲ ଲାଗିଲା ଏବଂ ପୁଣି କବିତା ଲେଖି ପ୍ରସିଦ୍ଧି ପାଇବାର ଇଚ୍ଛା ତା ମନରେ ଉଙ୍କି ମାରିଲା । ସ୍ତ୍ରୀ କିନ୍ତୁ ଅନିରୁଦ୍ଧର ମୁହଁକୁ ଦେଖି ତା'ର ମନକଥାକୁ ମୋଟାମୋଟି ବୁଝିନେଲା ଏବଂ କହିଲା, କ'ଣ ପ୍ରେମ କବିତା ? ସ୍ତ୍ରୀ ପାଇଁ କବିତା ସବୁ ଦୁଇଟି ଶ୍ରେଣୀରେ ବିଭକ୍ତ ଥିଲେ, ପ୍ରେମ କବିତା ଓ ଅନ୍ୟ କବିତା । କିନ୍ତୁ ଏ ପ୍ରଶ୍ନରେ ଅନିରୁଦ୍ଧ ହଠାତ ବିବ୍ରତ ହୋଇଗଲା ଓ କହିଲା, ନା, ଠିକ୍ ପ୍ରେମ କବିତା ନୁହେଁ ; ତେବେ...। ସ୍ତ୍ରୀ ଏଥରକ ଏକ ଅବାନ୍ତର ପ୍ରଶ୍ନ କଲା, ତମେ କଲେଜରେ ପଢୁଥିଲାବେଳେ ତମ ସାଙ୍ଗରେ ଲିତା ଓ ଚିତା ବୋଲି କିଏ ଝିଅ ପଢୁଥିଲା ବୋଲି କହୁଥିଲ, ସେ କୁଆଡ଼େ ଗଲା ?

କବିତା ଲେଖି ଖ୍ୟାତି ଓ ଅମରତ୍ୱ ପାଇବାର ଇଚ୍ଛାକୁ ଅନିରୁଦ୍ଧ ସେଇ ମୁହୂର୍ତ୍ତରେ ଜଳାଞ୍ଜଳି ଦେଇଦେଲା ଓ ପତ୍ରିକାଟିକୁ ସ୍ତ୍ରୀର ତକିଆ ତଳେ ନୁହେଁ, ପୁରୁଣା ଖବରକାଗଜ ଗଦା ଭିତରେ ପକାଇ ଦେଲା । କବିତା ଲେଖିବା ଏକ ଦୁରୂହ ଜିନିଷ ଥିଲା ଏବଂ ଅନିରୁଦ୍ଧ ଖୁସି ହେଲା ଯେ ସେ ଏ ଦୁଃସାହସରୁ ମୁକ୍ତି ପାଇଲା । କିନ୍ତୁ ସେଦିନ ରାତିରେ ଶୋଇ ଶୋଇ ଅନିରୁଦ୍ଧ ଭାବିବାରେ ଲାଗିଲା ଆଉ କ'ଣ କରି ନାଁ କରାଯାଇପାରେ । ନିଜର ସାହିତ୍ୟିକ ଶିକ୍ଷା ଓ ପୃଷ୍ଠଭୂମିକୁ ଆଖି ଆଗରେ ରଖି ଅନିରୁଦ୍ଧ ଯେଉଁ ନିର୍ଣ୍ଣୟରେ ପହଞ୍ଚିଲା ସେଇଟି ହେଲା ଯେ ସେ ଅଫିସ ଫାଇଲମାନଙ୍କରେ ସାହିତ୍ୟିକ ଭାଷା ବ୍ୟବହାର କରିବ ଓ କେହି ଭବିଷ୍ୟତରେ ଗବେଷକ 'ଅଫିସ ଫାଇଲରେ ସାହିତ୍ୟ' ଶୀର୍ଷକ ସନ୍ଦର୍ଭ ଲେଖିଲାବେଳେ ନିଶ୍ଚୟ ତା'ର ଉଲ୍ଲେଖ କରିବ । ସ୍ତ୍ରୀର ତକିଆ ଆଡ଼କୁ ସନ୍ତର୍ପଣରେ ଚାହିଁ ସେ ମନେ ମନେ ଅଫିସ ଫାଇଲରେ ଦିଆଯାଇଥିବା ଅନେକ ଆଦେଶର ସାହିତ୍ୟିକ

ପରିଭାଷାମାନ ତିଆରି କରିବାରେ ଲାଗିଲା ।

ପରଦିନ ଅଫିସରେ ବସି ଅନିରୁଦ୍ଧ ଜାଣିଲା ଯେ କବିତା ଲେଖିବା ଭଳି ଏ ମଧ୍ୟ ଏକ ଦୁଃସାଧ୍ୟ ଜିନିଷ ଥିଲା । ଛୁଟି ଦରଖାସ୍ତର ମଞ୍ଜୁରୀ ଆଦେଶକୁ ସେ ଅନେକ ଚେଷ୍ଟା ସତ୍ତ୍ୱେ ବି ସାହିତ୍ୟିକ ରୂପ ଦେଇ ପାରିଲା ନାହିଁ । ଅନ୍ୟ ଗୋଟିଏ ଫାଇଲରେ ସେ ଗୋଟିଏ ଛୋଟ ଦି ଧାଡ଼ିର କବିତାରେ ଆଦେଶ ଲେଖିବାର ସମ୍ଭାବନା ଦେଖିଲା । କିନ୍ତୁ ଏ କଥା ଭାବିଲାବେଳେ ତାକୁ କେବଳ ତା'ର ସ୍ତ୍ରୀର ମୁହଁ ନୁହେଁ, ତା'ର ଉପରିସ୍ଥ କର୍ମଚାରୀଙ୍କର ରୁକ୍ଷ ମୁହଁ ମଧ୍ୟ ଦେଖାଗଲା ଏବଂ ଅନିରୁଦ୍ଧ ଫାଇଲରେ ମିନି କବିତା ଲେଖିବାର ଚିନ୍ତାରୁ ନିଜକୁ ନିବୃତ୍ତ କଲା । ତେବେ ସେଦିନ ଯେତେବେଳେ ତା ପାଖକୁ କେତେଜଣ ନିମ୍ନତମ କର୍ମଚାରୀଙ୍କର ପ୍ରମୋଶନ ଫାଇଲ ଆସିଲା, ସେକ୍ସପିଅରଙ୍କୁ ସ୍ମରଣ କରି ଅନିରୁଦ୍ଧ ସେଥିରେ ଆଦେଶ ଲେଖିଲା, ପଚାଫଳ ଭିତରୁ କାହାକୁ ବାଛିବ ? ଏହି ଆଦେଶ ତଳେ ସେ ଭବିଷ୍ୟତର ଗବେଷକ କଥା ଭାବି ନିଜର ଦସ୍ତଖତକୁ ଭଲ ଭାବରେ ଶାଣିତ ଓ ପରିମାର୍ଜିତ କରି ଲେଖିଲା । ବର୍ତ୍ତମାନ ଅନିରୁଦ୍ଧ ମନେ ମନେ ଖୁସି ହେଲା, କିନ୍ତୁ ଫାଇଲ ଯେତେବେଳେ ତଳକୁ ଗଲା, ତା'ର ଆଦେଶକୁ କାର୍ଯ୍ୟକାରୀ କରିବାରେ ସମସ୍ୟା ଉପୁଜିଲା । ଶେଷରେ ଫାଇଲ ଧରି ତା ପାଖକୁ ବଡ଼ବାବୁ ଆସିଲେ । କହିଲେ, କୃଷି ବିଭାଗ ଫାଇଲର ଅର୍ଡ଼ରଟା ଆପଣ ଭୁଲରେ ଏ ଫାଇଲରେ ଲେଖି ଦେଇଛନ୍ତି । ଅନିରୁଦ୍ଧ ତଳିଆ କର୍ମଚାରୀଙ୍କର ନିର୍ବୋଧତାକୁ ମନେ ମନେ ଗାଳି ଦେଇ, କିନ୍ତୁ ଫାଇଲରୁ ପଚାଫଳ ବିଷୟ କାଟି ଦେଇ ଲେଖିଲା, ଯଥା ପ୍ରସ୍ତାବିତ ।

ଏ ଘଟଣାରୁ ତା ମନରେ ଏକ ନୂଆ ଚିନ୍ତାଧାରା ଆସିଲା । ଭବିଷ୍ୟତରେ ଗବେଷକ 'ଅଫିସ ଫାଇଲରେ ହାସ୍ୟରସ' ସଂପର୍କରେ ଗବେଷଣା କରିପାରେ, ଏ କଥା ମନରେ ରଖି ସେ ନୋଟ ଲେଖିବ । ସେ ପ୍ରତି ଫାଇଲକୁ ବାରମ୍ବାର ପଢ଼ି ସେଥିରେ କି ପ୍ରକାରର ହାସ୍ୟରସାତ୍ମକ କଥା ଲେଖାଯାଇପାରେ ସେ ବିଷୟରେ ବହୁତ ଚିନ୍ତା କଲା । କିନ୍ତୁ ଫାଇଲର ବିଷୟବସ୍ତୁ ସବୁ ଅତ୍ୟନ୍ତ ଶୁଷ୍କ, ସମ୍ବେଦନାରହିତ ଓ ବସ୍ତୁବାଦୀ ଥିଲା ; ସେଥିରେ ଅନିରୁଦ୍ଧ ବ୍ୟଙ୍ଗୋଦ୍ଦୀପକ ମନ୍ତବ୍ୟର କୌଣସି ସମ୍ଭାବନା ଦେଖିପାରିଲା ନାହିଁ ।

ଏପରି ବିଭିନ୍ନ ଭାବରେ ପ୍ରତିହତ ହୋଇ ଅନିରୁଦ୍ଧ ସ୍ୱୀର ଖ୍ୟାତିଲାଭ କରିବା ଯୋଜନାରେ ମନ ଦେଲା । ପଡ଼ୋଶୀମାନଙ୍କ ସହିତ ପ୍ରତିଯୋଗିତା କରି ସେ ନିଜର ଘର ଓ ଜିନିଷମାନଙ୍କର ଉନ୍ନତି ବିଧାନ କରିବାରେ ଲାଗିଲା । ଘରେ ରଙ୍ଗ ଲଗାଇବା ସହିତ ସେ ଗୋଟିଏ ବଗିଚା ମଧ୍ୟ ଆରମ୍ଭ କଲା, ଯାହା ତା'ର ଅନ୍ୟ ପଡ଼ୋଶୀମାନଙ୍କର ନଥିଲା । ବଗିଚାଟି ବର୍ଷା ଓ ଶୀତଦିନେ ସତେଜ ଓ ସୁନ୍ଦର ରହୁଥିଲା ; କିନ୍ତୁ ଖରାଦିନେ ମଉଳି ଯାଉଥିଲା । ତେଣୁ ଖରାଦିନ ସାରା ଅନିରୁଦ୍ଧର ବଗିଚାଜନିତ ଖ୍ୟାତି ବ୍ୟାହତ

ହେଉଥିଲା । ନିଜର ଖ୍ୟାତିକୁ ସ୍ଥାୟିତ୍ୱ ଦେବା ପାଇଁ ଅନିରୁଦ୍ଧ ତାଙ୍କ ଅଞ୍ଚଳରେ ଶ୍ରେଷ୍ଠ ବଗିଚା ପାଇଁ ଏକ ପୁରସ୍କାରର ବ୍ୟବସ୍ଥା କରାଇଲା ଏବଂ ପ୍ରଥମ ପୁରସ୍କାର ପାଇଲା । ଅନିରୁଦ୍ଧ ବର୍ତ୍ତମାନ ଖୁସି ଥିଲା ଯେ ତା'ର ପ୍ରଥମ ପୁରସ୍କାର ପାଇବା କଥା ଚିରକାଳ ପାଇଁ ସହରର ଇତିହାସରେ ଲିପିବଦ୍ଧ ହୋଇ ରହିବ ।

ଏ ଭିତରେ ଅନିରୁଦ୍ଧ ଚାକିରିରେ ପ୍ରମୋଶନ ପାଇଲା, ବଦଳିରେ ବିଭିନ୍ନ ଜାଗାକୁ ଗଲା, ତା'ର ପୁଅ ଝିଅ ବଡ଼ ହେଲେ ଏବଂ ତା'ର ସ୍ତ୍ରୀ ମୋଟା ହୋଇ ଧର୍ମପରାୟଣା ହୋଇଗଲା । ଏତେ ପରିବର୍ତ୍ତନ ଭିତରେ ମଧ୍ୟ ଯେଉଁ କଥାଟି ଅନିରୁଦ୍ଧର ମନ ଭିତରୁ ଗଲା ନାହିଁ, ସେଇଟି ହେଲା ପ୍ରସିଦ୍ଧ ହୋଇ ଅମରତ୍ୱ ପାଇବାର ଇଚ୍ଛା । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଅନିରୁଦ୍ଧ ଦେଖିଲା ଯେ କବିତା ଲେଖିବା ତ ଦୂରର କଥା, ଫାଇଲରେ ସାହିତ୍ୟିକ ଅଥବା ବ୍ୟଙ୍ଗାତ୍ମକ କିଛି ଲେଖିବା ମଧ୍ୟ ତା ପାଇଁ ଦୁଷ୍କର ଥିଲା । ତେବେ ନାଁର ସ୍ଥାୟିତ୍ୱ ପାଇଁ : ସେ ସହଜ ଉପାୟମାନ ଚିନ୍ତା କଲା । ଯଥା, ନୂଆ ଘର ତିଆରି କରିସାରିବା ପରେ ତା'ର ଫାଟକରେ ନିଜର ନାଁର ଏକ ଫଳକ ଲଗାଇବା । କିଏ ତାକୁ ମାର୍ବଲରେ ନାଁ ଖୋଳାଇବାକୁ କହିଲା, କିନ୍ତୁ ଅନିରୁଦ୍ଧ ମିସ୍ତ୍ରୀକୁ କହିଲା, ନା, ମାର୍ବଲ ଶୀଘ୍ର ଭାଙ୍ଗିଯିବ । ପିତଳର ଲଗାଇବା । ମିସ୍ତ୍ରୀ କହିଲା, ସେ କଥା ଠିକ୍ । ପିତଳ ତିନି ଚାରି ପୁରୁଷ ଯିବ । ଏକଥା ଅନିରୁଦ୍ଧକୁ ଭଲ ଲାଗିଲା ନାହିଁ । ସେ କହିଲା, ତିନି ଚାରି ପୁରୁଷ କାହିଁକି, ଶହ ଶହ ବର୍ଷ ରହିବ । ମୋଟା ପିତଳରେ ତିଆରି କର ।

ଅନିରୁଦ୍ଧ ଯେତେବେଳେ ଗୋଟିଏ ଜିଲ୍ଲାର ଦାୟିତ୍ୱ ନେଲା, ଫଳକରେ ନିଜର ନାଁ ଖୋଳାଇ ନିଜକୁ ଅମର କରିବାର ଅନେକ ସୁଯୋଗ ଆସିଲା । ପୋଖରୀ, ପଞ୍ଚାୟତ ଘର, ଖେଳ ପଡ଼ିଆ, କ୍ଲବ ଇତ୍ୟାଦିର ଶିଳାନ୍ୟାସ ଓ ଉଦ୍‌ଘାଟନ ଇତ୍ୟାଦି ଅବସରରେ ସେ ନିଜ ନାଁ ଲେଖା ଫଳକମାନ, ବିଭିନ୍ନ ସ୍ଥାନରେ ଲଗାଇଲା ଏବଂ ନିଶ୍ଚିନ୍ତ ହେଲା ଯେ ଅନ୍ତତଃ ଏଇ ଜିଲ୍ଲାର ଲୋକମାନେ କାଳ କାଳ ପାଇଁ ଅନିରୁଦ୍ଧକୁ ମନେ ରଖିବେ । ଜିଲ୍ଲାରୁ ସଚିବାଳୟକୁ ଆସିବା ପରେ ସେ ଆଉ ନିଜର ନାଁ ଫଳକ ଉପରେ ଲିପିବଦ୍ଧ କରିବାର ସୁଯୋଗ ପାଇଲା ନାହିଁ । ତେବେ ନିଜର ନାଁକୁ ପ୍ରସାରିତ ଓ ପ୍ରଚାରିତ କରିବା ପାଇଁ ସେ ବିଭିନ୍ନ ପ୍ରକାରର ଆଦେଶନାମା ଉପରେ ଦସ୍ତଖତ କରିବାରେ ଲାଗିଲା । କହିବା ବାହୁଲ୍ୟ, ତା'ର କାମର ଗୁଣରେ ଉନ୍ନତି ହୋଇ ଥାଉ ନଥାଉ, ସେ ନିଜର ନାଁକୁ ଆହୁରି ଶାଣିତ ଓ ପରିମାର୍ଜିତ କରି ଲେଖୁଥିଲା । ତା'ର ଦସ୍ତଖତ ବର୍ତ୍ତମାନ ସ୍ପଷ୍ଟ ଓ ସ୍ୱାଭିମାନପୂର୍ଣ୍ଣ ଥିଲା ଏବଂ ସେଥିରୁ ଜାଣି ହେଉଥିଲା ଯେ ଅନିରୁଦ୍ଧ ଜଣେ ଦକ୍ଷ ଅଫିସର ।

ଅନିରୁଦ୍ଧର ଅବସର ଗ୍ରହଣ ସମୟ ଯେତେ ନିକଟ ହୋଇ ଆସିଲା, ତା'ର

ସେତିକି ସନ୍ଦେହ ଜନ୍ମିଲା ସେ ତା'ର ଅଫିସ କାମରେ ଛାଡ଼ି ଯାଉଥିବା ନିଜର ନାଁ ବିଷୟରେ । ଏକଥା ପରଖ କରିବା ପାଇଁ ସେ ପୂର୍ବରୁ କାମ କରିଥିବା ବିଭିନ୍ନ ଅଫିସକୁ ଗଲା । ପରିଦର୍ଶନ ଆଳରେ ସେଠାରେ ଗୋଟାଏ ଫାଇଲ ଓଲଟାଉ ଓଲଟାଉ ସେ କହିଲା, କୋଡ଼ିଏ ବର୍ଷ ତଳେ ମୁଁ ଏଇ ଅଫିସରେ ଥିଲି । ସେତେବେଳେ ମଧ୍ୟ ଏଇ ବିଷୟ ଉପରେ ଗୋଟିଏ ଫାଇଲ ଥିଲା, ଯୋଉଥିରେ ମୁଁ ଅନେକ ପ୍ରସ୍ତାବ ଦେଇଥିଲି । ସେ ଫାଇଲ ମିଳିବ କି ? ତା'ର ପୁରୁଣା ଜାଗାରେ ବର୍ତ୍ତମାନ କାମ କରୁଥିବା ଅଫିସର କହିଲା, ରେକର୍ଡ଼ ମାନୁଆଲ ଅନୁସାରେ ସେ ଅସ୍ଥାୟୀ ଫାଇଲ ସବୁ ଦି'ବର୍ଷ ପରେ ନଷ୍ଟ କରି ଦିଆଯାଇଛି । ସରକାରଙ୍କ ପାଇଁ ତା'ର ମୂଲ୍ୟବାନ କାମ ସବୁକୁ ଏପରି ନଷ୍ଟଭ୍ରଷ୍ଟ କରି ଦେଇଥିବା କଥା ଶୁଣି ଅନିରୁଦ୍ଧର ଦୁଃଖ ହେଲା ଏବଂ ସେ ବିରକ୍ତ ହୋଇ ସେଇ ଅଫିସ୍‌ର କାମ ବିଷୟରେ ନିଜର ପରିଦର୍ଶନ ରିପୋର୍ଟରେ ପ୍ରତିକୂଳ ମନ୍ତବ୍ୟମାନ ଦେଲା ।

ସେତେବେଳକୁ ତା'ର ଦୁଇପୁଅ ବଡ଼ ହୋଇଯାଇଥିଲେ, ଝିଅ ବାହା ହୋଇସାରିଥିଲା । ପୁଅମାନେ ଅନିରୁଦ୍ଧର ଶତ ପ୍ରରୋଚନା ସତ୍ତ୍ୱେ ସରକାରୀ ଚାକିରିରେ ପଶିବାକୁ ଚାହୁଁ ନଥିଲେ ଏବଂ ବ୍ୟବସାୟ କରିବାକୁ ଚାହୁଁଥିଲେ । ଅନିରୁଦ୍ଧ ସେମାନଙ୍କୁ ବୁଝାଇଥିଲା, ସରକାରୀ ଚାକିରିରେ ଟଙ୍କା ସିନା ନାହିଁ, ଅନେକ ନାଁ ଅଛି । ବଡ଼ପୁଅ କହିଲା, କି ନାଁ ଅଛି ? ତମର ସେଇ ସାଙ୍ଗ ସିନା ଭିଜିଲାନ୍‌ସ କେସ୍‌ରେ ପଡ଼ି ଜେଲ ଗଲାରୁ ଲୋକେ ତା ନାଁ ଜାଣିଲେ, ନହେଲେ କିଏ ଜାଣୁଛି ତମର ଅଫିସରଙ୍କୁ ? ଅନିରୁଦ୍ଧ ଚୁପ୍ ରହିଲା, କିନ୍ତୁ ମାସେ ପରେ ଯେତେବେଳେ ତା'ର ପୁରୁଣା ଜିଲ୍ଲାକୁ ଗସ୍ତରେ ଗଲା, ପୁଅଙ୍କୁ ସାଙ୍ଗରେ ନେଇଗଲା । ଜିଲ୍ଲା ହେଡ଼କ୍ୱାର୍ଟର ଭିତରକୁ ପଶିବା ବେଳକୁ ଯୋଉ ସ୍କୁଲ ପଡୁଥିଲା, ଅନିରୁଦ୍ଧ ସେଠାରେ ଗାଡ଼ି ଅଟକାଇଲା ଓ ପୁଅଙ୍କୁ କହିଲା, ଆସ, ଦେଖ, ସରକାରୀ ଚାକିରିରେ ନାଁ ଅଛି କି ନାହିଁ । ରବିବାର ବୋଲି ସ୍କୁଲ ଛୁଟି ଥିଲା ଏବଂ କେହି କୁଆଡ଼େ ନଥିଲେ । ଅନିରୁଦ୍ଧ ସିଧା ସ୍କୁଲର ସାମନା କାନ୍ଥକୁ ଯାଇ ସେ ଲଗାଇଥିବା ଫଳକକୁ ଖୋଜିଲା । ସେଠାରେ କେବଳ ଧଉଳା ହୋଇଥିବା କାନ୍ଥ ଥିଲା, ଫଳକର କୌଣସି ଚିହ୍ନବର୍ଣ୍ଣ ନଥିଲା । ତା'ର ସ୍ମରଣରେ ଭୁଲ ହୋଇ ଥାଇପାରେ ବୋଲି ଅନିରୁଦ୍ଧ ସ୍କୁଲ ଘରର ଚାରିଆଡ଼େ ବୁଲି ସବୁ କାନ୍ଥକୁ ତନ୍ନତନ୍ନ କରି ନିରୀକ୍ଷଣ କଲା, କିନ୍ତୁ କୌଣସିଠାରେ ତା'ର ନାଁଲେଖା ଶିଳାଲିପିର ନାମଗନ୍ଧ ନଥିଲା ।

ଗସ୍ତରୁ ଫେରି ଅନେକ ଚିନ୍ତା ପରେ ସେ ଶେଷରେ ଏକ ସୁନ୍ଦର ମୀମାଂସାରେ ପହଞ୍ଚିଲା । ତାଙ୍କ ବିଭାଗର ବିଭିନ୍ନ ନିୟମାବଳୀକୁ ଏକତ୍ରିତ କରି ସେ ଗୋଟିଏ ସଂକଳନ ବାହାର କରିବ ଏବଂ ସେଥିରେ ତା'ର ଭାବୋଦ୍ଦୀପକ ମୁଖବନ୍ଧ ଲେଖିବ । ଅବସର

ଗ୍ରହଣ ପୂର୍ବରୁ ଏହି କାମରେ ସେ ମନପ୍ରାଣ ଲଗାଇଲା ଏବଂ ଶେଷରେ ନିୟମାବଳୀର ଏକ ସୁଦୃଶ୍ୟ ସଂସ୍କରଣ ପ୍ରକାଶ ପାଇଲା, ଯେଉଁଥିରେ ଆରମ୍ଭରେ ଥିଲା ତା'ର ସୁଦୀର୍ଘ ଓ ସୁଚିନ୍ତିତ ମୁଖବନ୍ଧ । ଅନିରୁଦ୍ଧ ବର୍ତ୍ତମାନ ନିଶ୍ଚିତ ଥିଲା ଯେ ତା'ର ନାଁ ଏଥରକ ଏହି ଛପା ବହିଟିର ମାଧ୍ୟମରେ ଇତିହାସ ପୃଷ୍ଠା ଭିତରକୁ ଚାଲିଯାଇଛି ଏବଂ ନିୟମାବଳୀ ପ୍ରଚଳିତ ଥିବା ପର୍ଯ୍ୟନ୍ତ ତା'ର ନାଁ ଅମର ହୋଇ ରହିବ । ଏହିଭଳି ଆଶ୍ୱାସନାର ସହିତ ଅନିରୁଦ୍ଧ ଅବସର ଗ୍ରହଣ କଲା ।

ଅନିରୁଦ୍ଧ ପରେ ସେଇ ଚାକିରିକୁ ଆସିଲା ଚନ୍ଦ୍ରମୌଳି । ତା'ର ମଧ୍ୟ ଅବସର ଗ୍ରହଣ ସମୟ ବେଶିଦିନ ନଥିଲା । ପିଲାଦିନେ ସେ କ୍ରିକେଟ ଖେଳୁଥିଲା ଏବଂ ଭାବିଥିଲା ଯେ ଏକ ମହାନ ସ୍କୋର କରି ଗିନିସ ବୁକ୍‌ରେ ନହେଲେ ବି ଭାରତୀୟ କ୍ରିକେଟ ଇତିହାସରେ ଅମରତ୍ୱ ପାଇବ ! କିନ୍ତୁ ଶେଷରେ ସେ ପ୍ରଶାସନ ସେବାରେ ଯୋଗ ଦେଲା ଏବଂ ଆଉ କ୍ରିକେଟ ଖେଳିବାର ସୁଯୋଗ ପାଇଲା ନାହିଁ । ଚାକିରି ଶେଷବେଳକୁ ସେ ଫାଇଲରେ ସାହିତ୍ୟିକ ନୋଟ ଓ ଶିଳାଲିପି ଇତ୍ୟାଦି ମାଧ୍ୟମରେ ପ୍ରସିଦ୍ଧି ପାଇବାର ଅସାରତା ବିଷୟରେ ପୂର୍ଣ୍ଣ ମାତ୍ରାରେ ସଚେତନ ଥିଲା । ତେଣୁ ସେ ନିୟମାବଳୀ ସଂକଳନକୁ ପୁନଃମୁଦ୍ରଣ କରାଇବାରେ ମନ ଦେଲା । ଏହି ସଂକଳନର ଦ୍ୱିତୀୟ ସଂସ୍କରଣ ପାଇଁ ସେ ଅନିରୁଦ୍ଧର ପୂର୍ବ ମୁଖବନ୍ଧଟି ବାହାର କରି ଦେଇ ନିଜର ଏକ ସୁଚିନ୍ତିତ ମୁଖବନ୍ଧ ଲେଖିଲା ଓ ତା ତଳେ ସ୍ପଷ୍ଟ ଭାବରେ ନିଜର ନାଁ ଦସ୍ତଖତ କଲା । ଯେତେବେଳେ ପ୍ରେସ୍‌ରୁ ଛପା ହୋଇ ବହିର ପ୍ରଥମ କପିଟି ତା ପାଖକୁ ଆସିଲା, ସେ ପୃଷ୍ଠା ଓଲଟାଇ ଶାନ୍ତି ଓ ସ୍ୱସ୍ତିର ନିଃଶ୍ୱାସ ନେଲା ଯେ ତା'ର ନାଁ ଏଥରକ ଅମର ହୋଇ ରହିବ ।

# ବାଘ

ସତ୍ୟକାମର ଫ୍ଲାଇଟ୍ ଠିକ୍ ସମୟରେ ପହଞ୍ଚିଥିଲା ଏବଂ ସେ ଭାବିଥିଲା ଯେ ଶୀଘ୍ର ହୋଟେଲରେ ପହଞ୍ଚି ବିଶ୍ରାମ ନେବ । ତା'ର ଦିନଟି ବଡ଼ ବ୍ୟସ୍ତତାରେ କଟିଥିଲା । ସେ କ୍ଲାନ୍ତ ବୋଧ କରୁଥିଲା ଏବଂ ରାତିରେ କିପରି ଭଲଭାବେ ଶୋଇବ ତା'ର ଅପେକ୍ଷା କରୁଥିଲା । କିନ୍ତୁ ତା'ର ଦୁର୍ଭାଗ୍ୟକୁ ଭୀଷଣ ବର୍ଷା ଆରମ୍ଭ ହେଲା, ଏତେ ବର୍ଷା ଯେ ଏୟାରପୋର୍ଟରୁ ବାହାରିବାର ଉପାୟ ନଥିଲା । ମନରେ କ୍ଲାନ୍ତି, ବିରକ୍ତି ଓ ଶୂନ୍ୟତା ନେଇ ସେ ଏୟାରପୋର୍ଟ ଲାଉଂଜରେ ବସି ଅଧା ପଢ଼ିଥିବା ବହିଟିକୁ ପଢ଼ିବାକୁ ଆରମ୍ଭ କଲା ; କିନ୍ତୁ ସେଥିରେ ତା'ର ମନ ଲାଗିଲା ନାହିଁ ।

ବର୍ଷା ଯେମିତି ହଠାତ ଆରମ୍ଭ ହୋଇଥିଲା, ସେମିତି ବନ୍ଦ ହୋଇଗଲା ହଠାତ । ବାହାରକୁ ଆସି ସତ୍ୟକାମ ଟ୍ୟାକ୍ସି ନେଲା ଏବଂ ତାକୁ ହୋଟେଲର ଠିକଣା ଦେଲା । ବର୍ଷା ପରେ ରାସ୍ତା ଜନଶୂନ୍ୟ ହୋଇଯାଇଥିଲା, ପାଗ ବେଶ୍ ଥଣ୍ଡା ଥିଲା ଏବଂ ସତ୍ୟକାମ ପୁଣି ଭାବିବାକୁ ଲାଗିଲା ରାତିରେ ହୋଟେଲରେ ପହଞ୍ଚି କିପରି ଶାନ୍ତିରେ ନିଦ ଯିବ, ସେକଥା । ଟ୍ୟାକ୍ସିବାଲାକୁ ସେ ପଚାରିଲା, ଏ ସମୟରେ ଏତେ ବର୍ଷା କାହିଁକି ହେଲା ବୋଲି, କିନ୍ତୁ ଟ୍ୟାକ୍ସିବାଲା ଗମ୍ଭୀର ସ୍ୱଭାବର ଲୋକ ଥିଲା ବୋଧେ, ତା କଥାର କୌଣସି ଜବାବ ଦେଲା ନାହିଁ । ଆଖି ବନ୍ଦ କରି ସତ୍ୟକାମ ତା'ର କର୍ମବ୍ୟସ୍ତ ଦିନଟିର କଥା ଭାବିବାରେ ଲାଗିଲା ।

ହଠାତ ଟ୍ୟାକ୍ସି ବନ୍ଦ ହୋଇଯିବାରୁ ସତ୍ୟକାମ ଆଖି ଖୋଲିଲା । କୌଣସି ବଡ଼ ଛକ ଉପରେ ଲାଲବତି ଥିବାରୁ ଗାଡ଼ି ଅଟକିଥିଲା । ଏ ରାସ୍ତାଟି ସଂପୂର୍ଣ୍ଣ ଜନଶୂନ୍ୟ ଥିଲା ଏବଂ ଚାରିପାଖର ଦୋକାନ ବଜାର ସବୁ ବନ୍ଦ ଥିଲା । ରାସ୍ତାରେ ସେମାନଙ୍କର ଟ୍ୟାକ୍ସି ବ୍ୟତୀତ ଆଉ କୌଣସି ଯାନବାହନ ନଥିଲା । ବର୍ଷା ପରର ଶୀତଳ ପରିବେଶରେ ବତିସବୁ ନିସ୍ତବ୍ଧ ଦେଖାଯାଉଥିଲେ । ଚାରିପାଖର ଧୂସରତା ଭିତରେ ଏକମାତ୍ର ରଙ୍ଗ ଆଣିଦେଉଥିଲା ଟ୍ରାଫିକ ବତିର ଲାଲ ଆଖି । କେତେବେଳେ ବତି ପୁଣି ସବୁଜ ହେବ ସତ୍ୟକାମ ଅନାଇଛି, ଏଇ ସମୟରେ ଫୁଟ୍‌ପାଥ ଉପରୁ ବାଘଟି ଆସି ଟ୍ୟାକ୍ସି ସାମନା ଜେବ୍ରା କ୍ରସିଂ ଉପରକୁ ଓହ୍ଲାଇଲା । ଅଚଞ୍ଚଳ ପାଦ ପକାଇ ବାଘ ରାସ୍ତାକୁ ଅତିକ୍ରମ କରି

ଡାହାଣ ପାଖ ଫୁଟପାଥରେ ପହଞ୍ଚିଲା ଏବଂ ମୋଡ଼ରେ ଅଦୃଶ୍ୟ ହୋଇଗଲା ।

ପୁଣି ଆଖି ବନ୍ଦକରି ସତ୍ୟକାମ ତା'ର କାମ କଥା ଭାବିବାରେ ଲାଗିଲା । ଏଇ ସହରରେ ଅନେକ କାମ ଥିଲା ତା'ର । କିପରି ସବୁ କାମ ସାରି ଫେରିଯିବ, ତାହାହିଁ ଥିଲା ଚିନ୍ତାର ବିଷୟ । ଟ୍ୟାକ୍‌ସିରୁ ଓହ୍ଲାଇ ସେ ହୋଟେଲକୁ ଗଲା ଏବଂ କିଛି ସମୟ ପରେ ନିଜର କୋଠରିରେ ନିଦ ଯାଉ ଯାଉ ତା'ର ମନେପଡ଼ିଲା ବାଘଟି କଥା । ବର୍ଷା ଛାଡ଼ିଯାଇଥିବା ରାତି, ଶୂନଶାନ ରାସ୍ତା ଏବଂ ଅବସର ମାନସିକ ସଙ୍ଗତିରେ ଯେଉ ଦୃଶ୍ୟଟି ତାକୁ ଆଦୌ ଅସଙ୍ଗତ ଜଣାଯାଇନଥିଲା, ବର୍ତ୍ତମାନ ବିଛଣାର ବାସ୍ତବତା ଭିତରୁ ସେ ଘଟଣାଟି ତାକୁ ଅତ୍ୟନ୍ତ ବିଚିତ୍ର ଓ ତର୍କରହିତ ମନେହେଲା ।

ତା ଆଖିରୁ ହଠାତ ନିଦ ଚାଲିଗଲା ଏବଂ ସେ ବାରମ୍ବାର ବିଛଣାରେ କଡ଼ ବଦଳାଇ ଭାବିଲା, ଏ କଥାଟିର ନିଶ୍ଚୟ କୌଣସି ତର୍କସଙ୍ଗତ ବ୍ୟାଖ୍ୟା ଅଛି । ବାଘଟିକୁ ଯେ ସେ ନିଶ୍ଚିତ ଭାବରେ ଦେଖିଥିଲା, ସେ ବିଷୟରେ ତା'ର ମନରେ କୌଣସି ସନ୍ଦେହ ନଥିଲା । ବାଘଟି ଦେହରେ ଉଜ୍ଜ୍ୱଳ ହଳଦିଆ ପଟା ପଟା ଦାଗ ଥିଲା ଓ ଏ କଥାର ସ୍ମରଣ ସତ୍ୟକାମ ପାଇଁ ରୋମାଞ୍ଚ ଆଣିଦେଲା । ହୋଇପାରେ, ସହରର ଚିଡ଼ିଆଖାନାରୁ ବାଘଟି ବାହାରି ଆସିଛି । ଦେଶବିଦେଶର ସମ୍ବାଦରେ ଏ ପ୍ରକାର ଖବର କେବେ କେବେ ପଢ଼ିଥିବାର ତା'ର ମନେପଡ଼ିଲା । ଆଉ ମଧ ହୋଇପାରେ ସହରକୁ ସର୍କସ ଆସିଛି । ବାଘ ଖୋଲାରେ ବୁଲୁଥିବା ହୁଏତ ଏକ ଦୁର୍ଘଟଣା, ଅଥବା ଏକ ନୂଆ ପ୍ରକାରର ବିଜ୍ଞପ୍ତି !

ସେ ଟେଲିଫୋନରେ ପୋଲିସ୍‌ର ନମ୍ବର ମିଳାଇଲା ପୋଲିସକୁ ବାଘଟିର ଅନୁପ୍ରବେଶ ବିଷୟରେ ଜଣାଇବା ପାଇଁ ; କିନ୍ତୁ ଯେତେବେଳେ ଥାନାରେ କିଏ ଜଣେ ଫୋନ ଉଠାଇଲା ସତ୍ୟକାମ ଟେଲିଫୋନ ରଖିଦେଲା ; କାରଣ ସେ ଠିକ୍ କେଉଁ ଜାଗାରେ ବାଘଟିକୁ ଦେଖିଥିଲା ସେକଥା ତାକୁ ଜଣାନଥିଲା ଏବଂ ଦ୍ୱିତୀୟରେ, ରାତି ଏଗାରଟାରେ ଟେଲିଫୋନ କରି ପୋଲିସକୁ ଏକ ବାଘର ସନ୍ଧାନ ଦେବା ତାକୁ କାହିଁକି କେଜାଣି ଅଦ୍ଭୁତ ଓ ଅତିରଞ୍ଜିତ ଜଣାଗଲା । ଟେଲିଫୋନକୁ ରଖିଦେଇ ସେ ପୁଣି ଆଖି ବନ୍ଦକଲା ଏବଂ ବାଘଟି କଥା ଭାବିଲା । ନା, ତା'ର ଦେଖିବାରେ କୌଣସି ଭୁଲଭ୍ରାନ୍ତି ନଥିଲା । ବାଘ ଠିକ୍ ଟ୍ୟାକ୍‌ସି ସାମନାରେ ରାସ୍ତା ଉପରକୁ ଓହ୍ଲାଇଲା ଏବଂ ଧୀର ଅଥଚ ବଳିଷ୍ଠ ପଦପାତରେ ରାସ୍ତାକୁ ଅତିକ୍ରମ କରି ଆରପାଖ ମୋଡ଼ରେ ଅଦୃଶ୍ୟ ହୋଇଗଲା ।

ସକାଳର ଖବରକାଗଜରେ ବାଘ ବିଷୟରେ କୌଣସି ସମ୍ବାଦ ନଥିଲା । ସହରର କେଉଁଠାରେ ସର୍କସ ଚାଲୁଥିବାର ବିଜ୍ଞପ୍ତି ମଧ ନଥିଲା ଖବରକାଗଜରେ । ସାରାଦିନ କାମରେ ବ୍ୟସ୍ତ ରହି ସତ୍ୟକାମ ବାଘ କଥା ସଂପୂର୍ଣ୍ଣ ଭୁଲିଗଲା ; କିନ୍ତୁ

ରାତିରେ ଶୋଇବାକୁ ଗଲାବେଳେ ପୁଣି ବାଘଟି ଲାଞ୍ଜ ପିଟି ନିଶ ଫୁଲାଇ ତା ଆଖି ଆଗରେ ରାସ୍ତା ପାରହୋଇ ବାହାରିଗଲା । ଘଟଣାଟି କେବେହେଲେ ତା'ର କଳ୍ପନାପ୍ରସୂତ ନଥିଲା, ଏ ବିଷୟରେ ସେ ନିଃସନ୍ଦେହ । ଶୋଉ ଶୋଉ ସତ୍ୟକାମ ନିଷ୍ପତ୍ତି କଲା ଯେ ସେ ଏଇ ରହସ୍ୟର ସମାଧାନ କରିବ ହିଁ କରିବ ।

ପରଦିନ ସକାଳର ଖବରକାଗଜରେ ମଧ ଏ ବିଷୟରେ କୌଣସି ଉଲ୍ଲେଖ ନଥିଲା । କେବଳ ପ୍ରବଳ ବର୍ଷାରେ ହୋଇଥିବା କ୍ଷୟକ୍ଷତିର ବିବରଣ ଥିଲା ; କିନ୍ତୁ କେଉଁଠାରେ ହେଲେ ନଥିଲା ବଣ୍ୟ ଅଥବା ସର୍କସ ବାଘର ଅନଧିକାର ପ୍ରବେଶର ଚର୍ଚ୍ଚା । ଏୟାରପୋର୍ଟକୁ ଯାଉ ଯାଉ ଟ୍ୟାକ୍‌ସି ବାହାରକୁ ଅନାଇ ସତ୍ୟକାମ ଚେଷ୍ଟାକଲା ଠାବ କରିବ ସେଦିନ ରାତିରେ ଦେଖିଥିବା ଛକଟିକୁ । କିନ୍ତୁ ସକାଳର ଲୋକାରଣ୍ୟରେ ତାକୁ ପ୍ରତିଟି ଛକ ଏକାପରି ଦେଖାଗଲା ଏବଂ କୌଣସି ଛକର ସେଦିନ ରାତିର ବର୍ଷା ଥମଥମ ଅବସ୍ଥାରେ ଦେଖିଥିବା ଛକ ସହିତ କୌଣସି ସାମଞ୍ଜସ୍ୟ ନଥିଲା ।

ନିଜ ସହରକୁ ଫେରି ସତ୍ୟକାମ ସୁସ୍ଥ ମସ୍ତିଷ୍କରେ ଘଟଣାଟିର ବିଶ୍ଳେଷଣ କରିବାକୁ ଚେଷ୍ଟା କଲା । ସେ ଠିକ୍ କଲା ଏଇ ରହସ୍ୟଜନକ ବିଷୟଟିରେ ସେ ନିଜର ବନ୍ଧୁମାନଙ୍କୁ ଅଂଶୀଦାର କରି ସେମାନଙ୍କର ମତାମତ ନେବ । ଅନେକ ଭାବିଚିନ୍ତି ସେ ପ୍ରଥମେ ତା'ର ଏପରି ଜଣେ ବନ୍ଧୁଙ୍କୁ ବାଛିଲା, ଯେ କି ଅତି ଶାନ୍ତଶିଷ୍ଟ ଓ ଧୀର ପ୍ରକୃତିର ଥିଲେ ଏବଂ ଯାହାଙ୍କୁ ସମସ୍ତେ ନିର୍ବୋଧ ବୋଲି ଭାବୁଥିଲେ । ଘଟଣାଟିକୁ ସିଧାସଳଖ ନକହି ସତ୍ୟକାମ ତାଙ୍କୁ କହିଲା, ଯଦି ଆପଣଙ୍କୁ କିଏ କହେ ଯେ ସେ ଦିନେ ରାତିରେ ଶୂନଶାନ ସହରର ଛକ ଉପରେ ଗୋଟିଏ ବାଘକୁ ରାସ୍ତା ପାରିହେଉଥିବାର ଦେଖିଲା, ଆପଣ କ'ଣ ଭାବିବେ ?

ସତ୍ୟକାମ ଭାବିଥିଲା ଯେ ଭଦ୍ରବ୍ୟକ୍ତି ଏ କଥାଟିକୁ ସ୍ଥିରଚିତ୍ତରେ ଅନୁଧାନ କରିବେ ଏବଂ ତାଙ୍କର ସୁଚିନ୍ତିତ ମନ୍ତବ୍ୟ ଦେବେ । କିନ୍ତୁ ଭଦ୍ରବ୍ୟକ୍ତି ସାମାନ୍ୟ କାଳବିଳମ୍ବ ନକରି କହିପକାଇଲେ, ମୁଁ ଭାବିବି ଲୋକଟି ସଂପୂର୍ଣ୍ଣ ନିର୍ବୋଧ ।

ଏପରି ଭାବରେ ପ୍ରତିହତ ହୋଇ ସତ୍ୟକାମ ନିଜର ଘନିଷ୍ଠ ବନ୍ଧୁ ପାଖକୁ ଗଲା ଏବଂ ତାକୁ ତା'ର ଯାତ୍ରାର ସଂପୂର୍ଣ୍ଣ ବିବରଣୀ ଦେଇ ଏୟାରପୋର୍ଟରେ ବର୍ଷା, ନିର୍ଜନ ରାସ୍ତାରେ ଟ୍ୟାକ୍‌ସି ଏବଂ ବାଘର ରାସ୍ତା ପାରିହେବା କଥା କହିଲା । ତା କଥା ଶୁଣି ବନ୍ଧୁ ସାମାନ୍ୟ ଚିନ୍ତାରେ ପଡ଼ିବା ଭଳି ଜଣାଗଲା । କହିଲା, ଏଇଟା ଗୋଟାଏ ଭଲକଥା ନୁହେଁ । ଏଥିପାଇଁ ପୂଜାପାଠ କରିବାକୁ ପଡ଼ିବ ।

ସତ୍ୟକାମ ଧାର୍ମିକ ମନୋବୃତ୍ତିର ନଥିଲା ; ତେଣୁ କଥାକୁ ଏଡ଼ାଇ ଦେଇ କହିଲା, ପୂଜାପାଠ କଥା ଦେଖାଯିବ ; କିନ୍ତୁ ମତେ କହ, ବାଘ ଆସିଲା କୋଉଠୁ, ପୁଣି ଗଲା କୁଆଡ଼େ ?

ବନ୍ଧୁ କହିଲା, ଅନେକ ଦିନ ତଳେ ଦିନେ ଦିନ ଦିପହରେ ମୋ ଘର ଉପରେ ପେଚା ଆସି ବସିଲା । ତମେ ପଚାରିବ, ସହର ଭିତରେ ଖରାବେଳେ ପେଚା କୋଉଠୁ କେମିତି ଆସି ପହଞ୍ଚିଲା । ତା'ର କଣ କିଛି ଜବାବ ଅଛି ? ମୁଁ ମୋ ସ୍ତ୍ରୀକୁ ଡାକି ଆଣି ଦେଖାଇଲାବେଳକୁ ପେଚା ଉଭାନ । ସାତଦିନ ଭଜନ କୀର୍ତ୍ତନ କରି ରିଷ୍ଟ କାଟିଲୁ ।

ଲେଖକ ବନ୍ଧୁ କହିଲେ, ସହରଟା ଗୋଟାଏ କଂକ୍ରିଟ୍‌ର ଜଂଗଲ । ଏଥିରେ ବାଘ ଭାଲୁ ଆତଯାତ ହେବେ ନାହିଁ ତ ଆଉ କ'ଣ ? ରାତିରେ ଯୋଉ ତସ୍କର ଗୁଣ୍ଡା ବଦମାସ ଯିବାଆସିବା କରୁଛନ୍ତି, ସେମାନେ ଗୋଟିଏ ଗୋଟିଏ ହିଂସ୍ର ଜନ୍ତୁ । ଆପଣ ସିନା ଗୋଟିଏ ବାଘ ମାତ୍ର ଦେଖିଲେ, ଆଉ ଟିକିଏ ଏପାଖ ସେପାଖ ଦୃଷ୍ଟି ପକାଇଥିଲେ ଦେଖିଥାନ୍ତେ ସହରର ଗଳିକନ୍ଦିରେ କିପରି ଭୟଙ୍କର ସାପ, ଲୋମହର୍ଷକ ବଣ୍ୟହାତୀ, ରକ୍ତପାୟୀ ସିଂହସବୁ ଛପି ରହିଛନ୍ତି ।

ଇଂରେଜୀ ପ୍ରଫେସର କହିଲେ, ଏ କିଛି ନୂଆ କଥା ନୁହେଁ । ଆପଣ ଜୁଲିଅସ ସିଜାର ପଢ଼ିଥିବେ । ସିଜାରଙ୍କ ହତ୍ୟା ପୂର୍ବରୁ କାସ୍‌କା ସିସେରୋକୁ କହୁଛି, ଆଜି କ୍ୟାପିଟାଲ ସାମନାରେ ମୁଁ ଗୋଟିଏ ସିଂହକୁ ଭେଟିଲି ; ସିଂହ ମୋ ଆଡ଼କୁ କଟମଟ କରି ଅନାଇଲା, ପୁଣି ମୁହଁ ବୁଲାଇ ଚାଲିଗଲା ।

କ୍ଲବ୍‌ର ବାର୍‌ରେ ତା କଥାଶୁଣି ଲୋକଟି ହୋ-ହୋ କରି ହସିଲା ଏବଂ ଟେବୁଲ ଉପରେ ସଶବ୍ଦରେ ଗ୍ଲାସ୍‌କୁ ରଖୁ ରଖୁ କହିଲା, କେତେ ରାତିରେ ଦେଖିଲେ ବୋଲି କହିଲେ ? କେତେ ପେଗ୍ ପରେ ? କିଛି ଆଶ୍ଚର୍ଯ୍ୟ ହେବାର ନାହିଁ । କିଛି ସମୟ ପରେ ଆପଣଙ୍କୁ ଗୋଲାପୀ ହାତୀ ବି ନଜର ଆସିଥା'ନ୍ତା ।

ସତ୍ୟକାମ ଜାଣିଲା ଯେ ତା କଥାକୁ କେହି ବିଶ୍ୱାସ କରୁନାହାଁନ୍ତି ଅଥବା ତା'ର ସମସ୍ୟାକୁ କେହି ଗୁରୁତ୍ୱ ଦେଉନାହାଁନ୍ତି ।

ସେ ଠିକ୍ କଲା ଆଉ ଏକଥା କାହାରିକି ହେଲେ କହିବ ନାହିଁ ; କିନ୍ତୁ ସେ ନିଜେ ଯେମିତି ହେଲେ ଏ କଥାର ମର୍ମ ଉଦ୍‌ଘାଟନ କରିବ ।

କିଛିଦିନ ପରେ ସେ ପୁଣି ସେଇ ସହରକୁ ଯିବାର ଟିକେଟ କଲା । ଏଥରକ ବି ତା'ର ଫ୍ଲାଇଟ ଠିକ୍ ସମୟରେ ପହଞ୍ଚିଲା । ପାଗ ଆଜି ଅତ୍ୟନ୍ତ ପ୍ରସନ୍ନ ଥିଲା ଏବଂ ସାଙ୍ଗେ ସାଙ୍ଗେ ଟ୍ୟାକ୍‌ସି ନେଇ ସେ ହୋଟେଲକୁ ବାହାରିଲା ।

ସନ୍ଧ୍ୟା ବେଶି ଡେରି ହୋଇନଥିବାରୁ ରାସ୍ତାଘାଟରେ ବେଶ୍ ଭିଡ଼ ଥିଲା । ଟ୍ୟାକ୍‌ସି ଭିତରେ ସତ୍ୟକାମ ସଜାଗ ହୋଇ ବସିଲା ଓ ଅତିକ୍ରମ କରି ଯାଉଥିବା ଛକମାନଙ୍କ ଉପରେ ନଜର ରଖିଲା । ଆଗରେ ପଛରେ ଅନେକ ଯାନବାହାନ ଯିବାଆସିବା କରୁଥିଲେ ଏବଂ ଛକରେ ଲାଲବତି ଥିବାବେଳେ ଅନେକ ଲୋକ ରାସ୍ତା ପାରି ହେଉଥିଲେ ।

ସବୁକିଛି ବିଧିବଦ୍ଧ, ତର୍କସମ୍ମତ, କିନ୍ତୁ ସାଧାରଣ ଥିଲା ।

ଶୋଇବାକୁ ଗଲାବେଳେ ସତ୍ୟକାମ ଅଧା ପଢ଼ିଥିବା ବହିଟିକୁ ନପଢ଼ି ପକେଟରୁ ଶୁଭ ସମ୍ବାଦର ବାର୍ତ୍ତାବହ ଚିଠିଟିକୁ ଆଣି ଆହୁରି ଥରେ ପଢ଼ିଲା । ତା'ପରେ ବିଛଣା ଉପରେ ପଡ଼ିରହି ସେ ଛାତଆଡ଼କୁ ଅନାଇଲା ।

ଅନ୍ଧାର କୋଠରି, ଏୟାର କଣ୍ଡିସନ୍‌ର ମୃଦୁଗୁଞ୍ଜନ, ନିଦ ଔଷଧର ଲୋଭନୀୟ ପରିବେଶ ଭିତରୁ ସେ ପ୍ରଥମେ ବାଁ ପାଖେ ଗଛର ଡାଳଟିଏ ଦେଖିଲା । ପତ୍ରଗହଳ ସବୁଜତା ଭିତରୁ ପକ୍ଷୀଟି ବାହାରିଲା ଏବଂ ଧୀର ମନ୍ଥର ଅଳସ ଗତିରେ ଉଡ଼ିବାକୁ ଆରମ୍ଭ କଲା ।

ଆଖି ବନ୍ଦ ହୋଇଯିବା ପୂର୍ବରୁ ସତ୍ୟକାମ ଡାହାଣ ପାଖକୁ ଅନାଇଲା, ଯେଉଁଠାରେ ଆଉ ଏକ ଗହଳ ସବୁଜତା ପକ୍ଷୀଟିକୁ ଅପେକ୍ଷା କରୁଥିଲା ।

# ସ୍ପର୍ଶ

ଅନେକ ଚେଷ୍ଟା ସତ୍ତ୍ୱେ ବି ଇନ୍ଦ୍ରନାଥ ତାକୁ ଦାରୁଣ ଆଘାତ ଦେଇଥିବା ଘଟଣାଟିକୁ ମନରୁ ଦୂର କରିପାରିଲା ନାହିଁ । ଘଟଣାଟି ଥିଲା ଯେ, ସେ ଯେତେବେଳେ ମାଧବୀକୁ ଛୁଇଁବା ପାଇଁ ହାତ ବଢ଼ାଇଲା, ମାଧବୀ ନିଜକୁ ଘୁଞ୍ଚାଇନେଲା । ଏକଥା ଘଟିବାବେଳେ ସେଠାରେ ଆଉ କେହି ନଥିଲେ ; ମାଧବୀର ଘରେ କେବଳ ସେମାନେ ଦୁଇଜଣ ବସିଥିଲେ ଏବଂ ମାଧବୀର ଏ ପ୍ରକାର ବ୍ୟବହାରର କୌଣସି ଉପଲକ୍ଷ୍ୟ ନଥିଲା ।

ମାଧବୀକୁ ଛୁଇଁବା ପାଇଁ ଇନ୍ଦ୍ରନାଥକୁ ଦୁଇବର୍ଷରୁ ଅଧିକ ସମୟ ଲାଗିଥିଲା । ଏଇ ସମୟଟି ଥିଲା ଇନ୍ଦ୍ରନାଥ ପାଇଁ ଏକ କଠୋର ସଂଯମ, ପରୀକ୍ଷା ଓ ଉଦ୍‌ବେଗର ସମୟ । ଯଦିଓ ସେ ମାଧବୀକୁ ବହୁବର୍ଷ ଧରି ଜାଣିଥିଲା, ତାକୁ ସେ ଅନେକ ଦିନ ପର୍ଯ୍ୟନ୍ତ ପ୍ରେମିକା ଭାବରେ କଳ୍ପନା କରିନଥିଲା । ଉଭୟଙ୍କ ମଧ୍ୟରେ ସାଧାରଣ ବନ୍ଧୁତ୍ୱ ଥିଲା ; ମାଧବୀ ସହିତ ନିଜର ସମ୍ବନ୍ଧ ବିଷୟରେ ତା ମନ ଭିତରେ କୌଣସି ସଂଶୟ ବା ସଂକୋଚ ନଥିଲା ଏବଂ ସେମାନଙ୍କର ସଂପର୍କ ଥିଲା ସଂପୂର୍ଣ୍ଣ ସ୍ୱାଭାବିକ ଏବଂ ଜଟିଳତାରହିତ ।

ମାଧବୀ ସହିତ କାମ ନେଇ ତା'ର ମଝିରେ ମଝିରେ ସାକ୍ଷାତ ହେଉଥିଲା ଏବଂ ସହରରୁ ବାହାରକୁ ଯିବାବେଳେ ସେ ମାଧବୀକୁ ଜଣାଉଥିଲା । ସେଥର ଯେତେବେଳେ ସେ ମାଧବୀକୁ ଟେଲିଫୋନରେ ସାତଦିନ ପାଇଁ ବାହାରକୁ ଯାଉଛି ବୋଲି କହିଲା, ମାଧବୀ କହିଲା, ତମେ ଏତେ ବେଶି ଦିନ ପାଇଁ କାହିଁକି ବାହାରକୁ ଯାଉଛ ? ତାକୁ ପରିହାସ କରି ଇନ୍ଦ୍ରନାଥ କହିଲା, ମୁଁ କୁଆଡ଼େ ଗଲେ କେହି ମତେ ମିସ୍ କରନ୍ତି ନାହିଁ, ସେଥିପାଇଁ । ମୁଁ ତମକୁ ମିସ୍ କରିବି, ହସି ହସି କହିଲା ମାଧବୀ । ତା'ପରେ ସେମାନେ ଅନ୍ୟ ବିଷୟରେ କଥାବାର୍ତ୍ତା କଲେ ; କିନ୍ତୁ ମାଧବୀର ଏଇ କଥାଟି ଇନ୍ଦ୍ରନାଥର ମନ ଭିତରୁ ଗଲାନାହିଁ । ଟେଲିଫୋନ ରଖିଦେଇ ସେ କିଛିକ୍ଷଣ ଅବସନ୍ନ ହୋଇ ବସିରହିଲା ଏବଂ ହଠାତ ମୁହୂର୍ତ୍ତରେ ଆବିଷ୍କାର କଲା ଯେ ସେ ମାଧବୀ ପ୍ରତି ଭାବପ୍ରବଣ ହୋଇଯାଇଛି । ମନେ ମନେ କହିଲା, ମାଧବୀ, ମୁଁ ତମକୁ ଭଲପାଏ ।

ସେଇ ମୁହୂର୍ତ୍ତରୁ ମାଧବୀ ତା'ର ମନକୁ ସଂପୂର୍ଣ୍ଣ ଆଚ୍ଛନ୍ନ କରି ରଖିଲା ।

ଟ୍ରେନ୍‌ରେ ବସି ଯିବାବେଳେ, ଅନ୍ୟ ସହରରେ କ୍ଳାନ୍ତ ହୋଇ ପହଞ୍ଚିବାବେଳେ, ଅଫିସରେ ବସି ଲୋକମାନଙ୍କ ସହିତ କଥାବାର୍ତ୍ତା କରିବାବେଳେ, ରାତିରେ ନିଦ ନ ହେବା ଅବସ୍ଥାରେ ବିଛଣାରେ ପଡ଼ିରହିଥିବା ବେଳେ ମାଧବୀ ପ୍ରତିକ୍ଷଣ ତା'ର ମନେପଡ଼ିଲା । ସେ ଟେଲିଫୋନରେ ମାଧବୀ ସହିତ କଥା କହିବା ପାଇଁ ଚେଷ୍ଟା କଲା, କିନ୍ତୁ ଲାଇନ ମିଳିଲା ନାହିଁ । ଦିନେ ଯୋଉଦିନ ସେ ଲାଇନ ପାଇଲା ଓ ଆରପାଖରୁ ମାଧବୀର ସ୍ୱର ଶୁଣିଲା, ତା'ର ଛାତିର ସ୍ପନ୍ଦନ ହଠାତ ବଢ଼ିଗଲା ; କିନ୍ତୁ କିଛି କଥା ନକହି ସେ ଟେଲିଫୋନକୁ ତଳେ ରଖିଦେଲା । କାରଣ ଅନ୍ୟ ସହରରୁ ବିନା କାରଣରେ ମାଧବୀକୁ ଟେଲିଫୋନ କରିବା ତାକୁ ସ୍ୱାଭାବିକ ମନେ ହେଲାନାହିଁ ।

ସାତଦିନ ପରେ ଇନ୍ଦ୍ରନାଥ ଯେତେବେଳେ ଫେରିବାର ଟ୍ରେନ୍ ଧରିଲା, ଏଇ ଯାତ୍ରାଟି ତାକୁ ସଂପୂର୍ଣ୍ଣ ଭିନ୍ନ ଧରଣର ମନେହେଲା । ସେ ଯେପରି ଜୀବନର କୌଣସି ଏକ ଅତି ଆକାଙ୍କ୍ଷିତ ଲକ୍ଷ୍ୟସ୍ଥଳ ଆଡ଼କୁ ଅଗ୍ରସର ହେଉଥିଲା, ଯେଉଁଠାରେ ଥିଲା ତା'ର ସୁଖଶାନ୍ତିର ସମସ୍ତ ଆଧାର । ନିଜ ସହରରେ ପହଞ୍ଚି ସେ ମାଧବୀକୁ ଫୋନ କଲା । ମାଧବୀ ଯଦିଓ ତା ସହିତ ସୌଜନ୍ୟପୂର୍ଣ୍ଣ କଥାବାର୍ତ୍ତା କଲା, ଇନ୍ଦ୍ରନାଥ ତା ସହିତ ସ୍ୱାଭାବିକ ଭାବରେ କଥା କହିବାକୁ ସମର୍ଥ ହେଲାନାହିଁ । ସାତଦିନର ଚିନ୍ତା ଯେପରି ତା ମନ ଭିତରେ ସବୁ କିଛି ଅସ୍ତବ୍ୟସ୍ତ କରିଦେଇଥିଲେ ।

ମାଧବୀ ସହିତ ଯେତେବେଳେ ପୁଣି ସାକ୍ଷାତ ହେଲା, ଇନ୍ଦ୍ରନାଥ ତା ପ୍ରତି ନିଜର ସଂପର୍କ ବିଷୟରେ ସଚେତନ ହେଲା ଏବଂ ମାଧବୀ ପ୍ରତି ତା'ର କଥାବାର୍ତ୍ତା ଓ ବ୍ୟବହାରରେ ସେ ଆଉ ସହଜ ହୋଇପାରିଲା ନାହିଁ । ସେ ଏକଥା ଉପଲବ୍ଧି କଲା ଯେ ତା ମନ ଭିତରେ ଯେଉଁ ଆଲୋଡ଼ନ, ଝଡ଼ଝଂଜା ଓ ଧ୍ୱଂସବିଧ୍ୱଂସ ଚାଲିଥିଲା, ସେ ସଂପର୍କରେ ମାଧବୀ ଆଦୌ ସଚେତନ ନଥିଲା । ଇନ୍ଦ୍ରନାଥ ମାଧବୀ ସହିତ ଆଉ ପରିହାସ କରି କଥାବାର୍ତ୍ତା କରିପାରିଲା ନାହିଁ । ତା ସହିତ ଇନ୍ଦ୍ରନାଥର ବ୍ୟବହାର ବର୍ତ୍ତମାନ ଆହୁରି ସୌଜନ୍ୟପୂର୍ଣ୍ଣ ହୋଇଗଲା । ଆଗରୁ ଯଦିଓ ମାଧବୀକୁ ଛୁଇଁବା ବିଷୟରେ ତା'ର କୌଣସି ସଂକୋଚ ନଥିଲା, ବର୍ତ୍ତମାନ ନିଜକୁ ମାଧବୀ ପାଖରୁ ଦୂରରେ ରଖିଲା । ଏହିଭଳି ସ୍ଥିତିରେ ତା'ର ଆଉ କୌଣସି ଆଗ୍ରହ ରହିଲା ନାହିଁ । ମାଧବୀ ସହିତ ତା'ର ସାମାନ୍ୟ କଥାବାର୍ତ୍ତା ତାକୁ ବର୍ତ୍ତମାନ ସଂପୂର୍ଣ୍ଣ ଅର୍ଥହୀନ ମନେହେଲା ଏବଂ ସେ ସ୍ଥିରକଲା ଯେ ମାଧବୀ ସହିତ ଏହିଭଳି ଔପଚାରିକ ସଂପର୍କର ସେ ବରଂ ପୂର୍ଣ୍ଣଚ୍ଛେଦ ଟାଣିଦେବ । କିନ୍ତୁ ସେକଥା ମଧ୍ୟ ସମ୍ଭବ ହେଲାନାହିଁ । ସେ ମାଧବୀକୁ ଆହୁରି ଅଳ୍ପ ବ୍ୟବଧାନରେ ସାକ୍ଷାତ କରିବାକୁ ଆରମ୍ଭ କଲା ।

ଇନ୍ଦ୍ରନାଥର ମନେହେଲା, ସେ ଯଦି ତା'ର ଏଇ ସମସ୍ୟା ବିଷୟରେ କିଛି ନକରେ, ସେ ଉନ୍ମାଦ ହୋଇଯିବ । କୃତସଂକଳ୍ପ ହୋଇ ସେ ଦିନେ ମାଧବୀ ଘରକୁ

ଗଲା । ମାଧବୀ ଏକା ଥିଲା ; କିନ୍ତୁ ଅନେକ ଚେଷ୍ଟା ସତ୍ତ୍ୱେ ବି ଇନ୍ଦ୍ରନାଥ ଯାହା କହିବାକୁ ଚାହୁଁଥିଲା କହିପାରିଲା ନାହିଁ । ଚା' ପିଇବା, ସୌଜନ୍ୟମୂଳକ କଥାବାର୍ତ୍ତା, ପରସ୍ପରର ଦୈନନ୍ଦିନ କାମର ବିବରଣ ବିନିମୟରେ ସମୟ କଟିଗଲା ଏବଂ ଇନ୍ଦ୍ରନାଥ ମାଧବୀ ପାଖରୁ ବିଦାୟ ନେଇ ବାହାରକୁ ଆସିଲା । ରାସ୍ତା ଉପରକୁ ଓହ୍ଲାଇ ଇନ୍ଦ୍ରନାଥର ମନ ପୁଣି ଅନେକ ଅଶାନ୍ତ ଭାବନାରେ ଭରିଗଲା ଏବଂ ସେ ଶ୍ୱାସରୁଦ୍ଧ ଅନୁଭବ କଲା । ସେ ରାସ୍ତା ଉପରେ ଗୋଟିଏ ମିନିଟ ଛିଡ଼ାହେଲା ଏବଂ କ'ଣ ଭାବି ପୁଣି ମାଧବୀ ଘରକୁ ଫେରିଆସିଲା । ଘରର କବାଟ ଖୋଲି ମାଧବୀ ପଚାରିଲା, କ'ଣ କିଛି ଭୁଲିଗଲ ?

ଇନ୍ଦ୍ରନାଥ ଜାଣିଲା ଯେ ସେ ଯଦି ଏଇ ମୁହୂର୍ତ୍ତରେ କଥାଟିର ସମାଧାନ ନ କରେ, ସେ ପୁଣି ସାମାଜିକ ସାମାନ୍ୟ କଥାବାର୍ତ୍ତାର ଦୈନନ୍ଦିନ ନିରର୍ଥକତାରେ ବାନ୍ଧି ହୋଇଯିବ । ସେ ନିଜକୁ ସାହସ ଦେଲା ଏବଂ କହିଲା, ମାଧବୀ, ମୁଁ ତମକୁ ଭଲପାଏ । ସେ ଭାବିଥିଲା ମାଧବୀ ହସିବ ଏବଂ କଥାଟିକୁ ପରିହାସରେ ଉଡ଼ାଇଦେବ, ଅଥବା କ୍ରୋଧାନ୍ୱିତ ହୋଇ ତାକୁ ଘରୁ ବାହାରିଯିବାକୁ କହିବ । ମାଧବୀ କିନ୍ତୁ ତାକୁ ଶାନ୍ତ ଭାବରେ କହିଲା, ବସ୍ । ମାଧବୀ ନିଜେ ବସିଲା ଏବଂ ତଳକୁ ମୁହଁ ପୋତି କ'ଣ ଭାବିବାରେ ଲାଗିଲା । ଏଇ କେତୋଟି ନୀରବ ମୁହୂର୍ତ୍ତ ଇନ୍ଦ୍ରନାଥ ପାଇଁ ଯେପରି ଥିଲା ତା'ର ଜୀବନ ଓ ମୃତ୍ୟୁର ବ୍ୟବଧାନ । ସେ ଉତ୍କଣ୍ଠିତ ହୋଇ ଅପେକ୍ଷା କଲା ମାଧବୀ କେତେବେଳେ ତା'ର କଥାର ପ୍ରତ୍ୟୁତ୍ତର ଦେବ । କିଛିକ୍ଷଣ ପରେ ମାଧବୀ ମୁହଁ ଉଠାଇ ତା ଆଡ଼କୁ ସହଜ ଭାବରେ ଅନାଇଲା ; କହିଲା, ଦେଖ, ଆମେ ବନ୍ଧୁଭାବରେ ରହିବା ।

ଇନ୍ଦ୍ରନାଥ ଉଠି ଠିଆହେଲା ଏବଂ ମାଧବୀକୁ ଆଉ କିଛି ନକହି ବାହାରି ଆସିଲା । ତା'ର ମନ ବର୍ତ୍ତମାନ ଅଦ୍ଭୁତ ଭାବରେ ଏକାଧାରରେ ଭାରଶୂନ୍ୟ ଏବଂ ବିଷାଦଗ୍ରସ୍ତ ଥିଲା । ସେ ବୁଝିଥିଲା ଯେ ତା ପ୍ରତି କୌଣସି ଭାବପ୍ରବଣତା ନଥିଲା ମାଧବୀର ମନ ଭିତରେ ; କିନ୍ତୁ ସେ ମାଧବୀ ସହିତ ନିଜର ସଂପର୍କକୁ କିଭଳି ଭାବରେ ନିୟନ୍ତ୍ରିତ କରିବ ସେକଥା ଠିକ୍ କରି ପାରିଲା ନାହିଁ । ଶେଷରେ ସେ ନିଷ୍ପତ୍ତି କଲା ଯେ ସେ ଆଉ ମାଧବୀ ପାଖକୁ ଯିବନାହିଁ । ଯାହା ପାଇଁ ତା'ର ସଂପୂର୍ଣ୍ଣ ଜୀବନ ସମର୍ପିତ ହୋଇଯାଇଛି, ତା ସହିତ କେବଳ ସୌଜନ୍ୟର ସଂପର୍କ ରଖିବା ଏବଂ ଅସଂଗତ ଓ ଔପଚାରିକ କଥାବାର୍ତ୍ତା ବିନିମୟ କରିବା ଛଳନାପୂର୍ଣ୍ଣ ହେବ ।

ଦିନକ ପରେ ମାଧବୀ ପାଖରୁ ହିଁ ତା ପାଖକୁ ଟେଲିଫୋନ ଆସିଲା । ମାଧବୀ କହିଲା, ମତେ ଯେତେ ଶୀଘ୍ର ସମ୍ଭବ ଆସି ଦେଖାକର । ଇନ୍ଦ୍ରନାଥ ଏଥରକ ଆହୁରି ଦ୍ୱିଧାରେ ପଡ଼ିଲା । କ'ଣ ମାଧବୀ ତା'ର ଭଲପାଇବାକୁ ସ୍ୱୀକାର କରିବ ? ଅଥବା କୌଣସି ସାମାନ୍ୟ ସାଧାରଣ କଥା ପାଇଁ ମାଧବୀ ତାକୁ ଆସିବାକୁ କହୁଛି ? କି ପ୍ରକାରର ସାକ୍ଷାତ୍‌କାର ହେବ ସେମାନଙ୍କ ଭିତରେ ଏଥରକ, ଇନ୍ଦ୍ରନାଥ ତା ପାଇଁ

ନିଜର ଦୁର୍ବଳତାକୁ ପ୍ରକାଶ କରି ସାରିଥିବା ପରେ ? ତା ପାଖକୁ ମାଧବୀର ଟେଲିଫୋନ ଆସିବା ଏବଂ ସେ ମାଧବୀ ଘରକୁ ଯିବା ଭିତରର ବ୍ୟବଧାନ ଇନ୍ଦ୍ରନାଥ ପାଇଁ ଥିଲା ଗଭୀର ମାନସିକ ଦ୍ୱନ୍ଦ୍ୱ ଏବଂ ଅନିଶ୍ଚିୟତାର ସମୟ ।

ଏଥରକ ମଧ ମାଧବୀର ବ୍ୟବହାର ସହଜ ଓ ସ୍ୱାଭାବିକ ଥିଲା । ସେ ହାର୍ଦ୍ଦିକତାର ସହିତ ଇନ୍ଦ୍ରନାଥକୁ ସ୍ୱାଗତ କଲା ; ତାକୁ ବସିବାକୁ କହି ପଚାରିଲା, ଚା' ପିଇବ ? ଇନ୍ଦ୍ରନାଥ ହଁ କଲା ଏବଂ ମନେ ମନେ କହିଲା, କ'ଣ କହିବାକୁ ଚାହୁଁଛ ଶୀଘ୍ର କହିଦିଅ ମାଧବୀ । କହିଦିଅ, ମତେ ତମେ ଭଲପାଅ । କିନ୍ତୁ ଏପରି କିଛି ହେଲା ନାହିଁ । ଚା' ନେଇ ଆସି ମାଧବୀ ତାକୁ ତା'ର କାମ କଥା ପଚାରିଲା ; ତା'ର ଦେହ କିପରି ଅଛି ପଚାରିଲା । ପୁଣି ଯେତେବେଳେ ମାଧବୀ ତାକୁ ସେମାନେ ଉଭୟେ ଜାଣିଥିବା ବନ୍ଧୁଙ୍କ ବିଷୟରେ ପଚାରିଲା, ଇନ୍ଦ୍ରନାଥ ତା'ର ଉତ୍ତର ନଦେଇ କହିଲା, ତମେ ମତେ କାହିଁକି ଡାକିଥିଲ ମାଧବୀ ?

ତମେ ମତେ ଟେଲିଫୋନ କରି ନଥିଲ, ସେଥିପାଇଁ, ମାଧବୀ ସ୍ୱଚ୍ଛନ୍ଦ ଭାବରେ କହିଲା । ଇନ୍ଦ୍ରନାଥ ଚୁପ୍ ରହିଲା । ସେ ଜାଣିଥିଲା ସେ ଯାହା ବି କହିବ ମାଧବୀ ତା'ର ସୂତ୍ର ନେଇ ପୁଣି ଏକ ଅତି ସାଧାରଣ ସାମାଜିକ ଦୈନନ୍ଦିନ ବିଷୟର ଉତ୍‌ଥାପନ କରିବ । ମାଧବୀ ତା ଆଡ଼କୁ ଅନାଇଲା ; କିନ୍ତୁ ସେ ଚୁପ୍ ରହିଲା । ମାଧବୀ ତାକୁ ଆଉ କ'ଣ ପଚାରିଲା ; କିନ୍ତୁ ଇନ୍ଦ୍ରନାଥ ଚୁପ୍ ରହିଲା । ଶେଷରେ ମାଧବୀ ହାରିଗଲା ; କହିଲା, ସେଦିନ ତମେ ମତେ ଯାହା କହିଥିଲ, ମୁଁ ସେ ବିଷୟରେ ଅନେକ ଭାବିଲି ।

କ'ଣ ଭାବିଲ ମାଧବୀ ? କ'ଣ ଠିକ୍ କଲ ତମେ ?

ମୁଁ ଅନେକ ଭାବିଲି, କିନ୍ତୁ କିଛି ଠିକ୍ କରି ପାରିଲି ନାହିଁ ।

ଏଥିରେ ଠିକ୍ କରିବାର କ'ଣ ଅଛି ? ତମେ ମତେ ଭଲପାଅ ଅଥବା ତମେ ମତେ ଭଲପାଅ ନାହିଁ । ତମେ ନିଶ୍ଚୟ ତମର ମନକୁ ଜାଣ ।

ମନକୁ ଜାଣିବା କ'ଣ ଏତେ ସହଜ ? ମାଧବୀ କହିଲା ଏବଂ ଓଲଟା ପ୍ରଶ୍ନ କଲା, କେବଳ ଜଣକ ପକ୍ଷରେ କ'ଣ ପ୍ରେମ କରିବା ସମ୍ଭବ ?

ତା ମାନେ କ'ଣ କେବଳ ମୁଁ ତମକୁ ଭଲପାଉଛି ଏବଂ ତମ ପକ୍ଷରୁ ତା'ର କୌଣସି ପ୍ରତିକ୍ରିୟା ନାହିଁ ?

ମୁଁ ସେକଥା ତ କହିନାହିଁ ! ମୁଁ କେବଳ ଏଇଭଳି ସ୍ଥିତିର ସମ୍ଭାବନା ବିଷୟରେ କହୁଥିଲି । ଏକଥା କ'ଣ ସମ୍ଭବ ନୁହେଁ ଯେ ଜଣେ ଆଉ ଜଣକୁ ଭଲପାଏ ; କିନ୍ତୁ ଅନ୍ୟ ଜଣକ ସେ ବିଷୟରେ ସଚେତନ ନୁହେଁ ? ଏଭଳି ପରିସ୍ଥିତିରେ ପ୍ରେମର ଅର୍ଥ କ'ଣ ?

ଏ ବିଷୟରେ ଉଭୟଙ୍କ ଭିତରେ ତର୍କବିତର୍କ ହେଲା, କିନ୍ତୁ ଶେଷରେ ଇନ୍ଦ୍ରନାଥକୁ ଫେରିବାକୁ ପଡ଼ିଲା ମାଧବୀ ପାଖରୁ ବିନା କୌଣସି ପ୍ରତିଶ୍ରୁତି ପାଇ । ସେମାନଙ୍କର

ପ୍ରତିଟି ସାକ୍ଷାତରେ ଇନ୍ଦ୍ରନାଥ ଅନୁଭବ କଲା ଯେ ସେମାନେ ପରସ୍ପରର ନିକଟବର୍ତ୍ତୀ ହେଉଛନ୍ତି, ସେମାନଙ୍କର ଆଲୋଚନାସବୁ ପ୍ରତିଥର ଯାଇ ତାର୍କିକ ତତ୍ତ୍ୱରେ ପହଞ୍ଚୁଥିଲା । ମାଧବୀ ତାକୁ କେବେହେଲେ ତା ପ୍ରତି ନିଜର ମନୋଭାବ ବିଷୟରେ କିଛି କହୁନଥିଲା ଏବଂ ଇନ୍ଦ୍ରନାଥ ପାଇଁ ଏ ଏକ ଧୈର୍ଯ୍ୟର ପରୀକ୍ଷା ଥିଲା । ପ୍ରତିଟି ସାକ୍ଷାତ୍‌କାର ପରେ ସେ ମାଧବୀକୁ ଆହୁରି ଅଧିକ ଭଲପାଇବାରେ ଲାଗିଥିଲା । ମାଧବୀ ପାଖରେ ବସି କଥାବାର୍ତ୍ତା କରିବାବେଳେ ତା'ର ପ୍ରବଳ ଇଚ୍ଛା ହେଉଥିଲା, ସେ ତା'ର ଜୀବନକୁ ସଂପୂର୍ଣ୍ଣ ଅଧିକାର କରିନେଇଥିବା ଏଇ ଝିଅଟିକୁ ନିଜର ଦୁଇ ବାହୁରେ ଚିରକାଳ ପାଇଁ ଅଟକାଇ ରଖିବ । କିନ୍ତୁ ତାକୁ ବାହୁରେ ନେବା ତ ଦୂରର କଥା, ତାକୁ ଛୁଇଁବା ବି ଇନ୍ଦ୍ରନାଥ ପକ୍ଷରେ ଦୁଷ୍କର ଥିଲା ।

ସିନେମା ହଲରେ ପାଖରେ ବସି ପର୍ଦ୍ଦା ଉପରେ ଭାବପ୍ରବଣ ଦୃଶ୍ୟ ଦେଖି ଇନ୍ଦ୍ରନାଥ ମାଧବୀ ଉପରକୁ ଆଉଜି ପଡ଼ିବାବେଳେ ମାଧବୀ ନିଜକୁ ସଂଯତ କରି ନେଉଥିଲା । ସୋଫା ଉପରେ ଲାଗି ଲାଗି ବସି କଥାବାର୍ତ୍ତା କଲାବେଳେ ଇନ୍ଦ୍ରନାଥ କେବେ କେବେ ମାଧବୀର କାନ୍ଧ ଉପରେ ହାତ ରଖିଲେ ମାଧବୀ ଆପତ୍ତି କରୁନଥିଲା ; କିନ୍ତୁ ନିଜର ହାତକୁ ଦୃଢ଼ କରି ମାଧବୀକୁ ନିଜ ଆଡ଼କୁ ଟାଣିବାର ସାମାନ୍ୟ ଉଦ୍ୟମ କଲାବେଳେ ମାଧବୀ ହଠାତ ସ୍ଥିର ହୋଇ ବସିରହୁଥିଲା ଏବଂ ଇନ୍ଦ୍ରନାଥ ହାର ମାନି ନିଜର ହାତକୁ ଉଠାଇ ଆଣୁଥିଲା । କେବେ କେବେ ଇନ୍ଦ୍ରନାଥ ମାଧବୀର ଊରୁ କଟୀ ଉପରେ ହାତ ରଖୁଥିଲା ; କିନ୍ତୁ ତା'ର ହାତ ସେଠାରୁ ଘୁଞ୍ଚି ମାଧବୀର ଦେହର ଅନ୍ୟ ଅଂଶ ଆଡ଼କୁ ଚାଲିଯିବା ଆଗରୁ ମାଧବୀ ନିଜର ହାତ ଆଣି ତା ହାତ ଉପରେ ରଖି ତାକୁ ଅବରୋଧ କରୁଥିଲା । ମାଧବୀର ଦେହ ଖରାପ ଥିଲାବେଳେ ତା'ର ଦେହର ଉତ୍ତାପ ଦେଖିବା ପାଇଁ ଇନ୍ଦ୍ରନାଥର ହାତ କେବଳ ମାଧବୀର କପୋଳ ଓ ଗ୍ରୀବା ପର୍ଯ୍ୟନ୍ତ ହିଁ ଯିବା ପାଇଁ ସମର୍ଥ ହେଉଥିଲା ।

ବର୍ତ୍ତମାନ ଇନ୍ଦ୍ରନାଥ ମାଧବୀକୁ ଏତେ ଭଲ ପାଉଥିଲା ଯେ ସେ ନିଜର ଦୈହିକ ଦାବିକୁ ମାଧବୀ ଉପରେ ବାଧ୍ୟକରି ଲଦିଦେଇ ସେମାନଙ୍କର ସଂପର୍କକୁ କଳୁଷିତ କରିବାକୁ ଚାହୁଁ ନଥିଲା । ସେମାନେ ବର୍ତ୍ତମାନ ସବୁ ବିଷୟରେ ସ୍ପଷ୍ଟ ଓ ନିଷ୍କପଟ ଭାବେ ଆଲୋଚନା କରୁଥିଲେ ଏବଂ ଦୈହିକ ଓ ଯୌନ ସଂପର୍କ ବିଷୟରେ କଥାବାର୍ତ୍ତା କରିବା ପାଇଁ ମାଧବୀର କୌଣସି ଲଜ୍ଜା ବା ସଂକୋଚ ନଥିଲା । ଏ ବିଷୟରେ ସେମାନେ ହାସପରିହାସ ମଧ୍ୟ କରୁଥିଲେ ; କିନ୍ତୁ ଇନ୍ଦ୍ରନାଥ ଆଉ ମାଧବୀର ନିକଟତର ହୋଇପାରି ନଥିଲା । ଦିନେ ଇନ୍ଦ୍ରନାଥ ପରିହାସ ଛଳରେ ମାଧବୀକୁ ପଚାରିଲା, ତମେ ଫ୍ରିଜିଡ୍ ନୁହଁ ତ ? ମାଧବୀ ସେଇଭଳି ହସି ହସି କହିଲା, ପରୀକ୍ଷା କରି ଦେଖ । ସେଦିନ ଆଉକିଛି କହିବାକୁ ବା କରିବାକୁ ଇନ୍ଦ୍ରନାଥର ସାହସ ହେଲା ନାହିଁ । କିନ୍ତୁ ଆଉ ଦିନେ

ଯେତେବେଳେ ଦୁଇବାହୁକୁ ପ୍ରସାରିତ କରି ସେ ମାଧବୀକୁ ତା ପାଖକୁ ଆସିବାକୁ ଆଖିର ନିମନ୍ତ୍ରଣ ଦେଲା, ମାଧବୀ ବ୍ୟଗ୍ରତାର ସହିତ ଆସି ତା ହାତରେ ଧରାଦେଇ ନିଜକୁ ସଂପୂର୍ଣ୍ଣ ସମର୍ପଣ କରିଦେଲା ।

ମାଧବୀ ଯେ କେବଳ ଶୀତଳ ନଥିଲା ତା ନୁହେଁ, ମାଧବୀ ଥିଲା ଇନ୍ଦ୍ରନାଥର ସ୍ୱପ୍ନବହିର୍ଭୂତ ଏକ ଆଗ୍ନେୟ ଚମତ୍କାର । ତା'ର ପାଞ୍ଚଫୁଟ ଦୁଇଇଞ୍ଚର ଦେହ ଥିଲା ସୀମାହୀନ ବିସ୍ତାରର ବାଲୁକାସ୍ତୂପ, ମରୁଦ୍ୟାନ, ମରୀଚିକା ସମେତ ଏକ ଜଳନ୍ତା ମରୁସ୍ଥଳ ଯାହାର ଉତ୍ତାପରୁ ନିସ୍ତାର ଥିଲା ପରିତୃପ୍ତିର ନିଶାର୍ଦ୍ଧରେ । ତା'ର ଆଖି ଥିଲା ଅଗ୍ନିଗର୍ଭ ଉଲ୍‌କା, ଯାହାର ଦୃଷ୍ଟିପାତ ମନର ଶୂନ୍ୟ ବାୟୁମଣ୍ଡଳକୁ ଦଗ୍‌ଧ କରି ସିଧା ପହଞ୍ଚୁଥିଲା ଅନ୍ତରାତ୍ମାରେ । ତା'ର ଓଠ ଥିଲା ଜ୍ୱାଳାମୁଖୀ, ଯାହାର ପ୍ରତିଟି ଚୁମ୍ବନ ଗୋଟିଏ ଗୋଟିଏ ବିସ୍ଫୋରଣ ଥିଲା । ତା'ର ଆଶ୍ଳେଷ ଥିଲା ବହ୍ନିବଳୟ, ତା'ର ପ୍ରଶ୍ୱାସ ଥିଲା ନିଦାଘର ନିର୍ମମ ଝଞ୍ଜା, ଚୂର୍ଣ୍ଣକୁନ୍ତଳ ଥିଲା ଅଗ୍ନିଶିଖା ଏବଂ ପ୍ରତିଟି ଲୋମ ଥିଲା ଏକ ସ୍ୱତନ୍ତ୍ର ସ୍ଫୁଲିଙ୍ଗ । ତା'ର ଅଭ୍ୟନ୍ତର ଥିଲା ଏକ ପ୍ରଜ୍ୱଳିତ ଯଜ୍ଞକୁଣ୍ଡ, ଯାହା ଭିତରୁ ଇନ୍ଦ୍ରନାଥ ପ୍ରତିଟି ଥର ପୋଡ଼ି ସିଝି ତରଳି ଶୁଦ୍ଧପୂତ ଓ ଦୀପ୍ତିମାନ ହୋଇ ବାହାରି ଆସୁଥିଲା ।

ମାଧବୀ ଯେତେବେଳେ ପୁଣି ଶାଢ଼ି ପିନ୍ଧି ତା ଆଗରେ ବସି ଅଳ୍ପ ଅଳ୍ପ ହସୁଥିଲା, ଇନ୍ଦ୍ରନାଥ ଏଇ ରୋଗା ପତଳା ଝିଅଟିକୁ ଆଦୌ ବୁଝିପାରୁନଥିଲା । ବିଛଣା ଉପରେ ମାଧବୀର ଏକ ସଂପୂର୍ଣ୍ଣ ଭିନ୍ନ ରୂପ ଥିଲା । ତା ଓଠରେ ହସ ନଥିଲା, ମୁହଁରେ ଶାନ୍ତଭାବ ନଥିଲା, ଆଖିରେ କୋମଳତା ନଥିଲା । ସେ ସଂପୂର୍ଣ୍ଣ ଦେହମୟ ହୋଇ ଇନ୍ଦ୍ରନାଥକୁ ଗ୍ରାସ କରିଦେଉଥିଲା । ଶାନ୍ତଶିଷ୍ଟ ଶୀର୍ଣ୍ଣକାୟ ଝିଅଟି ହଠାତ ପରିବର୍ତ୍ତିତ ହୋଇ ହାତ ଗୋଡ଼ ଓଠ ଛାତିରେ ରୂପାନ୍ତରିତ ଏକ ଉଚ୍ଛୃଙ୍ଖଳ ଅବୟବ ହୋଇ ଯାଉଥିଲା । ଇନ୍ଦ୍ରନାଥ ମାଧବୀର ଏଇ ଅବତାରଟି ପାଖରେ ନିଜକୁ ସମଗ୍ର ଭାବେ ସମର୍ପିତ କରି ସୁଖୀ ଥିଲା ।

ପୁଣି ସବୁ ହଠାତ ବଦଳିଗଲା, ଯେଉଁଦିନ କୌଣସି ବିନା କାରଣରେ ମାଧବୀ ଇନ୍ଦ୍ରନାଥକୁ ତାକୁ ଛୁଇଁବାକୁ ଦେଲାନାହିଁ । ସେମାନଙ୍କର ଘନିଷ୍ଠତା ପୂର୍ବରୁ ଏକଥା ଘଟିଥିଲେ ଇନ୍ଦ୍ରନାଥ ମାଧବୀ ପାଖରୁ ଏ କଥାର ସ୍ପଷ୍ଟୀକରଣ ଚାହିଁଥାନ୍ତା । ବର୍ତ୍ତମାନ କିନ୍ତୁ ଦୁହିଁଙ୍କ ଭିତରେ ପରସ୍ପରକୁ ଜାଣିବାର ଚରମ ଅବସ୍ଥାରେ ମାଧବୀର ଏ ବ୍ୟବହାର ଇନ୍ଦ୍ରନାଥକୁ ଅସମଞ୍ଜସରେ ପକାଇଦେଲା । ସେ ଚୁପଚାପ ନିଜର ହାତକୁ ଫେରାଇ ଆଣିଲା ଏବଂ ତା ପରଠାରୁ ମାଧବୀକୁ ଛୁଇଁବା ପାଇଁ ଆଉ କୌଣସି ଚେଷ୍ଟା କଲା ନାହିଁ ।

ଏ ଘଟଣା ପରେ ଯେତେବେଳେ ପୁଣି ସେମାନଙ୍କର ଦେଖାହେଲା, ଇନ୍ଦ୍ରନାଥକୁ ସେମାନଙ୍କର ସାକ୍ଷାତ୍‌କାରଟି ନିତାନ୍ତ କୃତ୍ରିମ ଓ ଛଳନାପୂର୍ଣ୍ଣ ମନେହେଲା । ତା'ର

ଦେହ ଓ ମନର ଗୋଟିଏ ବିଶେଷ ଅଂଶ ହୋଇଯାଇଥିବା ଝିଅଟି ବର୍ତ୍ତମାନ ତା ପାଖରୁ ଦୂରରେ ବସିଥିଲା । ଦୁହିଁଙ୍କ ଭିତରେ ସ୍ପର୍ଶମାତ୍ରର ବ୍ୟବଧାନ ଥିଲା ଏବଂ ସେମାନେ ସୌଜନ୍ୟପୂର୍ଣ୍ଣ କଥାବାର୍ତ୍ତା କରୁଥିଲେ । ମାଧବୀର ଶାଢ଼ି ଭିତରୁ ଇନ୍ଦ୍ରନାଥ ଆଉ ସେଇ ଅନ୍ୟ ମୂର୍ତ୍ତିଟିକୁ ଦେଖିପାରୁ ନଥିଲା । ଛାତି ଭିତରେ ଦୀର୍ଘଶ୍ୱାସକୁ ଚାପିଧରି ଇନ୍ଦ୍ରନାଥ ମାଧବୀ ପାଖରୁ ଉଠିଆସିଲା ।

ମାଧବୀର ବ୍ୟବହାରର କାରଣ ଖୋଜିବାକୁ ଚେଷ୍ଟା କଲା ଇନ୍ଦ୍ରନାଥ । ମାଧବୀ କ'ଣ ଆଉ କାହାକୁ ଭଲପାଇ ବସିଛି ? ମାଧବୀ ପାଇଁ କ'ଣ ଇନ୍ଦ୍ରନାଥର ଆଉ ଶାରୀରିକ ଆକର୍ଷଣ ରହିଲା ନାହିଁ ଏବଂ ସେ ତା'ର ଘୃଣାର ପାତ୍ର ହୋଇଗଲା ? ମାଧବୀ କ'ଣ ନିଜର ଶାରୀରିକତା ପାଇଁ ଅନୁତାପର ପରିଣତି ? କୌଣସି ନିଷ୍କର୍ଷରେ ପହଞ୍ଚି ପାରିଲା ନାହିଁ ଇନ୍ଦ୍ରନାଥ, କାରଣ ମାଧବୀ ଦୃଢ଼ପ୍ରତିଜ୍ଞ ପ୍ରକୃତିର ଓ ନିଜର ବିଚାର ବିଷୟରେ ଆତ୍ମବିଶ୍ୱାସୀ ଥିଲା । ନିଜର କୌଣସି ନିଷ୍ପତ୍ତି ବିଷୟରେ ମାଧବୀ କେବେହେଲେ ପଶ୍ଚାତ୍ତାପ କରୁନଥିଲା । ତାହେଲେ କାହିଁକି ନିଜକୁ ତା ପାଖରୁ ପ୍ରତ୍ୟାହାର କରିନେଲା ମାଧବୀ ?

ପୁଣି ନିଜର ପ୍ରଥମ ଅବସ୍ଥାକୁ ଫେରିଗଲା ଇନ୍ଦ୍ରନାଥ । ସେତେବେଳର ଦୁଃଖ ଥିଲା ଅପ୍ରାପ୍ତିର ; ଏକ ସଂପୂର୍ଣ୍ଣ ଓ ଶେଷହୀନ ପ୍ରାପ୍ତି ଦେଇ ସେ ବର୍ତ୍ତମାନ ପୁଣି ତା'ର ପ୍ରାରମ୍ଭିକ ଅଭାବର ପର୍ଯ୍ୟାୟକୁ ଫେରି ଆସିଥିଲା । ସେ ପ୍ରତିଟି ମୁହୂର୍ତ୍ତରେ ମାଧବୀର ବ୍ୟବହାରର କାରଣ ଖୋଜିବାରେ ଲାଗିଲା । ମାଧବୀକୁ ପାଇବା ନ ପାଇବା, ସେମାନଙ୍କର ଭଲପାଇବା, ଘନିଷ୍ଠତା ସବୁର ଊର୍ଦ୍ଧ୍ୱରେ ଥିଲା ତା'ର ଏଇ ଉତ୍ତରହୀନ ଜିଜ୍ଞାସା । ଏଇଭଳି ମାନସିକ ଅବସ୍ଥାରେ ମାଧବୀ ସହିତ ତା'ର ସାକ୍ଷାତକାର ବି ହ୍ରାସ ପାଇବାରେ ଲାଗିଲା ; କାରଣ ମାଧବୀକୁ ସାମାନ୍ୟ ସୌଜନ୍ୟମୂଳକଭାବେ ଭେଟିବା ଇନ୍ଦ୍ରନାଥ ପାଇଁ ବର୍ତ୍ତମାନ ଅତୀବ ଦୁଃଖଦାୟକ ଥିଲା । ସେ ଭାବିଲା ସେ ଭୁଲିଯିବ ମାଧବୀକୁ, ଭୁଲିଯିବ ସେମାନଙ୍କର ପରିଚୟର ପ୍ରଥମ ପର୍ବ ଓ ବର୍ଦ୍ଧମାନ ସଂପର୍କର ଘନିଷ୍ଠ ମୁହୂର୍ତ୍ତମାନ ; କିନ୍ତୁ ସେ ଉପଲବ୍ଧି କଲା, ମନେପକାଇବା ଯେତିକି ସହଜ, ଭୁଲିଯିବା ମଧ୍ୟ ସେତିକି କଷ୍ଟସାଧ୍ୟ ।

ଇନ୍ଦ୍ରନାଥ ଭାବିଥିଲା ସମୟ ହିଁ ଉପଶମ ଓ ସମାଧାନ ଆଣିଦେବ; କିନ୍ତୁ ଯେତିକି ସମୟ କଟିବାରେ ଲାଗିଲା, ଇନ୍ଦ୍ରନାଥ ମାଧବୀ ବିଷୟରେ ସେତିକି ବେଶି ବେଶି ଭାବିବାରେ ଲାଗିଲା । ମାଧବୀର ପ୍ରତିଟି ସ୍ମରଣ କ୍ରମେ ତା ପାଇଁ ଅଧିକରୁ ଅଧିକ ଦୁଃଖଦାୟକ ହେଲା । ସମୟ ଅସମୟରେ ମାଧବୀ ଆସି ତା'ର ମନକୁ ଅଭିଭୂତ କରିବାରେ ଲାଗିଲା । ଇନ୍ଦ୍ରନାଥ ଆଉ ଶାନ୍ତିରେ ରହିପାରିଲା ନାହିଁ । ଯେତେବେଳେ ମାଧବୀର ସ୍ମରଣ ତାକୁ ବାରମ୍ବାର ବ୍ୟସ୍ତ କରିବାରେ ଲାଗିଲା, ଇନ୍ଦ୍ରନାଥ

ତାକୁ ମନଭିତରେ କହିଲା : ମାଧବୀ ମତେ ମୋର ବର୍ତ୍ତମାନ ଅଭିଶପ୍ତ ଜୀବନରୁ ମୁକ୍ତି ଦେଇଦିଅ । ତମେ ପୁଣି ମୋର ଅପରିଚିତ ହୋଇଯାଅ । ମୁଁ ତମକୁ ପୁଣି ପ୍ରଥମଥର ପାଇଁ ଭେଟି ମୋର ନିବେଦନ ଜଣାଇବି । ତମେ ମୋର ପ୍ରେମକୁ ପ୍ରତ୍ୟାଖ୍ୟାନ କରିବ ; କିନ୍ତୁ ମତେ ପ୍ରତ୍ୟାଖ୍ୟାନ କରିବ ନାହିଁ ଏବଂ ମାଧବୀ, ତମକୁ ଛୁଇଁବା ପାଇଁ ଚେଷ୍ଟା କରିବାରେ ମୁଁ ମୋର ଅବଶିଷ୍ଟ ଜୀବନକାଳ ବ୍ୟତୀତ କରିଦେବି ।

# ଫଟୋଗ୍ରାଫ

ଛୁଟିଦିନ ପୁରୁଣା କାଗଜପତ୍ର ଭିତରୁ କ'ଣ ଗୋଟାଏ ଜରୁରୀ ଚିଠି ଖୋଜିବାବେଳେ ଶ୍ରଦ୍ଧାନନ୍ଦର ଆଖି ପଡ଼ିଲା ଫଟୋଗ୍ରାଫଟି ଉପରେ । ଫଟୋରେ ଶ୍ରଦ୍ଧାନନ୍ଦ ଓ ତା'ର ପାଞ୍ଚଜଣ ବନ୍ଧୁ ଛିଡ଼ା ହୋଇଥିଲେ । ସମସ୍ତଙ୍କ ମୁହଁରେ ରଙ୍ଗ ବୋଳା ହୋଇଥିଲା ଓ ସମସ୍ତେ ହସୁଥିଲେ । ହୋଲିଦିନ ସେମାନଙ୍କ ହଷ୍ଟେଲ ଆଗରେ କିଏ ଏଇ ଫଟୋଟି ଉଠାଇଥିଲା । ଫଟୋ ପଛରେ ଯେଉଁ ତାରିଖଟି ଲେଖା ହୋଇଥିଲା, ସେଇଟି ଥିଲା ତିରିଶ ବର୍ଷ ତଳର ।

ଫଟୋ ଆଡ଼କୁ ଅନାଇ ଶ୍ରଦ୍ଧାନନ୍ଦ ନିଜ ମୁଣ୍ଡରେ ହାତ ବୁଲାଇଲା । ଯଦିଓ ଫଟୋରେ ସେ ସୁସ୍ଥସବଳ ଦେଖାଯାଉଥିଲା, ବର୍ତ୍ତମାନ ସେ ଶୁଖିଲା ଓ ରୋଗା ଏବଂ ଅନେକଦିନୁ ଚନ୍ଦା ମଧ୍ୟ ହୋଇଯାଇଥିଲା । ଫଟୋଟିକୁ ଦେଖି ତା'ର ମନ ଭିତରେ ପ୍ରଥମ ପ୍ରତିକ୍ରିୟା ହେଲା ଯେ ସେ ଏଇଟିକୁ ନେଇ ତା'ର ସ୍ତ୍ରୀ ଓ ପିଲାମାନଙ୍କୁ ଦେଖାଇବ । ଫଟୋ ଦେଖି ସେମାନେ ଅନ୍ତତଃ ଜାଣିବେ ଯେ ଶ୍ରଦ୍ଧାନନ୍ଦ ଦିନେ ସୌମ୍ୟଦର୍ଶନ ଥିଲା । ପାରିବାରିକ ଚକ୍ରରେ ପଡ଼ି ବର୍ତ୍ତମାନ ଚିଡ଼ିଚିଡ଼ା ଏବଂ ଚନ୍ଦା ହୋଇଯାଇଛି ।

ଫଟୋଟିକୁ ଆଉ ଥରେ ଭଲଭାବରେ ଦେଖି ତା'ର ବନ୍ଧୁମାନଙ୍କୁ ଚିହ୍ନିବାକୁ ଚେଷ୍ଟାକଲା ଶ୍ରଦ୍ଧାନନ୍ଦ । କେବଳ ଜଣକୁ ସେ ଚିହ୍ନିପାରିଲା । ଅଭିରାମ ମଧ୍ୟ ଏଇ ସହରରେ ରହୁଥିଲା ଏବଂ କେବେ କେମିତି ସେମାନଙ୍କର ସାକ୍ଷାତ ମଧ୍ୟ ହୋଇଯାଉଥିଲା, ଯଦିଓ ସେମାନଙ୍କ ଭିତରେ ବିଶେଷ କୌଣସି ସୌହାର୍ଦ୍ଦ୍ୟ ନଥିଲା । ଅନ୍ୟ ବନ୍ଧୁମାନେ ହଠାତ ଚିହ୍ନାପଡ଼ିଲେ ନାହିଁ । ପାଠ ପଢ଼ିସାରିବା ପରେ ସମସ୍ତେ ଅଲଗା ହୋଇ ଯାଇଥିଲେ; ଆଉ ଚାରିଜଣ ବି କିଏ କୁଆଡ଼େ ଚାଲିଯିବେଣି । କଲେଜରେ ପାଠ ପଢ଼ିବାବେଳେ ଏଇ ପାଞ୍ଚଜଣ ଯେ ତା'ର ସବୁଠାରୁ ଘନିଷ୍ଠ ବନ୍ଧୁ ଥିଲେ, ଏ ବିଷୟରେ ମଧ୍ୟ ସନ୍ଦେହ ହେଲା ଶ୍ରଦ୍ଧାନନ୍ଦର । ଏମିତି ହୁଏତ କେହି ଫଟୋଟି ଉଠାଇ ଦେଇଥିଲା ସେମାନେ ସବୁ ହୋଲି ଖେଳି ହଷ୍ଟେଲ ଆଗରେ ସେଇ ଜାଗାରେ ଠିଆ ହୋଇଥିବାବେଳେ ।

ଏ କଥାରୁ ହଷ୍ଟେଲ କଥା ମନେପଡ଼ିଲା । ସ୍ତ୍ରୀ ପିଲା ବନ୍ଧୁମାନଙ୍କ ଆଗରେ

ତା'ର କଲେଜବେଳ କଥା କହିବାବେଳେ ଶ୍ରଦ୍ଧାନନ୍ଦ କହୁଥିଲା, କି ମଜାର ଜୀବନ ଥିଲା ସେତେବେଳେ । ମଜା ଅର୍ଥ ଏତିକି ଥିଲା ଯେ ପରୀକ୍ଷା ବ୍ୟତୀତ ଆଉ କୌଣସି ଚିନ୍ତା ନଥିଲା, ହଷ୍ଟେଲ ସୁପରିଟେଣ୍ଡେଣ୍ଟଙ୍କ ବ୍ୟତୀତ ଆଉ କାହାରିକି ଭୟ ନଥିଲା ଏବଂ ସିଗାରେଟ୍ ପିଇଲେ କି ସିନେମା ଦେଖିଲେ ଆକଟ କରିବାକୁ କୌଣସି ଅଭିଭାବକ ନଥିଲେ ହାତପାଖରେ । ଅପରପକ୍ଷରେ, ହଷ୍ଟେଲ ଖାଇବା ଅତ୍ୟନ୍ତ ନିକୃଷ୍ଟ ଧରଣର ଥିଲା, ପ୍ରତିଦିନ ପୂଜାରୀ ସହିତ ଝଗଡ଼ା ହେଉଥିଲା ସେମାନଙ୍କର । ଖରାଦିନେ ମେସ୍ ବନ୍ଦ ହୋଇଯାଉଥିଲା ଏବଂ ସେମାନଙ୍କୁ ଖରାରେ ଯାଇ ବହୁତ ଦୂରରେ ଥିବା ହୋଟେଲରେ ବେଶି ପଇସା ଦେଇ ଖାଇବାକୁ ପଡୁଥିଲା । ଖରାଦିନେ ସକାଳ ନ'ଟାରୁ ପାଣି ବନ୍ଦ ହୋଇଯାଉଥିଲା । ବେଶି ବର୍ଷା ହେଲେ ପାହାଚ ପାଖରେ ପାଣି ଜମିଯାଉଥିଲା । ଗାଧୁଆ ଘରେ ପୁରୁଣା ଇଲେକଟ୍ରିକ ତାର ଯୋଗୁଁ ଓଦାକାନ୍ଥକୁ ଛୁଇଁଲେ ଶକ୍ ଲାଗୁଥିଲା । ରାତିରେ ଡେରିରେ ହଷ୍ଟେଲ ଫେରିଲେ ଫାଟକକୁ ଡେଇଁ ପଶିବାକୁ ହେଉଥିଲା ଏବଂ ଚୌକିଦାର ରେଜିଷ୍ଟରରେ ନାଁ ଦସ୍ତଖତ କରିବାକୁ ବାଧ କରୁଥିଲା ।

ତଥାପି କେମିତି କଲେଜବେଳ କଥା ମନେପକାଇଲେ ସବୁକିଛି ରୋମାନୀ ରୋମାନୀ ଜଣାପଡୁଥିଲା । ଶ୍ରଦ୍ଧାନନ୍ଦର ପ୍ରଥମେ ମନେପଡୁଥିଲେ ତାଙ୍କ କ୍ଲାସ୍‌ର ଝିଅମାନେ ଏବଂ ବିଶେଷ କରି ସେଇ ଝିଅଟି, ଯାହାର ନାଁ ସେମାନେ ରଖିଥିଲେ ବ୍ଲସମ୍ । (କାହିଁକି ଏମିତି ନାଁ ରଖିଥିଲେ ? ସେକ୍‌ସପିଅରଙ୍କ ନାଟକର କୋଉ ପଂକ୍ତିରୁ ନା ସେତେବେଳେ ଚାଲିଥିବା କୋଉ ସିନେମା ନାୟିକାର ନାଁ ନେଇ ?) ଝିଅଟି ସତେଜ, ସୁନ୍ଦର ଓ ପ୍ରାଣବନ୍ତ ଥିଲା । ବର୍ତ୍ତମାନ ମିସେସ୍ ଅମୁକ ନାଁର ପିଲାଝିଲା, ନାତିନାତୁଣୀ ଥିବା ସଂସାରୀ ଗମ୍ଭୀର ବୁଢ଼ୀଟିକୁ ଦେଖିଲେ କ'ଣ ଆଉ ଶ୍ରଦ୍ଧାନନ୍ଦର ମନେପଡ଼ିବ ସେଇ ତିରିଶବର୍ଷ ତଳର ଧାଡ଼ି ଧାଡ଼ି କାଠ ବେଞ୍ଚର ଇଂଲିଶ ଲିଟରେଚର କ୍ଲାସ୍ କଥା ? ସେଇ ସ୍ତ୍ରୀଲୋକଟି ସହିତ କଥା କହିଲାବେଳେ କ'ଣ ଶ୍ରଦ୍ଧାନନ୍ଦର ଛାତି ଭିତରେ ହାତୁଡ଼ି ପିଟିହେବ ନା ତା'ର ଗଳା ଶୁଖିଯିବ ? ତା'ର ନୋଟ ଖାତା ମାଗି ପଠାଇଥିବା ଛୋଟ କାଗଜ ଟୁକୁଡ଼ାଟିକୁ ଦେଖିଲେ କ'ଣ ତା'ର ଆଉ ଗୋଟିଏ ଛଟପଟ ରାତି ଅନିଦ୍ରାରେ କଟିଯିବ ?

ଅନେକଦିନ ପର୍ଯ୍ୟନ୍ତ କାଗଜ ଟୁକୁଡ଼ାଟିକୁ ଯତ୍ନରେ ପାଖରେ ରଖିଥିଲା ଶ୍ରଦ୍ଧାନନ୍ଦ । ତା'ର ମନେହେଲା ଏଇ ପୁରୁଣା ଫଟୋଗ୍ରାଫଟି ଭଳି ହୁଏତ କାଗଜଟିକୁ ହଠାତ ଆବିଷ୍କାର କରିବ । ଏହି ଆଶାରେ ସେ ଯେତେ ଯୁଆଡ଼େ ପୁରୁଣା କାଗଜ ଥିଲା, ସବୁ ବାହାରକରି ଖୋଜିଲା । କାଗଜମାନ ନିତାନ୍ତ ଶୁଷ୍କ, ନୀରସ ସାଂସାରିକ ଦଲିଲ ଦସ୍ତାବିଜ ଥିଲେ । ଇନସ୍ୟୁରାନସ ପଲିସି, ନିଯୁକ୍ତିପତ୍ର, ରସିଦ, ସାର୍ଟିଫିକେଟ, ପାସ୍‌ବୁକ୍, ଲାଇସେନ୍‌ସ ଇତ୍ୟାଦି ଭିତରେ 'ତମର ହ୍ୟାମଲେଟ ନୋଟ୍‌ଟା ମୋର ଦରକାର' ଭଳି

କୌଣସି ଅପରିଣତ ହାତରେ ଲେଖା କାଗଜ ଟୁକୁଡ଼ା ନଥିଲା । ନିଜର ଜ୍ଞାତସାରରେ କେବେ ଏଇ କାଗଜଟିକୁ ଫିଙ୍ଗିଦେଇଥିବା ମନେପଡ଼ିଲା ନାହିଁ ଶ୍ରଦ୍ଧାନନ୍ଦର । ତେବେ ଜୀବନକ୍ରମରେ ନିଜର ଅଲକ୍ଷ୍ୟରେ ଯେପରି ତା'ର ବାଳ, ତା'ର ସ୍ୱାସ୍ଥ୍ୟ ଓ ତା'ର ସ୍ମୃତି ସବୁ ହଜିଗଲେ, ସେଇଭଳି କୋଉଠି ହଜିଗଲା ତା'ର ସଯତ୍ନରେ ରଖିଥିବା ଯୌବନର କାଗଜ ଟୁକୁଡ଼ାଟି ।

ଦେଖିବାକୁ ଗଲେ ତା ପାଖରେ ତା'ର ପୁରୁଣା ଦିନର କିଛି ବି ଜିନିଷ ନଥିଲା ତାକୁ ତା'ର ଚିନ୍ତାରହିତ ସବୁଜ ଶାନ୍ତ ଦିନଗୁଡ଼ିକୁ ମନେପକାଇ ଦେବା ପାଇଁ । ନିରପେକ୍ଷ ହୋଇ ଶ୍ରଦ୍ଧାନନ୍ଦ ଭାବିବାକୁ ଚେଷ୍ଟାକଲା ଏଇ ପୁରୁଣା ଦିନଗୁଡ଼ିକ ସତରେ କିପରି ଥିଲା । ଆଜିକାଲି ତା'ର ଜୀବନର ପ୍ରତିଟି ମୁହୂର୍ତ୍ତ ଥିଲା ଶୋଚନାଗ୍ରସ୍ତ କୌଣସି ନା କୌଣସି ସମସ୍ୟା ତାକୁ ଧରି ରଖୁଥିଲା ସବୁ ସମୟ । ପାଠ ପଢ଼ିଲାବେଳେ ଅବଶ୍ୟ ପରୀକ୍ଷାର ଏକ ପ୍ରଚ୍ଛନ୍ନ ଆତଙ୍କ ମୁଣ୍ଡ ଉପରେ ଝୁଲି ରହିଥିଲା ଏବଂ ଠିକ୍ ସମୟରେ ଘରୁ ମନିଅର୍ଡ଼ର ନ ଆସିବା ଭଳି ସାମୟିକ ସମସ୍ୟା ମଧ୍ୟ ସାମାନ୍ୟ ଚିନ୍ତା ଆଣିଦେଉଥିଲା । କିନ୍ତୁ ଏଗୁଡ଼ିକରେ ରକ୍ତଚାପ ବଢ଼ାଇଦେବାର କୌଣସି ସାମର୍ଥ୍ୟ ନଥିଲା ; ଏମାନେ ମନକୁ ଛୁଉଁଥିଲେ କୌଣସି ଚଳଚ୍ଚିତ୍ରରେ ଦେଖିଥିବା ଦୁଃଖଦ ଘଟଣାର ଫିକା ସ୍ମରଣ ଭଳି ।

ସେତେବେଳେ ଦେହ ଓ ମନର କ୍ଷମତା ଥିଲା ସବୁକିଛିର ସାମନା କରିବାକୁ ; ସବୁକିଛି ସ୍ୱୀକାର, ସଂବରଣ, ଗ୍ରହଣ କରିନେବାକୁ । ଦେହ ବିଷୟରେ କୌଣସି ଚିନ୍ତା ନଥିଲା । ଖରାରେ ସିଝିବା ବା ବର୍ଷାରେ ଭିଜିବାରେ ଭୟ ନଥିଲା । ଚା'ରେ ଠିକ୍ କେତେ ଚାମଚ ଚିନି ପଡ଼ିବ, ସେ ସମ୍ବନ୍ଧରେ କୌଣସି ବଦ୍ଧମୂଳ ବିଚାର ନଥିଲା ସେତେବେଳେ । ଦିନସବୁ ଘଣ୍ଟା ମିନିଟ ଅନୁସାରେ ଗାର କଟା ହୋଇ ଭାଗବଣ୍ଟା ହୋଇନଥିଲା । ଇଚ୍ଛାକୁ ଆଦରି ନେବାରେ ସଂକୋଚ ନଥିଲା, ଭବିଷ୍ୟତ ପାଇଁ ଉଦ୍‌ବେଗ ନଥିଲା । ଜୀବନ ଥିଲା ଆଗକୁ ଯିବାର ଏକ ପ୍ରଶସ୍ତ ରାସ୍ତା, ଯେଉଁଥିରେ ତମେ ଚାଲ କୁଦ ଦଉଡ଼ ଧାଅଁ ବସିରହ ଶୋଇଯାଅ ସ୍ୱପ୍ନ ଦେଖ-କୌଣସି ବାଧବାଧକତା ନାହିଁ । ତା ସହିତ ତୁଳନା କଲେ ବର୍ତ୍ତମାନର ଜୀବନ ଏକ ରୋକଠୋକ ସମୟ-ନିର୍ଘଣ୍ଟରେ ବନ୍ଧା ରେଳଯାତ୍ରା, ଯେଉଁଥିରେ ସବୁ କିଛି ନିୟନ୍ତ୍ରିତ : ତମର ଗତିପଥ, ବେଗ, ବିଶ୍ରାମ ନେବାର ସ୍ଥାନ ଓ ସମୟ ଟିକେଟରେ ଲିପିବଦ୍ଧ ଗନ୍ତବ୍ୟସ୍ଥଳ ।

ଶ୍ରଦ୍ଧାନନ୍ଦ ପୁଣି ଥରେ ଫଟୋଗ୍ରାଫ ଆଡ଼କୁ ଅନାଇଲା ଏବଂ ଦୀର୍ଘଶ୍ୱାସ ନେଲା । ପୁରୁଣାଦିନର ଏକମାତ୍ର ମୂର୍ତ୍ତ ଓ ସାକାର ଏଇ ପ୍ରମାଣପତ୍ରଟିରୁ ଧୂଳି ପୋଛି ତାକୁ ଯତ୍ନରେ ହାତରେ ଧରିଲା, ଯେପରି ତାକୁ ଆଉ ହଜାଇ ନଦିଏ । ସେ ଏକଥା ମଧ୍ୟ ସ୍ଥିରକଲା ଯେ ସେ ସେଇ ଫଟୋରେ ଥିବା ଚେହେରାମାନଙ୍କ ସହିତ ପୁନର୍ବାର ଆତ୍ମୀୟତା

କରିବାକୁ ଚେଷ୍ଟା କରିବ । ଏଇ ନିର୍ଣ୍ଣୟରେ ତା'ର ପ୍ରଥମ ଶରବ୍ୟ ହେଲା ଅଭିରାମ । ଯଦିଓ ସେ ଜାଣିଥିଲା ଯେ ଅଭିରାମ ଏଇ ସହରରେ କୋଉ ଔଷଧ କମ୍ପାନୀରେ କାମ କରୁଛି, ତାକୁ ଖୋଜି ବାହାର କରିବା ଏକ କଷ୍ଟସାଧ ବ୍ୟାପାର ହେଲା । ବିଭିନ୍ନ ଜାଗାକୁ ଟେଲିଫୋନ କରି, ଅଭିଜିତ ଓ ଅଭିରୂପମାନଙ୍କ ସହିତ ଭୁଲରେ କଥାବାର୍ତ୍ତା କରି ଶେଷରେ ଅଭିରାମ ମିଳିଲା । ଟେଲିଫୋନରେ ସମ୍ଭାଷଣ ପର୍ବ ପରେ ଶ୍ରଦ୍ଧାନନ୍ଦ ବୁଝିପାରିଲା ନାହିଁ ଅଭିରାମ ସହିତ ପୁଣି ସଂପର୍କ ଯୋଡ଼ିବାର କି କାରଣ ଦେବ । ତାକୁ କହିଲା, ମୁଁ ଭାବୁଥିଲି, ଆମେ ଆମ ପୁରୁଣା ହଷ୍ଟେଲର ଯେତେ ଲୋକ ଏଠାରେ ଅଛେ, ସମସ୍ତେ ମିଶି ଗୋଟାଏ କ୍ଲବ୍ କରିବା ।

ଅଭିରାମ କହିଲା, କଲେଜବେଳେ ଆପଣ ଆଉ ମୁଁ ଏକା ସାଙ୍ଗରେ ପଢ଼ୁଥିଲେ ସତ ; କିନ୍ତୁ ଆମର ଅଲଗା ଅଲଗା ହଷ୍ଟେଲ ଥିଲା । କଥା କହି ସେ ଶ୍ରଦ୍ଧାନନ୍ଦର ହଷ୍ଟେଲରେ ଥିବା କୋଉ କୋଉମାନେ ବର୍ତ୍ତମାନ ସେ ସହରରେ ରହୁଥିଲେ ତା'ର ଏକ ତାଲିକା ଦେଲା । ଶ୍ରଦ୍ଧାନନ୍ଦ କହିଲା, ନହେଲେ ଆମ ଦୁହିଁଙ୍କ ହଷ୍ଟେଲକୁ ମିଶାଇ କିଛି କରାଯାଇ ପାରିବ । ଆମେ କେତେବେଳେ ଏକାଠି ହୋଇ ଏ ବିଷୟରେ କଥାବାର୍ତ୍ତା କରନ୍ତେ । ପ୍ରସ୍ତାବଟି ଶ୍ରଦ୍ଧାନନ୍ଦକୁ ନିଜକୁ ବି ଯୁକ୍ତିଯୁକ୍ତ ମନେହେଲା ନାହିଁ । ତଥାପି ସେ ଅଭିରାମ ସହିତ ସାକ୍ଷାତ କରିବାର ସମୟ ଠିକ୍ କଲା ।

ଏଇ କଥୋପକଥନ ପରେ ଶ୍ରଦ୍ଧାନନ୍ଦ ନିଜର ସ୍ମରଣଶକ୍ତିର ସ୍ଥୂଳତାକୁ ନେଇ ଲଜ୍ଜିତ ବୋଧକଲା । ତା'ର ଏ ପର୍ଯ୍ୟନ୍ତ ବଦ୍ଧମୂଳ ଧାରଣା ଥିଲା ଯେ ଅଭିରାମ ତାଙ୍କରି ହଷ୍ଟେଲରେ ରହୁଥିଲା । ତା ଛଡ଼ା, ଅଭିରାମ ଯେତେଗୁଡ଼ିଏ ନାଁ ସବୁ କହିଲା, କାହାରି ହେଲେ ମୁହଁ ମନେପଡୁନଥିଲା ଶ୍ରଦ୍ଧାନନ୍ଦର । କିପରି ଏକ ନ୍ୟୂନତା ଆଘାତ କଲା ତାକୁ । ତା'ର ଶରୀର ସହିତ କଣ ସେ ତା'ର ମାନସିକ ଶକ୍ତି ସାମର୍ଥ୍ୟ ବି ହରାଇ ବସିଛି ? ତା'ର ଗୋଟାଏ ବି ନାଁ ମନେପଡୁ ନଥିଲା ଅଥଚ ଅଭିରାମ ଅନର୍ଗଳ ଏତେଗୁଡ଼ାଏ ନାଁ କହିଗଲା ! ତା'ର କାରଣ କ'ଣ ଅଭିରାମ ସେମାନଙ୍କ ସହିତ ସଂପର୍କ ରଖିଥିଲା ଏବଂ ଶ୍ରଦ୍ଧାନନ୍ଦ ସଂପର୍କ କାଟିଦେଇଥିଲା ବୋଲି ? ସେ ଠିକ୍ କଲା ଦିନେ ଚୁପ୍‌ଚାପ୍ ଶାନ୍ତ ମନରେ ବସି ସେ ତା'ର ହଷ୍ଟେଲ ଦିନ କଥା ମନେପକାଇବ ଏବଂ ଯେପରି ହେଲେ ଆଉ କିଛି ବନ୍ଧୁଙ୍କର ନାଁ ମନେପକାଇ ନିଜର ସ୍ମୃତିଶକ୍ତିର ସାବଲୀଳତାର ପ୍ରମାଣ ପାଇବ ।

କିନ୍ତୁ ଏପରି ଭାବରେ ଏକାନ୍ତରେ ବସି ପୁରୁଣା କଥା ଭାବିବାର କୌଣସି ସୁଯୋଗ ପାଇଲା ନାହିଁ ଶ୍ରଦ୍ଧାନନ୍ଦ ଏବଂ ରବିବାର ଦିନ ଠିକ୍ କରିଥିବା ସମୟରେ ଅଭିରାମ ଆସି ପହଞ୍ଚିଲା । ତାକୁ ପୂର୍ବ ଅପେକ୍ଷା ଅଧିକ ହାର୍ଦ୍ଦିକତାର ସହିତ ସ୍ୱାଗତ ଜଣାଇଲା ଶ୍ରଦ୍ଧାନନ୍ଦ ଏବଂ ତାକୁ ଚାକିରିର ଭଲମନ୍ଦ କଥା ପଚାରିଲା । ବର୍ତ୍ତମାନର

ବନ୍ଧୁତ୍ୱରେ କିଏ କେତେ ଟଙ୍କା ରୋଜଗାର କରୁଛି, ସେକଥା ମଧ୍ୟ ପ୍ରାସଙ୍ଗିକ ଥିଲା । ସୌଭାଗ୍ୟକୁ ଶ୍ରଦ୍ଧାନନ୍ଦ ଓ ଅଭିରାମ ମୋଟାମୋଟି ଏକା ରୋଜଗାରରେ ଚାକିରି କରୁଥିଲେ ଏବଂ ସେମାନଙ୍କ ଭିତରେ ଏକଥା ନେଇ କୌଣସି ସମସ୍ୟା ଉପୁଜିବାର କାରଣ ନଥିଲା । ଆଜିର କଥାବାର୍ତ୍ତାରେ ଶ୍ରଦ୍ଧାନନ୍ଦ ଆଉ କ୍ଲବ୍ ଗଢ଼ିବା କଥା ଉଠାଇଲା ନାହିଁ, ଭିତରୁ ଯାଇ ଫଟୋଗ୍ରାଫଟିକୁ ଆଣି ତାକୁ ଦେଖାଇଲା ।

ଫଟୋଗ୍ରାଫଟିକୁ ଭଲ ଭାବରେ ଦେଖି ଅଭିରାମ କହିଲା, ହୋଲିଦିନ ରବିନ ଏ ଫଟୋଟା ଉଠାଇଥିଲା । ସେତେବେଳେ ତା ପାଖରେ ଗୋଟାଏ ଭଲ ଜର୍ମାନ କ୍ୟାମେରା ଥିଲା, ଯୋଉଟା ତା'ର ମାମୁ ଯେ କି ବିଲାତରେ ରହୁଥିଲେ, ତା ପାଖକୁ ପଠାଇଥିଲେ । ରବିନ ଆଜିକାଲି ବମ୍ବେରେ ଏକ୍‌ସପୋର୍ଟ ବ୍ୟବସାୟ କରୁଛି । ମନେପକାଇବାକୁ ଅନେକ ଚେଷ୍ଟା କଲା ଶ୍ରଦ୍ଧାନନ୍ଦ, କିନ୍ତୁ ରବିନ ବୋଲି କେହି ତା'ର ମନେପଡ଼ିଲା ନାହିଁ । ଅଭିରାମ କହିଲା, ସେତେବେଳକୁ ଦିନ ତିନିଟା ବାଜିଥିଲା । ଆମ ଦି ହଷ୍ଟେଲ ଭିତରେ ଗାଳି ଦିଆନିଆ ସରିଯାଇଥିଲା । ଶ୍ରଦ୍ଧାନନ୍ଦର ସାମାନ୍ୟ ମନେପଡ଼ିଲା ଯେ ହୋଲି ଦିନ ପାଖ ପାଖ ଦୁଇ ହଷ୍ଟେଲର ପିଲାମାନେ ପରସ୍ପରକୁ ଗାଳିଦେବାର ଏକ ପରମ୍ପରା ରଖିଥିଲେ ।

ଫଟୋରେ ଶ୍ରୀକାନ୍ତକୁ ଦେଖୁଛନ୍ତି ? ତାକୁ ନେଇ, ଆପଣଙ୍କ ହଷ୍ଟେଲ ପଛପଟେ ଯୋଉ ନୂଆ ବ୍ଲକ୍‌ର ତିଆରି କାମ ଚାଲିଥିଲା, ସେଠି କାଦୁଅ ଭିତରେ ପକାଇ ଦେଇଥିଲେ ଆମେ । ତା'ର ଜାମାପଟାରେ ସବୁ କେମିତି କାଦୁଅ ଲାଗିଛି ଦେଖନ୍ତୁ !

ଶ୍ରୀକାନ୍ତ ବି ମନେପଡ଼ିଲା ନାହିଁ ଶ୍ରଦ୍ଧାନନ୍ଦର । ସେ କହିଲା, ଅନ୍ୟମାନଙ୍କୁ ଚିହ୍ନିପାରୁଛନ୍ତି ? ଅଭିରାମ ଅନାୟାସରେ ବାକି ତିନିଜଣଙ୍କର ନାଁ, ସେମାନେ କ'ଣ କ'ଣ ପଢୁଥିଲେ ଏବଂ ବର୍ତ୍ତମାନ କିଏ କୋଉଠି ଅଛନ୍ତି ସେକଥା କହିଲା । ତନ୍ମୟ ହୋଇ ତା କଥା ଶୁଣିଲା ଶ୍ରଦ୍ଧାନନ୍ଦ । ଲୋକଟା କ'ଣ ଗୋଟାଏ ଚଳନ୍ତି ଏନ୍‌ସାଇକ୍ଲୋପିଡ଼ିଆ ? ଏତେ କଥା ମନେ ରଖିଛି । କାହିଁ, ତା'ର ନିଜର ତ କିଛି ବି ମନେନାହିଁ ।

ଆପଣ ଯଦି କ୍ଲବ୍ କରିବା କଥା ଭାବୁଛନ୍ତି ତ ମାଧବବାବୁଙ୍କ ସାଙ୍ଗରେ ଦେଖା କରନ୍ତୁ । ସେ ଏଇ ପାଖରେ ରହୁଛନ୍ତି । ଟା' ପିଉ ପିଉ ପରାମର୍ଶ ଦେଲା ଅଭିରାମ ।

ତାହେଲେ ଚାଲନ୍ତୁ ସାଙ୍ଗହୋଇ ତାଙ୍କ ପାଖକୁ ଯିବା ।

ନା ନା, ଅଭିରାମ ସାଙ୍ଗେ ସାଙ୍ଗେ କହିଲା, କଲେଜବେଳେ ମୋର ତାଙ୍କ ସାଙ୍ଗରେ ଭଲ ପଡୁନଥିଲା ।

ସେ ତ ଯାଇ କୋଉ କାଳର କଥା ; କିଏ କ'ଣ ମନେରଖିଥିବ ?

ଦେଖନ୍ତୁ, ଆଉ କିଏ ମନେ ରଖୁ ନରଖୁ, ମୋର ତ ମନେ ଅଛି । ଆପଣ

ଚାଲିଯାଆନ୍ତୁ ତାଙ୍କ ପାଖକୁ । ତେବେ ଟିକିଏ ଚିଡ଼ିଚିଡ଼ା ଲୋକ, ସେକଥା ମନେ ରଖିଥିବେ । ତା ଛଡ଼ା ଚାକିରିରେ ଭଲ କରିପାରିଲେ ନାହିଁ ବୋଲି ମଧ୍ୟ ତାଙ୍କର ମନଦୁଃଖ ।

ମାଧବବାବୁଙ୍କର ଠିକଣା ଲେଖିଦେଇ ଅଭିରାମ ବିଦାୟ ନେଲା । ଶ୍ରଦ୍ଧାନନ୍ଦ ଯେତେ କହିଲେ ବି ତା ସାଙ୍ଗରେ ମାଧବ ପାଖକୁ ଯିବା ପାଇଁ ରାଜି ହେଲା ନାହିଁ । ଶ୍ରଦ୍ଧାନନ୍ଦ ଆଶ୍ଚର୍ଯ୍ୟ ହେଲା ଯେ ପୁରୁଣା ଦିନର ସୁଖଦ ସ୍ମୃତିମାନଙ୍କ ଭଳି କିଏ ସେଇ ଅତୀତର କ୍ଷୋଭ-କ୍ରୋଧ-ଅଭିମାନ ଓ ବୈରଭାବକୁ ମଧ୍ୟ ଏତେଦିନ ନିଜ ପାଖରେ ରଖି ଥାଇପାରେ । ପୁଣି ତା'ର ମନେହେଲା ଦୁଇଟି କଥା ହୁଏତ ପରସ୍ପରର ପରିପୂରକ । ଯାହାର ମନେଅଛି, ସବୁକିଛି ମନେଅଛି । ନହେଲେ ତା ଭଳି, କେବଳ କିଛି ଖାପଛଡ଼ା କଥା ବ୍ୟତୀତ ଆଉ କିଛି ବି ମନେନାହିଁ ପୁରୁଣା ଦିନର କଥା ।

ଯଦି ଅଭିରାମ ତା ସାଙ୍ଗରେ ଯିବାକୁ ବାହାରିଥାନ୍ତା, ଶ୍ରଦ୍ଧାନନ୍ଦ ସେଇଦିନ ହିଁ ଯାଇଥାନ୍ତା ମାଧବ ପାଖକୁ । କିନ୍ତୁ ତା ପାଖରେ ଠିକଣାଟି ଥିଲେ ମଧ୍ୟ ଯାଇ ମାଧବ ସହିତ ଯୋଗାଯୋଗ କରିବା ପାଇଁ ସେ ସଂକୋଚବୋଧ କଲା ଏବଂ ମଝିରେ ମଝିରେ ଫଟୋ ଓ ଠିକଣାଟିକୁ ଅନାଇବା ବ୍ୟତୀତ ଆଉ କିଛି କଲାନାହିଁ । ଦିନେ ଛୁଟିଦିନ ସକାଳେ ସ୍ତ୍ରୀ ସହିତ ସାମାନ୍ୟ କଳି ହୋଇ ଉଦାସ ହୋଇ ବସିଥିବାବେଳେ ଶ୍ରଦ୍ଧାନନ୍ଦର ଫଟୋଟି କଥା ମନେପଡ଼ିଲା ଓ ସେ ତାକୁ ବାହାରକରି ଦେଖିଲା । ସେ ଠିକ୍ କଲା ଯେ ସେଇ ମୁହୂର୍ତ୍ତରେ ହିଁ ସେ ମାଧବ ପାଖକୁ ଯାଇ ନିଜର ଅତୀତକୁ ଫେରିଯିବ, ଯେଉଁଠାରେ ତା'ର ଯୌବନ, ତା'ର ଇଂଲିଶ ଲିଟରେଚର କ୍ଲାସ୍ ଓ ସହପାଠିନୀ ଝିଅମାନେ ଓତଃପ୍ରୋତ ଭାବରେ ଜଡ଼ିତ ।

ମାଧବ ସତକୁ ସତ ରୁକ୍ଷ ପ୍ରକୃତିର ଲୋକ ଥିଲା । ଶ୍ରଦ୍ଧାନନ୍ଦ ତା'ର କବାଟରେ ଆଘାତ କରିଛି, ବୁଢ଼ାଲୋକଟି ଭିତରୁ ବାହାରିଆସି ପଚାରିଲା, କାହାକୁ ଖୋଜୁଛନ୍ତି ? କ'ଣ ଦରକାର ? ଶ୍ରଦ୍ଧାନନ୍ଦ ଲୋକଟିକୁ ଆଦୌ ଚିହ୍ନି ପାରିଲା ନାହିଁ । କହିଲା, ମୁଁ ମାଧବବାବୁଙ୍କ ପାଖକୁ ଆସିଥିଲି । ସେ ଅଛନ୍ତି ? ବୁଢ଼ା କହିଲା, ମୋ ନାଁ ମାଧବ । କ'ଣ ଦରକାର ?

ଆଜ୍ଞା ନମସ୍କାର । ମୋ ନାଁ ଶ୍ରଦ୍ଧାନନ୍ଦ । କଲେଜରେ ଆମେ ଏକାଠି ପାଠ ପଢୁଥିଲେ ।

ଏ କଥାରେ ପ୍ରଭାବିତ ହେଲା ନାହିଁ ମାଧବ । ଶ୍ରଦ୍ଧାନନ୍ଦ ଆଡ଼କୁ ଗୋଟାଏ ମିନିଟ ଅନାଇ କହିଲା, ନା, ମୋର ମନେପଡୁନାହିଁ । ତେବେ ଆପଣଙ୍କର କ'ଣ ଦରକାର ଥିଲା ?

ଶ୍ରଦ୍ଧାନନ୍ଦ ଭାବିଲା ଫେରିଯିବ । କିନ୍ତୁ ସକାଳର ଅପ୍ରୀତିକର ଘଟଣାକୁ

ମନେପକାଇ ନିଜକୁ ସଂଯତ କଲା । କହିଲା, ଆପଣଙ୍କର ଯଦି ସମୟ ଅଛି ଦି'ମିନିଟ ଆପଣଙ୍କ ସାଙ୍ଗରେ କଥାବାର୍ତ୍ତା ଅଛି ।

ଅତ୍ୟନ୍ତ ଅନିଚ୍ଛାର ସହିତ ମାଧବ କବାଟଟିକୁ ପୂରା ଖୋଲିଲା ଓ ଶ୍ରଦ୍ଧାନନ୍ଦକୁ ଘର ଭିତରକୁ ଡାକିଲା । ବସି ସାରିବା ପରେ ଶ୍ରଦ୍ଧାନନ୍ଦ ମାଧବ ଆଡ଼କୁ ଭଲଭାବରେ ଅନାଇଲା । ଯଦିଓ ତା'ର ଚେହେରା ବେଶି ବୟସ୍କ ଦେଖାଯାଉଥିଲା, ଚାଲିଚଳନ ଓ ବ୍ୟବହାରରେ ତୀକ୍ଷ୍ଣତା ମାଧବର ବୟସକୁ ଅନେକ ପରିମାଣରେ ହ୍ରାସ କରିଦେଉଥିଲା । କେମିତି, କି ଭାବରେ କଥା ଆରମ୍ଭ କରିବ ଭାବୁଛି, ମାଧବ କହିଲା, ହଁ, କ'ଣ କାମ ଥିଲା କୁହନ୍ତୁ ।

କି ଅଭଦ୍ର ଲୋକଟା, କପେ ଚା' ବି ଯାଚିଲା ନାହିଁ, ଭାବିଲା ଶ୍ରଦ୍ଧାନନ୍ଦ । କହିଲା, ପାଣି ଗିଲାସେ ଦେବେ ପିଇବାକୁ ? ନିଜେ ଉଠିଯାଇ ତାକୁ ଆଣି ପାଣିଗ୍ଲାସ ଦେଇ ମାଧବ ତା ଆଡ଼କୁ ଅନାଇଲା, ଯେମିତି କହୁଚି, ତମେ ଯାହା କହିବା କଥା ଶୀଘ୍ର କହିସାରି ଏଠାରୁ ଯାଅ, ମୋର ଅନେକ ଜରୁରୀ କାମ କରିବାର ଅଛି । ପାଣି ପିଇସାରି ଶ୍ରଦ୍ଧାନନ୍ଦ ଦି'ଥର କାଶିଲା । କହିଲା, ଆମ ସହରରେ ଆମ ପୁରୁଣା ହଷ୍ଟେଲର ଅନେକ କଲେଜବେଳର ସାଙ୍ଗ ଅଛନ୍ତି । ମୁଁ ଭାବୁଥିଲି ସମସ୍ତଙ୍କୁ ନେଇ ଯଦି ଆମେ ଗୋଟାଏ ସଂଘ ଗଢ଼ନ୍ତେ ତାହେଲେ ମଝିରେ ମଝିରେ ପୁରୁଣା ସାଙ୍ଗଙ୍କ ସହିତ ଦେଖା ହୋଇପାରନ୍ତା ।

ମାଧବ ରୋକଠୋକ କହିଲା, ଆଜ୍ଞା କାହାର ସମୟ ଅଛି ଆଉ ଏ ବୟସରେ ସଂଘ ତିଆରି କରିବାକୁ ? ଆମେ ହେଲୁ ଖଟିଖିଆ ଲୋକ । ଦିନମଜୁରିରୁ କାହିଁ ଫୁରୁସତ ଆମକୁ ?

ଶ୍ରଦ୍ଧାନନ୍ଦ ବୁଝାଇଲା, ନା ନା, ଆପଣଙ୍କୁ କିଛି କରିବାକୁ ହେବନାହିଁ । ମିଟିଂ ଡାକିବା, ତା'ର ବନ୍ଦୋବସ୍ତ ସବୁ ଆମେ କରିବୁ । ଆପଣ ଖାଲି ମଝିରେ ମଝିରେ ମିଟିଂକୁ ଆସିଲେ ହେଲା ।

ନାଇଁ ଆଜ୍ଞା, ଆପଣ ଯାହା କରିବାର କରନ୍ତୁ, ମତେ ସେ ସବୁଥିରେ ପୁରାନ୍ତୁ ନାହିଁ, ମାଧବ ଏକଥା କହି ଉଠି ଠିଆହେଲା । ଶ୍ରଦ୍ଧାନନ୍ଦ ବାଧହୋଇ ଉଠିଲା ଏବଂ ଯଦିଓ ବର୍ତ୍ତମାନ ଆଉ ସଂଘ ତିଆରି କରିବାର କୌଣସି ଇଚ୍ଛା ତା ମନ ଭିତରେ ନଥିଲା, କହିଲା, ଆପଣଙ୍କ ଠିକଣା ତ ମୋ ପାଖରେ ଅଛି, ଆପଣଙ୍କୁ ଚିଠି ଲେଖି ଜଣାଇବୁ । ଏ କଥାରେ ବି ରାଜି ହେଲା ନାହିଁ ମାଧବ । କହିଲା, କାହିଁକି ସମୟ, ଡାକଟିକଟ ନଷ୍ଟ କରିବେ ?

ବିରକ୍ତ ହୋଇ ଶ୍ରଦ୍ଧାନନ୍ଦ କବାଟ ପାଖକୁ ଆସିଲା ଓ ବାହାରକୁ ଯିବାକୁ ପାଦ ବଢ଼ାଇଲା । ଏତିକିବେଳେ ତା'ର ପକେଟ ଭିତରେ ଥିବା ଫଟୋଗ୍ରାଫଟି କଥା

ମନେପଡ଼ିଲା । ଯଦିଓ ଲୋକଟି ତାକୁ ବର୍ତ୍ତମାନ ଆଦୌ ଭଲ ଲାଗୁନଥିଲା, ସେ ପକେଟରୁ ଫଟୋଟି ବାହାରକରି ସନ୍ତର୍ପଣତାର ସହିତ ମାଧବ ହାତକୁ ଦେଇ କହିଲା, ମୋ ପାଖରେ ଏଇ ପୁରୁଣା ଫଟୋଟା ପଡ଼ିଥିଲା । ଆପଣ ବି ଏଥିରେ ଅଛନ୍ତି । ଆସିବାବେଳେ ଆପଣଙ୍କୁ ଦେଖାଇବାକୁ ନେଇଆସିଥିଲି ।

ଅତ୍ୟନ୍ତ ନିସ୍ପୃହତାର ସହିତ ମାଧବ ତା ହାତରୁ ଫଟୋଟିକୁ ନେଇ ଗୋଟାଏ ମୁହୂର୍ତ୍ତ ଆଖି ପକାଇ ଫେରାଇଦେଲା । ଶ୍ରଦ୍ଧାନନ୍ଦ ଫଟୋକୁ ପକେଟରେ ରଖିବାକୁ ଯାଉଛି, କ'ଣ ଭାବି ମାଧବ ତା ହାତରୁ ଫଟୋଟିକୁ ଫେରାଇ ନେଇ ଏଥରକ ଭଲ କରି ଦେଖିଲା । ତା ମୁହଁର ଭାବଭଙ୍ଗୀ ଆସ୍ତେ ଆସ୍ତେ ବଦଳିବାରେ ଲାଗିଲା । ଟିକିଏ ସାହସ ସଂଚୟ କରି ଶ୍ରଦ୍ଧାନନ୍ଦ ଫଟୋ ଉପରେ ଆଙ୍ଗୁଠି ଦେଖାଇ କହିଲା, ଆପଣ ସେ କଣରେ ଠିଆ ହୋଇଛନ୍ତି । ମାଧବ ତା କଥା ଶୁଣିଲା ନାହିଁ । ତା ମୁଣ୍ଡ ଭିତରେ ଯେମିତି ବର୍ତ୍ତମାନ ଅନେକ ପ୍ରକାରର ଜଟିଳ କଳକବଜା ପୁଣି ଠିକ୍‌ଠାକ୍ ସଜାଡ଼ି ହେବାକୁ ଆରମ୍ଭ କରିଥିଲେ । ସେ ଶ୍ରଦ୍ଧାନନ୍ଦକୁ ଅଶୁଣା କରିଦେଇ ନିଜକୁ ନିଜେ କହିଲା, ଶଳା ରାମରାମ ବି ଆସି ଆମ ମଝିରେ ଛିଡ଼ା ହୋଇଯାଇଛି । ଶ୍ରଦ୍ଧାନନ୍ଦ ତାକୁ ଠିକ୍ କଲା, ଅଭିରାମ । ମାଧବ କହିଲା, ଅଭିରାମ ବୋଲି ତାକୁ କିଏ ଡାକୁଥିଲା ? ସମସ୍ତେ ଥଟ୍ଟା କରି ତାକୁ ରାମରାମ କହୁଥିଲେ । ଏଥରକ ସେ ଶ୍ରଦ୍ଧାନନ୍ଦ ଆଡ଼କୁ ସିଧାସଳଖ ଅନାଇଲା । କହିଲା, ତମେ ତ ସେଇ ସେକ୍‌ସପିଅରବାଲା ଶ୍ରଦ୍ଧାନନ୍ଦ ! ତମର ତ ବାଳସବୁ କୁଆଡ଼େ ଉଡ଼ିଗଲାଣି । ଆସ ଆସ, ଭିତରକୁ ଆସ । ଚା' ନପିଇ କେମିତି ଚାଲିଯିବ ?

# ସାହିତ୍ୟକାର

ରାତି ବେଶି ହୋଇନଥିଲେ ବି ଶୀତଦିନଯୋଗୁଁ ଦୋକାନବଜାର ସବୁ ବନ୍ଦ ହୋଇଯାଇଥିଲା । ବହିଦୋକାନର ପଛପାଖ ଛୋଟ କୋଠରିରେ ବିଷ୍ଣୁଶର୍ମା ଓ ତାଙ୍କର ପ୍ରକାଶକ ସୁରସେନ ବସି ରମ୍ ପିଉଥିଲେ ଏବଂ ପରବର୍ତ୍ତୀ ପୁରସ୍କାରଟି କିପରି ବିଷ୍ଣୁଶର୍ମାଙ୍କୁ ମିଳିବ, ସେ ବିଷୟରେ ବିଚାରବିମର୍ଶ କରୁଥିଲେ । ପୁରସ୍କାରଟି ପାଇଁ ଏ ବର୍ଷ ଆଉ ଜଣେ ପ୍ରଭାବଶାଳୀ ପ୍ରତିଦ୍ୱନ୍ଦୀ ଥିଲେ । ବିଷ୍ଣୁଶର୍ମା ସେଦିନ ସକାଳେ ତାଙ୍କ ଘରକୁ ଯାଇ ହତାଶ ହୋଇ ଫେରିଥିବାର କାହାଣୀ ଶୁଣାଉଥିଲେ ।

ଆମେ ସେ ଲୋକଟାକୁ ଯେତେ ବୋକା ବୋଲି ଭାବିଥିଲେ, ସେ ସେତିକି ଚାଲାକ । ମୁଁ ଯେମିତି କହିଲି ଯେ ବୟସ୍କ ଲୋକକୁ ପୁରସ୍କାରଟା ଆଗେ ମିଳିଯାଉ, ହଠାତ ରାଜି ହୋଇଗଲା । ମୁଁ କିଛି କହିବା ଆଗରୁ କହିଲା, ଆମେ ଦି'ଜଣ ତ ଏକାବର୍ଷ ଜନ୍ମ, ଆପଣ କୋଉ ମାସରେ ଜନ୍ମ ? ମୁଁ କହିଲି, ମେ । ସେ କହିଲା, ମୁଁ ବି ମେ ମାସରେ ଜନ୍ମ ; ଆପଣଙ୍କର କେତେ ତାରିଖ ? ଏତିକିବେଳେ ମୋର ଟିକିଏ ଭାବିବା ଉଚିତ୍ ଥିଲା ଏବଂ ପହିଲା ତାରିଖ କହିଦେଇଥିଲେ ଯାଇଥା'ନ୍ତା । କିନ୍ତୁ ମୁଁ ସତକଥା କହିଲି, ଚବିଶ । ସେ ହଠାତ କହିଲା, ମୋର ତେଇଶ, ମାନେ ମୁଁ ଆପଣଙ୍କଠାରୁ ଗୋଟାଏ ଦିନ ବଡ଼ । ମତେ ଆଉ କିଛି କହିବାକୁ ନଦେଇ ମୋ ସାଙ୍ଗରେ ହାତ ମିଳାଇଲା । ଆଉ କହିଲା, ଆପଣ ଏଥର ଓହରିଯା'ନ୍ତୁ । ଆରବର୍ଷ ଆପଣଙ୍କୁ ପୁରସ୍କାର ଦିଆଇବା ଦାୟିତ୍ୱ ମୋର ।

ଆପଣ ବଡ଼ ଭୁଲ କଲେ, ଗ୍ଲାସ୍‌ରେ ରମ୍ ଢାଳୁ ଢାଳୁ ସୁରସେନ କହିଲା, ଆପଣଙ୍କର ତା ପାଖକୁ ଯିବା ଉଚିତ ନଥିଲା ।

ମୁଁ ଜାଣିଥିଲି ଆମେ ଦୁହେଁ ଏକା ବର୍ଷ ଜନ୍ମ ବୋଲି, କିନ୍ତୁ ମୁଁ ତା'ର ଲେଖକ ପରିଚିତିରୁ ଦେଖିଥିଲି ଯେ ସେ ଜାନୁଆରୀ ମାସରେ ଜନ୍ମ ବୋଲି । ମତେ ମିଛ କଥା କହି ଠକିଦେଲା ।

ଆପଣ ମତେ ପଠେଇଥା'ନ୍ତେ । ମୁଁ ସେ ଲୋକକୁ ହାଡ଼େ ହାଡ଼େ ଜାଣେ । ତା'ର ତିନିଟା ବହି ଛପେଇ କ'ଣ କମ୍ ହିନସ୍ତା ହୋଇଛି ।

ଛାଡ଼ନ୍ତୁ, ଯାହା ହେବାର ହେଲାଣି ; ବର୍ତ୍ତମାନ କ'ଣ କରିବା କହନ୍ତୁ ।

ଲେଖକ ଓ ପ୍ରକାଶକ ବସି ଏଥରକ ଗୋଟିଏ ବିଧିବଦ୍ଧ ଯୋଜନା କରିବାରେ ଲାଗିଲେ । ସୁରସେନ ବଡ଼ ସୁବ୍ୟବସ୍ଥିତ ପ୍ରକୃତିର ଲୋକ ଥିଲା । ଗୋଟାଏ ସାଦା କାଗଜ ଆଣି ତା ଉପରେ ଗୋଲ ଗୋଲ ଅକ୍ଷରରେ ପୁରସ୍କାରର ନାଁ ଲେଖିଲା ଏବଂ ତା ତଳେ ଲେଖିଲା ; ଏବର୍ଷର ବିଜେତା ବିଷ୍ଣୁଶର୍ମା ? ତା ତଳକୁ ସେ ପୁରସ୍କାରର ବିଚାରକମଣ୍ଡଳୀ ସଭ୍ୟମାନଙ୍କ ନାଁ, ଠିକଣା ଓ ଟେଲିଫୋନ ନମ୍ବର ଲେଖିଲା । ଏମାନଙ୍କ ଭିତରୁ କାହାକୁ ବିଷ୍ଣୁଶର୍ମା କହିବେ ଏବଂ କାହାକୁ ସୁରସେନ କହିବ, ସେ ବିଷୟରେ ମଧ୍ୟ ମୋଟାମୋଟି ନିଷ୍ପତ୍ତି ହୋଇଗଲା । କେବଳ ଜଣେ ରୁକ୍ଷ ପ୍ରକୃତିର ଲୋକପାଖକୁ ଦୁହିଁଙ୍କ ଭିତରୁ କେହି ହେଲେ ଯିବାକୁ ରାଜି ହେଲେ ନାହିଁ । ସୁରସେନ ସେ ଲୋକ ନାଁ ପାଖରେ ବଡ଼ ଛକ ଚିହ୍ନ ପକାଇଲା । ଆଉ ଜଣେ ବିଚାରକଙ୍କ ବିଷୟରେ ନିଷ୍ପତ୍ତି ହେଲା ଯେ ତାଙ୍କର ଯୋଉ କବିତାର ପାଣ୍ଡୁଲିପି ତିନିବର୍ଷ ଧରି ସୁରସେନ ପାଖରେ ପଡ଼ିଥିଲା, ସେଇଟିକୁ ସେ ଛାପିଦେବେ । ଏହା ପରେ ସୁରସେନ କହିଲା, କାଲି ସକାଳୁ ଆମକୁ କାମରେ ଲାଗିଯିବାକୁ ହବ ।

କ'ଣ ଏଥର ପକ୍‌କା ମିଳିବ ତ ? ଟିକିଏ ସନ୍ଦିଗ୍‌ଧ ହୋଇ ପଚାରିଲେ ବିଷ୍ଣୁଶର୍ମା । ସୁରସେନ କହିଲା, ସେ କଥା ମୋ ଉପରେ ଛାଡ଼ିଦିଅନ୍ତୁ । ତେବେ ଆପଣଙ୍କ ଉପରେ ଯେତିକି ଦାୟିତ୍ୱ ଅଛି, ତାକୁ ଯେମିତି ଆପଣ କାଲି ତୁଲାନ୍ତି । ଏତିକି କହି ସେ ବିଷ୍ଣୁଶର୍ମାଙ୍କୁ ଭରସା ଦେବା ପ୍ରୟାସରେ ପୃଷ୍ଠା ଉପରେ ଲେଖାଥିବା ତାଙ୍କ ନାଁ ପାଖରୁ ପ୍ରଶ୍ନ ଚିହ୍ନଟିକୁ କାଟିଦେଲା ।

ଏହିପରି ଭାବରେ ବିଷ୍ଣୁଶର୍ମାଙ୍କ ସମସ୍ୟାର ସମାଧାନ କରିସାରିବା ପରେ ସୁରସେନ ଏଥରକ ନିଜ ସମସ୍ୟା ଉପରକୁ ଆସିଲା । କେମିତି ସେ ଛପାଇଥିବା ବହିରୁ କେତୋଟି ସ୍କୁଲ କଲେଜରେ ପାଠ୍ୟ ବହି ହୋଇ ଲାଗିବ ବର୍ତ୍ତମାନ ସେ ବିଷୟରେ ଯୋଜନା କରିବାରେ ଲାଗିଲେ ଦୁହେଁ ମିଶି । ପୁରସ୍କାର ଦିଆଯିବାଠାରୁ ଏଇଟି ଅଧିକ ଶ୍ରମ ଓ ସମୟସାପେକ୍ଷ କାମ ଥିଲା ଏବଂ ଏଥିରେ ଟଙ୍କାପଇସାର କାରବାର ମଧ୍ୟ ଥିଲା । କାଗଜଟିକୁ ଓଲଟାଇ ସେଥିରେ ସୁରସେନ ପାଠ୍ୟପୁସ୍ତକ ବୋଲି ଗୋଟିଏ ଶୀର୍ଷକ ଲେଖି ତା ତଳେ ଗାର ପକାଇଲା ଓ ତା ତଳକୁ ସଂପୃକ୍ତ ଲୋକମାନଙ୍କର ତାଲିକା ତିଆରି କଲା । ବିଷ୍ଣୁଶର୍ମା ଆଜିକାଲି ଯେଉଁଭଳି ସାହିତ୍ୟ ଲେଖୁଥିଲେ, ସେସବୁ ସ୍କୁଲ କଲେଜ ପାଠର ଉର୍ଦ୍ଧ୍ୱରେ ଥିଲା । ସେଥିପାଇଁ ପାଠ୍ୟପୁସ୍ତକ ତାଲିକାରେ ତାଙ୍କର ବିଶେଷ ବ୍ୟକ୍ତିଗତ ଆଗ୍ରହ ନଥିଲା । ତଥାପି ସେ ଏ ଯୋଜନାରେ ସୁରସେନକୁ ଯଥାରୋନାସ୍ତି ସାହାଯ୍ୟ କରିବାର ମିଛ ପ୍ରତିଶ୍ରୁତି ଦେଲେ ।

ପୁଣି କିଛି ରମ ପିଇସାରିବା ପରେ ବିଷ୍ଣୁଶର୍ମା ସେଇ ପୁରୁଣା ପ୍ରସଙ୍ଗ

ଉଠାଇଲେ, ତାଙ୍କ ନିଜ ଲେଖା ଉପରେ ଏକ ଆଲୋଚନାତ୍ମକ ବହି ପ୍ରକାଶ କରିବା କଥା । ସୁରସେନ କହିଲା, ଆପଣ ଆଗରୁ ଥରେ ଏକଥା ମତେ କହିଥିଲେ, କିନ୍ତୁ ମୁଁ ତା ଉପରେ ବିଶେଷ ଦୃଷ୍ଟି ଦେଇନଥିଲି । ଏବେ ଚାଲନ୍ତୁ ଏ କାମରେ ଲାଗିଯିବା । ମୁଁ ଗୋଟାଏ ସାଦା କାଗଜ ଆଣେ । ଆଜି ଏ ବିଷୟରେ ବି ନିଷ୍ପତ୍ତି କରିଦବା ।

ଏଥରକ କାଗଜ ଉପରେ ସୁରସେନ ଲେଖିଲା : ଯୁଗସ୍ରଷ୍ଟା ବିଷ୍ଣୁଶର୍ମା । ତା ତଳକୁ ସେମାନେ ମିଶି ବିଷ୍ଣୁଶର୍ମାଙ୍କର କେଉଁ କେଉଁ ଦିଗ ଉପରେ ପରିଚ୍ଛେଦମାନ ଲେଖାଯିବ ତା'ର ସୂଚୀ ତିଆରି କଲେ । ପ୍ରତିଟି ପରିଚ୍ଛେଦ ପାଇଁ ବର୍ତ୍ତମାନ ଜଣେ ଜଣେ ଲେଖକ ନିର୍ଦ୍ଧାରିତ କରାଗଲା । ଏସବୁ କରାଯିବା ପରେ ସୁରସେନ ଏକ ମୌଳିକ ପ୍ରଶ୍ନ ଉତ୍‌ଥାପନ କଲା : ଯେଉଁ ଲେଖକମାନଙ୍କର ତାଲିକା ତିଆରି ହେଲା, ସେମାନଙ୍କ ଭିତରୁ କେହି ହେଲେ ଶ୍ରମ ଓ ସମୟ ବ୍ୟୟ କରି ଲେଖାଟିମାନ ଲେଖିବେ ନାହିଁ । ଏ ସମସ୍ୟାର ସମାଧାନ ମଧ୍ୟ ସୁରସେନ ନିଜେ ଦେଲା । ସବୁଗୁଡ଼ିକ ଲେଖା ବିଷ୍ଣୁଶର୍ମା ନିଜେ ଲେଖିବେ ଏବଂ ସେଗୁଡ଼ିକୁ ବିଭିନ୍ନ ଲେଖକଙ୍କ ନାଁରେ ଚଳାଇଦେବାର ଦାୟିତ୍ୱ ନେବ ସୁରସେନ ।

ବିଷ୍ଣୁଶର୍ମା ଏ ବିଷୟରେ କ'ଣ କହିବାକୁ ଯାଉଥିଲେ, କିଏ କବାଟ ଖଟଖଟ କଲା । ଯଦିଓ ଘର ଭିତରେ ବସି ମଦ ପିଇବାରେ କୌଣସି ଆଇନଗତ କଟକଣା ନଥିଲା, ଏକ ହଠାତ ପ୍ରତିକ୍ରିୟାରେ ସୁରସେନ ଓ ବିଷ୍ଣୁଶର୍ମା ରମ୍ ବୋତଲ ଓ ଗ୍ଲାସ୍ ଟେବୁଲ ତଳେ ଲୁଚାଇ ରଖିଦେଲେ ଏବଂ ବିଷ୍ଣୁଶର୍ମା ଚିନାବାଦାମ ପ୍ଲେଟ୍‌ଟି ଉଠାଇ ନେଇ ତାକୁ ମନଯୋଗିତାର ସହିତ ଖାଉଥିବାର ମୂକ ଅଭିନୟ କରିବାରେ ଲାଗିଲେ ।

କବାଟକୁ ସାମାନ୍ୟ ଖୋଲି ସୁରସେନ ଅନ୍ଧାର ଭିତରକୁ ଅନାଇଲା । ସାଇକେଲ ଧରି ଛିଡ଼ାହୋଇଥିବା ଲୋକଟି କହିଲା, ମୁଁ ରସାନନ୍ଦ । ବିଷ୍ଣୁଶର୍ମାଙ୍କୁ ଖୋଜି ଖୋଜି ଆସିଛି ।

ତମକୁ କିଏ କହିଲା ସେ ଏଠି ଅଛନ୍ତି ବୋଲି ?

ତାଙ୍କ ଗାଡ଼ି ଦେଖିଲି ବାହାରେ ।

ଏଥରକ ସୁରସେନ ବିଷ୍ଣୁଶର୍ମା ଆଡ଼କୁ ଅନାଇ ସମ୍ମତି ନେଲା ଓ କବାଟକୁ ଆଉ ଟିକିଏ ଖୋଲି କହିଲା, ଆସ । ସାଇକେଲରେ ତାଲା ଦେଇ ରସାନନ୍ଦ ଭିତରକୁ ଆସିବାବେଳକୁ ବିଷ୍ଣୁଶର୍ମା ପ୍ଲେଟ୍‌କୁ ରଖି ଟେବୁଲ ତଳୁ ବୋତଲ ଓ ଗ୍ଲାସ୍ ଆଣି ଉପରେ ରଖି ସାରିଥିଲେ । ରସାନନ୍ଦକୁ ଦେଖି ଥଟ୍ଟା କରି କହିଲେ, କେମିତି ଚାଲିଛି ତମ ବହିଲେଖା ବ୍ୟବସାୟ ।

ଏ ବର୍ଷ ପୂଜାରେ ସରକାର ବୋନସ୍ ଦବାରୁ ବହି ସବୁ ଭଲ ବିକ୍ରି ହେଲା । ତା ଆଗ ବର୍ଷ ମୋର ଏଗାରଟାଯାକ ବହି ଯେତିକି ବିକ୍ରି ହୋଇଥିଲା, ଏ ବର୍ଷ ମୋଟେ

ପାଞ୍ଚଟା ବହି ପୂଜାରେ ସେତିକି ବିକ୍ରି ହୋଇଗଲାଣି ।

ରସାନନ୍ଦ ବସିବାରୁ ସୁରସେନ ତା ଆଡ଼କୁ ଗ୍ଲାସ୍ ଦେଖାଇ କହିଲା, କ'ଣ ଚଳିବ ?

ନା ଆଜ୍ଞା, ଛାଡ଼ିଦେଲି । ଦେହ ଭଲ ରହିଲା ନାହିଁ ।

ଗଲାବର୍ଷ ତାହେଲେ ଏଗାରଟା ବହି ଲେଖିଲ, ବିଷ୍ଣୁଶର୍ମା କହିଲେ, ମୁଁ ତିନିବର୍ଷ ହେଲା ଗୋଟିଏ ବି ଧାଡ଼ି ଲେଖିନାହିଁ ।

ଆପଣଙ୍କ କଥା ଅଲଗା, ରସାନନ୍ଦ କହିଲା, ଆପଣ ସଉକରେ ଲେଖୁଛନ୍ତି, ନାଁ କରିବା ପାଇଁ ଲେଖୁଛନ୍ତି । ମୁଁ ହେଲି ପେସାଦାର ଲେଖକ । ନ ଲେଖିଲେ ଭାତହାଣ୍ଡି ବନ୍ଦ ।

ଏତେ ବହି କୋଉଠି ବିକ୍ରି କରୁଛ ? କିଏ ପଢୁଚି ତମର ବହି ?

ଆପଣମାନଙ୍କ ବହି କୋଉଠି କେମିତି ପହଞ୍ଚୁଛି, କିଏ ପଢୁଛି ଜାଣିବା କଷ୍ଟ; କିନ୍ତୁ ମୁଁ ଠିକ୍ ଜାଣେ ମୋ ବହି କେଉଁଠିକି ଯାଉଛି । ମୋ ବହି ପଢୁଛନ୍ତି ମଫସଲରେ ଅଧା ପାଠପଢ଼ିଥିବା ପୁଅଝିଅ, କାମକରୁଥିବା ଲୋକମାନେ । ମୋ ପାଖରେ ଛଅଶହ ତେଇଶିଟି ପାନଦୋକାନର ଠିକଣା ଅଛି । ନୂଆ ବହି ଛପାଇଲେ କିଛି କିଛି କପି ସିଧା ସେମାନଙ୍କ ପାଖକୁ ଭି.ପି.ରେ ପଠାଇଦେଉଛି । ତା'ପରେ ପୁଣି ଅର୍ଡ଼ର ଆସିଲେ ଆଉ ପଠାଉଛି ।

ଏ କଥୋପକଥନ ଭିତରେ ସୁରସେନ ଚୁପ୍ ରହିଥିଲା ; କାରଣ ସେ ଆଗରୁ ରସାନନ୍ଦର ପ୍ରକାଶକ ଥିଲା । ରସାନନ୍ଦର ବହିରୁ ହିଁ ଭଲ ଲାଭ ମିଳୁଥିଲା ସୁରସେନକୁ । ଯଦିଓ ଏ ବହିସବୁକୁ ସମସ୍ତେ ଶସ୍ତା ଉପନ୍ୟାସ ବୋଲି ଅଭିହିତ କରୁଥିଲେ, ଏବଂ ସାହିତ୍ୟ ଅଧ୍ୟାପକ ଓ ସମାଲୋଚକମାନେ ସେଗୁଡ଼ିକୁ ସାହିତ୍ୟ ପର୍ଯ୍ୟାୟଭୁକ୍ତ କରିବାକୁ କୁଣ୍ଠିତ ହେଉଥିଲେ, ବହିଗୁଡ଼ିକ ବେଶ୍ ଭଲ ବିକ୍ରି ହେଉଥିଲା ଏବଂ ଉତ୍କୃଷ୍ଟ ସାହିତ୍ୟ ପ୍ରକାଶନରୁ ଯାହା କ୍ଷତି ହେଉଥିଲା, ରସାନନ୍ଦର ବହି ତାକୁ ପରିପୂରଣ କରିବାରେ ସହାୟକ ଥିଲା । ରସାନନ୍ଦ ଯେତେବେଳେ ତା'ର ଛୋଟ ସରକାରୀ ଚାକିରି ଛାଡ଼ି ପୂରା ସମୟ ଲେଖିବାରେ ଲଗାଇଲା, ତା ପରଠାରୁ ନିଜେ ବହି ଛପାଇ ବିକିବାର ବ୍ୟବସ୍ଥା କଲା । ଏଇଭଳି ସୁରସେନ ପାଖରୁ ତା'ର ସଂପର୍କ କଟିଗଲା । ସୁରସେନ ତାକୁ ସତର୍କ କରିଥିଲା ଯେ ନିଜେ ବହି ଛାପି ସେ ବିକ୍ରି କରିପାରିବ ନାହିଁ । କିନ୍ତୁ ନିଜର ବଜାରକୁ ଭଲଭାବେ ଜାଣିଥିବା ଲେଖକ ରସାନନ୍ଦ ପ୍ରମାଣ କରିଦେଲା ଯେ ବିନା କୌଣସି ସଂସ୍ଥା ଥାଇ ବହି ବିକ୍ରି କରିବା ସମ୍ଭବ ।

ବିଷ୍ଣୁଶର୍ମା କହିଲେ, ମୁଁ ଅବଶ୍ୟ ତମର କୌଣସି ଉପନ୍ୟାସ ପଢ଼ିନାହିଁ, ତେବେ ତମର ଯୋଉଭଳି ବହିର ନାଁ ସବୁ, ଯେମିତି 'ଫେରିବ କେବେ ପ୍ରିୟ' ସେଥିରୁ

ଜଣାଯାଉଚି ତମେ ଶସ୍ତା ପ୍ରେମକଥା ଲେଖି ବଜାରକୁ ଠିକ୍ ହାତରେ ରଖିଚ ।

ନା ନା, ମୁଁ ଆପଣଙ୍କୁ ମୋର କିଛି ବହି ଦେବି, ପଢ଼ି ଦେଖିବେ । ସବୁ ବିଷୟରେ ଲେଖୁଚି ମୁଁ । ଗଲାବର୍ଷ ରାଜନୈତିକ ଗୁଣ୍ଡାମାନେ ସେଇ ଖବରକାଗଜବାଲାର ସ୍ତ୍ରୀକୁ ମାରିଦେଲେ, ମୁଁ ବହି ଲେଖିଲି 'ରେପ୍ ଏଣ୍ଡ ମର୍ଡର' । ତା ଆଗରୁ ଗୋଟି ସମସ୍ୟା ନେଇ ଲେଖିଥିଲି 'ମୁକ୍ତି କେବେ' । ଅସବର୍ଣ୍ଣ ବିବାହ ନେଇ 'ଏକା ରକ୍ତ', ମିଲ୍ ଶ୍ରମିକଙ୍କ ସମସ୍ୟା ନେଇ 'ଦିନମଜୁରି', ଯୌତୁକ ଉପରେ 'କିଣାବିକା' । କହିବାକୁ ଗଲେ ମୋର ଏମିତି କୌଣସି ବହି ନାହିଁ ଯେଉଁଟି ଗୋଟାଏ ସାମାଜିକ ସମସ୍ୟା ଉପରେ ଲେଖା ହୋଇନାହିଁ ।

ବିଷ୍ଣୁଶର୍ମାଙ୍କର ମନେପଡ଼ିଲା ଯେ ସେ ଅନେକ ଦିନ ତଳେ ରସାନନ୍ଦର ଗୋଟିଏ ଉପନ୍ୟାସ ପଢ଼ିଥିଲେ । ଟ୍ରେନରେ ଯିବାବେଳେ ସହଯାତ୍ରୀ ପାଖରୁ ମାଗି ସେ ବହିଟି ପଢ଼ିଥିଲେ । ପଢ଼ିଲାବେଳେ ମନ୍ଦ ମନେ ହୋଇନଥିଲା ଉପନ୍ୟାସଟି । ଉପନ୍ୟାସର ଗୋଟିଏ ଚରିତ୍ରକୁ ପରିଷ୍କାର ପରିଚ୍ଛନ୍ନ ଓ ପରିବର୍ତ୍ତିତ କରି କିପରି ନିଜର ବ୍ୟବହାରରେ ଆଣିବେ, ସେ କଥା ମଧ୍ୟ ନିଶ୍ଚିତ କରି ନେଇଥିଲେ ବିଷ୍ଣୁଶର୍ମା । ତେବେ ଏସବୁ କଥା ବର୍ତ୍ତମାନ ରସାନନ୍ଦକୁ କହିବାର ଆବଶ୍ୟକତା ମନେକଲେ ନାହିଁ ସେ । ରସାନନ୍ଦ ସାହିତ୍ୟ ସମାଜର ଜାତିଭ୍ରଷ୍ଟ ଲୋକ ଥିଲା ଏବଂ ସାହିତ୍ୟିକ ସମୀକ୍ଷା ପର୍ଯ୍ୟାଲୋଚନା ଇତ୍ୟାଦିର ପରିସର ଭିତରକୁ ତା'ର ନାଁ ଆସୁନଥିଲା । ତଥାପି ନିଜର ପାଠକମାନଙ୍କ ସହିତ ସିଧାସଳଖ ସଂପର୍କ ରଖିଥିବା ଏବଂ ସଂପୂର୍ଣ୍ଣ ଭାବେ ନିଜର ଲେଖା ଉପରେ ନିର୍ଭର କରୁଥିବା ଏଇ ଲୋକଟିକୁ ଦେଖିଲେ ବିଷ୍ଣୁଶର୍ମାଙ୍କର ସାମାନ୍ୟ ଈର୍ଷାର ମଧ୍ୟ ଉଦ୍ରେକ ହେଉଥିଲା । ସେ ଏଥରକ ବ୍ୟସ୍ତତାର ଛଳନା କରି ନିଜର ଘଡ଼ି ଆଡ଼କୁ ଅନାଇଲେ । କହିଲେ, ମୋ ପାଖରେ କ'ଣ କାମ ଥିଲା ?

ସିଧାସଳଖ ନିଜର ସମସ୍ୟା କଥା ନକହି ରସାନନ୍ଦ ଏକ ଦୀର୍ଘ ଉପକ୍ରମଣିକା ଦେଲା । ଜରୁରୀକାଳୀନ ପରିସ୍ଥିତି ବେଳେ ସେ ଜେଲ ଯାଇଥିଲା । ତା'ର ଚାରିବର୍ଷ ପୂର୍ବରୁ ସେ ପୁଲିସବାଲାଙ୍କୁ ଆକ୍ଷେପ କରି 'ରକ୍ଷକ ଭକ୍ଷକ' ବୋଲି ବହି ଲେଖିଥିଲା । ଏ ବହିକଥା କାହାରି ମନେ ନଥିଲା ; କିନ୍ତୁ ପରିସ୍ଥିତିର ସୁଯୋଗ ନେଇ ତା'ର ଭଡ଼ାଘରର ମାଲିକ ପୁଲିସ ହାତରେ ତାକୁ ବନ୍ଧାଇନେଲେ । ସେ ଜେଲକୁ ଯିବାପରେ ଗୁଣ୍ଡା ଲଗାଇ ତା ସ୍ତ୍ରୀ ପିଲାଙ୍କୁ ଘରୁ ବାହାର କରିଦିଆହେଲା । ତା ସ୍ତ୍ରୀ ଚାକରାଣୀ ହୋଇ କାହା ଘରେ ମୁଣ୍ଡ ଗୁଞ୍ଜି ରହି ପିଲାଙ୍କୁ ଚଳାଇଲା ; କିନ୍ତୁ ପନ୍ଦର ବର୍ଷର ପୁଅ ଏଇଭଳି ଅବସ୍ଥା ଭିତରେ କୁଆଡ଼େ ଚାଲିଗଲା, ଆଉ ଫେରିଲା ନାହିଁ । ଜେଲରୁ ଫେରି ରସାନନ୍ଦ ପୁଣି ବହି ଲେଖିଲା, ପୁଣି ଭଙ୍ଗା ଜୀବନକୁ ସଜାଡ଼ିଲା ।

ରସାନନ୍ଦ ଏକଥା କହିବାବେଳେ ତା'ର ମନ ଭିତରେ କୌଣସି କ୍ଷୋଭ ଥିବା

ଭଳି ଜଣା ପଡୁନଥିଲା । ଏ ଯେମିତି ଗୋଟାଏ ପୁରୁଣା ଅଧ୍ୟାୟ ସରିଯାଇଛି, ଯାହା କଥା ଆଉ ଭାବି ଲାଭ ନାହିଁ । ଜରୁରୀ ପରିସ୍ଥିତି ବେଳେ କୌଣସି ଲେଖକ ଅନୁଶାସନର ପ୍ରତିବାଦ କରିନଥିଲେ ଅଥବା ତା ଭଳି ଜେଲ ଯାଇନଥିଲେ । କିନ୍ତୁ ଜରୁରୀ ପରିସ୍ଥିତି ଉଠିଯିବା ପରେ ସମସ୍ତେ ଦାବି କରିବାରେ ଲାଗିଲେ ଯେ ସେମାନେ ନିଜ ନିଜ ଲେଖାରେ ପରିସ୍ଥିତିକୁ କଠୋର ସମାଲୋଚନା କରିଥିଲେ । ଏପରିକି ବିଷ୍ଣୁଶର୍ମା, ଯେ କି ସରକାରଙ୍କୁ ସମର୍ଥନ କରି ବିବୃତିମାନ ମଧ ଦେଇଥିଲେ, ପରବର୍ତ୍ତୀ କାଳରେ ପ୍ରଶଂସାର ପାତ୍ର ହୋଇଥିଲେ କାରଣ ଜଙ୍ଗଲର ପଶୁପକ୍ଷୀମାନଙ୍କ ବିଷୟରେ ସେ ସମୟରେ ଲେଖିଥିବା ତାଙ୍କର ଗୋଟିଏ ରୂପକ ଗଳ୍ପରେ କୁଆଡ଼େ ବ୍ୟକ୍ତିସ୍ୱାଧୀନତାର ଦାବି ରହିଥିଲା ଏବଂ କଟକଣାମାନଙ୍କ ପ୍ରତି ପ୍ରଚ୍ଛନ୍ନ ଆକ୍ଷେପ ଥିଲା । ଯେହେତୁ ସାହିତ୍ୟକାର ଓ ସମାଲୋଚନମାନେ ରସାନନ୍ଦକୁ ସାହିତ୍ୟିକ ଭିତରେ ଗଣୁନଥିଲେ, ତା'ର ଜେଲ ଯିବା ନଯିବା ସେମାନଙ୍କ ପାଇଁ କୌଣସି ଅର୍ଥ ରଖୁନଥିଲା ।

ରସାନନ୍ଦ ଏଥରକ ନିଜର ସମସ୍ୟା କଥା କହିଲା । ପୁଲିସ ତା ନାଁରେ ଅଶ୍ଳୀଳତା ନେଇ ଗୋଟିଏ କେସ୍ ଆରମ୍ଭ କରିଥିଲେ । ଏ କେସ୍ ହେବାର ପ୍ରଧାନ କାରଣ ଥିଲା ଯେ 'ରକ୍ଷକ ଭକ୍ଷକ' ସମୟରେ ଦାରୋଗା ପୁଣି ତା ଅଞ୍ଚଳର ଥାନାକୁ ବଦଳି ହୋଇ ଆସିଥିଲେ ଏବଂ ରସାନନ୍ଦର ଜେଲରୁ ବାହାରିଆସି ସାଧାରଣ ଓ ସ୍ୱଚ୍ଛଳ ଜୀବନଯାପନ କରିବା ତାଙ୍କର ସହ୍ୟ ହୋଇନଥିଲା । ଏଇ କେସ୍‌ଟି ସଂପର୍କରେ ହିଁ ରସାନନ୍ଦ ବିଷ୍ଣୁଶର୍ମାଙ୍କର ସାହାଯ୍ୟ ଚାହୁଁଥିଲା । ସେ ବିଷ୍ଣୁଶର୍ମାଙ୍କୁ କହିଲା, ଆପଣମାନେ ନିଜ ନିଜ ଲେଖାରେ ଯୋଉ ଯୌନବର୍ଣ୍ଣନା କରୁଛନ୍ତି, ତା ତୁଳନାରେ ମୋର ଲେଖାରେ କିଛି ବି ନାହିଁ । ଖାଲି ଆପଣମାନେ ଯାହା ସାଧୁଭାଷାରେ ଲେଖୁଛନ୍ତି, ମୁଁ ଲୋକ ବୁଝିପାରିବା ଭଳି ଭାଷାରେ ଲେଖୁଛି, ଏତିକି ମାତ୍ର ଫରକ ।

ବିଷ୍ଣୁଶର୍ମା ସେଦିନ ସକାଳେ କୋଉ ଗୋଟାଏ ଇଂରେଜୀ ପତ୍ରିକାରେ ଅଶ୍ଳୀଳତା ଉପରେ ଲେଖା ପଢ଼ିଥିଲେ । ଯଦିଓ ସେ ବିଷୟଟି ପ୍ରାସଙ୍ଗିକ ନଥିଲା, ତଥାପି ନିଜର ବିଦ୍‌ବତ୍ତା ଦର୍ଶାଇବାକୁ ବିଷ୍ଣୁଶର୍ମା କହିଲେ, ସାହିତ୍ୟରେ ଅଶ୍ଳୀଳତା ଏକ ଅତି ବିବଦମାନ ଜିନିଷ । ଉଣେଇଶଶହ ଛଷଠି ମସିହାରେ ଡେନମାର୍କ ନିଷ୍ପତ୍ତି କଲା ଯେ ଆଉ ଅଶ୍ଳୀଳ ବହି ଇତ୍ୟାଦି ଉପରେ କଟକଣା ରହିବ ନାହିଁ । ନୂଆ ଆଇନ ଏମିତି ହେଲା ଯେ ଷୋଳ ବର୍ଷରୁ ଉର୍ଦ୍ଧ୍ୱ ଯେ କେହି ନିଜ ଇଚ୍ଛାମୁତାବକ ବହି, ମାଗାଜିନ, ଫଟୋ, ଫିଲ୍‌ମ, ନାଟକ କିଣିପାରିବ, ଦେଖିପାରିବ । ସେଇ ମସିହାରୁ ଆନେକ ଅଶ୍ଳୀଳ ଜିନିଷ ବିକ୍ରି ହେଲା ଏବଂ ଅଣସ୍ତରି ମସିହାରେ ତିରିଶ କୋଟି ଟଙ୍କାର ବହି ଇତ୍ୟାଦି ବିକ୍ରି ହେଲା ; କିନ୍ତୁ ତା ପରେ ଆକର୍ଷଣ କମିଗଲା ଏବଂ କିଛି ବର୍ଷ ପରେ ବିକ୍ରି ଆସି ମାତ୍ର ବାରକୋଟିରେ ପହଞ୍ଚିଲା, ଯୋଉଥିରୁ ନବେ ପ୍ରତିଶତ ଥିଲା ରପ୍ତାନି ।

ଏତିକି କହି ବିଷ୍ଣୁଶର୍ମା ଅଧାଗ୍ଲାସ୍ ରମ୍ ପିଇଲେ । ସୁରସେନ, ଯେ କି ସାମାନ୍ୟ ଅନ୍ୟମନସ୍କ ହୋଇ ତାଙ୍କ କଥା ଶୁଣୁଥିଲା, ତାଙ୍କୁ ଚୁପ୍ ହୋଇଯିବାର ଦେଖି କହିଲା, ତା'ପରେ ?

ତା'ପରେ ସେଇ ଇଂରେଜୀ ଲେଖାଟିରେ କ'ଣ ଥିଲା ଠିକ୍‌ଭାବରେ ମନେନଥିଲା ବିଷ୍ଣୁଶର୍ମାଙ୍କର । ସେଥିପାଇଁ ସେ ଓଲଟା ରସାନନ୍ଦକୁ ଅନାଇ ପଚାରିଲେ, ତା'ପରେ ?

ରସାନନ୍ଦ କହିଲା, ମୁଁ ପ୍ରମାଣ କରିଦେଇପାରିବି ଯେ ମୋର ଯୋଉ ବହିକୁ ଅଶ୍ଳୀଳ କୁହାଯାଉଚି ସେଇଟି ବ୍ୟବସାୟ ଦୃଷ୍ଟିରୁ ଲେଖାଯାଇନାହିଁ । ଅନ୍ୟ ବହିମାନଙ୍କ ତୁଳନାରେ ଏ ବହିଟିର ବିକ୍ରି କମ୍ ଥିଲା କେସ୍ ହେବା ପର୍ଯ୍ୟନ୍ତ ।

ମୂଳ ପ୍ରଶ୍ନ ହଉଚି ଅଶ୍ଳୀଳତା ବିଷୟରେ ; ତମ ବହିଟିରେ ଅଶ୍ଳୀଳ ବର୍ଣ୍ଣନା ଅଛି କି ନା ?

ତା'ର ବ୍ୟାଗ୍ ଭିତରୁ ରସାନନ୍ଦ ଚୈତ୍ର ଆଶ୍ୱିନ ବହି ବାହାର କରି ବିଷ୍ଣୁଶର୍ମାଙ୍କ ହାତକୁ ଦେଲା । କହିଲା, ଏ ବହିଟି ଜଣେ ଅଳ୍ପବୟସ୍କା ସ୍ତ୍ରୀ ଓ ତା'ର ବୃଦ୍ଧ ସ୍ୱାମୀ ବିଷୟରେ । ଆପଣ ଜାଣିଥିବେ ମଫସଲ ଅଞ୍ଚଳରେ ଟଙ୍କା ପାଇଁ ଏମିତି ଅନେକ ବାହାଘର ହୋଇଥାଏ । ମୋ ବହିରେ ମୁଁ ସେଇଭଳି ଗୋଟିଏ ଝିଅର ଦୁଃଖଦୁର୍ଦ୍ଦଶା ବର୍ଣ୍ଣନା କରିଛି । ସେମାନଙ୍କ ଯୌନଜୀବନର ଅସଫଳତା ବିଷୟରେ ମୁଁ ଲେଖିଛି କିପରି ଝିଅଟି ସକାଳେ ତା'ର ସ୍ୱାମୀ ପାଖରୁ ଅସନ୍ତୁଷ୍ଟ ହୋଇ ଫେରୁଛି ।

ବିଷ୍ଣୁଶର୍ମା ମୁହଁରେ ନିରାସକ୍ତ ଭାବଭଙ୍ଗୀ ରଖି ବହିଟିକୁ ଓଲଟାଇ ସେଥିରେ କେଉଁଠାରେ ଅଶ୍ଳୀଳ ବର୍ଣ୍ଣନା ଥାଇପାରେ ଖୋଜିବାରେ ଲାଗିଲେ । ହଠାତ୍ ତାଙ୍କ ଆଖିରେ ଖଟ ଶବ୍ଦଟି ପଡ଼ିଲା । ଏଇ ଶବ୍ଦ ସହିତ କିଛି ମନୋରଂଜନ କଥା ଥାଇପାରେ, ଏଇ ଆଶାରେ ପୂରା ଅନୁଚ୍ଛେଦଟି ପଢ଼ିନେଲେ ବିଷ୍ଣୁଶର୍ମା । କିନ୍ତୁ ସେଥିରେ କେବଳ ବୁଢ଼ାର ଘରର ବର୍ଣ୍ଣନା ଥିଲା, ବାସକଶଯ୍ୟାର ନୁହେଁ । ପୁଣି କିଛି ପୃଷ୍ଠା ଓଲଟାଇ ମଧ ତାଙ୍କ ଆଖିରେ କୌଣସି ଅଶ୍ଳୀଳ କଥା ନପଡ଼ିବାରୁ ବିରକ୍ତ ହୋଇ ବହିଟିକୁ ରଖିଦେଲେ ଏବଂ ରସାନନ୍ଦକୁ ପଚାରିଲେ, ଏ ବହିରେ କୋଉଠି କ'ଣ ଅଶ୍ଳୀଳ ବର୍ଣ୍ଣନା ଅଛି ?

ସେ ଆଶା କରିଥିଲେ ଯେ ରସାନନ୍ଦ ଉଦ୍ଦିଷ୍ଟ ପୃଷ୍ଠାଟି ଖୋଲି ତାଙ୍କୁ ପଢ଼ିବାକୁ ଦେବ ଏବଂ ସେ ଏକ ଯୌନଦୀପକ ବର୍ଣ୍ଣନାର ରସାସ୍ୱାଦନ କରିବେ । କିନ୍ତୁ ରସାନନ୍ଦ କହିଲା, ଏ ବହିରେ କୌଣସିଠାରେ ବି ଅଶ୍ଳୀଳ ବର୍ଣ୍ଣନା ନାହିଁ ; ବରଂ ମୋର ଅନ୍ୟ ବହିରେ କେବେ କୋଉଠି ଟାଣିଓଟାରି ଅଶ୍ଳୀଳତାର ଆରୋପ ଲଗାଯାଇପାରେ, କିନ୍ତୁ ଏ ବହିରେ ନୁହେଁ । ଆପଣ ନିଜେ ପଢ଼ି ଦେଖନ୍ତୁ ।

ବିଷ୍ଣୁଶର୍ମା ଭାବିଥିଲେ ବହିଟିକୁ ନେଇ ସେଦିନ ରାତିରେ ନିରୋଳାରେ

ପଢ଼ିବେ । କିନ୍ତୁ ରସାନନ୍ଦର ଏ ମନ୍ତବ୍ୟ ପରେ ବହିଟିକୁ ବନ୍ଦକରି ତା ଆଡ଼କୁ ଫେରାଇଦେଲେ । କହିଲେ, ନା, ମୋର ପଢ଼ିବାକୁ ସମୟ ନାହିଁ । ତେବେ ଏ ବିଷୟରେ ମୁଁ କ'ଣ କରିପାରେ ?

ରସାନନ୍ଦ କହିଲା, ଆପଣ ହେଲେ ଲବ୍ଧପ୍ରତିଷ୍ଠ ସାହିତ୍ୟିକ । ଦେଶବିଦେଶରେ ଆପଣଙ୍କର ନାଁ ଅଛି । ମୁଁ ଚାହୁଁଚି ଆପଣ ଏ କେସ୍‌ରେ ସାକ୍ଷୀ ହୋଇ ସାହିତ୍ୟରେ ଅଶ୍ଳୀଳତା ଉପରେ ଆପଣଙ୍କର ମନ୍ତବ୍ୟ ଦେବେ । ଆପଣ ଏବେ ଯୋଉ ଡେନମାର୍କ ନା କୋଉ ଦେଶ କଥା କହିଲେ, ଏକଥା ବି ମୋ ପାଇଁ ବହୁତ ସହାୟକ ହେବ ।

ତମେ ଜାଣ, ମୁଁ ଏ ସବୁ ବାଦବିବବାଦରେ ପଶିବାକୁ ଚାହେଁନା । ମୋର ଲେଖା ଭଲ ତ ମୁଁ ଭଲ ।

ମୁଁ ଚାହୁଁ ନାହିଁ ଆପଣ ମୋ ବହି ବିଷୟରେ କିଛି କହନ୍ତୁ । ଅଶ୍ଳୀଳତା ଅପେକ୍ଷା ଏ କେସ୍‌ଟିରେ ଅଧିକ ଗୁରୁତର ବିଷୟଟି ହେଲା ସାହିତ୍ୟ କ୍ଷେତ୍ରରେ ପୁଲିସର ପ୍ରବେଶ । ସବୁ ଲେଖକଙ୍କୁ ଏ କଥାର ପ୍ରତିବାଦ କରିବାକୁ ହେବ । ମନେକରନ୍ତୁ କାଲି ଯଦି ଆପଣଙ୍କର କୋଉ ବହି ବିରୁଦ୍ଧରେ କିଏ ଅଶ୍ଳୀଳତାର ଆରୋପ ଆଣେ, କ'ଣ ହେବ ?

ଏ କଥା ଶୁଣି ସୁରସେନ ଟିକିଏ ଶଂକିତ ହେଲା, କିନ୍ତୁ ବିଷ୍ଣୁଶର୍ମା, ଯେ କି ନିଜର ସାମାଜିକ ପ୍ରତିଷ୍ଠା ଓ ସରକାରୀ ଲୋକଙ୍କ ସହିତ ନିଜର ସଂପର୍କ ବିଷୟରେ ଆତ୍ମବିଶ୍ୱାସ ରଖିଥିଲେ, କହିଲେ, ମୋ ନାଁରେ କେସ୍ ହେଲେ ମୁଁ ନିଜେ ସେ କଥା ବୁଝିବି, ଆଉ କାହାରି ପାଖକୁ ସାହାଯ୍ୟ ପାଇଁ ଯିବିନାହିଁ । ସୁରସେନ ଆଡ଼କୁ ଅନାଇ ତାକୁ ସାନ୍ତ୍ୱନା ଦେବାପାଇଁ ସେ ଯୋଗକଲେ, ଏପରିକି ପ୍ରକାଶକଙ୍କୁ ମଧ ଏ ଭିତରକୁ ଟାଣିବି ନାହିଁ ।

ରସାନନ୍ଦ କହିଲା, ଆପଣ ଭୁଲ ବୁଝୁଛନ୍ତି । ଏ କେସ୍ ଆଉ କେବଳ ମୋର ବ୍ୟକ୍ତିଗତ କଥା ନୁହେଁ । ମୁଁ ତ କେସ୍ ଲଢ଼ିବି । ଦରକାର ପଡ଼ିଲେ ଜେଲ ବି ଯିବି । ଏଥରକ ମୁଁ ଜେଲ ଗଲେ ମୋର ଘର ଆଉ ଭାଙ୍ଗିଯିବ ନାହିଁ, କାରଣ ଏ ଭିତରେ ମୋର ଆର୍ଥିକ ସ୍ୱଚ୍ଛଳତା ବି ଆସିଯାଇଛି । ମୁଁ କହୁଥିଲି ସବୁ ସାହିତ୍ୟିକଙ୍କର ସ୍ୱାର୍ଥଦୃଷ୍ଟିରୁ ।

ବିଷ୍ଣୁଶର୍ମା କହିଲେ, ଯେ ଯାହା ହଉ, ମତେ ଆଉ ଏ ଭିତରକୁ ଟାଣନାହିଁ ।

ରସାନନ୍ଦ ଏଥରକ ଉଠିଲା । କହିଲା, ତାହେଲେ ମୁଁ ଯାଉଛି । ମୋ କେସ ସଂକ୍ରାନ୍ତରେ କିନ୍ତୁ ଆପଣଙ୍କ ଲେଖାରୁ କିଛି ଉଦ୍ଧାର କରିବି, କିଛି ମନେ କରିବେ ନାହିଁ ।

ଏତିକି କହି ରସାନନ୍ଦ ବାହାରିଗଲା । ଟିକିଏ ବିବ୍ରତ ହୋଇ ବିଷ୍ଣୁଶର୍ମା କିଛି ରମ୍ ପିଇଲେ ଏବଂ କହିଲେ, ଦେଖିଲ, ମତେ କେମିତି ଧମକାଇ ଗଲା ? ଯଦି ଏ

ବିଷୟ ନେଇ କିଛି କଥା ଉଠେ, ତମେ ମୋର ସାକ୍ଷୀ ରହିଲ ।

ସୁରସେନ, ଯାହାର ମୁଣ୍ଡ ଭିତରେ ଏ ପର୍ଯ୍ୟନ୍ତ ବ୍ୟବସାୟ କଥା ଖେଳୁଥିଲା, କହିଲା, ଏ କେସ୍ ଯୋଗୁଁ ରସାନନ୍ଦର ଭଲ ଲାଭ ହେଲା ।

କେମିତି ?

ଚୈତ୍ର-ଆଶ୍ୱିନର ଚାରିଟି ସଂସ୍କରଣ ସେ ଛାପିସାରିଲାଣି ଏ ଭିତରେ ।

ତାହେଲେ ସେ ଏତେ ବ୍ୟସ୍ତ କାହିଁକି ?

ବୁଝିଲେ ନାହିଁ, ଟଙ୍କା ପଇସା ତ ସେ ବେଶ୍ କମାଇଲାଣି । ଏଥରକ ଚାହୁଁଚି ସାହିତ୍ୟିକ ପ୍ରତିଷ୍ଠା । ଆପଣମାନଙ୍କର ଠିକ୍ ଓଲଟା । ଏତେ ବଡ଼ ନାଁ କଲେଣି, କିନ୍ତୁ ବହିରୁ କେତେ ଟଙ୍କା ମିଳୁଛି ଆପଣଙ୍କୁ ?

ବିଷ୍ଣୁଶର୍ମାଙ୍କୁ ଚୁପ୍ ରହିବାର ଦେଖି ସୁରସେନ ଦି'ଜଣଙ୍କ ଗ୍ଲାସ୍‌ରେ ପୁଣି ରମ୍ ଢାଳିଲା । କହିଲା, ଏଥର ଆପଣ ଗୋଟାଏ ଅଶ୍ଳୀଳ ବହି ଲେଖନ୍ତୁ । କେସ୍ ହଉ ନ ହଉ, ବିକ୍ରି ବି ହବ, ନାଁ ବି ହବ ।

ଗ୍ଲାସ୍ ଉଠାଇ ବିଷ୍ଣୁଶର୍ମା ଦି' ଢୋକ ପିଇଲେ । କହିଲେ, ରସାନନ୍ଦ ଯିବାପରେ ମୁଁ ବି ଠିକ୍ ସେଇକଥା ଭାବୁଥିଲି ।

ଆଉ କାଳବିଳମ୍ବ ନକରି ସୁରସେନ ଗୋଟାଏ ସାଦା କାଗଜ ଆଣି ବହିଟି କେଉଁ ଆକାରର ଓ କେତେ ପୃଷ୍ଠାର ହେବ, ତା'ର ହିସାବରେ ମନୋନିବେଶ କଲା ।

# ସଂପ୍ରଦାୟ

ଲୋକଟିର ଧର୍ମ ଜାତି ଗୋତ୍ର କ'ଣ ସେକଥା ସହରତଳିର ଲୋକ ଜାଣିନଥିଲେ । ଏପରିକି ତା'ର ପ୍ରକୃତ ନାଁ କ'ଣ ସେକଥା ମଧ୍ୟ ସମସ୍ତଙ୍କର ଅଜଣା ଥିଲା । ଲୋକଟି ପାଗଳା ଥିଲା ଏବଂ ପରିଚିତ ଥିଲା ପାଗଳ ନାଁରେ । ତା'ର ଜାତି ବା ନାଁ ଥିବା ନଥିବା ତା ନିଜ ପାଇଁ ଅଥବା ଅନ୍ୟମାନଙ୍କ ପାଇଁ କୌଣସି ସମସ୍ୟା ଉପୁଜାଉ ନଥିଲା ; କାରଣ ପାଗଳ କାହାରି ଭଲମନ୍ଦରେ ନଥିଲା ଏବଂ ଅନ୍ୟମାନଙ୍କ ସହିତ ତା'ର ସଂପର୍କ ଥିଲା ଅତି ସାମାନ୍ୟ । ସେ କଥା କହୁନଥିଲା ; ତେଣୁ ସେ କେଉଁଠାର ଲୋକ ବା କେଉଁ ଭାଷାଭାଷୀ ସେକଥା କେହି ଜାଣି ନଥିଲେ ଏବଂ ସେକଥା ଜାଣିବା ପାଇଁ ବର୍ତ୍ତମାନ ଆଉ କାହାରି ଆଗ୍ରହ ନଥିଲା । ଏପରିକି ସେ ଜନ୍ମଜାତ ମୂକ ଅଥବା ଜାଣିଶୁଣି କଥା କହୁ ନଥିଲା, ସେ ବିଷୟରେ ମଧ୍ୟ ସଂଶୟ ଥିଲା । ସେ ଯାହାହେଉ, ପାଗଳ ବର୍ତ୍ତମାନ ଥିଲା ସହରତଳି ଅଞ୍ଚଳର ଏକ ଚଳପ୍ରଚଳ ଅନୁଷ୍ଠାନ ।

ପାଗଳ ରହିବାର କୌଣସି ନିର୍ଦ୍ଦିଷ୍ଟ ଜାଗା ନଥିଲା ଅଥବା ଖାଇବା ପିଇବାର କୌଣସି ନିର୍ଦ୍ଦିଷ୍ଟ ବ୍ୟବସ୍ଥା ନଥିଲା । ସେ ଯାହା ମିଳୁଥିଲା ଖାଉଥିଲା ଏବଂ ଯେଉଁଠାରେ ସମ୍ଭବ ଓ ସୁବିଧା ଶୋଇଯାଉଥିଲା । ସେ କାହାରିକି କିଛି ମାଗୁ ନଥିଲା ଏବଂ କିଏ କିଛି ଦେଲେ ମନା କରୁନଥିଲା । ସେ ସାରାଦିନ ଏବଂ କେବେ କେବେ ସାରାରାତି, ସହରତଳି ଅଞ୍ଚଳରେ ଚାଲବୁଲ କରୁଥିଲା ଏବଂ ଗଳିର ଲୋକମାନେ ତା'ର ଜୋତାର ଶବ୍ଦ ସହିତ ପରିଚିତ ଥିଲେ । ଗଳିରେ ଦିନେ ଦୁଇଦିନ ତା'ର ଦେଖା ନମିଳିଲେ ଲୋକେ ତା କଥା ମନେ ପକାଉଥିଲେ । ରାତିର ଶୂନଶାନ ଗଳିରେ ତା'ର ଭାରୀ ଜୋତାର ଶବ୍ଦ ଥିଲା ସମସ୍ତଙ୍କ ପାଇଁ ଆଶ୍ୱାସନାଜନକ ।

ପାଗଳକୁ ନେଇ ସମସ୍ୟା ଉପୁଜୁଥିଲା ସେ ଅଂଚଳରେ ସାଂପ୍ରଦାୟିକ ଦଙ୍ଗା ହେବାବେଳେ । କିଛିବର୍ଷର ବ୍ୟବଧାନରେ ରାଜନୈତିକ ଦଳମାନେ ବିଭିନ୍ନ କାରଣରୁ ନିଷ୍ପତ୍ତି ନେଉଥିଲେ ଦଙ୍ଗା କରିବାର । ଯଦିଓ ସହର ଅଂଚଳରେ ଦଙ୍ଗା ଉଗ୍ରରୂପ ଧାରଣ କରୁଥିଲା ଏବଂ ହତ୍ୟା, ଲୁଟତରାଜ ଓ ଶରଣାର୍ଥୀ ଶିବିରରେ ଶେଷ ହେଉଥିଲା, ସହରତଳିରେ ଦଙ୍ଗାର ସ୍ୱରୂପ ଥିଲା ସାମାନ୍ୟ ପ୍ରକାରର । ବିଭିନ୍ନ ସଂପ୍ରଦାୟଙ୍କ ଭିତରେ

ଗାଳିଗୁଲଜ, ଦୋକାନର ତାଲା ଭାଙ୍ଗିଦେବା ଏବଂ କେବେ କେବେ ସାମାନ୍ୟ ହାତାହାତିରୁ ସହରତଳିର ସାଂପ୍ରଦାୟିକ ଅସଦ୍‌ଭାବ କେବେ ଅଧିକ ଗୁରୁତର ପରିସ୍ଥିତି ଧାରଣ କରୁନଥିଲା ।

ପାଗଳର ଅଯତ୍ନବର୍ଦ୍ଧିତ ଦାଢ଼ି ଥିଲା ସମସ୍ୟାର କାରଣ । ଦାଢ଼ିଯୋଗୁଁ ସେ ସାମାନ୍ୟତଃ ମୁସଲମାନ ଭଳି ଦେଖାଯାଉଥିଲା । କିନ୍ତୁ ତାକୁ ପୁଣି ଭଲଭାବେ ନିରୀକ୍ଷଣ କରି ଦେଖିଲେ ସେ ଅନେକ ସମୟରେ ଜଗଦ୍‌ଗୁରୁ ଭଳି ଧାର୍ମିକ ନିଷ୍ଠାପର ହିନ୍ଦୁର ଭ୍ରମ ଜନ୍ମାଉଥିଲା । ହିନ୍ଦୁ ମୁସଲମାନ ଗଣ୍ଡଗୋଳବେଳେ ହିନ୍ଦୁମାନେ ପାଗଳକୁ ଏକ ସହଜ ଓ ସୁଖଲବ୍‌ଧ ଲକ୍ଷ୍ୟ ପାଇଁ ତାକୁ ମାରଧର କରୁଥିଲେ । ସେତେବେଳେ ପାଗଳ ଥିଲା ସେମାନଙ୍କ ପାଇଁ ଏକ ଧର୍ମାନ୍ଧ ମୁସଲମାନ । ଗଣ୍ଡଗୋଳର ଘଡ଼ିସନ୍ଧିବେଳେ ମୁସଲମାନମାନେ ନିଜର ସଂଖ୍ୟାଲଘୁତା ଦୃଷ୍ଟିରୁ ଚୁପ୍ ପଡ଼ିଯାଉଥିଲେ ; କିନ୍ତୁ ଅବସ୍ଥା ଟିକିଏ ଶାନ୍ତ ହୋଇଆସିଲେ ପ୍ରତିଶୋଧ ନେବାକୁ କାହାକୁ ନପାଇ, ବା ଆଉ କାହାକୁ ମାରଧର କରିବାର ସାହସ ଅଭାବରୁ, ଶେଷକୁ ଧରୁଥିଲେ ପାଗଳକୁ । ତାକୁ ସେମାନେ କଟ୍ଟର ହିନ୍ଦୁ, ସାଧୁମହାରାଜ ଇତ୍ୟାଦି କହି ପିଟାପିଟି କରୁଥିଲେ । ଏହିପରି ଭାବରେ ପାଗଳ ଦୁଇଆଡୁ ଅସୁବିଧାରେ ପଡୁଥିଲା ; କିନ୍ତୁ ପ୍ରବଳ ଦଙ୍ଗା ପରିସ୍ଥିତିରେ ମଧ ଗଳି ଭିତରେ ଭିତରେ ନିଜର ପହରାଦାରୀ ଜାରି ରଖୁଥିଲା ।

ଦଙ୍ଗାର ଅନେକ ଅଲିଖିତ ନୀତିନିୟମ ଥିଲା । ଦଙ୍ଗା ଠିକ୍ କୋଉଦିନ ଆରମ୍ଭ ହେବ, ସହରତଳିରେ ସେ ଖବର ପହଞ୍ଚି ଯାଉଥିଲା ବେଶ୍ ଆଗରୁ । ରାତିରେ ସହରରୁ ଛୋଟକାଟ ନେତାମାନେ ଆସି ସହରତଳିରେ ଥିବା ତାଙ୍କର ରାଜନୈତିକ ଚେଲାମାନଙ୍କ ସହିତ ଘଣ୍ଟା ଘଣ୍ଟା, କପ୍ ପରେ କପ୍ ଚା' ପିଇ, ଗୁପ୍ତ ମନ୍ତ୍ରଣା କରୁଥିଲେ ଏବଂ ସକାଳ ହେବା ଆଗରୁ ଚାଲିଯାଉଥିଲେ । ତା ଆରଦିନ ସକାଳୁ ବିଧିବଦ୍ଧ ଭାବରେ ଗଣ୍ଡଗୋଳ ଆରମ୍ଭ ହେଉଥିଲା ବରଗଛତଳ ଚା'ଦୋକାନରୁ ।

ଗଛ ତଳେ ପାଖାପାଖି ଦୁଇଟି ଦୋକାନ ଥିଲା ଯେଉଁଥିରୁ ଗୋଟିକର ନାଁ ଥିଲା ହିନ୍ଦୁ ଚା'ଦୋକାନ । ଅନ୍ୟ ଦୋକାନଟି ଗାନ୍ଧିଜୀଙ୍କ ନାଁରେ ନାମିତ ହୋଇଥିଲା କିନ୍ତୁ ସମସ୍ତେ ତାକୁ ମୁସଲମାନ ଚା'ଦୋକାନ ବୋଲି କହୁଥିଲେ, ଏବଂ ବୁଢ଼ା ମୁସଲମାନ ଦୋକାନୀକୁ ପରିହାସ କରି ମହାତ୍ମା ବୋଲି ଡାକୁଥିଲେ । ଯଦିଓ ପୁଲିସ ଓ ଅନ୍ୟ ସରକାରୀ ଲୋକ ଦଙ୍ଗା ବିଷୟରେ ଶେଷପର୍ଯ୍ୟନ୍ତ ସଂପୂର୍ଣ୍ଣ ଅଜ୍ଞ ରହୁଥିଲେ ଏବଂ ଗଣ୍ଡଗୋଳ ଶେଷ ହେବାବେଳକୁ ଦଳବଳ ନେଇ ସେଠାରେ ଆସି ପହଞ୍ଚୁଥିଲେ, ଆସନ୍ନ ଗୋଳମାଳର ଖବର ଅନ୍ୟ ସମସ୍ତେ ଆଗରୁ ଜାଣିପାରୁଥିଲେ । ଦଙ୍ଗା ହେବା ଦିନ ମହାତ୍ମା ବୁଢ଼ା ଖୁବ୍ ସକାଳୁ ଯାଇ ଚୁପଚାପ ତା'ର ଦୋକାନକୁ ଖୋଲି ଦରକାରୀ ଓ ଭଙ୍ଗୁର ଜିନିଷସବୁକୁ ଅଲଗା କରି ଲୁଚାଇରଖି ଦୋକାନରେ ପୁଣି ତାଲା ବନ୍ଦକରି

ଘରକୁ ଚାଲିଯାଉଥିଲା । ତା ପରବର୍ତ୍ତୀ ଘଟଣାସବୁର ଦୃଶ୍ୟଲେଖ ମୋଟାମୋଟି ଭାବରେ ଥିଲା ନିମ୍ନପ୍ରକାରର ।

ଗଳିମାନଙ୍କରେ ପଦଚାରଣା କରିସାରି ପାଗଳ ଆସି ସକାଳ ନ'ଟାରେ ବରଗଛ ତଳେ ବସିଲା । ସେ ଜାଣିଥିଲା ଯେ ହିନ୍ଦୁ ହେଉ ବା ମୁସଲମାନ ହେଉ, କୋଉ ନା କୋଉ ଚା'ଦୋକାନରୁ ତାକୁ ଡାକରା ଆସିବ, ନହେଲେ ଚା ପିଇବାକୁ ଆସିଥିବା ଗ୍ରାହକମାନଙ୍କ ଭିତରୁ କେହି ଆସି ତାକୁ ଚା' ପିଇବାକୁ ଡାକିବ । ଏଇ ଅପେକ୍ଷାରେ ସେ ସଂପୂର୍ଣ୍ଣ ନିସ୍ପୃହ ଭାବରେ ବା ନିସ୍ପୃହ ହେବାର ଭାବଭଙ୍ଗୀ କରି, ବସିରହିଲା । ଆଜି କିନ୍ତୁ ସାଂପ୍ରଦାୟିକ ଦଙ୍ଗା ଦିନ କେହି ତା ଆଡ଼କୁ ଅନାଇଲେ ନାହିଁ ଏବଂ ପାଗଳକୁ ବିନା ଚା'ରେ ରହିବାକୁ ପଡ଼ିଲା । କିଛି ସମୟ ପରେ ଦଳ ଦଳ ଯୁବକ ଯାଇ ବରଗଛ ତଳେ ଜମାହେଲେ । ହଠାତ ସେମାନେ ମହାତ୍ମା ଗାନ୍ଧି, ହିନ୍ଦୁ ଏକତା, ଭାରତମାତା ଇତ୍ୟାଦିଙ୍କର ଜୟଜୟକାର କରି ସ୍ଲୋଗାନ ଦେବା ଆରମ୍ଭ କଲେ । ଯେତେବେଳେ ଆଉ ଟିକିଏ ଖରା ହେଲା ଏବଂ ଭିଡ଼ ବଢ଼ିଗଲା, ସ୍ଲୋଗାନମାନ ବଦଳିଗଲା, ଯଥା : ମୁସଲମାନ ମୁର୍ଦ୍ଦାବାଦ, ରକ୍ତ ବଦଳରେ ରକ୍ତ, ଦେଶଦ୍ରୋହୀ ଦେଶ ଛାଡ଼ ଇତ୍ୟାଦି ।

ପାଗଳ ବିଚରା ଚା' ନପାଇ ଆସି ଭିଡ଼ ପାଖରେ ଠିଆହେଲା ଏବଂ ଏଭଳି ମୁଖଭଙ୍ଗୀ କଲା ଯେପରିକି ସେ କଥା କହିପାରୁଥିଲେ ଅନ୍ୟମାନଙ୍କ ସହିତ ସ୍ୱର ମିଳାଇ ସ୍ଲୋଗାନ ଦେଇଥାନ୍ତା ! ଏଥରକ ଦଳଟି ମୁସଲମାନ ଚା'ଦୋକାନ ଆଡ଼କୁ ଆଗେଇଲେ । ମହାତ୍ମା, ଯେ କି ଦଳର ସମସ୍ତ ଟୋକାଙ୍କୁ ଚିହ୍ନିଥିଲା ଏବଂ ଏଇ କ୍ରମ ସହିତ ପରିଚିତ ଥିଲା, ଚୁଲି ଉପରୁ ଚା' କେଟଲି ଉଠାଇ ରଖିଦେଇ ବାହାରେ ଆସି ଠିଆହେଲା । ଟୋକାସବୁ ଯାଇ ପ୍ରଥମେ ଦୋକାନର ସାଇନବୋର୍ଡ଼କୁ ଟାଣି ବାହାର କରିଦେଲେ । ତାକୁ ତଳେ ପକାଇ ଦି'ଜଣ ଟୋକା ତା ଉପରେ ନାଚକୁଦ କରିବାକୁ ଆରମ୍ଭ କଲେ । ଏଥରକ ଟୋକାମାନେ ଆଲମାରିର କାଚ ଭାଙ୍ଗି ତା ଭିତରୁ ବିସ୍କୁଟ ଇତ୍ୟାଦି ଆଣି ନିଜ ଭିତରେ ବାଣ୍ଟିଲେ । ହିନ୍ଦୁ ଚା'ଦୋକାନୀ ବି ଏଇ ଖୁସିରେ ତା ନିଜ ଦୋକାନରୁ ଖାଇବା ଜିନିଷ ଆଣି ବାଣ୍ଟିବାରେ ଲାଗିଲା ଏବଂ ତା'ର ପଇସା ବାକ୍ସରେ ଚାବି ପକାଇ ଆସି ଦଳ ସାଙ୍ଗରେ ମିଶି ସ୍ଲୋଗାନ ଦେବାରେ ଲାଗିଲା । ଶେଷରେ ହିନ୍ଦୁ ଚା'ଦୋକାନର ଚାକରଟୋକା ମୁସଲମାନ ଦୋକାନର ଚୁଲି ଲଗାଇ ସେଥିରେ ଚା' କରି ସମସ୍ତଙ୍କୁ ପିଇବାକୁ ଦେଲା । ଏଇପରି ଭାବରେ ଖରା ଟାଣ ହୋଇଯିବାରୁ ସ୍ଲୋଗାନର ତୀବ୍ରତା ଓ ଟୋକାଙ୍କର ଉତ୍ସାହ ଧିମା ପଡ଼ିଗଲା ଏବଂ ସମସ୍ତେ ଘରକୁ ଯିବାକୁ ବାହାରିଲେ । ଦଙ୍ଗା କ୍ରମରେ ଯେ ମୁସଲମାନମାନଙ୍କୁ ଶାରୀରିକ ଆଘାତ କରିବା ଅଂଶଟି ଏ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇନଥିଲା, ସେକଥା କିଏ ମନେପକାଇଦେଲା । ଏଥରକ ସମସ୍ତଙ୍କ ଆଖି ପଡ଼ିଲା ପାଗଳ ଉପରେ । ଚାରିଜଣ ଟୋକା 'ଶଳା ପଠାଣ' ବୋଲି କହି ତା

ଆଡ଼କୁ ମାଡ଼ିଗଲେ । ତାଙ୍କ ଭିତରୁ ଜଣେ ଧକ୍କାମାରି ପାଗଳଙ୍କୁ ତଳେ ପକାଇଦେଲା । ଆଉ ଦି'ଜଣ ତାକୁ ଗୋଇଠା ମାରିଲେ । ତା'ପରେ ପୁଣି ମହାତ୍ମା ଗାନ୍ଧି ଇତ୍ୟାଦି ସ୍ଲୋଗାନ ଦେଇ ଜନତା ସେଠାରୁ ବାହାରିଗଲେ ।

ହିନ୍ଦୁ ଚା'ଦୋକାନୀ ଓ ତା'ର ଟୋକା ନିଜ ଦୋକାନକୁ ଫେରିଗଲେ । ମହାତ୍ମା କୋଉଠି ଥିଲା ପୁଣି ଆସି ନିଜ ଦୋକାନରେ ଜିନିଷପତ୍ରକୁ ସଜାଡ଼ିଲା । ପାଗଳ ଉଠି ଦେହରୁ ଧୂଳି ଝାଡ଼ି ଠିଆହୋଇ ଚାରିଆଡ଼କୁ ଅନାଇଲା, ଯେମିତି କୁଆଡ଼େ କିଛି ହୋଇନାହିଁ । ମହାତ୍ମା ତାକୁ ଡାକି ଚା' ପିଇବାକୁ ଦେଲା । କାଳେ ମହାତ୍ମା ନିଜର ଉଦାରତା ଦେଖାଇବାରେ ତାକୁ ବଳିଯିବ ସେଇ ଭୟରେ ହିନ୍ଦୁ ଦୋକାନୀ ବି ଜବରଦସ୍ତି ପାଗଳକୁ ଖାଇବାକୁ ଦେଲା ଓ ଚା' ପିଆଇଲା । ଘଣ୍ଟାକ ପରେ ଯେତେବେଳେ ପୁଲିସ ଆସି ପହଞ୍ଚିଲା, ମହାତ୍ମା ତା'ର ସାଇନବୋର୍ଡ଼କୁ ପିଟାପିଟି କରି, ସିଧାସଳଖ କରି ଦୋକାନରେ ଟାଙ୍ଗି ସାରିଥିଲା । ସନ୍ଧ୍ୟାବେଳକୁ ବରଗଛ ତଳେ ପୁଣି ଭିଡ଼ ଜମିଲା ଏବଂ ସମସ୍ତେ ଭୁଲିଗଲେ ଯେ ସକାଳେ ଭୟଙ୍କର କିଛି ଘଟିଯାଇଛି ।

ସତ କହିବାକୁ ଗଲେ ସହରତଳି ସାଂପ୍ରଦାୟିକ ଗଣ୍ଡଗୋଳରେ ଭୟଙ୍କର କିଛି ନଥିଲା, କାରଣ ଏଇ ଗୋଳମାଳର ଅନେକ କଠୋର ନୀତିନିୟମ ଥିଲା । ଗୋଳମାଳର ଆରମ୍ଭ ଓ ଶେଷ ହେଉଥିଲା ବରଗଛ ତଳେ, ବସତି ବାହାରେ ଏକ ସର୍ବସାଧାରଣ ଜାଗାରେ । ଗୋଳମାଳରେ କେତେ କ୍ଷୟକ୍ଷତି କରାଯିବ ତା'ର ଏକ ସୀମା ଧାର୍ଯ୍ୟ ଥିଲା । ଏଇ ନିୟମାବଳୀର ସବୁଠାରୁ କଠୋର ସର୍ତ୍ତ ଥିଲା ଯେ ମହାତ୍ମା ଉପରକୁ ହାତ ଉଠାଇବା ତ ଦୂରର କଥା, ତାକୁ କେହି ଆଙ୍ଗୁଠି ଦେଖାଇ ଅସମ୍ମାନଜନକ କିଛି କହିବେ ନାହିଁ । (ଏ କଥାର କେବଳ ଥରେ ମାତ୍ର ବ୍ୟତିକ୍ରମ ହୋଇଥିଲା ଯେଉଁଦିନ ଜଣେ ଅପରିଣତ ଦାୟିତ୍ୱଶୂନ୍ୟ ଟୋକା ମହାତ୍ମାକୁ ମୁସଲମାନ ବୋଲି କହିଲା । ଏ ଘଟଣା ପରେ ଟୋକାକୁ ଧକ୍କା ଦେଇ ଅନ୍ୟମାନେ ଦଳରୁ ବାହାର କରି ଦେଇଥିଲେ ଏବଂ ଟୋକା କାନ୍ଦି କାନ୍ଦି ଘରକୁ ଫେରିଯାଇଥିଲା ।)

ସମୟକ୍ରମେ କିନ୍ତୁ ଏଇ ନୀତିନିୟମ ସବୁ ଆସ୍ତେ ଆସ୍ତେ ବଦଳିବାରେ ଲାଗିଲା । ଯୁବକମାନେ ବୁଢ଼ାମାନଙ୍କ ହାତରୁ ନିଜ ହାତକୁ କ୍ଷମତା ନେଇଗଲେ । ସହରତଳିରେ ନେତୃତ୍ୱ କରୁଥିବା ନୂଆ ଟୋକାମନେ ଦୋକାନମାନଙ୍କରୁ ଯାଇ ଟଙ୍କା ଆଦାୟ କରିବାରେ ଲାଗିଲେ । ଏଥରକ ଯେତେବେଳେ ଦଙ୍ଗାର ମସୁଧା କରିବା ପାଇଁ ରାତିରେ ସହରର ନୂଆ ନେତାମାନେ ସହରତଳିକୁ ଆସିଲେ, ଚେଲାମାନଙ୍କ ସହିତ ସେମାନଙ୍କର କଥୋପକଥନ ସଂପୂର୍ଣ୍ଣ ଭିନ୍ନ ଧରଣର ଓ ନିମ୍ନୋକ୍ତ ପ୍ରକାରର ଥିଲା ।

ଗଲାଥର ଦଙ୍ଗାରେ ଏଠାରେ କ'ଣ ସବୁ ହୋଇଥିଲା ? ପଚାରିଲା ନେତା ।

ଏ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଚେଲାମାନେ ଟିକିଏ ଦ୍ୱିଧାଗ୍ରସ୍ତ ହେଲେ

ଏବଂ ଏ ଅଞ୍ଚଳରେ ସାଂଘାତିକ କିଛି ଘଟି ନଥିବାରୁ ଅସମଞ୍ଜସରେ ପଡ଼ିଲେ । ତଥାପି ସବୁଠାରୁ ଚାଲାକ ଚେଲା ପରିସ୍ଥିତିକୁ ସମ୍ଭାଳି ନେଲା ଏବଂ ଘଟଣାଟିକୁ ଅତିରଞ୍ଜିତ କରି କହିଲା, ଏଠାରେ ସବୁ ମୁସଲମାନଙ୍କ ଦୋକାନକୁ ଭାଙ୍ଗି ଦିଆଯାଇଥିଲା ।

କେତେ ଲୋକ ମରିଥିଲେ ?

ଏ ପ୍ରଶ୍ନଟି ବର୍ତ୍ତମାନ ସମସ୍ତଙ୍କୁ ଅତ୍ୟନ୍ତ ଲଜ୍ଜାରେ ପକାଇଦେଲା । ସହରରେ ଯଦିଓ ବେଶ୍ କିଛି ଲୋକଙ୍କୁ ହତ୍ୟା କରାହୋଇଥିଲା, ଏଇ ସହରତଳିରେ କେବଳ ପାଗଳକୁ ଧକ୍କା ମାରି ତଳେ ପକାଇଦେବା ବ୍ୟତୀତ ଆଉ କୌଣସି ଗୁରୁତର ଘଟଣା ଘଟି ନଥିଲା । ଏଇ ପାଗଳଜନିତ ଘଟଣାର ଅତିଶୟୋକ୍ତି କରି ଚାଲାକ ଚେଲା କହିଲା, ଜଣେ ମୁସଲମାନର ହାତଗୋଡ଼ ଭାଙ୍ଗି ଦିଆହେଇଥିଲା ।

ନେତା ଏଥିରେ ସନ୍ତୁଷ୍ଟ ହେଲେ ନାହିଁ । କହିଲେ, ତମେମାନେ ସବୁ ମାଇଚିଆ ଜଣାପଡୁଚ । ଦଙ୍ଗା ବଡ଼ ଗଭୀର ଜିନିଷ, ତମେ ତାକୁ ଖେଳଘର ବୋଲି ଭାବୁଚ । ଆମେ ଭାବିଥିଲୁ ପନ୍ଦର ମିନିଟ ତମକୁ ସବୁକଥା ବୁଝାଇ ଦେଇ ପୁଣି ଅନ୍ୟ ଅଞ୍ଚଳକୁ ଯିବୁ । କିନ୍ତୁ ଦେଖାଯାଉଚି ଏଠି ଆମକୁ ବେଶି ସମୟ ରହିବାକୁ ପଡ଼ିବ । କ'ଣ ମଦ ମିଳିବ ତ ରାତିକ ପାଇଁ, ନା ଆମକୁ କହିଦବ ଯେ ଦୋକାନ ବନ୍ଦ ହୋଇଗଲାଣି ।

ରାତିରେ ଅନେକ ସମୟ ବସି, ତା ପରଦିନର ଦଙ୍ଗା ପାଇଁ ବିଧିବଦ୍ଧ ଯୋଜନା କରି ନେତାମାନେ ଚାଲିଗଲେ । ଖୁବ୍ ସକାଳୁ ସଂଖ୍ୟାଲଘୁ ଲୋକଙ୍କୁ ଖବର କରିଦିଆଗଲା ଯେ ସେମାନେ ଘରଛାଡ଼ି ଚାଲିଯା'ନ୍ତୁ ଏବଂ ଭୟରେ ସମସ୍ତେ ଘରଛାଡ଼ି ଚାଲିଗଲେ । କେବଳ ମହାତ୍ମା କହିଲା, ଯଦି ବିପଦ ଆସିବ, ମୁଁ ଘର ଛାଡ଼ି ବାହାରକୁ ଯିବି କାହିଁକି ?

ସେଥର ଦଙ୍ଗାରେ କିନ୍ତୁ ଟୋକାମାନେ ମହାତ୍ମା ଦୋକାନରେ ପ୍ରଥମ ଥର ପାଇଁ ନିଆଁ ଲଗାଇ ଦେଲେ ଏବଂ ସତକୁ ସତ ପାଗଳର ଗୋଡ଼ ଭାଙ୍ଗିଦେଲେ । ତେବେ ସେଥରକ ବି ମହାତ୍ମା ଦେହରେ କେହି ହାତ ଲଗାଇଲେ ନାହିଁ । ଦଙ୍ଗା ପରେ ପାଗଳ ହସପିଟାଲରୁ ଛୋଟେଇ ଛୋଟେଇ ଫେରିଲା ଏବଂ ମହାତ୍ମା ବି ଦୋକାନକୁ ଠିକ୍‌ଠାକ୍ କରି ପୁଣି ସଜାଡ଼ିନେଲା । ଏଇ ସମୟରେ ନିର୍ବାଚନ ଆସିବାକୁ ନେତାମାନେ ଆସି ଧର୍ମ ଧର୍ମ ଭିତରେ ସଦଭାବ ବିଷୟରେ ବକ୍ତୃତାମାନ ଦେଲେ । ମହାତ୍ମା କହିଲା, ମୁଁ କହୁନଥିଲି ପୁଣି ସବୁ ଠିକ୍ ହୋଇଯିବ ।

କିଛିଦିନ ପରେ ପୁଣି ସବୁକିଛି ପୂର୍ବ ଅବସ୍ଥାକୁ ଫେରିଗଲା । ଏଥରକ କେବଳ ହିନ୍ଦୁ ମୁସଲମାନ ନୁହେଁ, ହିନ୍ଦୁ-ଶିଖ୍ ଦଙ୍ଗାର ମଧ୍ୟ ସୂତ୍ରପାତ ହେଲା ଏବଂ ହିନ୍ଦୁ-ଶିଖ୍ ଭାଇ ଭାଇ ବଦଳରେ ହିନ୍ଦୁ-ମୁସଲମାନ ଭାଇ ଭାଇ ସ୍ଲୋଗାନ ଚାଲିଲା । ପାଗଳର ଦୁର୍ଭାଗ୍ୟକୁ ଏଥରକ ଟୋକାମାନେ ତାକୁ ଅକାଳୀ କରିଦେଲେ ଏବଂ ଲଙ୍ଗଡ଼ା

ସର୍ଦ୍ଦାର ବୋଲି କହି ମାରିବାକୁ ଧାଇଁଲେ ।

ନିକଟ ଭବିଷ୍ୟତରେ ଯେଉଁ ସାଂପ୍ରଦାୟିକ ଦଙ୍ଗା ହେବାକୁ ଯାଉଥିଲା, କେବଳ ପୁଲିସବାଲାଙ୍କ ବ୍ୟତୀତ ସମସ୍ତେ ଜାଣିଥିଲେ ଯେ ସେଇଟି ଅତି ମାରାତ୍ମକ ଧରଣର ହେବ । ସହର ଓ ସହରତଳିରୁ ସଂଖ୍ୟାଲଘୁ ସଂପ୍ରଦାୟର ସବୁ ଲୋକ ନିରାପଦ ଜାଗାକୁ ଚାଲିଯାଇଥିଲେ । ଏପରିକି ହିନ୍ଦୁ ଚା'ଦୋକାନୀ ମଧ୍ୟ ନିଜ ଦୋକାନରେ ତାଲା ବନ୍ଦକରି ଗାଁକୁ ପଳାଇ ଯାଇଥିଲା । ସହରତଳିର ମୁରବିସ୍ଥାନୀୟ ଲୋକମାନେ ମହାତ୍ମାକୁ ଯାଇ କହିଲେ, ତମେ ଏଇ ଦି'ଚାରି ଦିନ କୁଆଡ଼େ ପଳାଇଯାଅ । ମହାତ୍ମା କହିଲା, କିଛି ବି ହେବ ନାହିଁ । ଆରଥର ବି ମନେ ସମସ୍ତେ ଡରାଉଥିଲେ, କ'ଣ ହେଲା ମୋର ?

ଆରଦିନ ସକାଳେ ଯେତେବେଳେ ଟୋକାମାନେ ପାଗଳକୁ ମାରିବା ପାଇଁ ଦୌଡ଼ିଲେ, ସେମାନଙ୍କ ହାତରେ ଛୁରୀ ଥିଲା । ଏଥରକ ମହାତ୍ମା ଆଉ ସେମାନଙ୍କୁ ଚିହ୍ନିପାରିଲା ନାହିଁ ; କାରଣ ସେମାନଙ୍କ ମୁହଁର ଭାବଭଙ୍ଗୀ ସବୁ ତା'ର ଅପରିଚିତ ଥିଲା । ପାଗଳ ଯେତେବେଳେ ଚା'ଦୋକାନ ଆଡ଼କୁ ଛୋଟେଇ ଛୋଟେଇ ଧାଇଁ ଆସିଲା, ମହାତ୍ମା ଦୋକାନ ଭିତରୁ ବାହାରିଆସି ପାଟିକରି ସିଧା ଗହଳି ଭିତରକୁ ପଶିଗଲା । ଶଳା ମୁସଲମାନକୁ ମାର ବୋଲି ଚିତ୍କାର ହେଲା ଏବଂ କାହାର ଛୁରୀ ଯାଇ ମହାତ୍ମାର ଛାତିରେ ଲାଗିଲା ଏବଂ ସେ ତଳେ ପଡ଼ିଗଲା । ହଠାତ ସମସ୍ତେ ଦଉଡ଼ିବାରେ ଲାଗିଲେ ଏବଂ ମୁହୂର୍ତ୍ତକରେ ସେ ଜାଗାଟି ଶୂନଶାନ ହୋଇଗଲା । ପାଗଳ ଯାଇ ମହାତ୍ମାକୁ ଉଠାଇବାକୁ ଚେଷ୍ଟା କଲା । ସେତେବେଳକୁ ଆଉ ମହାତ୍ମା ଦେହରେ ଜୀବନ ନଥିଲା । କିନ୍ତୁ ସେକଥା ନବୁଝି ପାଗଳ ତା ପାଖରେ ବସିରହିଲା ।

ଏତିକିବେଳେ ସେଠାରେ ଗୋଟିଏ ଜିପ୍ ଆସି ଅଟକିଲା । ପାଗଳ ମୁହଁରୁ ପ୍ରଥମଥର ପାଇଁ କଥା ବାହାରିଲା, ପୁଲିସ ପୁଲିସ । ଜିପ୍‌ରୁ କିନ୍ତୁ ଯେଉଁମାନେ ବାହାରିଲେ ସେମାନେ ପୁଲିସ ନଥିଲେ । ସେମାନେ ଥିଲେ ସହରର ଦାୟିତ୍ୱସମ୍ପନ୍ନ ନେତୃବୃନ୍ଦ । ସହରତଳିର ଟୋକାମାନଙ୍କ ଭଳି ସେମାନେ ଦୁର୍ବଳଚିତ୍ତ ଓ ପୌରୁଷହୀନ ନଥିଲେ ଏବଂ ମୁର୍ଦ୍ଦାରକୁ ଦେଖି ଭୟରେ ପଳାଇବାର ଲୋକ ନଥିଲେ । ମହାତ୍ମାକୁ ଦେଖାଇ ପାଗଳ ଏଥରକ ଡାକ୍ତର ଡାକ୍ତର ଚିତ୍କାର କଲା । ଏଥରକ ଜିପ୍‌ର ସମର୍ଥ ଯୁବକମାନେ ସମବେତ କଣ୍ଠରେ ହସିଲେ । ସେମାନଙ୍କ ଭିତରୁ ଦୁଇଜଣ ଯାଇ ପାଗଳକୁ ଧରିଲେ ଏବଂ ଆଉ ଜଣେ ଜିପ୍‌ରୁ ପେଟ୍ରୋଲ ବାହାର କରି ଟିଣରେ ଭର୍ତ୍ତି କଲା । ଏଥରକ ସେମାନେ ପାଗଳକୁ ବାନ୍ଧିଦେଇ ତା ଉପରେ ସବୁ ପେଟ୍ରୋଲ ଢାଳିଦେଲେ ।

ଏଇ ସମୟରେ ସେମାନଙ୍କ ଭିତରୁ ଜଣେ କହିଲା, ଏ ଲୋକଟା ପାଗଳ ଭଳି ଜଣାପଡୁଚି । ହିନ୍ଦୁ କି ମୁସଲମାନ କେଜାଣି ! ଦଳର ନେତା ପାଗଳକୁ ପଚାରିଲା, ତୁ କୋଉ ସଂପ୍ରଦାୟର ? ପାଗଳର ମୁହଁ ଯେମିତି ହଠାତ ଖୋଲିଥିଲା ସେମିତି ହଠାତ

ବନ୍ଦ ହୋଇଗଲା । ସେ କିଛି ନ କହି ଚୁପ୍ ରହିଲା ।

ଯୁବକମାନେ ପୁଣି ଉଚ୍ଚ ରୋଳରେ ହସିଲେ । ନେତା ଧୀରେ ସୁଷ୍ଠେ ପକେଟରୁ ସିଗାରେଟ୍ ବାହାର କରି ତାକୁ ଜଳାଇ ଧୂଆଁ ଟାଣିଲା । ସିଗାରେଟ୍ ସରିଯିବାରୁ ସେ ତା'ର ବଳକା ଟୁକୁଡ଼ାକୁ ଦୂରକୁ ଫିଙ୍ଗିଦେଲା ଓ ଦିଆସିଲିଟାକୁ ନିଜର ସହକର୍ମୀ ହାତକୁ ବଢ଼ାଇଦେଲା ।

# ସାକ୍ଷାତ୍‌କାର

ଦୁର୍ଭାଗ୍ୟ ସବୁବେଳେ ଏମିତି ଆସେ, ମନେ ମନେ ଭାବିଲା ଚନ୍ଦ୍ରହାସ । ତା'ର ଗାଡ଼ି ହୋଟେଲ ଭିତରେ ପଶିଛି କି ନାହିଁ, ସେ ଦେଖିଲା ତା'ର ପୁରୁଣା ବନ୍ଧୁ ଶୋଭନ ମଧ୍ଯ ହୋଟେଲ ଭିତରକୁ ପଶିଲା । କାର ପାର୍କରେ ଗାଡ଼ିକୁ ରଖୁ ରଖୁ ଚନ୍ଦ୍ରହାସ କହିଲା, ବର୍ତ୍ତମାନ ଗୋଟାଏ ଛୋଟ ସମସ୍ୟା ଉପୁଜିଲାଣି । ସମସ୍ୟାଟି କ'ଣ ସେ ବିଷୟରେ ଜାଣିବାର ସାମାନ୍ୟ ଆଗ୍ରହ ପ୍ରକାଶ ନକରି ଶର୍ବରୀ କହିଲା, ତାହେଲେ ଚାଲ ମତେ ଘରେ ଛାଡ଼ିଦେଇ ଆସିବ । ତା କଥାର ଜବାବ ନଦେଇ ଚନ୍ଦ୍ରହାସ କହିଲା, କିଏ ଜାଣିଥିଲା କେବେ କୋଉଠି ଦେଖା ହେଉ ନଥିବା ଏ ଲୋକଟା ମୋରି ଦୁର୍ଭାଗ୍ୟକୁ ଆଜି ଏଇ ହୋଟେଲକୁ ଏତିକିବେଳେ ଆସିବ ।

ଅନେକ କଷ୍ଟରେ ଚନ୍ଦ୍ରହାସ ଆଜିର ଏଇ ବ୍ୟବସ୍ଥା କରିଥିଲା । ସେ ଫିଲ୍ମ ତିଆରି କରୁଥିଲା ଏବଂ ଶର୍ବରୀ ଥିଲା ଅଧ୍ୟାପିକା । ସେମାନଙ୍କର ପରିଚୟ ହୋଇଥିଲା ଗୋଟାଏ ବିମାନ ଯାତ୍ରାରେ । ଚନ୍ଦ୍ରହାସ ତା'ର କାମରେ ଯାଉଥିଲା ଏବଂ ଶର୍ବରୀ ଯାଉଥିଲା କ'ଣ ଗୋଟାଏ ସେମିନାରରେ ଯୋଗ ଦେବା ପାଇଁ । ଯାତ୍ରାର ଦୁଇ ଘଣ୍ଟା ସମୟ ଭିତରେ ଚନ୍ଦ୍ରହାସ ଶର୍ବରୀ ସହିତ ବନ୍ଧୁତା ସ୍ଥାପନା କରିଥିଲା । ଫେରିବାବେଳେ ମଧ୍ଯ ଚନ୍ଦ୍ରହାସ ନିଜର ସବୁ କାର୍ଯ୍ୟକ୍ରମକୁ ଏପାଖ ସେପାଖ କରି ଶର୍ବରୀ ସହିତ ଏକା ଫ୍ଲାଇଟ୍‌ରେ ଫେରିବାର ବ୍ୟବସ୍ଥା କରିଥିଲା । ତା'ପରେ ସେ ଶର୍ବରୀ ସହିତ ନିଜର ସଂପର୍କକୁ ଅବ୍ୟାହତ ରଖିଥିଲା ଏବଂ କାଳକ୍ରମେ ସେମାନଙ୍କ ସଂପର୍କରେ ସାମାନ୍ୟ ଘନିଷ୍ଠତା ମଧ୍ଯ ଆସିଯାଇଥିଲା । ଆଜିକାଲି ଶର୍ବରୀର ପ୍ରାଥମିକ କୁଣ୍ଠା ଆଉ ନଥିଲା; କିନ୍ତୁ ଚନ୍ଦ୍ରହାସ ତାକୁ ଏ ପର୍ଯ୍ୟନ୍ତ ସଂପୂର୍ଣ୍ଣ ଭାବରେ ପାଇବାକୁ ସମର୍ଥ ହୋଇନଥିଲା । ଅନେକ ଦିନର ଅଧ୍ୟବସାୟ, ଅନୁନୟ ବିନୟ ପରେ ସେ ଶର୍ବରୀକୁ ରାଜି କରାଇଥିଲା ଯେ ସେମାନେ ଯାଇ ଗୋଟାଏ ଦିନ ହୋଟେଲର ନିର୍ଜନ କୋଠରି ଭିତରେ କଟାଇବେ । ଚନ୍ଦ୍ରହାସ ହୋଟେଲରେ ରୁମ୍ ରଖାଇଥିଲା ଏବଂ ଚାରିଦିନ ଧରି ସେଇ ମୁହୂର୍ତ୍ତର ଅପେକ୍ଷାରେ ସମୟ ଗଣୁଥିଲା । ତା'ର ମଝିରେ ମନେହେଉଥିଲା ଯେ ଏ ଅପେକ୍ଷା ତା'ର ଆଉ ସହ୍ୟ ହେବ ନାହିଁ । କିନ୍ତୁ ସମୟ ଗଣନା କ୍ରମେ ଦିନ, ଘଣ୍ଟାରୁ

ଯାଇ ମିନିଟରେ ପହଞ୍ଚିଲା ଏବଂ ହୋଟେଲ ଫାଟକ ଦେଇ ଭିତରେ ପଶିବା ମୁହୂର୍ତ୍ତଟି ଥିଲା ତା'ର ଅପେକ୍ଷାର ସମାପ୍ତି । ଏଭଳି ସମୟରେ ଏକ ରାହୁର ଆବିର୍ଭାବ ବର୍ତ୍ତମାନ ତା'ର ସମସ୍ତ ଯୋଜନାକୁ ଭ୍ରଷ୍ଟ କରିଦେବା ଭଳି ଜଣାପଡୁଥିଲା ।

ଶର୍ବରୀ ପୁଣି କହିଲା, ଚାଲ, ମତେ ଛାଡ଼ିଦେଇ ଆସ । ଚନ୍ଦ୍ରହାସ କହିଲା, ତମେ ବ୍ୟସ୍ତ ହୁଅନାହିଁ, ମୁଁ ଗୋଟାଏ ମିନିଟରେ ଏ କଥାର କିଛି ଗୋଟାଏ ନିଷ୍ପତ୍ତି କରୁଛି । ଏକଥା କହି ସେ ଆଖି ବନ୍ଦକରି ନେଲା ଏବଂ ଯେତେବେଳେ ଆଖି ଖୋଲିଲା, ସେ ସମାଧାନରେ ବି ପହଞ୍ଚି ସାରିଥିଲା । ବ୍ରିଫ୍‌କେସରୁ ଗୋଟାଏ ଛୋଟ ପ୍ୟାଡ୍ ବାହାର କରି ସେ ଶର୍ବରୀ ହାତରେ ଦେଲା । କହିଲା, ତମେ ହେଉଛ ଜଣେ ପତ୍ରକାର ଏବଂ ତମେ ଆସିଛ ମତେ ଇଣ୍ଟରଭିଉ କରିବା ପାଇଁ । ମୁଁ ତମକୁ ଆଜି ଦିନ ବାରଟାବେଳେ ଏଇ ହୋଟେଲର ଲାଉଂଜରେ ସାକ୍ଷାତ କରିବା ପାଇଁ ସମୟ ଦେଇଛି । ମୁଁ ଗାଡ଼ି ଭିତରେ ବସି ରହିବି ଏବଂ ତମେ ଆଗେ ହୋଟେଲ ଭିତରୁ ଯାଇ ମୋର ଅପେକ୍ଷା କରିବ । ଦୁଇ ମିନିଟ ପରେ ମୁଁ ଭିତରକୁ ଆସିବି । ଯଦି ସେତେବେଳକୁ ମୋର ସାଙ୍ଗ ସେଠାରେ ଥାଏ, ସେ ସେଠାରେ ଥିବା ପର୍ଯ୍ୟନ୍ତ ଆମକୁ ଇଣ୍ଟରଭିଉର ଅଭିନୟ କରିବାକୁ ପଡ଼ିବ । ସେ ଚାଲିଗଲେ ଆମେ ଭିତରକୁ ଯିବା ।

ଚନ୍ଦ୍ରହାସ ଭାବିଥିଲା ଶର୍ବରୀ ତା'ର ଏ ପ୍ରସ୍ତାବକୁ ରୋକଠୋକ ନାକଚ କରିଦେବ । କିନ୍ତୁ ଶର୍ବରୀ ତା ହାତରୁ ନୋଟ୍‌ଖାତାକୁ ନେଇ ପର୍ସ ଭିତରେ ରଖିଲା । ନିଜ ପାଖରେ କଲମ ଅଛି କି ନା ଦେଖିଲା ଏବଂ ଗାଡ଼ି ଭିତରୁ ଓହ୍ଲାଇ କହିଲା, ଠିକ୍ ଅଛି ; ତମେ ଦୁଇ ମିନିଟ ଭିତରେ ଆସ । ଦି'ପାଦ ଯାଇ ସେ ପଛକୁ ଅନାଇ ଚନ୍ଦ୍ରହାସକୁ ପଚାରିଲା, ମୋର ନାଁ କଣ ? ନିଜର ଅପ୍ରସ୍ତୁତ ଅବସ୍ଥାକୁ କାଟି ଚନ୍ଦ୍ରହାସ କହିଲା, ଉମା ; ଉମା ଯାଦବ । ଷ୍ଟାର ପତ୍ରିକାର ସାମ୍ବାଦିକ ।

ଦୁଇ ମିନିଟ ପରେ ଗାଡ଼ି ବନ୍ଦ କରି ଚନ୍ଦ୍ରହାସ ହୋଟେଲ ଭିତରେ ପଶିଲା । ସେ ଶୋଭନକୁ ଦେଖିବା ଆଗରୁ ଶୋଭନ ତାକୁ ଦେଖିଲା ଏବଂ ଚଉକିରୁ ଉଠି ତା ଆଡ଼କୁ ଆସି କହିଲା, ଏକା ସହରରେ ରହୁଛେ, କିନ୍ତୁ ଦେଖା ହେଉଛି ବର୍ଷକେ ଥରେ । ତା ପୁଣି ଏମିତି ଅଦ୍ଭୁତ ଜାଗାରେ । ଚନ୍ଦ୍ରହାସ ଭାବିଲା ସେ ପଚାରି ଜାଣିନେବ ଶୋଭନ କେତେ ସମୟ ରହୁଚି ଏବଂ ଯଦି ସେ ବେଶି ସମୟ ରହୁନଥାଏ ତେବେ ସେ ବର୍ତ୍ତମାନ ଶର୍ବରୀ ପାଖକୁ ନଯାଇ ଶୋଭନ ଚାଲିଯିବା ପରେ ଯିବ । ସାମାନ୍ୟ ଆଳାପ ବିନିମୟ ପରେ ସେ ଶୋଭନକୁ ପଚାରିଲା, ତୁ ଏଠିକି କୁଆଡ଼େ ଆସିଥିଲୁ ? ଶୋଭନ କହିଲା, ଭାଇ ବ୍ୟବସାୟରେ ଭଳି ଭଳି ଲୋକଙ୍କ ସାଙ୍ଗରେ କାମ । ଲୋକଟା ସାଙ୍ଗରେ ଦେଖା କରିବାର ଅଛି ସାଢ଼େ ବାରଟାରେ । ମୁଁ ଆଗରୁ ଆସିଯାଇଛି, କିନ୍ତୁ ସେ କେତେବେଳେ ଆସୁଛି କେଜାଣି ? ଆଉ ତୁ ?

ମତେ କୋଉ ଗୋଟିଏ ପତ୍ରିକାର ଇଣ୍ଟରଭିଉ ପାଇଁ ପଚାରିଥିଲେ, ମୁଁ ସାମ୍ବାଦିକଙ୍କୁ ଘରକୁ ନ ଡାକି ଏଇଠିକି ଡାକିଥିଲି । ତାକୁ ଆଉ କିଛି କହିବାର ଅବସର ନଦେଇ ଶୋଭନ କହିଲା, ସେଠି ଯୋଉ ଝିଅ ବସିଛି, ସେ ନୁହେଁ ତ ? ଚାଲ ଦେଖିବା ।

ଶୋଭନ ଚନ୍ଦ୍ରହାସକୁ ଟାଣିନେଇ ଶର୍ବରୀ ବସିଥିବା ଜାଗାକୁ ଗଲା ଏବଂ ପଚାରିଲା, ଆପଣ କ'ଣ କାହାକୁ ଅପେକ୍ଷା କରୁଛନ୍ତି ? ଚନ୍ଦ୍ରହାସ ଆଡ଼କୁ ନ ଅନାଇ ଶର୍ବରୀ ଶୋଭନକୁ ପଚାରିଲା, ଆପଣଙ୍କ ନାଁ ଚନ୍ଦ୍ରହାସ ? ଏଥର ଶୋଭନ କିଛି କହିବା ପୂର୍ବରୁ ଚନ୍ଦ୍ରହାସ କହିଲା, ନା, ଚନ୍ଦ୍ରହାସ ମୁଁ । ସାମାନ୍ୟ ହସରେ ତା'ର ପରିଚୟକୁ ସ୍ୱୀକାର କରି ଶର୍ବରୀ କହିଲା, ମୋ ନାଁ ଉମା ଯାଦବ । ମୁଁ ଷ୍ଟାର ପତ୍ରିକାରୁ ଆସିଛି । ଚନ୍ଦ୍ରହାସ କହିଲା, ଆପଣଙ୍କୁ ବେଶି ସମୟ ଅପେକ୍ଷା କରିବାକୁ ପଡ଼ିନାହିଁ ତ ? ଏ ମୋର ବନ୍ଧୁ ଶୋଭନ । ଆଉ କୌଣସି କଥାବାର୍ତ୍ତା ନ କରି ଶର୍ବରୀ ନିଜ ପର୍ସ ଭିତରୁ ନୋଟ୍‌ଖାତା ବାହାର କରି ତା'ର ପୃଷ୍ଠା ଖୋଲିଲା ଏବଂ ହାତରେ କଲମକୁ ଠିକ୍ ଭାବରେ ଧରି କହିଲା, ମୁଁ ଯଦି ଇଣ୍ଟରଭିଉବେଳେ ଟେପରେକର୍ଡ଼ର ବ୍ୟବହାର କରେ, ଆପଣଙ୍କର କିଛି ଆପତ୍ତି ଅଛି କି ?

ଶୋଭନ ଏଥରକ ବିଦାୟ ନେବାକୁ ବାଧ୍ୟ ହେଲା ; କିନ୍ତୁ ସେମାନଙ୍କର ଅନତିଦୂରରେ ଯାଇ ବସିଲା । ଚନ୍ଦ୍ରହାସ ଶର୍ବରୀର ପ୍ରଶ୍ନରେ ସାମାନ୍ୟ ବିସ୍ମିତ ହେଲା ; କିନ୍ତୁ ଜାଣିଲା ଯେ ଶର୍ବରୀ ଏଇ ଅଭିନୟରେ ବର୍ତ୍ତମାନ ପୂର୍ଣ୍ଣପ୍ରାଣରେ ଯୋଗ ଦେଇଛି । ସେ କହିଲା, ଆଗରେ ଟେପରେକର୍ଡ଼ର ରହିଲେ ମୁଁ ଖୋଲାଖୋଲି କଥାବାର୍ତ୍ତା କରିପାରେ ନାହିଁ । ମୋର ଭୟ ହୁଏ ମୁଁ କିଛି ଗୋଟାଏ ଭୁଲ କଥା କହିଦେବି ଏବଂ ମୋର ମୂର୍ଖତା ଚିରକାଳ ପାଇଁ ଲିପିବଦ୍ଧ ହୋଇ ରହିଯିବ ।

ହଁ, ଅନେକ ଲୋକଙ୍କର ଏ ପ୍ରକାରର ଭୟ ଥାଏ । ମୁଁ ତାହେଲେ ମୋର ଟେପରେକର୍ଡ଼ର ବ୍ୟବହାର କରିବି ନାହିଁ ।

ଚନ୍ଦ୍ରହାସ ଶର୍ବରୀକୁ ଅନାଇଲା ଏବଂ ଇଙ୍ଗିତରେ ଜଣାଇଲା ଯେ ଶୋଭନ ବର୍ତ୍ତମାନ ସେମାନଙ୍କର ମୃଦୁ କଥାବାର୍ତ୍ତା ଶୁଣିବା ଦୂରତ୍ୱର ବାହାରେ ଅଛି ଏବଂ ସେମାନେ ସ୍ୱାଭାବିକ କଥାବାର୍ତ୍ତା କରିପାରନ୍ତି । କିନ୍ତୁ ଶର୍ବରୀ ତା'ର ଇଙ୍ଗିତକୁ ବୁଝିବାକୁ ଚେଷ୍ଟା ନ କରି କହିଲା, ମୁଁ ମୋର ପ୍ରଥମ ପ୍ରଶ୍ନ ପଚାରିବା ଆଗରୁ ଆପଣଙ୍କୁ ଅନୁରୋଧ କରିବି ଆପଣ ନିଜ ବିଷୟରେ କିଛି କହନ୍ତୁ ।

ଚନ୍ଦ୍ରହାସ ଆଖି ବୁଜି କିଛି ସମୟ କ'ଣ ଭାବିଲା ଏବଂ ତା'ପରେ ଆଖି ଖୋଲି କହିଲା, ମୋ ମତରେ ମୋର ପୂର୍ବର ଜୀବନ ସହିତ ମୋର ଫିଲ୍ମ ତିଆରି କରିବା ଜୀବନର କୌଣସି ସମ୍ବନ୍ଧ ନାହିଁ । ସେଥିପାଇଁ ମୁଁ ବରଂ ମୋର ପ୍ରଥମ ଫିଲ୍ମ ବିଷୟରେ କହିବି ।

କୌଣସି କଳାକାର ନିଜର ଜୀବନର ଊର୍ଦ୍ଧ୍ୱରେ ନଥାଏ । ଆପଣଙ୍କର ଚଳଚ୍ଚିତ୍ରର ଆପଣଙ୍କ ଜୀବନ ସହିତ କି ସଂପର୍କ ଅଛି ସେ କଥା ଆପଣଙ୍କ ଜୀବନ ବିଷୟରେ କିଛି କହିଲେ ଜଣାପଡ଼ିବ । ସେଥିପାଇଁ ମୋର ଆପଣଙ୍କ ଜୀବନ ବିଷୟରେ ଜାଣିବା ନିତାନ୍ତ ଦରକାର ।

ଚନ୍ଦ୍ରହାସ ଧୀର ସ୍ୱରରେ ଅନୁନୟ ଜଣାଇ କହିଲା 'ଶର୍ବରୀ', କିନ୍ତୁ ଶର୍ବରୀ ଏ କଥାକୁ ଅଶୁଣା କରିଦେଇ କହିଲା, ତା ବ୍ୟତୀତ ଆପଣ ଦେଖିଥିବେ ଆମ ପତ୍ରିକାରେ କଳାକାରମାନଙ୍କର କଳା ଅପେକ୍ଷା ସେମାନଙ୍କର ବ୍ୟକ୍ତିଗତ ଜୀବନକୁ ବେଶି ଗୁରୁତ୍ୱ ଦିଆଯାଇଥାଏ ।

ଚନ୍ଦ୍ରହାସ କହିଲା, ମୋର ଜନ୍ମ ଗୋଟିଏ ନିମ୍ନ ମଧ୍ୟବିତ୍ତ ପରିବାରରେ । ମୋର ବାପା ସ୍କୁଲ ମାଷ୍ଟର ଥିଲେ । ମୋର ଜୀବନ କଟିଥିଲା ଅତ୍ୟନ୍ତ ଦାରିଦ୍ର୍ୟ ଭିତରେ ନହେଲେ ବି କିଛିଟା ଅଭାବ ଭିତରେ । ସେତେବେଳେ ମୁଁ ଭାବୁଥିଲି ସ୍ୱଚ୍ଛନ୍ଦତା ହିଁ ଜୀବନର ଲକ୍ଷ୍ୟ । କିନ୍ତୁ ଯେତେବେଳେ ମୁଁ ସ୍ୱଚ୍ଛନ୍ଦତା ପାଇଗଲି, ସେତେବେଳେ ଜୀବନର ଲକ୍ଷ୍ୟ ଆଉ କିଛି ହୋଇଗଲା ।

ଶର୍ବରୀ ନୋଟ୍‌ଖାତାରେ କ'ଣ ଲେଖିଲା, କହିଲା, ମୁଁ ଜାଣିବାକୁ ଚାହୁଁଚି ଏଇ ଅଭାବ ଓ ସ୍ୱଚ୍ଛନ୍ଦତା ମଧ୍ୟବର୍ତ୍ତୀ କାଳରେ ଆପଣଙ୍କ ଜୀବନରେ କ'ଣ କ'ଣ ଘଟିଥିଲା ।

ମୁଁ ଯେତେବେଳେ କଲେଜରେ ପଢୁଥିଲି, କାହାରି ସହିତ ବେଶି ମିଶୁ ନଥିଲି ଏବଂ ନିଜ ଭିତରେ ରହୁଥିଲି । ଏପରିକି ପରବର୍ତ୍ତୀ ସମୟରେ...।

ଲେଖୁ ଲେଖୁ ଶର୍ବରୀ କହିଲା, ଟିକିଏ ରହନ୍ତୁ । ଆପଣଙ୍କ ପିଲାବେଳ କଥା ମୁଁ ପରେ ପଚାରିବି । ଯେତେବେଳେ ଆରମ୍ଭ କଲେଣି, ଆପଣଙ୍କ କଲେଜବେଳ କଥା ଆଉ କିଛି କହନ୍ତୁ । ସେତେବେଳେ ନିଶ୍ଚୟ ଆପଣଙ୍କର ଅନ୍ତତଃ କିଛି ଘନିଷ୍ଠ ବନ୍ଧୁ ଥିଲେ ।

ତା'ର ଘନିଷ୍ଠ ବନ୍ଧୁ କିଏ ଥିଲେ ମନେପକେଇବାକୁ ଚେଷ୍ଟା କଲା ଚନ୍ଦ୍ରହାସ । କୋଉ ଯୁଗରୁ ସେ ନିଜର ପୁରୁଣା ଦିନର କଥା ଭାବିବାର ଅବସର ପାଇ ନଥିଲା । ଅଥବା ଚେଷ୍ଟା କରି ନଥିଲା । ବର୍ତ୍ତମାନ ସେ ଆଖିବୁଜି ପୁଣି ନିଜର ଯୌବନକୁ ଫେରିବାକୁ ଚେଷ୍ଟା କଲା । କଲେଜବେଳ କଥା ଭାବିଲେ ତା ଆଖିରେ ସେଇ ଲାଲରଙ୍ଗର ଘର ଏବଂ ତା'ର ହଷ୍ଟେଲର ଛୋଟ ବଖରାଟି କଥା ମନକୁ ଆସିଲା । ଆଉ ତା'ର ଆଖି ଆଗକୁ ଆସିଲା ହଷ୍ଟେଲରେ ତା'ର ରୁମ୍‌ମେଟ ଏବଂ କ୍ଲାସ୍‌ରେ ଚାରିବର୍ଷକାଳ ତା ସହିତ ଏକା ବେଞ୍ଚରେ ବସି ଆସିଥିବା ଦୁଇଜଣ ସହପାଠୀଙ୍କ କଥା । ଆଖି ଖୋଲି ଚନ୍ଦ୍ରହାସ ଶର୍ବରୀକୁ ସେମାନଙ୍କର ନାଁ କହିଲା ।

ଆପଣଙ୍କର ସେମାନଙ୍କ ସହିତ ଆଜିକାଲି ସାକ୍ଷାତ ହୁଏ ?

ନା । ବୋଧହୁଏ କଲେଜ ଛାଡ଼ିବା ପରେ ସେମାନଙ୍କ ସହିତ ମାତ୍ର ଥରେ ଦି'ଥର ଦେଖା ହୋଇଥିବ ।

ଦେଖା କରିବାକୁ ଚେଷ୍ଟା କରିଛନ୍ତି ସେମାନଙ୍କ ସହିତ ? ଅଥବା ସେମାନଙ୍କର ଖବର ନେଇଛନ୍ତି ?

ନା, ଜୀବନ ଭିତରେ ପଶିବା ପରେ ଆଉ ସମୟ ହୋଇ ନାହିଁ ।

ତା'ର କାରଣ କ'ଣ ଆପଣଙ୍କ ଜୀବନରେ ଆହୁରି ନୂଆ ବନ୍ଧୁ ଆସିଛନ୍ତି, ଯାହାଙ୍କୁ ଆପଣ ଅଧିକ ଦରକାରୀ ମନେକରିଛନ୍ତି ?

ନା, ସେକଥା ନୁହେଁ, କହିଲା ଚନ୍ଦ୍ରହାସ ଏବଂ ଭାବିବାକୁ ଲାଗିଲା କେବେ କେଉଁଠି କି ପରିସ୍ଥିତିରେ ତା'ର ପୁରୁଣା ସାଙ୍ଗମାନେ ପଛରେ ରହିଗଲେ । କୁଆଡ଼େ ଗଲା ତା'ର ରୁମ୍‌ମେଟ ? ସେ ଶୁଣିଥିଲା ସେ କେଉଁଠି ଯାଇ କୋଉ କମ୍ପାନୀରେ ଛୋଟ ଚାକିରି କରୁଛି । ସେ ଆଉ ଖବର ନେବା ପାଇଁ ଚେଷ୍ଟା କରିନାହିଁ । ତା'ର ବନ୍ଧୁମାନେ କ'ଣ ଚେଷ୍ଟା କରିଛନ୍ତି ତା'ର ଖବର ନେବା ପାଇଁ ? ସେ କହିଲା, ବନ୍ଧୁତ୍ୱ ଏକ ପାରସ୍ପରିକ ସଂପର୍କ । ବନ୍ଧୁତ୍ୱ କଟିଯିବା ପାଇଁ ଉଭୟ ପକ୍ଷ ଦାୟୀ ।

ମୁଁ କେବଳ ଆପଣଙ୍କ କଥା ଜାଣିବାକୁ ଚାହୁଁଚି । ଆପଣ କିପରି ପୁରୁଣା ସଂପର୍କ ସବୁକୁ କାଟିଦେଇ ଆସିଲେ ।

ସଂପର୍କ କେହି କାଟିଦିଏ ନାହିଁ ; ସଂପର୍କ ଆପେ ଆପେ କଟିଯାଏ ।

ନୋଟ୍‌ଖାତାରେ ଲେଖିବାବେଳେ ଶର୍ବରୀ ସାମାନ୍ୟ ହସିଲା । ଆବୃତ୍ତି କରି କହିଲା, ସଂପର୍କ କେହି କାଟିଦିଏ ନାହିଁ ; ସଂପର୍କ ଆପେ ଆପେ କଟିଯାଏ । ମୁଁ ଏ କଥାକୁ ଆପଣଙ୍କର ଉଦ୍ଧୃତି ଭାବରେ ବ୍ୟବହାର କରିବି ; ଆପଣଙ୍କର ଆପତ୍ତି ନାହିଁ ତ ?

ବଡ଼ ଅସମଂଜସରେ ପଡ଼ିଲା ଚନ୍ଦ୍ରହାସ । ସେ ଭୁଲିଯାଇଥିଲା ଯେ ଏଇ ସାକ୍ଷାତ୍‌କାରର ପର୍ବଟି ସେ ନିଜେ ଆରମ୍ଭ କରିଥିବା ଏକ ଖେଳର ଅଂଶ ମାତ୍ର । ତା'ର ମନେହେଉଥିଲା ଏ ଯେମିତି ତା'ର ଜୀବନକୁ ବିଶ୍ଳେଷଣ କରୁଥିବା ଏକ ବିଶେଷ ରଶ୍ମି ରେଖା, ଯାହା ତା'ର ଜୀବନକୁ ସଂପୂର୍ଣ୍ଣ ଭାବରେ ଉନ୍ମୁକ୍ତ କରି ପୃଥିବୀ ଆଗରେ ତା'ର ନଗ୍ନ ସ୍ୱରୂପକୁ ପ୍ରକଟ କରିଦେବ । ତା'ର ସୌଭାଗ୍ୟକୁ ଶୋଭନ ପାଖ ଟେବୁଲରୁ ଉଠି ସେମାନଙ୍କ ପାଖକୁ ଆସିଲା ଏବଂ କହିଲା, ମୁଁ ଏମିତି ତମ ଇଣ୍ଟରଭିଉରେ ବାଧା ଦବାକୁ ଚାହୁଁ ନ ଥିଲି ; କିନ୍ତୁ ଦେଖିଲି ଯେ ତୁ ଏ ପର୍ଯ୍ୟନ୍ତ ଭଦ୍ରମହିଳାଙ୍କୁ କିଛି ପିଇବାକୁ ଦେଇନାହୁଁ ।

ମୁକ୍ତିର ନିଃଶ୍ୱାସ ନେଇ ଚନ୍ଦ୍ରହାସ କହିଲା, ମୁଁ ବିଅର ପିଇବି । ଶୋଭନ

କହିଲା, ମୁଁ ଜାଣେ । ମୁଁ ତୋର ବିଅରର ଅର୍ଡ଼ର ଦେଇଦେଇଛି । ମୁଁ ଜାଣିବାକୁ ଚାହୁଁଛି, ମିସ୍ ଯାଦବ କ'ଣ ପିଇବେ ।

ଅନେକ ଚେଷ୍ଟା ସତ୍ତ୍ୱେ ଚନ୍ଦ୍ରହାସ କେବେହେଲେ ଶର୍ବରୀକୁ କୌଣସି ପାନୀୟ ପିଆଇବାରେ ସଫଳ ହୋଇ ନଥିଲା । ଶର୍ବରୀ ସବୁବେଳେ କହୁଥିଲା, ମତେ ଏସବୁ ଭଲ ଲାଗେ ନାହିଁ । ଆଜି କିନ୍ତୁ ଶୋଭନର ପ୍ରଶ୍ନର ଉତ୍ତରରେ ଚନ୍ଦ୍ରହାସ ଆଡ଼କୁ ସିଧାସଳଖ ଅନାଇ ଶର୍ବରୀ ଉତ୍ତର ଦେଲା, ମୁଁ ବ୍ଲଡ଼ି ମେରୀ ପିଇବି । ଚନ୍ଦ୍ରହାସ ଭାବିଲା କୋଉଠି କ'ଣ ଗୋଟାଏ ଭୁଲ ହୋଇଯାଉଛି । କିନ୍ତୁ ଶର୍ବରୀର ବ୍ୟବହାର ସ୍ୱାଭାବିକ ଥିଲା । ଚନ୍ଦ୍ରହାସ ଶର୍ବରୀ ଆଖିକୁ ଅନାଇଲା, କିନ୍ତୁ ସେଥିରେ ମଧ୍ୟ କୌଣସି ସ୍ପଷ୍ଟୀକରଣ ନଥିଲା ।

ସେମାନଙ୍କର ପାନୀୟ ଆସିବାରୁ ଶୋଭନ କହିଲା, ମୁଁ ତାହେଲେ ଯାଉଛି । ମୋର ବନ୍ଧୁ କେତେବେଳେ ଆସୁଛନ୍ତି କେଜାଣି ? ଯଦିଓ ଚନ୍ଦ୍ରହାସ ପ୍ରଥମେ ସେଠାରେ ଶୋଭନର ଉପସ୍ଥିତିକୁ ଚାହିଁନଥିଲା, ବର୍ତ୍ତମାନ ସେ ଚାହୁଁଥିଲା ଶୋଭନ ସେମାନଙ୍କ ପାଖରେ ବସି ରହି ତାକୁ ଏପରି ଏକ ଅଦ୍ଭୁତ ପରିସ୍ଥିତିରୁ ମୁକ୍ତି ଦେଉ । ଶୋଭନ କିନ୍ତୁ ଉଠି ଠିଆହେଲା ଏବଂ ନିଜ ଟେବୁଲ ଆଡ଼କୁ ଯାଉ ଯାଉ କହିଲା, ମିସ୍ ଯାଦବ, ଆପଣଙ୍କର ଇଣ୍ଟରଭିଉ କରନ୍ତୁ । ମୁଁ ଆପଣଙ୍କୁ ଆଉ ଡିଷ୍ଟର୍ବ କରିବି ନାହିଁ ।

ଚନ୍ଦ୍ରହାସ ଭାବିଥିଲା ଶୋଭନ ସେମାନଙ୍କ ପାଖରୁ ଉଠିଗଲେ ପୁଣି ସବୁକିଛି ସାଧାରଣ ଓ ସହଜ ହୋଇଯିବ । କିନ୍ତୁ ଶର୍ବରୀ ଅକୁଣ୍ଠିତ ଭାବରେ ତା'ର ଗ୍ଲାସ୍ ଉଠାଇ ଦି' ଚୁମୁକ ପିଇଲା ଏବଂ ଗ୍ଲାସ୍‌କୁ ରଖିଦେଇ ଏଥରକ ପୁଣି ହାତରେ କଲମ ଧରିଲା । ତାକୁ କହିଲା, ଏଥରକ ଆପଣ ନିଜର ପିଲାଦିନ କଥା କହନ୍ତୁ ।

ଶର୍ବରୀର କ୍ଷମାହୀନ ଆଖି ଆଡ଼କୁ ଅନାଇ ଚନ୍ଦ୍ରହାସ କହିଲା, ସତ କହିବାକୁ ଗଲେ ବାପା ମା' ପରିବାର ସହିତ ମୋର କେବେହେଲେ ଘନିଷ୍ଠ ସଂପର୍କ ନଥିଲା । ମୁଁ ସବୁବେଳେ ଯେମିତି ନିଃସଙ୍ଗ ହିଁ ଥିଲି ।

ଆପଣ କ'ଣ ଭାବୁ ନାହାଁନ୍ତି ସଂପର୍କ ପାଇଁ ମଣିଷକୁ କିଛି ଶ୍ରମ ଓ ଉଦ୍ୟମ କରିବାକୁ ହୁଏ, ଏପରିକି ତ୍ୟାଗ ବି କରିବାକୁ ହୁଏ ।

ସଂପର୍କ ସବୁବେଳେ ମୋ ପାଇଁ ଏକ ଭାର ମନେ ହୋଇଛି, ଯାହାକୁ ଗ୍ରହଣ କରିବାକୁ ମୁଁ ସବୁବେଳେ କୁଣ୍ଠିତ ।

ଲେଖୁ ଲେଖୁ ଶର୍ବରୀ କହିଲା, ଏଥରକ ଆପଣଙ୍କର ବୃତ୍ତିମୂଳକ ଜୀବନର ସଂପର୍କ ବିଷୟରେ କିଛି କହନ୍ତୁ ।

ବୃତ୍ତିମୂଳକ ଜୀବନ କଥା ଭାବିଲାବେଳେ ଚନ୍ଦ୍ରହାସର କୌଣସି ନିର୍ଦ୍ଦିଷ୍ଟ ସମୟ କଥା ମନେପଡ଼େନାହିଁ । କେଉଁଠାରୁ ଆରମ୍ଭ ଏଭଳି ଜୀବନ, କେଉଁ ଆଡ଼କୁ ତା'ର ଗତି,

କେଉଁଠାରେ ତା'ର ଶେଷ ? କିଏ ତା'ର ସହଯାତ୍ରୀ ? କାହା ନାଁ ସେ ସ୍ମରଣ କରିବ ଏଇ ମୁହୂର୍ତ୍ତରେ ? ଅଥବା ଏଇ ମୁହୂର୍ତ୍ତରେ ତା'ର ଜୀବନ କେବଳ ଏକ ପ୍ରବହମାନ ଧାରା, ଯାହାର ଉପକୂଳରେ ବସି ଶର୍ବରୀ ତାକୁ ସ୍ରୋତ ଅନୁକୂଳରେ ଅସହାୟ ଅର୍ଥହୀନ ଭାସିଯିବାର ଦେଖୁଛି ?

ଚନ୍ଦ୍ରହାସକୁ ଚୁପ୍ ରହିବାର ଦେଖି ଶର୍ବରୀ କହିଲା, ମୁଁ ଆପଣଙ୍କୁ ପଚାରୁଥିଲି ଆପଣ ଆପଣଙ୍କ ବୃତ୍ତିମୂଳକ ଜୀବନରେ ଯେଉଁମାନଙ୍କ ସଂପର୍କରେ ଆସିଛନ୍ତି ସେମାନଙ୍କ ବିଷୟରେ କିଛି କହନ୍ତୁ ।

ଚନ୍ଦ୍ରହାସ ଜାଣିଲା ଯେ ଖେଳଟି ବର୍ତ୍ତମାନ ସେମାନଙ୍କର ନିୟନ୍ତ୍ରଣର ବାହାରେ । ତା ଆଗରେ ବସି ଶର୍ବରୀ ନିରୀହ ଅଭିନୟର ଯେଉଁ ନୂଆ ସଂସାରଟି ତିଆରି କରୁଛି, ସେ କ୍ରମେ କ୍ରମେ ତା ଭିତରେ ଆବଦ୍ଧ ହୋଇ ରହିଯାଉଛି ଏବଂ ସେ ଆଉ ତା ଭିତରୁ ମୁକ୍ତି ଖୋଜି ପାଇବ ନାହିଁ । ଏଇ ଇନ୍ଦ୍ରଜାଲକୁ କାଟିଦେବା ପାଇଁ ସେ ଶର୍ବରୀ ଉପରୁ ଆଖି ଫେରାଇ ନିଜ ଚାରି ପାଖକୁ ଅନାଇଲା । ଖରାବେଳର ହୋଟେଲ କ୍ରମେ କ୍ରମେ ଲୋକାରଣ୍ୟ ହୋଇ ଆସୁଥିଲା । ବାତାନୁକୂଳିତ ଘରର କାଚଝରକା ବାହାରେ ଜୀବନ ସ୍ୱଚ୍ଛନ୍ଦ ଭାବରେ ଚାଲୁଥିଲା । ଆଖପାଖ ଟେବୁଲମାନଙ୍କରେ ଲୋକମାନେ ଆଳାପରତ ଥିଲେ ଏବଂ ସେମାନଙ୍କର କଥାବାର୍ତ୍ତାର ଏକ ସମ୍ମିଶ୍ରିତ ମୃଦୁଗୁଞ୍ଜନ କୋଠରିଟିକୁ ଜୀବନ୍ତ କରି ରଖିଥିଲା । ମୋଟ ଉପରେ ଏଇ ସମୟଟି ଥିଲା ଏକ ସାଧାରଣ ଖରାବେଳର ରହସ୍ୟରହିତ ଅତି ସାଧାରଣ ବାତାବରଣ ।

ଏକଥାକୁ ହୃଦୟଙ୍ଗମ କରି ଚନ୍ଦ୍ରହାସ ସାହସ ସଂଚୟ କଲା ଏବଂ ଧୀରେ କହିଲା, ମିସ୍ ଯାଦବ, ଚାଲନ୍ତୁ ଏଠାରୁ ଫେରିଯିବା । ଏତିକି କହିସାରିବା ପରେ ସେ ନିଜର ଭୁଲ ବୁଝିପାରିଲା ଏବଂ ଜାଣିଲା ଯେ ସେ ଇନ୍ଦ୍ରଜାଲ ଭିତରୁ ପୂରାପୂରି ବାହାରି ଆସିପାରି ନାହିଁ । ତଥାପି ସେ ଆଶା କଲା ଶର୍ବରୀ ତାକୁ ଏ ବିଷୟରେ ସାହାଯ୍ୟ କରିବ ।

ଶର୍ବରୀ କିନ୍ତୁ ତା କଥା ଶୁଣିବାକୁ ଅସ୍ୱୀକାର କରିଦେଇ କହିଲା, ଆପଣ ଯଦି ମୋର ପୂର୍ବ ପ୍ରଶ୍ନଟିର ଉତ୍ତର ଦେବା ପାଇଁ କୌଣସି ସଂକୋଚବୋଧ କରୁଛନ୍ତି, ତାହେଲେ ମୁଁ ଆପଣଙ୍କୁ ଗୋଟେ ନୂଆ ପ୍ରଶ୍ନ ପଚାରୁଛି । ଆପଣଙ୍କ ଜୀବନରେ କେବେ କ'ଣ କୌଣସି ବ୍ୟକ୍ତିବିଶେଷ ବା ଘଟଣା ଆସି ଆପଣଙ୍କର ଜୀବନର ମୋଡ଼କୁ ସଂପୂର୍ଣ୍ଣ ବଦଳାଇ ଦେଇଛନ୍ତି ? ସେ ବ୍ୟକ୍ତିବିଶେଷ କିଏ ଏବଂ ସେ ଘଟଣାଟି କ'ଣ ?

ପୁଣି ଚିନ୍ତାରେ ପଡ଼ିଲା ଚନ୍ଦ୍ରହାସ । ତା'ର ଜୀବନ ଥିଲା ସ୍ୱଚ୍ଛନ୍ଦ ଓ ବାଧାହୀନ । ତା'ର ସରଳରେଖାର ଜୀବନରେ କୌଣସି ବକ୍ରତା ନଥିଲା । ଜଳଧାରା ଉପରେ କୌଣସି ଲହରୀର ଉପଦ୍ରବ ନ ଥିଲା । କୌଣସି ଝଂଝା ଆସି ଅସ୍ତବ୍ୟସ୍ତ କରି

ନଥିଲା ତା'ର ପରିବେଶକୁ । ଧୂମକେତୁ ବଜ୍ର ବିଜୁଳି ଇନ୍ଦ୍ରଧନୁରହିତ ଥିଲା ତା'ର ଜୀବନର ଆକାଶ । ସେ କହିଲା, ନା, ମୋ ଜୀବନରେ ଏମିତି କୌଣସି ବ୍ୟକ୍ତିବିଶେଷ ବା ଘଟଣା ଘଟି ନାହାଁନ୍ତି ।

ଏଇ ସମୟରେ ଶୋଭନ ପୁଣି ସେମାନଙ୍କର ଟେବୁଲ ପାଖକୁ ଆସିଲା । କହିଲା, ମୋର ବନ୍ଧୁ ଆଉ ଆସିବେ ନାହିଁ ଜଣାଯାଉଛି । ସେଥିପାଇଁ ବିଦାୟ ନେବାକୁ ଆସିଲି । ଚନ୍ଦ୍ରହାସ ଭାବିଲା ସେ ଶୋଭନକୁ ବିଦାୟ ଦେଇଦେବ, ଯାଇ ଆଗରୁ ଠିକ୍ କରି ରଖିଥିବା କୋଠରିକୁ ଭଡ଼ାନେବ ଏବଂ ଶର୍ବରୀ ଓ ସେ ସେଠାକୁ ଯିବେ । କିନ୍ତୁ ଶର୍ବରୀ ସହିତ ଏପରି ବିଲକ୍ଷଣ କଥାବାର୍ତ୍ତା ପରେ ସେ ହଠାତ ପୁଣି ସାଧାରଣ ଅବସ୍ଥାକୁ ଫେରିଆସିବାକୁ ସମର୍ଥ ନଥିଲା । ସେ ଶୋଭନକୁ ବସିବାକୁ କହିଲା ।

ଶୋଭନ କହିଲା, ମୁଁ ପୁଣି ବାଧା ଦେଉ ନାହିଁ ତ ? ଶର୍ବରୀ କହିଲା, ନା, ମୋର ଇଣ୍ଟରଭିଉ ଶେଷ ହୋଇଗଲାଣି । ଆପଣଙ୍କର ଯଦି ଆପତ୍ତି ନଥାଏ ମୁଁ ଆଉ ଗୋଟିଏ ମାତ୍ର ପ୍ରଶ୍ନ ପଚାରି ବିଦାୟ ନେବି । ଚନ୍ଦ୍ରହାସ ଆଡ଼କୁ ଅନାଇ ଶର୍ବରୀ ପଚାରିଲା, ଆପଣଙ୍କ ଜୀବନରେ କୌଣସି ପଶ୍ଚାତ୍ତାପ ଅଛି କି ?

ଚନ୍ଦ୍ରହାସ ଏଥରକ ସଜାଗ ହୋଇ ବସିଲା । ନା, ପରିସ୍ଥିତିକୁ ସେ ବର୍ତ୍ତମାନ ନିଜର ନିୟନ୍ତ୍ରଣକୁ ଆଣିବ । ଅବସ୍ଥାକୁ ସହଜ କରିବା ପାଇଁ ସେ ସାମାନ୍ୟ ହସି କହିଲା, ମିସ୍ ଯାଦବ, ମୁଁ ଯଦି ଏ ପ୍ରଶ୍ନର ଉତ୍ତର ନ ଦିଏ, ତାହେଲେ ଆପଣ କ'ଣ ମନେ କରିବେ । ଶର୍ବରୀ ତା'ର ଚପଳତାରେ ଯୋଗ ଦେଲା ନାହିଁ । କହିଲା, ମୌନ ମଧ୍ୟ ଏକ ପ୍ରକାରର ବକ୍ତବ୍ୟ ।

ଶର୍ବରୀ ଏଥରକ ତା'ର ନୋଟ୍‌ଖାତା ବନ୍ଦକରି ତାକୁ ପର୍ସ ଭିତରେ ରଖିଲା । ଗ୍ଲାସ୍‌ର ଅବଶିଷ୍ଟ ପାନୀୟକୁ ପିଇ ସେ ଉଠି ଠିଆହେଲା, କହିଲା, ଆପଣଙ୍କୁ ଅଶେଷ ଧନ୍ୟବାଦ । ସେ ଯେତେବେଳେ ଯିବା ପାଇଁ ଦୁଇଜଣଙ୍କୁ ନମସ୍କାର କଲା, ଚନ୍ଦ୍ରହାସ ପ୍ରକୃତିସ୍ଥ ହେଲା, କହିଲା, ମୁଁ ଆପଣଙ୍କୁ ଛାଡ଼ିଦେଇ ଆସିବି ?

ନା, ଧନ୍ୟବାଦ, କହି ଶର୍ବରୀ କ୍ଷିପ୍ର ପଦପାତରେ ଯାଇ କବାଟ ଖୋଲିଲା ଏବଂ ଚନ୍ଦ୍ରହାସକୁ ଆଉ କିଛି କହିବାର ଅବସର ନଦେଇ ବାହାରକୁ ବାହାରିଗଲା ।

# ସାମ୍ରାଜ୍ୟ

ଜଣେ ସଚ୍ଚୋଟ, କର୍ତ୍ତବ୍ୟନିଷ୍ଠ, କର୍ମଠ, ଅଧ୍ୟବସାୟୀ ଏବଂ କାର୍ଯ୍ୟଦକ୍ଷ ଅଫିସର ଭାବରେ ରଘୁପତିଙ୍କର ସୁନାମ ଥିଲା । କିନ୍ତୁ ତାଙ୍କର ଯେଉଁସବୁ ଗୁଣ ସହିତ ଲୋକମାନେ ବିଶେଷ ଭାବେ ପରିଚିତ ଥିଲେ, ସେଗୁଡ଼ିକ ଥିଲା କଡ଼ା ମିଜାଜ, ଚିଡ଼ିଚିଡ଼ା ସ୍ୱଭାବ ଓ ଟାଣ ମୁହଁ । ଏଇସବୁ ଗୁଣର ପରିପୂରକ ସ୍ୱରୂପ ସେ ମୋଟାଫ୍ରେମର ଚଷମା ଲଗାଉଥିଲେ, ସିଗାର ପିଉଥିଲେ ଏବଂ କୁକୁର ପାଳିଥିଲେ । ତାଙ୍କ କୁକୁରଟି ମଧ୍ୟ ରୁକ୍ଷ ପ୍ରକୃତିର ଥିଲା, ଲୋକଙ୍କୁ ଦେଖିଲେ ଭୟଙ୍କର ଭୁକୁଥିଲା ଏବଂ ଦାନ୍ତ ଦେଖାଇ କାମୁଡ଼ିବାକୁ ଗୋଡ଼ାଇ ଆସୁଥିଲା । ରଘୁପତି ଯେଉଁଆଡ଼େ ଗଲେ କୁକୁରଟିକୁ ସାଙ୍ଗରେ ନେଉଥିଲେ ଏବଂ ଲୋକମାନେ ଏଇ କଳା ଜନ୍ତୁଟିକୁ ଦେଖୁଥିଲେ ତାଙ୍କର ଚରିତ୍ରର ଏକ ଜୀବନ୍ତ ପ୍ରସାରଣ ଭାବେ । ତାଙ୍କ ପାଖରେ ଯଦିଓ ବନ୍ଧୁକ ଇତ୍ୟାଦି ଅସ୍ତ୍ର ନଥିଲା, ସେପାଖ ଓ ଦୂର ଜିନିଷ ଦେଖିବା ପାଇଁ ଦୁଇଟି ଅଲଗା ଚଷମା ରଖୁଥିଲେ ଏବଂ ଗୋଟିଏ ଚଷମା ପିନ୍ଧିଥିବାବେଳେ ଅନ୍ୟ ଚଷମାଟି ତାଙ୍କ ହାତରେ ଗୋଟିଏ ଗୁଳିପୂର୍ଣ୍ଣ ପିସ୍ତଲର କାମ ଦେଉଥିଲା । ତାଙ୍କୁ ଦେଖିଲେ ଲୋକେ ଗର୍ଭିଣୀ ଗାଈ ବାଟ ଛାଡ଼ିଦେବା ଭଳି ସଂପ୍ରତି ପ୍ରଚଳିତ ନଥିବା ଉକ୍ତି ମନେ ପକାଉଥିଲେ । ଯଦିଓ ସମସ୍ତେ ତାଙ୍କର କାମର ପ୍ରଶଂସା କରୁଥିଲେ, ବାଧ୍ୟବାଧକତା ନଥିଲେ କେହି ତାଙ୍କ ପାଖ ମାଡ଼ିବାକୁ ଚାହୁଁନଥିଲେ ।

ଜିଲ୍ଲାଧୀଶ ହୋଇ ଆସିବାର ଅଳ୍ପ କିଛିଦିନ ଭିତରେ ହିଁ ରଘୁପତି ସମଗ୍ର ଜିଲାରେ ତାଙ୍କର କଠୋର ଅନୁଶାସନ ପ୍ରବର୍ତ୍ତିତ କରିଦେଇଥିଲେ । ତାଙ୍କର ପୂର୍ବବର୍ତ୍ତୀ ଜିଲ୍ଲାଧୀଶ ଭଦ୍ର, ବିନୟୀ, ମିଷ୍ଟଭାଷୀ, ଧର୍ମପରାୟଣ, ଲୋକପ୍ରିୟ ତଥା କାମରେ ସଂପୂର୍ଣ୍ଣ ଅପାରଗ ଥିଲେ । ରଘୁପତି ଆସିବା ପରେ ଜିଲାରେ ଶାସନର ଅବହାୱା ସଂପୂର୍ଣ୍ଣ ବଦଳିଗଲା । ଅଫିସ ଘରର ତାଲାସବୁ ଠିକ୍ ସମୟରେ ଖୋଲିଲା ଏବଂ କର୍ମଚାରୀମାନେ ସମୟାନୁବର୍ତ୍ତୀ ହେବାକୁ ଆରମ୍ଭ କଲେ । ବର୍ଷ ବର୍ଷ ଧରି ପଡ଼ିରହିଥିବା ମୃତ ଫାଇଲ ସବୁ ହଠାତ ଜୀବନ୍ୟାସ ପାଇଲେ ଏବଂ ଅଫିସ ଘରମାନଙ୍କରେ ଆଉ ଧୂଳି ଅଳନ୍ଧୁ ବୁଢ଼ିଆଣୀ ଜାଲ ଦେଖିବାକୁ ମିଳିଲା ନାହିଁ । ପୂର୍ବାଧିକାରୀଙ୍କ କାମ ବିଷୟରେ କଥା ପଡ଼ିବାବେଳେ ଲୋକ କହୁଥିଲେ ଯେ ସେ ଖୁବ୍ ଭଲଲୋକ ଥିଲେ । ଏ ମନ୍ତବ୍ୟରେ

ଭଦ୍ରବ୍ୟକ୍ତିଙ୍କ ଅପାରଗତା ଉହ୍ୟ ରହୁଥିଲା । ଠିକ୍ ସେହିପରି ରଘୁପତିଙ୍କ ବିଷୟରେ କୁହାଯାଉଥିଲା ଯେ ସେ ଖୁବ୍ ଭଲ ଅଫିସର, ଯାହାର ଅର୍ଥ ଥିଲା ଯେ ସେ ଲୋକ ହିସାବରେ ଆଦୌ ଭଲ ନଥିଲେ । ଏଥିରୁ ଗୋଟିଏ ନିଷ୍କର୍ଷ ବାହାରୁଥିଲା, ଯଦିଓ ଏ କଥା ପ୍ରମାଣସିଦ୍ଧ ବା ଯୌକ୍ତିକ ନଥିଲା, ଯେ ଭଲଲୋକ କଦାପି ଭଲ ଅଫିସର ହୋଇ ନପାରେ, ଅଥବା ଭଲ ଅଫିସର କଦାପି ଭଲଲୋକ ହୋଇନପାରେ ।

ସେ ଯାହାହେଉ, ରଘୁପତି ଯେ ଜଣେ ଦୁର୍ଦ୍ଦାନ୍ତ ଅଫିସର ଥିଲେ, ଏ କଥା ନିଃସନ୍ଦେହ । ନିଜର ଗାମ୍ଭୀର୍ଯ୍ୟ, ଶୃଙ୍ଖଳା ଓ ନିୟମସବୁକୁ କେବଳ ଅଫିସ କାମରେ ସୀମାବଦ୍ଧ ନରଖି ଏଗୁଡ଼ିକୁ ସେ ତାଙ୍କର ବ୍ୟକ୍ତିଗତ ପାରିବାରିକ ଜୀବନରେ ମଧ୍ୟ ଉପଯୋଗ କରୁଥିଲେ । ଯାହା ଫଳରେ ତାଙ୍କର ଘର ମଧ୍ୟ ତାଙ୍କ ଜିଲ୍ଲା ଶାସନର ଏକ ଲଘୁ ସଂସ୍କରଣ ଥିଲା, ଯେଉଁଠାରେ ତାଙ୍କର ପତ୍ନୀ, ସନ୍ତାନ ଓ ଚାକରବାକରମାନେ ନିଜ ନିଜର ସ୍ଥାନ ଅନୁଯାୟୀ ଥିଲେ ରଘୁପତିଙ୍କର ଶୃଙ୍ଖଳାର ଅଧୀନ । ଉଦାହରଣସ୍ୱରୂପ, ରଘୁପତି ନିଜର ପତ୍ନୀଙ୍କ ସହିତ ବ୍ୟବହାର କରୁଥିଲେ ସେ ଯେପରି ଜଣେ ଦ୍ୱିତୀୟ ଶ୍ରେଣୀର ଅଧସ୍ତନ କର୍ମଚାରୀ । ନିଜର ସନ୍ତାନମାନଙ୍କୁ ରଘୁପତି କେବେହେଲେ ଚତୁର୍ଥ ବର୍ଗର କର୍ମଚାରୀରୁ ଊର୍ଦ୍ଧ୍ୱରେ ଦେଖୁ ନଥିଲେ । ମୋଟ ଉପରେ କହିବାକୁ ଗଲେ ରଘୁପତି ଥିଲେ ଜଣେ ନିରଂକୁଶ ସାର୍ବଭୌମ ସମ୍ରାଟ ଏବଂ ନିଜର ଘର ସମେତ ସମଗ୍ର ଜିଲାଟି ତାଙ୍କର ସୁବିସ୍ତୃତ ସାମ୍ରାଜ୍ୟ ।

ଏହି ଆଦର୍ଶ ପରିସ୍ଥିତିର ଏକ ବିଶେଷ ବ୍ୟତିକ୍ରମ ଥିଲା ରଘୁପତିଙ୍କର ସବୁଠାରୁ ଛୋଟ ଝିଅ । ସେ ଅଧିକାଂଶ ସମୟ ଅସୁସ୍ଥ ଥିଲା, ବୟସ ଅନୁପାତରେ ବଢୁ ନଥିଲା ଏବଂ ବିଭିନ୍ନ ପ୍ରକାର ରୋଗରେ ସଦାସର୍ବଦା ପୀଡ଼ିତ ରହୁଥିଲା । ଅନେକ ଚିକିତ୍ସା ଓ ସେବାଶୁଶ୍ରୂଷା ସତ୍ତ୍ୱେ ତା'ର ସ୍ୱାସ୍ଥ୍ୟ ଓ ଶାରୀରିକ ଅବସ୍ଥାର କୌଣସି ଉନ୍ନତି ହେଉ ନଥିଲା ଏବଂ ଏକଥା ଥିଲା ରଘୁପତିଙ୍କ ପାଇଁ ଚିନ୍ତା ଓ ଉଦ୍‌ବେଗର କାରଣ । ବଡ଼ ବଡ଼ ହସ୍‌ପିଟାଲ ଓ ଡାକ୍ତରଙ୍କ ଦ୍ୱାରା ବର୍ଷ ବର୍ଷ ଧରି ନିଦାନ ନିରୂପଣ ଓ ଉପଚାର ସବୁ ନିଷ୍ଫଳ ଥିଲା । ବିଦେଶୀ ଚିକିତ୍ସାରୁ, ହୋମିଓପାଥିରୁ, ଆୟୁର୍ବେଦରୁ ୟୁନାନୀ ସମସ୍ତ ପ୍ରକାର ପଦ୍ଧତିର ପରୀକ୍ଷାନିରୀକ୍ଷା ପରେ ରଘୁପତି ଆଉ କୌଣସି ଡାକ୍ତରଙ୍କ ପାଖକୁ ଯିବା ବନ୍ଦ କରିଦେଇଥିଲେ । ତେବେ ଡାକ୍ତରଙ୍କ ପରେ ଯେଉଁମାନଙ୍କ ପାଳି ପଡ଼ିଲା, ସେମାନେ ହେଲେ ତାନ୍ତ୍ରିକ, କାପାଳିକ, ଜ୍ୟୋତିର୍ବିଦ୍ ଓ ବିଭିନ୍ନ ବେଶଭୂଷା ମତାବଲମ୍ବୀ ସାଧୁ ସନ୍ନ୍ୟାସୀ ।

ରଘୁପତିଙ୍କର ଅଧସ୍ତନ କର୍ମଚାରୀମାନେ ଅବିଳମ୍ବେ ତାଙ୍କର ଏଇ ଏକମାତ୍ର ଦୁର୍ବଳତାର ସନ୍ଧାନ ପାଇସାରିଥିଲେ । ଏଣୁ ସେମାନେ ରଘୁପତିଙ୍କୁ ଖୁସି କରିବା ପାଇଁ ବିଭିନ୍ନ ଅଞ୍ଚଳରୁ ସାଧୁ ସନ୍ନ୍ୟାସୀଙ୍କୁ ଧରି ଆଣୁଥିଲେ ଏବଂ ତାଙ୍କ ଘରେ ଅଧିକାଂଶ

ସମୟ ଗେରୁଆ ଲୁଗା ଓ ଜଟାଜୂଟ ଦାଢ଼ି ପିନ୍ଧିଥିବା ଲୋକଙ୍କର ମେଳା ଲାଗି ରହୁଥିଲା ।

ଏଇ ବିଶେଷ ସମସ୍ୟା ସତ୍ତ୍ୱେ ରଘୁପତି କେବେହେଲେ ନିଜ କାମରେ ଅବହେଳା ଅଥବା ନିର୍ଘଣ୍ଟରେ ବ୍ୟତିକ୍ରମ କରିବା ଦେଖା ଯାଇନଥିଲା । ଠିକ୍ ଦଶଟା ସମୟରେ ସେ ଅଫିସରେ ପହଞ୍ଚୁଥିଲେ ଏବଂ ମନଯୋଗ ଓ ଦୃଢ଼ତାର ସହିତ କାମ କରୁଥିଲେ । ନିୟମାନୁଯାୟୀ ସେ ଗସ୍ତରେ ଯାଉଥିଲେ ଏବଂ ତାଙ୍କର ଆଞ୍ଚଳିକ ଅଫିସରମାନେ ତାଙ୍କ ପରିଦର୍ଶନକୁ କୋକୁଆ ଭୟ କରୁଥିଲେ । ଏହିଭଳି ଗୋଟିଏ ଗସ୍ତ ସମୟରେ ରଘୁପତି ବର୍ତ୍ତମାନ ଏକ ନିମ୍ନସ୍ଥ କାର୍ଯ୍ୟାଳୟ ପରିଦର୍ଶନ କରୁଥିଲେ ଏବଂ ତା'ର ଦାୟିତ୍ୱରେ ଥିବା କାମଚୋର ଏବଂ ଅଯୋଗ୍ୟ ଅଫିସର ତାଙ୍କ ଆଗରେ ବସି ନିଜ ଇଷ୍ଟଦେବତାଙ୍କୁ ସ୍ମରଣ କରୁଥିଲା । ତା'ର ପାଟି ଖନି ବାଜୁଥିଲା ଏବଂ ସେ ଝାଳରେ ଗାଧୋଉଥିଲା । ରଘୁପତି ତାକୁ କାମ ବିଷୟରେ ଯେଉଁ ପ୍ରଶ୍ନମାନ ପଚାରୁଥିଲେ ସେ ବାରମ୍ବାର କାଶି, ଛେପ ଢୋକି ଏବଂ ବେକ କୁଣ୍ଡାଇବା ସତ୍ତ୍ୱେ ସେଗୁଡ଼ିକର ଉତ୍ତର ଦେଇପାରୁ ନଥିଲା । ରଘୁପତିଙ୍କର କୋପ କ୍ରମଶଃ ବଢ଼ି ଚାଲିଥିଲା ଏବଂ ଅଫିସର ଭୟ କରୁଥିଲା ଯେ ଅବିଳମ୍ବରେ ସେ ତାଙ୍କର କ୍ରୋଧାଗ୍ନିରେ ଭସ୍ମ ହୋଇଯିବ । ସେଥିପାଇଁ ସେ ବହୁଦିନରୁ ତିଆରି କରି ରଖିଥିବା ଅମୋଘ ଅସ୍ତ୍ରଟି ବାହାର କଲା ସୁଯୋଗ ଦେଖି ରଘୁପତିଙ୍କର ସମ୍ମୁଖୀନ ହେବାପାଇଁ ।

ରଘୁପତିଙ୍କର ବାକ୍ୟବାଣର ସ୍ରୋତ ଗୋଟିଏ ମୁହୂର୍ତ୍ତ ବିରତ ରହିଥିବାବେଳେ ସାହସ ସଂଚୟ କରି ଅଫିସର ନିଜର ସେଇ ଶରଟି ପ୍ରୟୋଗ କଲା ।

ସାର୍, ପଶୁପତି ଆପଣଙ୍କୁ ଦେଖା କରିବାକୁ ଚାହୁଁଥିଲେ ।

ପଶୁପତି କିଏ ? ବିରକ୍ତ ଓ କ୍ରୋଧମିଶା ସ୍ୱରରେ ପଚାରିଲେ ରଘୁପତି ।

ଅଫିସର ଜଣକ, ଯାହା ପାଟିରୁ ଏ ପର୍ଯ୍ୟନ୍ତ କଥା ବାହାରୁ ନଥିଲା, ହଠାତ ବାଚାଳ ହୋଇଗଲା ଏବଂ ଶତମୁଖ ହୋଇ ପଶୁପତିର ବର୍ଣ୍ଣନା କଲା । ପଶୁପତି ତାଙ୍କ ଅଫିସ୍‌ର ସାମାନ୍ୟ ପିଅନ ; କିନ୍ତୁ ସେ ଏ ଅଞ୍ଚଳରେ ଖ୍ୟାତ ଜଣେ ଅଷ୍ଟାବଧାନୀ ସାଧକ ଭାବରେ । ତା ପାଖରେ ତନ୍ତ୍ର ଜ୍ୟୋତିଷ ମାଳିକାର ଅନେକ ତାଳପତ୍ର ପୋଥି ଥିଲା ଏବଂ ଅଫିସ୍‌ର ଛୁଟି ଦିନମାନଙ୍କରେ ତା ଘରେ ଲୋକଙ୍କର ଭିଡ଼ ଲାଗିଯାଉଥିଲା । ବିଭିନ୍ନ ପ୍ରକାରରୂ ପ୍ରଶ୍ନ ନେଇ ଲୋକମାନେ ତା ପାଖକୁ ଯାଉଥିଲେ ଏବଂ ପୋଥି ଦେଖି ଗଣନା କରି ପଶୁପତି ପ୍ରତିଟି ସମସ୍ୟାର ସମାଧାନ ବାହାର କରୁଥିଲା ।

ଏତିକି କହିସାରି ଅଫିସର ରଘୁପତିଙ୍କ ଆଡ଼କୁ ଅନାଇଲା ତା'ର ଅସ୍ତ୍ର କେତେଦୂର କାର୍ଯ୍ୟକାରୀ ହୋଇଛି ସେ କଥା ଅନ୍ଦାଜ କରିବା ପାଇଁ । ଅନେକ ସାଧୁ ସନ୍ନ୍ୟାସୀଙ୍କ କ୍ରିୟାକଳାପ ସହିତ ସଂପୂର୍ଣ୍ଣ ପରିଚିତ ରଘୁପତିଙ୍କ ଉପରେ ତା'ର କଥାର

ବିଶେଷ ପ୍ରଭାବ ପଡୁନଥିବା ଦେଖି ଅଫିସର ବର୍ତ୍ତମାନ ବର୍ଣ୍ଣନାର ଗତିକୁ ସଂପୂର୍ଣ୍ଣ ବଦଳାଇ ଦେଲା ।

ପଶୁପତିକୁ ମଝିରେ ଚାକିରିରୁ ବରଖାସ୍ତ କରିଦିଆ ହୋଇଥିଲା ।

କାହିଁକି ? ସାମାନ୍ୟ କୌତୂହଳର ସହିତ ପଚାରିଲେ ରଘୁପତି ।

ଅଫିସର ବୁଝିଲା ଯେ ତା'ର ଅସ୍ତ୍ର କାମ କରୁଛି । ସେ କହିଲା, କାହାକୁ କିଛି ନକହି, ଅଫିସରୁ ଛୁଟି ନନେଇ ପଶୁପତି ହିମାଳୟକୁ ତପସ୍ୟା କରିବାକୁ ଚାଲିଗଲା । ଏପରିକି ତା ଘରେ ମଧ୍ୟ ଏକଥା କାହାରିକୁ ଜଣା ନଥିଲା । କେବଳ କେତେଦିନ ପରେ ତାଙ୍କ ଗାଁର କେତେ ଲୋକ କେଦାର ବଦ୍ରୀ ଯାଇଥିବାବେଳେ ଦେଖିଲେ ଯେ ଗୋଟାଏ ବଡ଼ ଦାଢ଼ିଆ ଛେଳି ଉପରେ ବସି ପଶୁପତି ହିମାଳୟ ଆଡ଼କୁ ଯାଉଛି । ପାଞ୍ଚବର୍ଷ ପରେ ପଶୁପତି ପୁଣି ମନକୁ ମନ ଗାଁକୁ ଫେରିଲା । ସେତେବେଳକୁ ତାକୁ ଚାକିରିରୁ ବରଖାସ୍ତ କରି ଦିଆଯାଇଥିଲା । କିନ୍ତୁ ସମସ୍ତେ ତାକୁ ଚାକିରିରେ ରଖିବାକୁ ସୁପାରିସ କଲେ, ଏପରିକି ତାଙ୍କ ମନ୍ତ୍ରୀ ମଧ୍ୟ ।

କୋଉ ନିୟମ ଅନୁସାରେ ପାଞ୍ଚବର୍ଷ ବିନା ଦରଖାସ୍ତରେ ନିରୁଦ୍ଦେଶ ହୋଇଥିବା ଲୋକକୁ ପୁଣି ନିଯୁକ୍ତି ଦିଆଗଲା, ପଚାରିବାକୁ ଯାଉଥିଲେ ରଘୁପତି । ତାଙ୍କର ମୁହଁ ଦେଖି ତାଙ୍କର ଅଭିପ୍ରାୟକୁ ଅଫିସର ଠଉରାଇ ନେଲା । କହିଲା, ମନ୍ତ୍ରୀଙ୍କର ଭଣଜା ବହୁଦିନରୁ ଶ୍ୱାସରୋଗରେ ଭୋଗୁଥିଲା । ପଶୁପତି ଗୋଟାଏ ହପ୍ତାରେ ତାକୁ ଠିକ୍ କରିଦେଲା ।

ରଘୁପତିଙ୍କ ମନରେ ସନ୍ଦେହ ହେଲା ଯେ ଏଇ ଅପାରଗ ଅଯୋଗ୍ୟ କର୍ମକୁଣ୍ଠ ଅଫିସର ତାଙ୍କର ଦୁର୍ବଳତାର ସୁଯୋଗ ନେଉଛି । ସେ ଭାବିଲେ ସେ ପୁଣି ତାଙ୍କ ପରିଦର୍ଶନ ପ୍ରଶ୍ନାବଳୀକୁ ଫେରିଯିବେ । କିନ୍ତୁ ମନ୍ତ୍ରୀଙ୍କର ଭଣଜା ଆରୋଗ୍ୟ ହେବା କଥା ତାଙ୍କୁ ସାମାନ୍ୟ ଦ୍ୱନ୍ଦ୍ୱରେ ପକାଇଦେଲା । ସେ ଆଉ କିଛି ଭାବିବା ପୂର୍ବରୁ ଅଫିସର ମଧ୍ୟ ସତର୍କ ହୋଇଗଲା ଏବଂ ସ୍ୱୟଂ ପଶୁପତିକୁ ଆଣି ଜିଲ୍ଲାଧୀଶଙ୍କ ଆଗରେ ହାତଯୋଡ଼ି ଠିଆ କରାଇଦେଲା ।

ଖାକି ପୋଷାକପିନ୍ଧା, ଦାଢ଼ି ରଖିନଥିବା, ନିତାନ୍ତ ସାଧାରଣ ପିଅନ ଭଳି ଦିଶୁଥିବା ଲୋକଟିକୁ ଦେଖି ରଘୁପତି ନିରାଶ ହେଲେ । ତେବେ ଏଇ ବିଷୟଟିର ସମାଧାନ କରିବା ପାଇଁ ସେ ତାଙ୍କର କାଗଜପତ୍ର ଏକାଠି କରି ପରିଦର୍ଶନ ସେତିକିରେ ବନ୍ଦ କଲେ ଏବଂ ପଶୁପତି ଆଡ଼କୁ ମନ ଦେଲେ । ତାଙ୍କୁ ଏ କଥାରେ ସାହାଯ୍ୟ କରିବା ପାଇଁ ହଠାତ କେଉଁଆଡୁ ଚା'ବିସ୍କୁଟ ଆସି ପହଞ୍ଚିଲା, ପରିସ୍ଥିତି ସହଜ ହୋଇଗଲା ଏବଂ ଅଫିସର ନିର୍ଭୟରେ କଥା କହିବାକୁ ଆରମ୍ଭ କଲା ।

କ'ଣ ସାହେବଙ୍କ ଝିଅ ଭଲ ହୋଇଯିବ ତ ? ସାହେବଙ୍କ ଆଡ଼କୁ ତୀର୍ଯ୍ୟକ

ଅନାଇ ପଶୁପତିକୁ ପଚାରିଲା ଅଫିସର ।

ପଶୁପତି ଆଖିବୁଜି ଭଗବାନଙ୍କ ନାଁ ନେଲା, କହିଲା, ସବୁ ଦୟାମୟଙ୍କ ଇଚ୍ଛା ।

କଥାଟି ଦ୍ୱୈର୍ଥବୋଧକ ଏବଂ ରଘୁପତିଙ୍କ ପାଇଁ ବିଶେଷ ଆଶ୍ୱାସନାଜନକ ନଥିଲା । ଅଫିସର ମଧ୍ୟ ଏକଥା ବୁଝିଲା ଏବଂ କହିଲା, ସାହେବ କେବେ ତମ ପାଖକୁ ଯିବେ ?

ହଜୁର ଯେତେବେଳେ ଚାହିଁବେ, ଜବାବ ଦେଲା ପଶୁପତି ।

କାଲି ରବିବାର କେମିତି ହେବ ? କାଲି ତମର ପୂଜା ଅଛି ତ ?

ରବିବାର ପୂଜା ନହୋଇ କେମିତି ହବ ? କାଲି ପୁଣି ପୂର୍ଣ୍ଣିମା । ହଜୁର କାଲି ଆସନ୍ତୁ ।

ପିଅନକୁ ବିଦାୟ ଦେଇ ଅଫିସର ରଘୁପତିଙ୍କ ମୁହଁକୁ ଅନାଇ ଅଧ୍ୟୟନ କଲା । ଏ ପର୍ଯ୍ୟନ୍ତ ସଂପୂର୍ଣ୍ଣ ପ୍ରଭାବିତ ହୋଇ ନଥିଲେ ରଘୁପତି । ତାଙ୍କୁ ଆଉ ଭାବିବାର ଅବସର ନଦେଇ ଅଫିସର କହିଲା, କାଲି ତ ସାର ରବିବାର । ଏଇ ପାଖରେ ପଶୁପତିର ଘର । ମୁଁ ଭାବୁଚି ଥରେ ଯାଇ ଦେଖି ଆସିଲେ କିଛି କ୍ଷତି ନାହିଁ ।

ନା କରିପାରିଲେ ନାହିଁ ରଘୁପତି । ତେବେ କହିଲେ, ମୋ ପାଖରେ ତ କୋଷ୍ଠୀ ଜାତକ କିଛି କାଗଜ ନାହିଁ ।

ପୁଣି ପଶୁପତିକୁ ଡକାଇଲା ଅଫିସର । ସେ ଆସି ହାତଯୋଡ଼ି ଠିଆ ହେବାରୁ ତାକୁ ପଚାରିଲା, ସାର କାଲି ତମ ଗାଁକୁ ଯିବେ । କ'ଣ ଜାତକ ଦରକାର ?

ଜନ୍ମ ତାରିଖ ଆଉ ଲଗ୍ନ ମନେଥିଲେ ଚଳିବ ।

ହଉ, ତମେ ଯାଅ କହି ପିଅନକୁ ବାହାର କରି ଅଫିସର ପଚାରିଲା, ସାର୍ ଆପଣଙ୍କର ଜନ୍ମ ତାରିଖ ଲଗ୍ନ ମନେ ଅଛି ତ ? ରଘୁପତି ହଁ କରିବାରୁ ଅଫିସର ତୁରନ୍ତ ପରଦିନ ପିଅନର ଗାଁକୁ ଯିବାର ବ୍ୟବସ୍ଥା କରିବାରେ ଲାଗିଲା । ଠିକ୍ ହେଲା ଯେ ସେମାନେ ଖୁବ୍ ସକାଳୁ ବାହାରିବେ, ଯେମିତି ଖରା ଆଗରୁ ପିଅନର ଗାଁରେ ପହଞ୍ଚି ଶୀଘ୍ର ଶୀଘ୍ର ଫେରି ଆସିବେ ।

ଅଫିସର ଭଳି ପଶୁପତି ମଧ୍ୟ କାମଚୋର ଥିଲା, ଅଫିସକୁ ଠିକ୍ ସମୟରେ ଆସୁନଥିଲା ଏବଂ କାମରେ ଅବହେଳା କରୁଥିଲା । ଅଫିସର ନିଜେ ପଶୁପତିର ଦୈବଶକ୍ତିରେ ବିଶ୍ୱାସ କରୁନଥିଲା ଏବଂ କେବେହେଲେ ତା ଗାଁକୁ ଯାଇନଥିଲା ଅଥବା କୌଣସି ଜିନିଷରେ ତା'ର ପରାମର୍ଶ ନେଇନଥିଲା । ତେଣୁ ସେଦିନ ରାତିରେ ଯାଇ ସେ ପଶୁପତି ଗାଁର ଖବର ନେଲା, ଡ୍ରାଇଭରକୁ ରାସ୍ତା ବିଷୟରେ ବୁଝାଇଲା ଏବଂ ପରଦିନ ସକାଳୁ ସକାଳୁ ଯାଇ ରଘୁପତି ରହୁଥିବା ବଙ୍ଗଳାରେ ପହଞ୍ଚିଲା । ଶୀତଦିନ

ଆରମ୍ଭରେ ସକାଳେ ସାମାନ୍ୟ ଥଣ୍ଡା ପଡୁଥିଲା ଏବଂ ରଘୁପତି ସୁଟ୍ ପିନ୍ଧି କୁକୁରକୁ ତିଆରି କରାଇ ବାହାରକୁ ଆସିଲେ ଠିକ୍ ସାତଟାବେଳେ । ଡ୍ରାଇଭର ଯେତେବେଳେ କହିଲା ଯେ ସେଠାରେ ଭିଡ଼ ଆରମ୍ଭ ହୋଇଯାଇଥିବ, ଅଫିସର କହିଲା, କିଛି ବ୍ୟସ୍ତ ହବାର ନାହିଁ । ମୁଁ ସାର୍‌ଙ୍କ କାମ ଆଗ କରାଇଦେବି ।

ପିଅନର ଗାଁ ଅନେକ ଦୂରରେ ଥିଲା ଓ ରାସ୍ତା ଆବୁଡ଼ାଖାବୁଡ଼ା ଥିଲା । ସେଥିପାଇଁ ଯିବାକୁ ବେଶ୍ ସମୟ ଲାଗିଲା । ଖରା ଟାଣ ହୋଇଗଲା ଏବଂ ରଘୁପତିଙ୍କ ପାଖରେ ବସିଥିବା କୁକୁର ବିନା କାରଣରେ ଭୁକିବାରେ ଲାଗିଲା । ତାକୁ ରଘୁପତି କିଛି କହିବା ପୂର୍ବରୁ ଅଫିସର କହିଲା, ଆଗରେ ଯୋଉ ବୁଦା ବୁଦା ଜଂଗଲ ଦିଶୁଛି, ତାକୁ ପାର ହେଲେ ଆମେ ଜାଗାରେ ପହଞ୍ଚିଯିବା । କିନ୍ତୁ ବୁଦା ବୁଦା ଜଂଗଲ ପାରି ହେବା ପରେ ପୁଣି ରାସ୍ତା ଓ ବୁଦାବୁଦା ଜଂଗଲ ପଡ଼ିଲା ଏବଂ ଅଫିସର ରଘୁପତିଙ୍କୁ ଭୁଲାଇବା ପାଇଁ ଅନେକ ଅପ୍ରାସଙ୍ଗିକ କଥାମାନ କହି ତାଙ୍କର ଚିତ୍ତବିନୋଦନର ଚେଷ୍ଟାରେ ଲାଗିଲା ।

ଜାଗାରେ ପହଞ୍ଚିବାବେଳକୁ ବେଶ୍ ଦିନ ହୋଇଯାଇଥିଲା । ଖରା ଓ ସାମାନ୍ୟ ରାଗରେ ରଘୁପତିଙ୍କ ମୁହଁ ଲାଲ ଦେଖାଯାଉଥିଲା ଏବଂ କୁକୁର ମଧ ଜୋରରେ ଭୁକିବାକୁ ଆରମ୍ଭ କରିଥିଲା । ଗାଁ ମୁଣ୍ଡରେ ମେଳା ଲାଗି ନଥିଲେ ବି ବେଶ୍ ଜନସମାଗମ ଥିଲା । ଖରା, ସାମାନ୍ୟ ଭୋକ, ବକବକ କରୁଥିବା ଅଧସ୍ତନ କର୍ମଚାରୀ ଓ କୁକୁରଭୁକାଜନିତ ବିରକ୍ତି ଭିତରେ ରଘୁପତି ଗାଡ଼ିରୁ ଓହ୍ଲାଇଲେ ଏବଂ ସେଠାରେ ଆଗରୁ ଅପେକ୍ଷା କରୁଥିବା ଅଧସ୍ତନ କର୍ମଚାରୀର ଅଧସ୍ତନ କର୍ମଚାରୀ ତାଙ୍କୁ ପାଛୋଟି ନେଲା । ପିଅନର ଘର ଥିଲା ଗାଁ ମୁଣ୍ଡରେ ଏବଂ ଧୂଳିଧୂସରିତ ସଂକୀର୍ଣ୍ଣ ଗଳିରେ । ଲଙ୍ଗଳା ପିଲାଙ୍କ ଭିଡ଼ ଭିତର ଦେଇ ସେଠାରୁ ଯିବାର ରାସ୍ତା ଥିଲା । ଝାଳ ବୋହି ଦେହରେ ଲାଗିଯାଉଥିବା କଳାସୁଟ ଭିତରେ ରଘୁପତି ଖୁବ୍ ଅସ୍ୱସ୍ତି ବୋଧ କରୁଥିଲେ, ଯଦିଓ ସେ ଗାଁ ଲୋକଙ୍କ ପାଇଁ ବର୍ତ୍ତମାନ ଏକ ଦର୍ଶନର ସାମଗ୍ରୀ ଥିଲେ । ଗାଁ ମଝିରେ ହଠାତ ଗୋଟାଏ ତୋରଣ ଦେଖାଗଲା, ଯାହାକୁ ପ୍ରଥମେ ରଘୁପତି ଭାବିନେଲେ ତାଙ୍କ ଅଭ୍ୟର୍ଥନା ନିମିତ୍ତ ଉଦ୍ଦିଷ୍ଟ ବୋଲି । କିନ୍ତୁ ସେ ଯେତେବେଳେ ତୋରଣରୁ ବାହାରିଥିବା ରଙ୍ଗିନ କାଗଜର ସାଜସଜ୍ଜା ପିଅନ ଘର ଆଡ଼କୁ ଲମ୍ବିଥିବାର ଦେଖିଲେ, ତାଙ୍କର ଏ ଧାରଣା ଦୂର ହେଲା ଏବଂ ସେ ନିରାଶ ହୋଇଗଲେ । ତାଙ୍କୁ କିଏ ବୁଝାଇ ଦେଲା ଯେ ଏ ସାଜସଜ୍ଜା ହୋଇଥିଲା ପୂର୍ଣ୍ଣମୀ ଦିନର ପୂଜା ପାଇଁ ।

ଏ କୁକୁରଟାକୁ କିଏ ଭିତରକୁ ଆଣିଲା ? କିଏ ଜଣେ ଚଢ଼ାଗଳାରେ କହିଲା । ରଘୁପତିଙ୍କର ପାଦ ଅଟକିଗଲା ଏବଂ ସେ ପଛକୁ ବୁଲି ଦେଖିଲେ ଯେ ଦୁଇଜଣ ଲୋକ ତୋରଣ ଭିତରକୁ ପାଦ ବଢ଼ାଇଥିବା ତାଙ୍କ କୁକୁରକୁ ଜଗି ରହିଛନ୍ତି ।

ଅଫିସର ଧୀରସ୍ୱରରେ କହିଲା, ବିଲାତି କୁକୁର, ସାହେବଙ୍କର, ଛାଡ଼ିଦିଅ । କିନ୍ତୁ ଜଗିଥିବା ଲୋକ କହିଲା, ଗୋସାଇଁଙ୍କ ଆସ୍ଥାନ ଏଇଠାରୁ ଆରମ୍ଭ । ଯା ଭିତରକୁ କୁକୁର ବିଲେଇ ମାଛ ମାଂସ ପଶିବା ମନା । ତାଙ୍କ କୁକୁରକୁ ମାଛ ମାଂସ ଓ ବିଲେଇ ସହିତ ଏକାଠି କରିଦେଉଥିବା ଲୋକ ଆଡ଼କୁ ମୁହୂର୍ତ୍ତେ କଟମଟ କରି ଚାହିଁଲେ ରଘୁପତି, କିନ୍ତୁ ପରେ ନିଜକୁ ସଂଯତ କରି ଜଣେ ତଳିଆ କର୍ମଚାରୀ ଜିମାରେ ଛାଡ଼ି ଆଗକୁ ପାଦ ବଢ଼ାଇଲେ ।

ଦି'ପାଦ ଆଗକୁ ଯାଇଛନ୍ତି କି ନାହିଁ, ପୁଣି ଗୋଟାଏ ତୋରଣ ଭଳି ଜାଗା ପଡ଼ିଲା ଯେଉଁଠାରୁ ରାସ୍ତା ଡାହାଣକୁ ଭାଙ୍ଗୁଥିଲା । ସେଠାରେ ଚଟି ଜୋତାସବୁ ରଖା ହୋଇଥିଲା । ଅଫିସର କହିଲା, ସାର୍ ଆପଣ ଜୋତା ପିନ୍ଧି ଚାଲନ୍ତୁ ; ଭିତରେ ରଖିଦେବେ । କିନ୍ତୁ କୁକୁର କଥା ମନେପକାଇ ପାଦରୁ ଜୋତା ଖୋଲିଦେଲେ ରଘୁପତି, ଯଦିଓ ଧୂଳି ରାସ୍ତାରେ ଠିଆହୋଇ ଝାଳ ସରସର ଗୋଡ଼ରୁ ଜୋତା ମୋଜା ଖୋଲି ଖାଲି ପାଦରେ ଚାଲିବା ପ୍ରୀତିକର ନଥିଲା । ସେଇଭଳି ସେ ସିଗାର ପିଇବାର ପ୍ରବଳ ଇଚ୍ଛାକୁ ମଧ୍ୟ ଦମନ କଲେ, କାରଣ କୁକୁର ଓ ଜୋତା ପରେ ସେ ଧୂଆଁ ଟାଣିବାକୁ ସାହସ କରି ପାରିଲେ ନାହିଁ ।

ନୁଆଁଣିଆ ଚାଳତଳେ ଦୁଆର ବନ୍ଧ ଡେଇଁ ସେମାନେ ବର୍ତ୍ତମାନ ଗୋସାଇଁଙ୍କର ଖାସ୍ ଗାଦି ପାଖରେ ପହଞ୍ଚିଲେ । ଛୋଟ ସଂକୀର୍ଣ୍ଣ ଅଗଣାରେ ଗୋଟିଏ ପାଖରେ ଛୋଟ ଚାନ୍ଦୁଆଟିଏ ତଳେ ଗୋଟିଏ ଉଚ୍ଚ ବସିବା ଜାଗା ତିଆରି ହୋଇଥିଲା ଏବଂ ତା ଉପରେ ପଶୁପତି ପିଅନ ତାଳପତ୍ର ପୋଥି ପରିବେଷ୍ଟିତ ହୋଇ ପଦ୍ମାସନରେ ବିଜେ ହୋଇଥିଲା । ତା ଚାରିପାଖେ ଧୂପଦୀପ ଜଳୁଥିଲା । ଗାଧୋଇ ପାଧୋଇ, ମଠାଲୁଗା ପିନ୍ଧି, ମୁଣ୍ଡରେ ଚନ୍ଦନ ସିନ୍ଦୂର ଓ ଆଖିରେ ଚଷମା ଲଗାଇ ପଶୁପତି ତାଳପତ୍ର ପୋଥି ହାତରେ ଧରି ମନେ ମନେ ଗୁଣୁଗୁଣୁ ହୋଇ କ'ଣ ସବୁ ପଢୁଥିଲା । ଅଗଣାରେ ତଳେ ବସି ତା ପାଖକୁ ଆସିଥିବା ଗୁହାରିଆମାନେ ତା ଆଡ଼କୁ ତନ୍ମୟ ହୋଇ ଚାହିଁ ବସି ରହିଥିଲେ । ସେମାନେ ଗାଉଁଲିଆ ମଳିମୁଣ୍ଡିଆ ବ୍ୟାଧିଗ୍ରସ୍ତ ଲୋକ ଥିଲେ ଏବଂ ଅଧିକାଂଶ ପଶୁପତି ପାଖକୁ ଆସିଥିଲେ ବିଭିନ୍ନ ପ୍ରକାରର ଦୁଃସାଧ୍ୟ ରୋଗର ନିରାକରଣ ପାଇଁ । ଏମାନଙ୍କ ଭିତରେ କେବଳ ଜଣେ ସଫାସୁତୁରା ଲୋକ ଥିଲା ଯେ କି ହୁଏତ ଦୂରରୁ କେଉଁଠାରୁ ଆସିଥିଲା ଏବଂ ବର୍ତ୍ତମାନ ତଳକୁ ମୁହଁପୋତି ବସିଥିଲା । ଏ ବ୍ୟବସ୍ଥା ଦେଖି ଅଫିସର କହିଲା, ସାର୍ ଟିକିଏ ଅପେକ୍ଷା କରନ୍ତୁ, ମୁଁ ଚଉକି ଆଣି ଦଉଚି । ଏତିକି କହି ସେ ଉଭାନ ହୋଇଗଲା ଏବଂ ରଘୁପତି ଜାଣିଲେ ଯେ ସେ ଆଉ ଫେରିବ ନାହିଁ । ଏ ଗାଁରେ କାହା ଘରେ ଚଉକି ଥିବାର ସମ୍ଭାବନା ନଥିଲା, ଚଉକି ଯଦି ବି ମିଳିଥା'ନ୍ତା, ସେଠାରେ ଗୋସାଇଁଙ୍କଠାରୁ ଉଚ୍ଚ ଆସନରେ ବସିବା ଧର୍ମଦ୍ରୋହ ବୋଲି ଧରା ଯାଇଥା'ନ୍ତା ଏଥିରେ

ସନ୍ଦେହ ନାହିଁ । ରଘୁପତି ମଇଳା ଅସନା ଲୋକଙ୍କ ଭିତରେ ଦେଇ ସେଇ ସଫାସୁତୁରା ଲୋକ ପାଖକୁ ଯାଇ ଚକା ପକାଇ ବସିଲେ । ଏତେ ଭିଡ଼ ଭିତରେ ବସିବାର ଏବଂ ବିଲାତି ପୋଷାକଟି ମଧ୍ୟ ମଧ୍ୟ ଚକା ପକାଇ ବସିବା ପାଇଁ ତିଆରି ନୁହେଁ । ସୂର୍ଯ୍ୟ ବର୍ତ୍ତମାନ ଠିକ୍ ଉପରେ ଥିଲା ଏବଂ ଖରା ଆସି ସିଧା ପଡୁଥିଲା ମୁଣ୍ଡ ଉପରେ ।

ରଘୁପତି ଏକ ଲୟରେ ପଶୁପତି ଆଡ଼କୁ ଚାହିଁ ରହିଲେ, କିନ୍ତୁ ସେ ଆଉ କେଉଁଆଡ଼େ ନଅନାଇ ଗୋଟିଏ ପରେ ଗୋଟିଏ ପୋଥି ଖୋଲୁଥିଲା ଏବଂ ସେଥିରୁ କିଛି ପଢ଼ି ତା ଆଗରେ ବସିଥିବା ଲୋକକୁ ନ ବୁଝିପାରିବା ଭାଷାରେ ବୁଝାଉଥିଲା । ବିଚରା ଲୋକଟି କୋଉ ଅସାଧ୍ୟ ବେମାରିରୁ ଉପଶମ ପାଇବା ପାଇଁ ତା ପାଖକୁ ଆସିଥିଲା, କିନ୍ତୁ ପଶୁପତି ତାକୁ ପଚାରୁଥିଲା, ପୋଥିରୁ ଚକ୍ର ବୋଲି ବାହାରୁଛି । ତମ ଘରେ କିଛି ଚକ୍ର ଅଛି ? ରଘୁପତି ଭାବିଲେ ତାଙ୍କୁ ଯଦି ଗୋସାଇଁ ଏଇ ଅଦ୍ଭୁତ ପ୍ରଶ୍ନଟି ପଚାରିଥା'ନ୍ତେ ସେ କ'ଣ ଉତ୍ତର ଦେଇଥା'ନ୍ତେ ପ୍ରଶ୍ନର । ବିଚରା ଲୋକଟି କିନ୍ତୁ ସିଧାସଳଖ ଭାବରେ ଉତ୍ତର ଦେଲା, ନାହିଁ । ଏ ଉତ୍ତର ଶୁଣି ପଶୁପତି କିଛି କଞ୍ଚାପତ୍ର ନେଇ ତାଳପତ୍ର ଉପରେ ଘଷିଲା, ଚଷମାକୁ ଠିକ୍‌କରି ପିନ୍ଧିଲା ଏବଂ ପଚାରିଲା, ତା ହେଲେ କ'ଣ ଚିତ୍ର ଅଛି ? ଲୋକଟି ପୁଣି ନା କହିବାରୁ ପଶୁପତି ପାଖ ଲୋକକୁ କହିଲା, ଟିକିଏ ଭାଇଙ୍କୁ ଡାକ । ସେ ପଢ଼ି ଦେଖନ୍ତୁ । ପଶୁପତିର ବଡ଼ଭାଇ, ଯେ କି ପୋଥିପଢ଼ା କାମରେ ତା'ର ସହାୟକ ଥିଲା, ଆସି ତାଳପତ୍ରରେ ଆହୁରି କିଛି ପତ୍ର ଘଷି, ଆଖିର ଚଷମାକୁ ଆହୁରି ଠିକ୍ ଭାବରେ ସୂତା ଦେଇ କାନରେ ବାନ୍ଧି ଶବ୍ଦଟିକୁ ଆହୁରି ଶୁଦ୍ଧ ଭାବରେ ପଢ଼ିବାକୁ ଚେଷ୍ଟା କଲା ।

ଅନେକ ସମୟ ସିଧାସଳଖ ତା ଆଡ଼କୁ ଅନାଇବା ପରେ ପଶୁପତି ତାଙ୍କ ଆଡ଼କୁ ମୁହଁ ବୁଲାଇଲା ଏବଂ ରଘୁପତି ଭାବିଲେ ଯେ ସେ ବର୍ତ୍ତମାନ ପାଖକୁ ଡାକି ପ୍ରଥମେ ତାଙ୍କ ସମସ୍ୟାର ସମାଧାନ କରିଦେବ । କିନ୍ତୁ ତାଙ୍କ ସହିତ ଆଖି ମିଶିବା କ୍ଷଣି ପଶୁପତି ଆଖି ବୁଲାଇନେଲା ଏବଂ ଭାଇ ହାତରୁ ପୋଥି ଟାଣିନେଇ ତାକୁ ଆଖି ପାଖରେ ରଖି ପଢ଼ିବାକୁ ଚେଷ୍ଟା କଲା । ରଘୁପତି ଭାବିଲେ ସେ ସେଠାରୁ ଉଠିଯିବେ, ଖୋସାମଦିଆ ଅଫିସରକୁ ଗାଳିଗୁଲଜ କରି ତା'ର ଚରିତ୍ରଲିପିକୁ ସଂପୂର୍ଣ୍ଣ ନଷ୍ଟ କରିଦେବେ ଏବଂ ନିୟମର ଉଲ୍ଲଙ୍ଘନ କରି ହୋଇଥିବା ପିଅନର ପୁନର୍ନିଯୁକ୍ତି ଆଦେଶକୁ ବାତିଲ କରିଦେବେ । କିନ୍ତୁ ଟାଣ ଖରାରେ ଏତେ ଭକ୍ତଙ୍କର ଶ୍ୱାସରୁଦ୍ଧ ଅପେକ୍ଷା, ଚନ୍ଦନ ସିନ୍ଦୂର ମଠା ଶୋଭିତ ଗୋସାଇଁ ଏବଂ ଗଦା ହୋଇଥିବା ପୁରୁଣା ତାଳପତ୍ର ପୋଥି ଆଡ଼କୁ ସାମାନ୍ୟ ଭୟରେ ଅନାଇବାବେଳେ ତାଙ୍କର ମନେପଡ଼ିଲା ଝିଅର ମୁହଁ ଓ ମନ୍ତ୍ରୀଙ୍କ ଭଣଜାର ଏକ ପରିକଳ୍ପିତ ଚେହେରା ଏବଂ ସେ ଏ ଚିନ୍ତାମାନ ମନରୁ ଦୂର କଲେ ।

ଏଇ ସମୟରେ ରଘୁପତିଙ୍କ ଆଖିରେ ପଡ଼ିଗଲା ଖୋସାମଦିଆ ଅଫିସର

ବାରଣ୍ଡା ଛାଇରେ ଆରାମରେ ଛିଡ଼ା ହୋଇଥିବା ଅବସ୍ଥାରେ । ଅଫିସର ମୁହଁ ବୁଲାଇ ପଳାଇଯିବା ପୂର୍ବରୁ ରଘୁପତି ତା ଆଡ଼କୁ କଟମଟ କରି ଅନାଇଲେ । ସେଇ ଜାଗାରେ ଥାଇ ଅଫିସର ସଂକେତରେ ବୁଝାଇଲା ଯେ ସେ ଖୁନ୍ଦାଖୁନ୍ଦି ହୋଇ ବସିଥିବା ଲୋକମାନଙ୍କ ଭିତରେ ପଶି ତାଙ୍କ ପାଖରେ ପହଞ୍ଚି ପାରିବ ନାହିଁ । ଏହାପରେ ସେ ହାତ ଓ ଆଙ୍ଗୁଳିର ମୁଦ୍ରା ଏବଂ ଆଖି ଓ ଓଠର ବିଭିନ୍ନ ପ୍ରକାର ଇଙ୍ଗିତରେ ଯାହା ସବୁ କହିଲା ତା'ର ମର୍ମ ଏଇପରି ଥିଲା : ସାର୍, ମୁଁ ଆପଣଙ୍କ ପାଇଁ ଚଉକି ଆଣିବା ପାଇଁ ଲୋକ ପଠାଇଛି । ଆପଣ ଟିକିଏ ଧୈର୍ଯ୍ୟ ଧରିବା ହୁଅନ୍ତୁ ; ଚଉକି ଆସିଲେ ଆରାମ କରି ବସିବେ । ତା'ଛଡ଼ା ମୁଁ ବର୍ତ୍ତମାନ ଯାଇ ଗୋସାଇଁଙ୍କୁ କହୁଛି ସେ ଏଇ ବିଚରା ଲୋକଟି କଥା ବୁଝିସାରିବା ପରେ ସାଙ୍ଗେ ସାଙ୍ଗେ ଆପଣଙ୍କୁ ପାଖକୁ ଡାକି ଆପଣଙ୍କ ଝିଅକୁ ନୀରୋଗ କରିଦେବେ ।

ସାଂକେତିକ ଭାଷାରେ ଏସବୁ କଥା କହିସାରି ଅଫିସର ଅତିଶୀଘ୍ର ରଘୁପତିଙ୍କ ଆଖି ଆଗରୁ ପଳାଇଗଲା । ରଘୁପତି ମନେ ମନେ ଅଫିସରର ବଂଶୋଦ୍ଧାର କଲେ । କାରଣ ସେ ବର୍ତ୍ତମାନ ଭଲ ଭାବରେ ଜାଣିସାରିଥିଲେ ଯେ ଏ ଜାଗାରେ ସେଇ ଅଫିସର ତ ଛାର, ସ୍ୱୟଂ ରଘୁପତିଙ୍କର ନିଜର କର୍ତ୍ତୃତ୍ୱ ବି ଚଳିବ ନାହିଁ । ଏଇ ନୁଆଁଣିଆ ଛୋଟ ଚାଳଘର ଭିତରେ ଯେଉଁ ସ୍ୱତନ୍ତ୍ର ସାମ୍ରାଜ୍ୟଟି ଥିଲା ତା'ର ଏକଛତ୍ର ସମ୍ରାଟ ଥିଲା ପିଅନ ପଶୁପତି ଏବଂ ତଳେ ବସିଥିବା ଲୋକମାନେ ଥିଲେ ତା'ର ଅନୁଗ୍ରହପ୍ରାର୍ଥୀ । ଏକଥା ହୃଦୟଙ୍ଗମ ହେବାପରେ ଧୀରସ୍ଥିର ହୋଇ ବସି ରଘୁପତି ନିଜର ପାଳିକୁ ଅପେକ୍ଷା କଲେ ।

# ପ୍ରତିଦ୍ୱନ୍ଦ୍ୱୀ

ଭାଗ୍ୟରେ ଥିଲେ, ଅଥବା ଦୁର୍ଭାଗ୍ୟରେ ଥିଲେ, ଏପରି ହୁଏ, ମନେମନେ ଭାବିଲା ରଙ୍ଗନାଥ । ସେମାନେ ଏକା ସ୍କୁଲରେ, ଏକା କ୍ଲାସ୍‌ରେ ପାଠ ପଢୁଥିଲେ ଏବଂ ଏକା ଦିନରେ ଏକା କମ୍ପାନୀରେ ଚାକିରିରେ ଯୋଗ ଦେଇଥିଲେ । ଅନେକ ଦିନ ପର୍ଯ୍ୟନ୍ତ ସେମାନଙ୍କର ଜୀବନଧାରା ସମାନ୍ତରାଳ ଭାବରେ ଚାଲିଥିଲା, ଏପରିକି ସେମାନେ ଗୋଟିଏ ବର୍ଷ ଏକା ସହରରେ ଚାକିରି କରୁଥିବାବେଳେ ଗୋଟିଏ ଘର ନେଇ ଏକାଠି ରହୁଥିଲେ । କାଳକ୍ରମେ କିନ୍ତୁ ଦୁହିଁଙ୍କ ଜୀବନ ଭିନ୍ନ ମୋଡ଼ ନେଲା । ଜୟସିଂହ ବାହା ହେଲା, ତା'ର ପିଲାଝିଲା ହେଲେ ଏବଂ ତା ସହିତ ତା'ର ଉଚ୍ଚାଭିଳାଷ ବି ବଢ଼ିଗଲା । ରଙ୍ଗନାଥ ତା'ର କାମରେ ନିଜକୁ ପୂରାପୂରି ନିୟୋଜିତ କରିଦେଲା, ବାହାହେଲା ନାହିଁ ଏବଂ କମ୍ପାନୀକୁ ନିଜର ଜୀବନ ବୋଲି ମନେ କରିନେଲା । ରଙ୍ଗନାଥ ଏଇପରି ନିଜର କାମର ଉତ୍କର୍ଷତାରେ ଦୃଷ୍ଟି ରଖିଥିବା ବେଳେ ଜୟସିଂହ ନିଜର ଉପରିସ୍ଥ ହାକିମମାନଙ୍କୁ ହାତ କରିବାରେ ଲାଗିଲା ଏବଂ ଦିନେ ହଠାତ ରଙ୍ଗନାଥକୁ ଟପି ଉପର ଚାକିରିକୁ ଚାଲିଗଲା ।

ଏଇ ଦିନଟି ଖୁବ୍ ଦୁଃଖ ଓ ମନସ୍ତାପରେ ପଡ଼ିଥିଲା ରଙ୍ଗନାଥ । ଜୀବନର ବିଶେଷ ଭାଗଟିକୁ ସେ କମ୍ପାନୀର ସେବାରେ କଟାଇ ଦେଇଥିଲା । ତାଙ୍କ କମ୍ପାନୀର କୃଷି ଯନ୍ତ୍ରପାତି ବିକିବା ବ୍ୟତୀତ ସେ ଜୀବନରେ ଆଉ କୌଣସି ଅଭିରୁଚି ରଖି ନଥିଲା । ତା'ର ଅନେକ ସାଙ୍ଗ ଏଇ କୋଡ଼ିଏ ବର୍ଷ ଭିତରେ ବିଭିନ୍ନ ଚାକିରି ବଦଳାଇଥିଲେ ମଧ୍ୟ ରଙ୍ଗନାଥ, ଜୟସିଂହ ଭଳି ସେଇ ଗୋଟିଏ କମ୍ପାନୀକୁ ଧରି ରହିଥିଲା ଏବଂ ଜୀବନର ଏଇ ପର୍ଯ୍ୟାୟରେ ପୁଣି ନୂଆ କାମ ଖୋଜିବା ପାଇଁ ତା'ର ଧୈର୍ଯ୍ୟ ନଥିଲା । ତଥାପି ସେ ଭାବିଲା ସେ ଚାକିରିରୁ ଇସ୍ତଫା ଦେଇଦେବ । ତା'ର ତ କୌଣସି ପାରିବାରିକ ଦାୟିତ୍ୱ ନାହିଁ ଅଥବା ଟଙ୍କା ପଇସାର ସମସ୍ୟା ନାହିଁ, କାହିଁକି ସେ ଏଭଳି ଅପମାନକୁ ମାନିନେବ ? ପୁଣି ଭାବିଲା, ଜୟସିଂହ ବିରୁଦ୍ଧରେ ସେ କମ୍ପାନୀର କର୍ତ୍ତାମାନଙ୍କୁ ଦରଖାସ୍ତ କରିବ । ଏତେ ବର୍ଷର ଚାକିରି ଭିତରେ ସେ ଜୟସିଂହର ଅନେକ ଦୋଷ ଦୁର୍ବଳତା ବିଷୟରେ ଅବଗତ ଥିଲା । ଏପରିକି ନିଜେ ଜୟସିଂହ ତାକୁ ନିଜର ଅନେକ ଭୁଲଭ୍ରାନ୍ତି କଥା କହିଥିଲା । ତେବେ ଏସବୁ ବିଷୟକୁ ଉପଯୋଗ କରି ଜୟସିଂହକୁ ବିପଦରେ

ପକାଇବା ଉଚିତ ହେବ ନାହିଁ ବୋଲି ମନେକଲା ରଙ୍ଗନାଥ । ଏଥରକ ତା'ର ନିଜ କମ୍ପାନୀ ଉପରେ ରାଗ ହେଲା । ସେମାନଙ୍କର ତ ବୁଝିବା ଉଚିତ ଥିଲା କିଏ କିଭଳି କାମ କରୁଛି ଏବଂ କାହାର ପ୍ରମୋଶନ ପାଇବା କଥା ! ବିଦେଶୀ କମ୍ପାନୀମାନଙ୍କରେ ଅନେକ ସୁବିଧାସୁଯୋଗ ଅଛି, କିନ୍ତୁ ଏଇ ବିଦେଶୀ କର୍ତ୍ତାମାନେ ଏଠାର ଲୋକମାନଙ୍କ ବିଷୟରେ କ'ଣ ଜାଣନ୍ତି ? ଯଦିଓ ବିଦେଶୀ କମ୍ପାନୀର ଶେୟାରର ବେଶି ଅଂଶ ଭାରତୀୟଙ୍କ ହାତରେ, ନିୟନ୍ତ୍ରଣ ତଥାପି ବିଦେଶୀଙ୍କ ହାତରେ । ସେମାନଙ୍କର ଅନେକ ଦୋଷ ଦୁର୍ବଳତା ବି ତ ରଙ୍ଗନାଥକୁ ଜଣା । ସେ କ'ଣ ବିନା ଦସ୍ତଖତରେ ଗୋଟିଏ ଚିଠି କମ୍ପାନୀ ବିରୁଦ୍ଧରେ ଲେଖି ସରକାରଙ୍କ ପାଖକୁ ପଠାଇଦେବ ? ନିଜର ନ୍ୟାୟବୋଧ ଏ କଥାର ବିରୋଧ କଲା । ରଙ୍ଗନାଥ ଭାବିଲା, ସେ ଚାକିରି ଛାଡ଼ିଦେଇ ନିଜେ ଗୋଟିଏ କୃଷି ଯନ୍ତ୍ରପାତିର କାରଖାନା ବସାଇବ ଏବଂ ତା'ର କାରଖାନା ଦିନେ ଏଇ କମ୍ପାନୀକୁ ଟପିଯିବ ।

ଏ ଗୋଟିଏ ଦିବାସ୍ୱପ୍ନ ମାତ୍ର ଥିଲା । କିନ୍ତୁ ଚାକିରିର ବିଭିନ୍ନ ପର୍ଯ୍ୟାୟରେ କେବେ କେମିତି ଉପରିସ୍ଥ କର୍ତ୍ତାମାନଙ୍କ ପାଖରୁ ଭର୍ତ୍ସନା ଶୁଣିବା ପରେ ସେ ଏଇ ସ୍ୱପ୍ନର ଆଶ୍ରୟ ନେଉଥିଲା । ସ୍ୱପ୍ନକୁ ସାମାନ୍ୟ ସାକାର କରିବା ପାଇଁ ସେ ଏକ କୃଷି ଯନ୍ତ୍ରପାତି କାରଖାନା ବସାଇବାର ବିଭିନ୍ନ କାଗଜପତ୍ର ସଂଗ୍ରହ କରି ରଖିଥିଲା । ଏ ବିଷୟରେ ତା ପାଖରେ ବର୍ତ୍ତମାନ ଗୋଟିଏ ସଂପୂର୍ଣ୍ଣ ଫାଇଲ ଥିଲା ଏବଂ ହତାଶ କ୍ଷଣମାନଙ୍କରେ ସେ ଏଇ ଫାଇଲକୁ ଅଧ୍ୟୟନ କରି ସାମାନ୍ୟ ଆନନ୍ଦ ପାଉଥିଲା । ଫାଇଲଟିରେ ବିଭିନ୍ନ ପ୍ରକାରର ଆଶ୍ୱାସନା ଦେଉଥିବା କାଗଜ ଥିଲା, ଯଥା, କାରଖାନାର ସଂପୂର୍ଣ୍ଣ ପ୍ରୋଜେକ୍ଟ ରିପୋର୍ଟ, ବିଭିନ୍ନ ସରକାରୀ ଅଫିସକୁ ଦରଖାସ୍ତ କରିବାର ଫର୍ମ, କାରଖାନା ବସାଇବାର ନିୟମାବଳୀ ଇତ୍ୟାଦି । ବହୁ ବର୍ଷ ଧରି ସେ ଏଇ ଫାଇଲଟିକୁ ତିଆରି କରିଥିଲା ଏବଂ ମଝିରେ ମଝିରେ ବିଭିନ୍ନ କାଗଜକୁ ସଂଶୋଧନ କରି ସେ ତାକୁ କାର୍ଯ୍ୟୋପଯୋଗୀ କରି ରଖିଥିଲା । ଅନେକ ବର୍ଷ ତଳେ ସେ ଯେଉଁ କାରଖାନାକୁ ମାତ୍ର କେତେ ଲକ୍ଷ ଟଙ୍କାରେ କରିପାରିବ ବୋଲି ଅଟକଳ କରିଥିଲା, ତା'ର ଖର୍ଚ୍ଚ ବର୍ତ୍ତମାନ ବଢ଼ି ବଢ଼ି କୋଟିରେ ପହଞ୍ଚିଥିଲା । ସରକାରଙ୍କର ଶିଳ୍ପନୀତି ମଧ୍ୟ ଏ ଭିତରେ କେତେଥର ବଦଳି ଯାଇଥିଲା ଏବଂ କାରଖାନାଟିକୁ ଛୋଟ, ମଝି ବା ବଡ଼ ଆକାରରେ କରିବ ଏ ବିଷୟରେ ମଧ୍ୟ ରଙ୍ଗନାଥକୁ ନିଜର ନିର୍ଣ୍ଣୟ ବଦଳାଇବାକୁ ପଡ଼ିଥିଲା । ତେବେ ଫାଇଲଟି ବର୍ତ୍ତମାନ ସ୍ୱୟଂସଂପୂର୍ଣ୍ଣ ଓ ଅଦ୍ୟାବଧି ଥିଲା । ଫାଇଲଟି ଥିଲା ରଙ୍ଗନାଥ ପାଇଁ ଏକ ପୂରାପୂରି ନିଜସ୍ୱ କୁହୁକ ସାମ୍ରାଜ୍ୟ, ଯାହା ଭିତରକୁ ସେ ସମୟ ଅସମୟରେ ପଳାଇ ଯାଇପାରିବ ।

ଜୟସିଂହ ପ୍ରମୋଶନ ପାଇବା ଦିନ ରାତିରେ ଏଇ ଫାଇଲଟିକୁ ଆଗରେ

ରଖି କଳ୍ପନାରେ ହଜିଯାଇଥିଲା ରଙ୍ଗନାଥ । ତା ଆଗରେ ଗୋଟିଏ ଜମିଜମାର ମାନଚିତ୍ର ପଡ଼ିଥିଲା, ଯାହାକୁ ସେ ଅନେକ ବର୍ଷ ତଳେ ଗସ୍ତ ସମୟରେ ସଂଗ୍ରହ କରିଥିଲା । ତା'ର କାରଖାନା କୋଉ ଜାଗାରେ ବସାଇବ ସେ ବିଷୟରେ ତା'ର ମନ ସ୍ଥିର ଥିଲା ଏବଂ ବର୍ତ୍ତମାନ ସେଇ ମାନଚିତ୍ରର ଖାଲି ଜାଗାଟି ଉପରେ ସେ କାରଖାନାଟିକୁ ବସାଉଥିଲା । ତାକୁ ଏ କାମରେ ସାହାଯ୍ୟ କରିବା ପାଇଁ ତା ବାଁ ହାତ ପାଖରେ ହୁଇସ୍କି ଗ୍ଲାସ୍ ଥିଲା ଏବଂ ଡାହାଣ ପାଖେ ବିଭିନ୍ନ ପତ୍ରପତ୍ରିକାରୁ କଟାହୋଇଥିବା କାରଖାନା ଘରର ନକ୍ସା ଥିଲା । ଜମିଟିକୁ କିଣି, ବିଭିନ୍ନ ପ୍ରକାର ସରକାରୀ ଅନୁମତି ହାସଲ କରି, ବିଦେଶରୁ କଳକବ୍‌ଜା ମଗାଇ, କାରଖାନା ଘର ତିଆରି କରି କୃଷି ଯନ୍ତ୍ରପାତି ଉତ୍ପନ୍ନ ହେବାବେଳକୁ ରାତି ଅନେକ ହୋଇଯାଇଥିଲା । ରଙ୍ଗନାଥ ଉଠି ବିଛଣାକୁ ଗଲା ଏବଂ ନିଦ ହେବା ପର୍ଯ୍ୟନ୍ତ ଯନ୍ତ୍ରପାତିର ବିକ୍ରୟ ବ୍ୟବସ୍ଥା ଏବଂ ଲାଭକ୍ଷତିର ହିସାବରେ ମନଦେଲା ।

ସକାଳେ ଉଠିବା ବେଳକୁ ରଙ୍ଗନାଥ ଦେହରେ ବେଶି ସମୟ ଶୋଇ ନ ଥିବାର ଅସ୍ୱସ୍ତି ଥିଲା ଏବଂ ମୁଣ୍ଡରେ ଅତ୍ୟଧିକ ପାନୀୟଜନିତ ବ୍ୟଥା ଥିଲା । ଟେବୁଲ ଉପରେ ବିକ୍ଷିପ୍ତ ପଡ଼ିଥିବା କାଗଜସବୁ ସେ ସଜାଡ଼ି ଫାଇଲରେ ରଖିଲା ଏବଂ ଫାଇଲଟିକୁ ଯତ୍ନରେ ନେଇ ଲୁହା ଆଲମାରିରେ ବନ୍ଦ କଲା । ମନେ ମନେ ଭାବିଲା, ଆଜି ରାତିରେ ଆସି ପୁଣିଥରେ ଏ କାଗଜକୁ ଦେଖିବାକୁ ପଡ଼ିବ । ନିୟମିତ ସମୟରେ ସେ ଅଫିସକୁ ଗଲା ଏବଂ ନିଜ କୋଠରିରେ ଯାଇ ଅଭ୍ୟାସଗତ ଭାବେ ସେଦିନ ଆସିଥିବା ଚିଠିପତ୍ର ଦେଖିଲା । ତା'ପରେ ସେ ନିଜର ଦୈନନ୍ଦିନ କାମରେ ମନ ଦେଲା । ଏ ସବୁ କରିବା ଭିତରେ ସେ ଜାଣୁଥିଲା ଯେ ଗୋଟିଏ ଦରକାରୀ କାମ ବାକି ରହିଯାଇଥିଲା, ସେଇଟି ଥିଲା ଜୟସିଂହ ସହିତ କିପରି ଦେଖା କରି କଣ କହିବ । ସେ ଭାବିଲା, ଯଦି ଜୟସିଂହ ଜାଗାରେ ସେ ନିଜେ ପ୍ରମୋଶନ ପାଇଥା'ନ୍ତା, ତା ପାଖକୁ ଏ ଖବରଟି ଦେବାକୁ ଯାଇଥାନ୍ତା । ଲୋକଙ୍କର ଯଦି ଏତିକି ଭଦ୍ରତା ନାହିଁ ତ କ'ଣ ଆଉ କରାଯାଇପାରେ ?

ଶେଷକୁ ସେ ନିଜେ ଜୟସିଂହର କୋଠରିକୁ ଗଲା । ନୂଆ କାମ ନେଇଥିବାରୁ ଜୟସିଂହ ଟେବୁଲ ଉପରେ ଗଦା ଗଦା କାଗଜ ଧରି ବ୍ୟସ୍ତ ଭାବରେ ବସିଥିଲା । ତଥାପି ରଙ୍ଗନାଥକୁ ଦେଖି ସେ ଚଉକିରୁ ଉଠିଆସିଲା । କହିଲା, ସକାଳୁ ତୋ ପାଖକୁ ଆସିବି ଆସିବି ବୋଲି ଏ କାମ ଭିତରୁ ବାହାରି ପାରୁନଥିଲି । ଭଲ କଲୁ ତୁ ଆସିଗଲୁ । କ'ଣ ଚା' ପିଇବୁ ନା କଫି ? ରଙ୍ଗନାଥ ଭାବିଲା, ମତେ ବେଶି କାମ ଦେଖାଉଚି ! ମୁଁ କ'ଣ ଜାଣେନା ଏଥିରେ ଏତେ କାମ ? ପୁଣି ଚା' କଫିର ଔପଚାରିକତା ! ସେ କ'ଣ ଏଇ ଗୋଟାଏ ଦିନରେ ଭୁଲିଗଲା ମୁଁ କଫି ପିଇବାକୁ ଭଲପାଏନା ବୋଲି ! କହିଲା, କଂଗ୍ରାଚୁଲେସନ । ଜୟସିଂହ ଚା' ମଗାଇଲା ଏବଂ ଚା' ପିଉ ପିଉ ତା ସହିତ ଆଗଭଳି କଥାବାର୍ତ୍ତା କଲା । ତଥାପି ରଙ୍ଗନାଥର ମନେହେଲା

ଯେମିତି କୋଉଠି କ'ଣ ଗୋଟାଏ ଅସୁବିଧା ରହିଯାଉଛି ସବୁ କଥାରେ ।

ସେଇଦିନଠାରୁ ଜୟସିଂହ ସହିତ ତା'ର ପୁରୁଣା ସଂପର୍କ କଟିଗଲା । ଦୁହିଁଙ୍କ ଭିତରେ ଆଗଭଳି ସଂପର୍କ ରଖିବା ପାଇଁ ନା ଜୟସିଂହ ଚେଷ୍ଟା କଲା, ନା ସେ । କାମରେ କୌଣସି ଅବହେଳା କଲା ନାହିଁ, କିନ୍ତୁ ତା'ର କିଭଳି ମନେହେଲା ଯେ ଅଫିସରେ ସମସ୍ତେ ଭାବୁଛନ୍ତି ସେ ଆଉ କାମରେ ପୂର୍ବପରି ଯତ୍ନ ନେଉନାହିଁ ବୋଲି । ତା'ର ଦକ୍ଷତାରେ କାହାରି ସନ୍ଦେହ କରିବାର ନଥିଲା, କାରଣ ସେ ତା'ର ବିକ୍ରୟର ବର୍ଦ୍ଧିଷ୍ଣୁ ପରିମାଣକୁ ବଜାଇ ରଖିଥିଲା, ତେବେ ସେ ଭାବୁଥିଲା ଯେ ଜୟସିଂହ ସହିତ ଅନ୍ୟ ସମସ୍ତେ ଯେମିତି ତା'ର ପ୍ରତିପକ୍ଷ ହୋଇ ଯାଇଛନ୍ତି । ଏଭଳି ମନେହେଲାବେଳେ ସେ ଯାଇ ତା'ର ନିଜର କାରଖାନା ବସାଇବା ଫାଇଲରେ ମନୋନିବେଶ କରୁଥିଲା ଏବଂ ସାମାନ୍ୟ ଶାନ୍ତି ଖୋଜୁଥିଲା ।

କିଛିବର୍ଷ ପରେ ରଙ୍ଗନାଥ ପାଇଁ ଆହୁରି ଏକ ଧକ୍କା ପହଞ୍ଚିଲା ଯେତେବେଳେ କମ୍ପାନୀର ବିଦେଶୀ ମାଲିକମାନେ ଭାରତୀୟମାନଙ୍କୁ ନିଜର ସ୍ୱତ୍ୱ ବିକ୍ରି କରିଦେଲେ ଏବଂ ଜଣେ ସ୍ଥାନୀୟ ଶିଳ୍ପପତି ବେଶି ସଂଖ୍ୟାର ଅଂଶ କିଣିନେଇ କମ୍ପାନୀକୁ ନିଜର ଆୟତ୍ତାଧୀନ କରିଦେଲେ । ରଙ୍ଗନାଥର ଆଶା ଥିଲା ଯେ କେବେ ନା କେବେ ବିଦେଶୀ କର୍ତ୍ତାମାନଙ୍କ ପାଖରୁ ତାକୁ ନ୍ୟାୟ ମିଳିବ, ଏବେ ସେ ଆଶାରେ ସେ ଜଳାଞ୍ଜଳି ଦେଇଦେଲା । କିଛିଦିନ ପରେ କମ୍ପାନୀରେ ଅଫିସରମାନଙ୍କର ଛଟେଇ ଏବଂ ଅଦଳବଦଳ ହେଲା ଏବଂ ଏଇ ପ୍ରକ୍ରିୟାରେ ରଙ୍ଗନାଥ ଜୟସିଂହର ସିଧାସଳଖ ଅଧୀନସ୍ଥ ହୋଇଗଲା ।

ପ୍ରଥମେ ପ୍ରଥମେ ରଙ୍ଗନାଥ ଜୟସିଂହକୁ ନିଜର ଉପରିସ୍ଥ ଭାବରେ ଗ୍ରହଣ କରିବାକୁ କୁଣ୍ଠିତ ହେଲା ; କିନ୍ତୁ ସବୁ ଅଭ୍ୟାସରେ ପଡ଼ିଗଲା ଆସ୍ତେ ଆସ୍ତେ । ଜୟସିଂହ ନିଜେ ବିଶେଷ ପରିଶ୍ରମୀ ଥିଲା, ଭଲ କାମ କରୁଥିଲା ଏବଂ ନୂଆ ମାଲିକମାନଙ୍କର ଶ୍ରଦ୍ଧାଭାଜନ ଥିଲା । ସେ ରଙ୍ଗନାଥ ପ୍ରତି ସୌହାର୍ଦ୍ଦ୍ୟଶୀଳ ଥିଲା ଏବଂ ରଙ୍ଗନାଥ ଇଚ୍ଛା କରିଥିଲେ ସୁଚାରୁ ରୂପେ କାମ ଚଳାଇ ପାରିଥା'ନ୍ତା । କିନ୍ତୁ ସେ ପ୍ରଚ୍ଛନ୍ନ ଭାବରେ ଜୟସିଂହ ସହିତ ସାମାନ୍ୟ ଅସହଯୋଗ କରିବାକୁ ଆରମ୍ଭ କଲା । ଯଦିଓ ଜୟସିଂହ ଏ ବିଷୟରେ ଅବଗତ ଥିଲା, ସେ ଏ କଥାକୁ ଆଉ ବଢ଼ିବାକୁ ଦେଉନଥିଲା । ସେ ରଙ୍ଗନାଥ ସହିତ ଔପଚାରିକତା ରକ୍ଷା କରୁଥିଲା, ଯେପରିକି ତା'ର କୌଣସି ଅଭିଯୋଗର ଅବକାଶ ନରହେ । ତେବେ ଏ ପ୍ରକାରର ମାପଚୁପା ସମ୍ବନ୍ଧ ବେଶିଦିନ ଚଳିଲା ନାହିଁ । କମ୍ପାନୀର ଦିନ ଭଲ ଯାଉ ନଥିଲା, ବିକ୍ରି କମି କମି ଯାଉଥିଲା ଏବଂ ମାଲିକମାନେ ବେଶି ଲାଭ କରୁନଥିବାରୁ ଅସନ୍ତୁଷ୍ଟ ଥିଲେ । ଅଫିସରେ ସମସ୍ତେ ଏକ ଚାପପରିପୂର୍ଣ୍ଣ ବାତାବରଣରେ କାମ କରୁଥିଲେ ଏବଂ ଦିନେ କୌଣସି ଉପଲକ୍ଷରେ ଜୟସିଂହ ରଙ୍ଗନାଥ ପ୍ରତି କଟୁବାକ୍ୟ

ପ୍ରୟୋଗ କଲା । ସମ୍ଭବ ହୋଇଥିଲେ ସେ ସେଠାରୁ ଉଠି ଆସିଥା'ନ୍ତା, କିନ୍ତୁ ନିଜର ଏତେ ବର୍ଷର ଚାକିରିର ଶୃଙ୍ଖଳାକୁ ମାନି ରଙ୍ଗନାଥ ସବୁକଥା ଶୁଣିନେଲା ।

ସେଦିନ ଘରକୁ ଫେରି ରଙ୍ଗନାଥ ଆଉ ତା'ର ସ୍ୱପ୍ନର କାରଖାନା ଅଞ୍ଚଳକୁ ପଳାଇ ଗଲା ନାହିଁ । ସେ ଠିକ୍ କଲା ଯେ ତା ସହିତ ଖରାପ ବ୍ୟବହାର କରିଥିବା ଏଇ ଲୋକଟିକୁ ସେ ଯେମିତି ହେଲେ ଦେଖିନେବ । ସେ ମନେକଲା ଯେ ଆଗରୁ ଜୟସିଂହ ବିରୁଦ୍ଧରେ ବିଦେଶୀ ଅଧିକାରୀମାନଙ୍କୁ କହି ତାକୁ ହଇରାଣରେ ପକାଇଥିଲେ ଭଲ ହୋଇଥା'ନ୍ତା । ତେବେ ବର୍ତ୍ତମାନ ବି ସେ ତା ବିରୁଦ୍ଧରେ ଲାଗିଯାଇପାରିବ । ତା'ର ତ ଅନେକ ଦୋଷ-ଦୁର୍ବଳତା ରଙ୍ଗନାଥକୁ ଜଣା । ଖଣ୍ଡେ କାଗଜ ଆଣି ସେ ଜୟସିଂହ ବିରୁଦ୍ଧରେ ଅଭିଯୋଗମାନଙ୍କର ତାଲିକା କରିବାକୁ ଚେଷ୍ଟାକଲା । ତା ମନକୁ ଅନେକ ପ୍ରକାରର ଘଟଣା ଆସିଲେ, ଯଥା, କମ୍ପାନୀକୁ ମିଛ ଖବର ଦେଇଥିବା, ଗସ୍ତକୁ ବିନା କାରଣରେ ବଢ଼ାଇ ଦେଇଥିବା, ଭୁଲ ନିର୍ଣ୍ଣୟ ନେଇ କମ୍ପାନୀକୁ କ୍ଷତିଗ୍ରସ୍ତ କରିଥିବା, ତଳ କର୍ମଚାରୀଙ୍କ ଭିତରେ ଅସଦ୍‌ଭାବ ବଢ଼ାଇଥିବା ଇତ୍ୟାଦି । ଏସବୁ କିନ୍ତୁ ଥିଲା ଅତି ଅନିର୍ଦ୍ଦିଷ୍ଟ ଉଦାହରଣ ମାତ୍ର । ଠିକ୍ କେଉଁଦିନ କେତେ ତାରିଖରେ ଜୟସିଂହ ଏ ସବୁ ବ୍ୟତିକ୍ରମ କରିଥିଲା, ତା'ର ବିସ୍ତୃତ ବିବରଣୀ ନଥିଲା ରଙ୍ଗନାଥ ପାଖରେ । କାହା ବିରୁଦ୍ଧରେ ଅଭିଯୋଗ ଆଣିଲେ ନିର୍ଦ୍ଦିଷ୍ଟ ଘଟଣା ବିଷୟ ଜଣାଇବାକୁ ପଡ଼ିବ । ରଙ୍ଗନାଥ ଠିକ୍ କଲା ଯେ, ଆସନ୍ତା ଦିନଠାରୁ ସେ ଅଫିସ୍‌ର ପୁରୁଣା ଫାଇଲ ସବୁ ଖୋଜି ଜୟସିଂହ ବିରୁଦ୍ଧରେ ପ୍ରମାଣ ନିଦର୍ଶନ ସଂଗ୍ରହ କରିବ ।

ଅଫିସରେ ଯଦିଓ ସେ ବେଶ୍ କିଛି ମନେପଡୁଥିବା ପୁରୁଣା ଫାଇଲମାନଙ୍କୁ ଖୋଜି ବାହାର କଲା, ସେଥିରୁ ଜୟସିଂହ ବିରୁଦ୍ଧରେ କୌଣସି ମାଲମସଲା ମିଳିଲା ନାହିଁ । ତାକୁ ଏ ବିଷୟରେ ମଧ ସତର୍କ ରହିବାକୁ ହେବ, ଯେମିତି ଜୟସିଂହ ଏ ବିଷୟରେ ଜାଣିନପାରେ । ଯାହା ସମୟ ଲାଗିବ ପଛେ, ସେ ନିଶ୍ଚେ ଜୟସିଂହର ଦୋଷ ଦୁର୍ବଳତା ବାହାର କରିବ । ଏଇଭଳି ନିର୍ଣ୍ଣୟ କରି ସେ ନିଜର କାମ କରିବା ସହିତ ଜୟସିଂହର ପୁରୁଣା କାମର ଏକ ଗୋପନୀୟ ଅନୁସଂଧାନ ମଧ ଜାରି ରଖିଲା । ତେବେ ବେଶ୍ କିଛିଦିନର ଚେଷ୍ଟା ସତ୍ତ୍ୱେ ବି ଯେତେବେଳେ ତାକୁ କୌଣସି ସାମଗ୍ରୀ ମିଳିଲା ନାହିଁ, ରଙ୍ଗନାଥ ଜାଣିଲା ଯେ ତାକୁ ଏଥରକ ଜୟସିଂହର ଭବିଷ୍ୟତର ଦୋଷତ୍ରୁଟି ଓ କର୍ତ୍ତବ୍ୟଚ୍ୟୁତି ଉପରେ ନିର୍ଭର କରିବାକୁ ପଡ଼ିବ । ସେଦିନ ଘରକୁ ଫେରି ସେ ନିଜର କାରଖାନା ବସାଇବା ଫାଇଲଟିକୁ ଅଲଗା ରଖିଦେଲା ଏବଂ ଗୋଟିଏ ନୂଆ ଫାଇଲ ଖୋଲିଲା, ଜୟସିଂହ ବିରୁଦ୍ଧରେ ଅଭିଯୋଗ ।

ଏଇ ଫାଇଲ ଖୋଲିବା ଦିନଠାରୁ ଜୟସିଂହ ସହିତ ତା'ର ସଂପର୍କ, ଅନ୍ତତଃ ତା ନିଜ ପାଇଁ, ତିକ୍ତ ହୋଇଗଲା । ଖୁବ୍ ଜରୁରୀ କାମ ନ ପଡ଼ିଲେ ସେ ଜୟସିଂହ

ସହିତ ସାକ୍ଷାତ କରିବା ବନ୍ଦ କରିଦେଲା । ସେମାନଙ୍କର ସଂପର୍କ ବର୍ତ୍ତମାନ ସୀମିତ ରହିଗଲା ଫାଇଲ କାମ ମାଧ୍ୟମରେ । ଜୟସିଂହ ମଧ୍ୟ ଏହି ପରିସ୍ଥିତିକୁ ସୁଧାରିବାକୁ ଚେଷ୍ଟା କଲାନାହିଁ । ବରଂ ସେ ମଧ୍ୟ ଯେମିତି ରଙ୍ଗନାଥକୁ ଦୂରରେ ରଖିଲା । କାମ ଉପଲକ୍ଷ୍ୟରେ ସେ ରଙ୍ଗନାଥ ପ୍ରତି ରୁକ୍ଷ ବ୍ୟବହାର କରିବାକୁ ଆରମ୍ଭ କଲା । କ୍ରମେ କ୍ରମେ ସେମାନଙ୍କର ପୁରୁଣା ଦିନର ପରିଚୟ ଓ ସୌହାର୍ଦ୍ଦ୍ୟ ସଂପୂର୍ଣ୍ଣ ଭାବରେ ଲୁପ୍ତ ହୋଇଗଲା ଏବଂ ସେମାନେ ହୋଇଗଲେ ସାଧାରଣ ଉପରିସ୍ଥ ଓ ଅଧୀନସ୍ଥ ।

କମ୍ପାନୀର ବର୍ତ୍ତମାନ ଖରାପ ଦିନ ପଡ଼ିଥିଲା । ଦେଶରେ ଅନେକ ନୂଆ କାରଖାନା ଖୋଲି ଯାଇଥିଲା ଏବଂ ପ୍ରତିଯୋଗିତା ହୋଇ ଯାଇଥିଲା ତୀବ୍ରତର । କମ୍ପାନୀର ନୂଆ ଅଂଶୀଦାରମାନେ ଆହୁରି ଲାଭ ଚାହୁଁଥିଲେ, ଯାହା ସମ୍ଭବ ନଥିଲା । ସମସ୍ତଙ୍କ ଉପରେ କାମ ଚାପ ବଢ଼ିଚାଲିଥିଲା ଏବଂ ଏଇଟି ବିଶେଷ ଭାବରେ ଉପଲବ୍ଧ ହେଉଥିଲା ରଙ୍ଗନାଥର ବିକ୍ରୟ ବିଭାଗରେ । ରଙ୍ଗନାଥର ଦାୟିତ୍ୱ ଅନେକ ଗୁଣ ବଢ଼ିଯାଇଥିଲା ଏବଂ ଦିନରାତି କାମ କରିବା ପରେ ତାକୁ ଆଉ କିଛି କରିବାର ସମୟ ନଥିଲା । ତଥାପି ସେ ଜୟସିଂହ ସଂପର୍କିତ ଫାଇଲ କଥା ଭୁଲି ନଥିଲା ଏବଂ ମଝିରେ ମଝିରେ ତା ବିଷୟରେ ବିଭିନ୍ନ ତଥ୍ୟ ନୋଟ୍ କରି ରଖୁଥିଲା ।

ଏଇ ପ୍ରକ୍ରିୟାରେ ପୁଣି କିଛିଦିନ ବିତିଗଲା ଏବଂ ମାଲିକମାନଙ୍କ ଦୟାରୁ ଜୟସିଂହ କମ୍ପାନୀର ଚେୟାରମ୍ୟାନ ହୋଇଗଲା । ଏ ଖବରଟିକୁ ମଧ୍ୟ ସହିନେଲା ରଙ୍ଗନାଥ । ଜୟସିଂହ ତା'ଠାରୁ ଉପରକୁ ଚାଲି ଯାଇଥିଲା ବହୁଦିନ ଆଗରୁ ; ଖବରଟି ତେଣୁ ଅପ୍ରତ୍ୟାଶିତ ନଥିଲା । ବରଂ ଏହା ରଙ୍ଗନାଥକୁ ଆହୁରି ଦୃଢ଼ ନିଶ୍ଚିତ କରିଦେଲା ଯେ ସେ ଏଥରକ ଆହୁରି ଲାଗିପଡ଼ି ଜୟସିଂହର କିଛି ନା କିଛି କ୍ଷତି କରିବ । ତେବେ ତା'ର ଫାଇଲଟି ବେଶି ଆଗକୁ ଯାଉ ନଥିଲା, କାରଣ ଜୟସିଂହ ଚାଲାକ-ଚତୁର ତଥା କର୍ମଠ ଓ କାର୍ଯ୍ୟଦକ୍ଷ ଥିଲା । ଏଥିପାଇଁ ରଙ୍ଗନାଥର ଅଶାନ୍ତି ବଢ଼ିଚାଲିଥିଲା ଏବଂ ତା'ର ମାନସିକ ସ୍ଥିତି ଟଣାଓଟରାରେ ରହି ରାତିରେ ଠିକ୍ ନିଦ ହେଉ ନଥିଲା ।

ସ୍ଥିତିଟି ଆହୁରି ସାଂଘାତିକ ରୂପ ନେଲା ଯେଉଦିନ ଜୟସିଂହ ରଙ୍ଗନାଥ ଉପରକୁ ଫାଇଲ ଫିଙ୍ଗିଲା । ଚେୟାରମ୍ୟାନ ହେବା ପରଠାରୁ ଜୟସିଂହ ପୂରା ବଦଳି ଯାଇଥିଲା । ସେ ଆଉ କାହା ସହିତ ମିଳାମିଶା କରୁ ନଥିଲା, ଗମ୍ଭୀର ରହୁଥିଲା ଏବଂ କାମ ପାଇଁ ସମସ୍ତଙ୍କୁ ଡରାଇ ରଖୁଥିଲା । ପୂର୍ବ ଚେୟାରମ୍ୟାନଙ୍କଠାରୁ ବେଶି ଟାଣୁଆ ବୋଲି ତା'ର ଅତିଶୀଘ୍ର ନାଁ ହୋଇଯାଇଥିଲା ଓ ଅଫିସ୍‌ର ସମସ୍ତେ ତାକୁ ଡରୁଥିଲେ । ମାଲିକମାନେ ତାକୁ ପୂରା ସମର୍ଥନ କରୁଥିଲେ କାରଣ ସେ କମ୍ପାନୀକୁ ଖରାପ ଅବସ୍ଥାରୁ ଉଦ୍ଧାର କରି ବର୍ତ୍ତମାନ ସଜାଡ଼ି ପାରିଥିଲା । ରଙ୍ଗନାଥ ଜାଣିଲା ଯେ, ଜୟସିଂହ ବିରୁଦ୍ଧରେ କାଗଜ ତିଆରି କରି ମାଲିକମାନଙ୍କୁ ଦେବା ସଂପୂର୍ଣ୍ଣ ଅର୍ଥହୀନ । ତା'ର ଆଉ ମଧ୍ୟ

ମନେପଡ଼ିଲା ଯେ ଅବସର ଗ୍ରହଣ କରିବାକୁ ହେଲେ ତା ପାଇଁ ମାତ୍ର ଏତିକି ସମୟ ।

ରାତିରେ ଜୟସିଂହ ଫାଇଲ ଆଗରେ ବସି ଅନେକ ସମୟ ଭାବିବା ପରେ ହଠାତ ଗୋଟାଏ ନୂଆ ରାସ୍ତା ଦେଖାଗଲା ରଙ୍ଗନାଥକୁ । ଚାକିରି ଆରମ୍ଭ କରିବା ଦିନୁ ନିଜ କମ୍ପାନୀରେ ମଝିରେ ମଝିରେ ଶେୟାର କିଣୁଥିଲା ସେ । ଅବସର ନେବା ପରେ ସେ ଶେୟାର-ହୋଲଡ଼ରମାନଙ୍କର ଏକ ସଂଗଠନ କରିବ ଏବଂ କମ୍ପାନୀର ବାର୍ଷିକ ସାଧାରଣ ସଭାରେ ଜୟସିଂହର ଦୁଷ୍କୃତି ସବୁ ପଦାରେ ପକାଇ ତାକୁ କେବଳ ଅପଦସ୍ଥ କରିବ ନାହିଁ, ବାହାର କରିଦେବାର ଚେଷ୍ଟା କରିବ । ଫାଇଲ ଉପରେ ସେ ଜୟସିଂହ ନାଁ ତଳେ ବଡ଼ ବଡ଼ ଅକ୍ଷରରେ ଶେୟାର-ହୋଲ୍‌ଡ଼ର୍ସ ଆସୋସିଏସନ ବୋଲି ଲେଖିଲା ଏବଂ ଜାଣିଲା ଯେ ଜୟସିଂହ ସହିତ ତା'ର ଯୁଦ୍ଧ ତା'ର ଚାକିରି ସରିବା ପରେ ମଧ୍ଯ ଅବ୍ୟାହତ ରହିବ । ଏହି ଚିନ୍ତାଟି ତା ପାଇଁ ଅନେକ ସୁଖପ୍ରଦ ଥିଲା ।

ରଙ୍ଗନାଥ ଏଥରକ ଅଫିସରୁ ସଂଗ୍ରହ କଲା କମ୍ପାନୀର ସବୁ ପୁରୁଣା ଅଡ଼ିଟ ରିପୋର୍ଟ ଆଦି । ତାକୁ ସମୀକ୍ଷା କରି ସେ ସେଥିରେ ତ୍ରୁଟିବିଚ୍ୟୁତି ଖୋଜିବାରେ ଲାଗିଲା । କେଉଁ କେଉଁ ବିଷୟରେ ଦାୟିତ୍ୱ ସିଧାସଳଖ ଚେୟାରମ୍ୟାନ ଉପରେ ନ୍ୟସ୍ତ କରିହେବ, ତାକୁ ସବୁ ଟିପି ରଖିଲା । ଏଇ କାମ ପାଇଁ ସେ କମ୍ପାନୀ ଆଇନ ଇତ୍ୟାଦି ମଧ୍ଯ ଅଧ୍ୟୟନ କଲା । ଫାଇଲଟିରେ ପ୍ରତିଦିନ ନୂଆ ନୂଆ କାଗଜ ଯୋଡ଼ିବାବେଳେ ସେ ଉତ୍‌ଫୁଲ୍ଲିତ ହେଉଥିଲା ଯେ ସେ ଜଣେ ସାଧାରଣ ଅଂଶୀଦାର ଭାବରେ ଏଡେ ବଡ଼ କମ୍ପାନୀ ଓ ତା'ର ଚେୟାରମ୍ୟାନକୁ ହଇରାଣ କରିପାରିବ । ଅନେକ ବ୍ୟତିକ୍ରମ ପାଇଁ ଆଇନରେ ଭାରି ଜୋରିମାନା ଏବଂ ଜେଲ ଇତ୍ୟାଦି ଦଣ୍ଡ ଥିଲା । ରଙ୍ଗନାଥ କଳ୍ପନା କରୁଥିଲା ଯେ କମ୍ପାନୀ ବିରୁଦ୍ଧରେ ସେ ଯେଉଁ ପ୍ରମାଣ ସବୁ ତିଆରି କରିବ, ସେଥିରେ କମ୍ପାନୀ ନିଶ୍ଚୟ ଅସୁବିଧାରେ ପଡ଼ିବ ଏବଂ ଜୟସିଂହ ଅନ୍ତତଃ ଛ' ମାସ ପାଇଁ ଜେଲ ଯିବ । ଅଫିସ୍‌ର ନିରାନନ୍ଦ ମୁହୂର୍ତ୍ତମାନଙ୍କରେ ଏହି ଚିନ୍ତାଟି ଥିଲା ରଙ୍ଗନାଥ ପାଇଁ ଏକମାତ୍ର ଉପଶମ ।

ତାକୁ ସବୁଠାରୁ ବଡ଼ ଆୟୁଧ ମିଳିଲା ଯେତେବେଳେ ଜୟସିଂହ ନିଜର ପୁଅକୁ ତାଙ୍କ କମ୍ପାନୀ ଚାକିରିରେ ଲଗାଇଦେଲା । ରଙ୍ଗନାଥ ମତରେ ଏଇଟି ଥିଲା ସବୁ ଆଇନକାନୁନର ସଂପୂର୍ଣ୍ଣ ବ୍ୟତିକ୍ରମ । ଏଇ ନିଯୁକ୍ତିର ଅନୌଚିତ୍ୟ ବିଷୟରେ ରଙ୍ଗନାଥ ବିଭିନ୍ନ ନିୟମାବଳୀ ପଢ଼ି ଏକ ବିସ୍ତୃତ ବିବରଣୀ ତିଆରି କରି ତାକୁ ଫାଇଲରେ ରଖିଲା । ଏଥର ଆଉ ଜୟସିଂହର ଖସିଯିବାର ଉପାୟ ନାହିଁ । ମରଣ କାଳେ ବିପରୀତ ବୁଦ୍ଧି । ଅଂଶୀଦାରମାନଙ୍କ ସଭାରେ ରଙ୍ଗନାଥ ଯେତେବେଳେ ଏ କଥାଟି ଉତ୍‌ଥାପନ କରିବ, ଜୟସିଂହର ମୁହଁ ତଳକୁ ହୋଇଯିବ । ଅଫିସରେ ଔଦ୍ଧତ୍ୟ ଦେଖାଉଥିବା ଚେୟାରମ୍ୟାନ ସଭାରେ ସମସ୍ତଙ୍କର ଦୟାଭିକ୍ଷା କରିବ । ଏଇ ଗୋଟିଏ ଅବିବେକୀ

କାମ ପାଇଁ ସେ ମାଲିକମାନଙ୍କର ବିଶ୍ୱାସ ହରାଇବ ଏବଂ ହୁଏତ ନିଜର ଚାକିରି ହରାଇବ । ସେଇ ହେବ ତା ପ୍ରତି ଦୁର୍ବ୍ୟବହାର ଦେଖାଇଥିବାରୁ ଜୟସିଂହର ଶାସ୍ତି ।

ରାତିରେ ଘରେ ବସି ତିଆରି କରିଥିବା ଯୁକ୍ତି ଓ ଆତ୍ମବିଶ୍ୱାସ ଅଫିସରେ ପହଞ୍ଚିବା ପରେ ଆଉ ସେତେବେଳେ ଦୃଢ଼ ଓ ପ୍ରଭାବଶାଳୀ ଜଣାପଡୁନଥିଲେ । ଅଫିସରେ ବର୍ତ୍ତମାନ ଜୟସିଂହର ଏକଚ୍ଛତ୍ର ଶାସନ ଥିଲା । ତାକୁ ସମସ୍ତେ, ଏପରିକି ଏ କଥା ନିଜେ ସ୍ୱୀକାର କରିବାକୁ ଅନିଚ୍ଛୁକ ଥିଲେ ବି ରଙ୍ଗନାଥ ମଧ, ଭୟ କରୁଥିଲେ । ସେ ସଭା ଡାକିଲେ ସମସ୍ତେ ନିଜ ନିଜ କାଗଜକୁ ଏକାଧିକଥର ପଢ଼ି ପ୍ରସ୍ତୁତ ହୋଇ ଯାଉଥିଲେ । ସେ କେତେବେଳେ କାହା ସହିତ ଦୁର୍ବ୍ୟବହାର କରିବ ସେଥିପ୍ରତି ମଧ ସମସ୍ତଙ୍କର ଭୟ ଥିଲା ।

ସେ ଯାହାହେଉ ନିଜର ଭାଗ୍ୟ ଅବା ଦୁର୍ଭାଗ୍ୟକୁ ମାନିନେଇଥିଲା ରଙ୍ଗନାଥ । ବର୍ତ୍ତମାନ ତା'ର ଏକମାତ୍ର ଲକ୍ଷ୍ୟ ଥିଲା କିପରି ଚାକିରିରୁ ଅବସର ନେବା ସଙ୍ଗେ ସଙ୍ଗେ ଅଂଶୀଦାରମାନଙ୍କର ସଂସ୍ଥା ଗଢ଼ି ଜୟସିଂହ ସହିତ ହିସାବନିକାଶ କରିବ । ନିଜକୁ ଜୟସିଂହଠାରୁ ଯେତେଦୂର ସମ୍ଭବ ଦୂରରେ ରଖିଲା ରଙ୍ଗନାଥ । ଆଉ ଅଳ୍ପ କେତେମାସ ତ ! ତା'ପରେ ଦେଖାଯିବ କାହାର ଭାଗ୍ୟ କ'ଣ !

ଦେଖୁ ଦେଖୁ ଏଇ କେତୋଟି ମାସ ବି କଟିଗଲା ଅଫିସ କାମର ଚାପ ଭିତର ଦେଇ । ଶେଷକୁ ଦିନେ ରଙ୍ଗନାଥର ଅବସର ନେବାର ତାରିଖ ଆସି ପହଞ୍ଚିଲା । ଦିନଟି ଥିଲା ରଙ୍ଗନାଥ ପାଇଁ ଯୁଗପତ ଦୁଃଖ ଏବଂ ଏକ ସମ୍ଭାବ୍ୟ ଆନନ୍ଦର ଦିନ । ଅଫିସ ହିଁ ଥିଲା ତା'ର ସମସ୍ତ ଜୀବନ ଏବଂ ଅଫିସ ଛାଡ଼ି ଯାଉଥିବା କଥା ଭାବିବାବେଳେ ତାକୁ ସଂପୂର୍ଣ୍ଣ ଶୂନ୍ୟବୋଧ ହେଉଥିଲା । ତା ସହିତ ସେ ଭାବୁଥିଲା ଶେୟାର-ହୋଲଡ଼ର୍ସ ଆସୋସିଏସନ୍‌ର କର୍ମବହୁଳ ଦାୟିତ୍ୱ ତଥା ଜୟସିଂହର ଦର୍ପ ଚୂର୍ଣ୍ଣ କରିବା କଥା । ସେଦିନ ସଂଧ୍ୟାବେଳେ ଯେତେବେଳେ ତା ପାଇଁ ବିଦାୟୀ ସଭା ହେଲା ଏବଂ ତା'ର ସହକର୍ମୀମାନେ ଏବଂ ନିଜେ ଜୟସିଂହ ତାକୁ ପ୍ରଶଂସା କରି ଭାଷଣ ଦେଲେ, ତା ମନ ଭିତରେ ଏଇ ଦୁଇଟି ବିପରୀତ ଭାବନା ଖେଳି ବୁଲୁଥିଲା । ସଭା ଶେଷରେ ଯେତେବେଳେ ତା'ର ସହକର୍ମୀମାନଙ୍କ ପକ୍ଷରୁ ଜୟସିଂହ ତା ହାତକୁ ସ୍ମାରକୀ ସ୍ୱରୂପ ଗୋଟିଏ ଦାମିକା କଲମର ସେଟ୍ ବଢ଼ାଇ ଦେଲା, ଭାବପ୍ରବଣ ହୋଇ ରଙ୍ଗନାଥ ତାକୁ ଗ୍ରହଣ କଲା, କିନ୍ତୁ ମନକୁ ମନ ନାଟକୀୟ ଭଙ୍ଗୀରେ କହିଲା, ଏଇ କଲମ ହିଁ ତୋର କାଳ ହେବ ଜୟସିଂହ !

ସଭା ଶେଷରେ ଜୟସିଂହ ରଙ୍ଗନାଥକୁ ତା ସହିତ ତା'ର ଅଫିସ କୋଠରିକୁ ଡାକିନେଇ ବସାଇଲା । ସେମାନେ କିଛି କଥାବାର୍ତ୍ତା କରିବା ପୂର୍ବରୁ କିଏ ଜଣେ କ'ଣ ଜରୁରୀ କାଗଜ ନେଇ ଆସିଲା ଏବଂ ରଙ୍ଗନାଥ ପାଖରୁ କ୍ଷମା ମାଗି ଜୟସିଂହ ତାକୁ

ଦେଖିବାରେ ଲାଗିଲା । ସାମନାସାମନି ବସି ପରିସ୍ଥିତିକୁ ସମୀକ୍ଷା କଲା ରଙ୍ଗନାଥ । ସେ ଆଉ ଜୟସିଂହର ଅଧୀନସ୍ଥ ନଥିଲା । ସେ ଥିଲା କମ୍ପାନୀର ଅଂଶୀଦାର ସଂଘର ଭାବୀ ସଭାପତି, ଯାହା ସହିତ ଜୟସିଂହ ଏଥରକ ସମ୍ମାନର ସହିତ କଥାବାର୍ତ୍ତା କରିବ ଏବଂ ସେ ସେତେବେଳେ ଜୟସିଂହ ବିରୁଦ୍ଧରେ ଅଭିଯୋଗକୁ ଗୋଟିଏ ଗୋଟିଏ କରି ପ୍ରକାଶ କରିବ, ଜୟସିଂହ ଶେଷରେ ଆସି ତା'ର ପାଦ ତଳେ ପଡ଼ିବ । ତା'ର ପ୍ରତିଦ୍ୱନ୍ଦ୍ୱୀକୁ ଏଥରକ ଭଲଭାବେ ଅନାଇଲା ରଙ୍ଗନାଥ । ତାଠାରୁ ଅନେକ ବୁଢ଼ା ଦେଖାଯାଉଥିଲା ଜୟସିଂହ । ବର୍ତ୍ତମାନ କାଗଜପତ୍ର ଧରି ବ୍ୟସ୍ତ ରହିଥିବାବେଳେ ତା'ର କପାଳ ଓ ମୁହଁର ରେଖାସବୁ ଆହୁରି କୁଞ୍ଚିତ ହୋଇଯାଉଥିଲା ଏବଂ ସେ ଅତ୍ୟନ୍ତ ଅସହାୟ ଓ ମ୍ରିୟମାଣ ଜଣାପଡୁଥିଲା । ସେମାନେ ପାଠ ପଢ଼ିଲାବେଳେ ଜୟସିଂହ ସୁସ୍ଥସବଳ, ଫୂର୍ତ୍ତି ଓ ହସଖୁସି ପ୍ରକୃତିର ଥିଲା । ବର୍ତ୍ତମାନ ଜୟସିଂହ ଦେଖାଯାଉଥିଲା ରୋଗା, ଚିଡ଼ିଚିଡ଼ା ଏବଂ ଅସୁଖୀ । ଏଇ ଲୋକଟିକୁ ତ ଅତି ସହଜରେ ପରାସ୍ତ କରିହେବ ।

କାଗଜ ନେଇ ଆସିଥିବା ଲୋକଟି ଚାଲିଯିବାରୁ ଜୟସିଂହ ଆରମ୍ଭ କଲା, ତୋ ସାଙ୍ଗରେ ଅନେକ କଥା ଥିଲା... । ଏଇ ସମୟରେ ଟେଲିଫୋନ ଆସିଲା । କଥାବାର୍ତ୍ତା କରିସାରି ଟେଲିଫୋନ ରଖିଚି କି ନାହିଁ, ଆଉ ଜଣେ ଲୋକ କ'ଣ ଜରୁରୀ କାଗଜ ଆଣି ଛିଡ଼ା ହେଲା, କହିଲା, ଆଜି ଚିଠି ଦସ୍ତଖତ କଲେ ଲୋକ ଅପେକ୍ଷା କରିଛି, ନେଇଯିବ । ଚିଠିଟି ପଢ଼ି ଦସ୍ତଖତ କଲାବେଳକୁ ପୁଣି ଟେଲିଫୋନ ଆସିଲା । ଏଥର ଅନେକ ସମୟ ଧରି ଟେଲିଫୋନରେ ବ୍ୟସ୍ତ ରହିଲା ଜୟସିଂହ । କଥାବାର୍ତ୍ତା ସରିବାରୁ ରଙ୍ଗନାଥକୁ କହିଲା, ରାତି ଆଠଟା ବାଜିଲାଣି, ତେବେବି କାମର ଶେଷ ନାହିଁ । ଏଠି ତ କାମ ଭିତରେ ମଣିଷକୁ ଟିକିଏ କଥା କହିବାକୁ ବି ଫୁରୁସତ ନାହିଁ । ତୁ ଯଦି ରାତିରେ ଘରେ ଥିବୁ, ମୁଁ ଅଫିସ ଫେରିବା ବାଟରେ ତୋର ଘର ଦେଇ ଯିବି ।

ଘରକୁ ଫେରିବାବେଳେ ରଙ୍ଗନାଥ ଭାବିଲା ସେ ଜୟସିଂହ ସହିତ କିପରି ବ୍ୟବହାର କରିବ । ତାକୁ ଦେଇଥିବା ଅପମାନର ପ୍ରତିଶୋଧ ନେବାର ଏଇଟି ସୁବର୍ଣ୍ଣ ସୁଯୋଗ । ତାକୁ ସେ ଘର ବାହାରୁ କଥାବାର୍ତ୍ତା କରି ବିଦାୟ କରିଦେଇପାରିବ । ସିଧାସିଧା କହିଦେଇ ପାରିବ, ମୋର ଆଉ ତୋ ସାଙ୍ଗରେ କୌଣସି ସଂପର୍କ ରଖିବାକୁ ଇଚ୍ଛା ନାହିଁ । କହିଦେଇ ପାରିବ, ଏଥରକ ଆମର ଦେଖାହେବ ଶେୟାର-ହୋଲଡ଼ର୍ସ ମିଟିଂରେ । ଘରେ ପହଞ୍ଚି ସେ ଫାଇଲଟିକୁ ବାହାର କଲା । ଏଥର ସେ କମ୍ପାନୀରୁ ସଂପୂର୍ଣ୍ଣ ମୁକ୍ତ । ଜଣେ ସ୍ୱାଧୀନ ଅଂଶୀଦାର ଭାବରେ ସେ କମ୍ପାନୀ ଓ ତା'ର ଚେୟାରମ୍ୟାନଙ୍କ ଦୋଷ ଦୁର୍ବଳତାକୁ ପଦାରେ ପକାଇ ଦେବ । ଏଥିପାଇଁ ଅନେକ ମାଲମସଲା ଅଛି ତା'ର ଫାଇଲରେ । କାଗଜ ସବୁ ଓଲଟାଇଲା ରଙ୍ଗନାଥ । ଏଥରକ କିନ୍ତୁ ସେ ଅନୁଭବ କଲା ଆଗଭଳି ଆଉ ତା ମନରେ କ୍ରୋଧ ଓ ଉତ୍ସାହ ଆସୁନାହିଁ କାଗଜସବୁ

ପଢ଼ିବାବେଳେ । ପୁରୁଣା ଓ ଫିକା ହୋଇଯାଇଛି ତା'ର ଅଭିଯୋଗ ଓ ଆରୋପର ଫର୍ଦ୍ଦସବୁ ।

ବାହାରେ କ'ଣ ଶବ୍ଦ ଶୁଣି ରଙ୍ଗନାଥ କବାଟ ଖୋଲି ବାହାରକୁ ଆସିଲା । ଜୟସିଂହ ବାହାରେ ଠିଆହୋଇ ଏଇଟି ରଙ୍ଗନାଥର ଘର କି ନା ଦେଖିବାକୁ ଚେଷ୍ଟା କରୁଥିଲା । ରଙ୍ଗନାଥକୁ ଦେଖି କହିଲା, ରାତିରେ ମତେ ଆଉ ଠିକ୍ ଦେଖା ଯାଉନାହିଁ । ରଙ୍ଗନାଥ କହିଲା, କେବେ କେମିତି ସିନା ଏଠିକି ଆସିଥିଲେ ମନେରହିଥା'ନ୍ତା ମୋ ଘର କେଉଁଟା ! ହଠାତ କାଶିବାକୁ ଆରମ୍ଭ କଲା ଜୟସିଂହ । ତାକୁ ବସିବା ଘରେ ବସାଇ ରଙ୍ଗନାଥ ତାକୁ ପାଣି ପିଇବାକୁ ଦେଲା । ଖୁବ୍ ଅସୁସ୍ଥ ଜଣାପଡୁଥିଲା ସେ । ପାଣି ପିଇସାରି ଜୟସିଂହ ଶାନ୍ତିର ନିଃଶ୍ୱାସ ନେଇ କହିଲା, ତୁ କହୁଚୁ ମୁଁ ତୋ ଘରକୁ ଆସିନାହିଁ ବୋଲି । କେତେବର୍ଷ ହୋଇଗଲାଣି ମୁଁ ସଂଧ୍ୟାବେଳେ ଘରୁ କୁଆଡ଼େ ବାହାରି ନାହିଁ । ଅଫିସରୁ ଫେରିବାବେଳକୁ କୋଉଦିନ ନ'ଟା ତ କୋଉଦିନ ଦଶଟା । ସାଙ୍ଗସାଥୀ, ବନ୍ଧୁବାନ୍ଧବ ସମସ୍ତଙ୍କ ସାଙ୍ଗରେ ସଂପର୍କ କଟିଗଲାଣି ମୋର । ଘର ଅଫିସ, ଅଫିସ ଘର, ଏତିକି ଚଳେଇବାକୁ ବି ମୁଁ ନାକେଦମ ।

ଇଚ୍ଛା ଥିଲା କେମିତି ଉପରୁ ଉପରକୁ ଯାଇ ଚେୟାରମ୍ୟାନ ହେବି । ସେଥିପାଇଁ କେତେ ପରିଶ୍ରମ ତୁ ତ ଜାଣୁ । ଶେଷରେ ଚେୟାରମ୍ୟାନ ହେଲି ; କିନ୍ତୁ କାମ ବଢ଼ିଗଲା ଦଶ ଘଣ୍ଟାରୁ ଚଉଦ ଘଣ୍ଟା । ସାଙ୍ଗସାଥୀ ତ ଗଲେ, ଶେଷକୁ ଘରକଥା ବି ବୁଝିପାରିଲି ନାହିଁ । ପୁଅ ପାଠ ନପଢ଼ି ବାଲୁଙ୍ଗା ହୋଇଗଲା । ମୁଁ କମ୍ପାନୀ ଚେୟାରମ୍ୟାନ ବୋଲି ତାକୁ ଭଲ ଜାଗାରେ ଲଗାଇଦେଲି ; ନହେଲେ ତାକୁ କୋଉଠି ଚାକିରି ମିଳିଥା'ନ୍ତା ?

ମୋ ଦେହ ବି କ'ଣ ହେଲାଣି, ଦେଖ । ବାର ପ୍ରକାରର ରୋଗ । ସକାଳୁ ରାତିଯାଏଁ ଔଷଧ ଖାଉଥାଅ, ତେବେ ବି ଶାନ୍ତି ନାହିଁ । ଦି'ବର୍ଷ ତଳେ ଅଲ୍‌ସର ଅପରେସନ କରେଇଲି ! ଏଣେ ହାର୍ଟର ଅବସ୍ଥା ବି ଭଲ ନାହିଁ । ଯାହା ଔଷଧ ଖାଇ ବଞ୍ଚି ରହିବା କଥା ।

ଏଥିକୁ ପୁଣି କମ୍ପାନୀର ଯେତେ ଚିନ୍ତା । ବିଦେଶୀ ମାଲିକ ଥିଲେ ଅଲଗା କଥା । ସମସ୍ୟା ସବୁ ବୁଝିଥିଲେ । ଏବର ମାଲିକଙ୍କର ଖାଲି ଲାଭ ଦରକାର । ସେ ଯୋଉ ଉପାୟରେ ବି ହଉ । ୟାଙ୍କୁ ଆଇନକାନୁନ କଥା ବୁଝାଇ କିଛି ଲାଭ ନାହିଁ । କହିବେ, ଆଇନ ଭାଙ୍ଗ । କଥା କଥାକେ ଧମକ ଦେବେ, କମ୍ପାନୀ ବନ୍ଦ କରିଦବୁ ।

ସେଥରକ ମୁଁ ଯୋଉ ଅପରେସନ କରିବାକୁ ଗଲି, କାହାକୁ କହିନଥିଲି । ମାଲିକ ଜାଣିଲେ କହିବେ, ଏ ଲୋକଟା ବେମାର ହେଲାଣି, ବାହାର କରି ଆଉ କାହାକୁ ରଖ । ମଣିଷକୁ ହଜାର କଥା ଜଗିରଖି ଚଳିବାକୁ ହଉଚି ଏଠାରେ । ଭାବିଥିଲି ଚାକିରି ଶେଷ ବେଳକୁ ଟିକିଏ ଶାନ୍ତି ମିଳିବ । କିନ୍ତୁ ଜୀବନଟା ଖାଲି ଅଶାନ୍ତିରୁ ଅଶାନ୍ତି ।

ଏତିକି କହି ଜୟସିଂହ ଟିକିଏ ଚୁପ୍ ରହିଲା । ଏଇ ଦୁର୍ବଳ ଅସହାୟ ଅସୁଖୀ ଲୋକଟି ଆଡ଼କୁ ଅନାଇ ରଙ୍ଗନାଥର ଦୟା ହିଁ ହେଲା । ସେ କିଛି ନ କହିବାରୁ ଜୟସିଂହ କହିଲା, ଛାଡ଼, ଏସବୁ ମୋ ଦୁଃଖକଥା ତତେ କହି ତୋ ମନ କାହିଁକି ଖରାପ କରିବି ? ତୁ ଭଲ କଲୁ, ବାହାସାହା ନ ହୋଇ ରହିଗଲୁ । ସଂସାର ପରିବାରର ବି ବଡ଼ ଝଂଝାଳ । ବୟସ ବଢ଼ିବା ସଙ୍ଗେ ଦାମ୍ପତ୍ୟ ସମସ୍ୟା ବି ବଢ଼ିଚାଲିଥିବ ; କମିବାର ନାଁ ନାହିଁ । ଥରେ ଥରେ ମନେହେବ ମଲେ ହିଁ ମୁକ୍ତି ।

ହଁ, ମୁଁ ଯୋଉଥିପାଇଁ ତୋ ପାଖକୁ ଆସିଲି କହିଦିଏ ଏଥରକ । ତୁ ତ ଜାଣିଚୁ ତୋ ଛଡ଼ା ମୋର ନିଜର ଲୋକ କେହି ନଥିଲେ କମ୍ପାନୀରେ । ଏବେ ମାଲିକମାନଙ୍କ ସାଙ୍ଗରେ ବି ଏତେ ଭଲ ପଡୁନାହିଁ ମୋର । ଭୟ ହଉଚି କେବେ କୋଉ ଆଳରେ ମତେ ବାହାର କରିଦେବେ । ମୁଁ ସେଇଥିପାଇଁ ଭାବୁଥିଲି, ତୁ ରିଟାୟାର ସିନା ହୋଇଗଲୁ, ଯଦି କମ୍ପାନୀ ପାଇଁ କିଛି ସାହାଯ୍ୟ କରନ୍ତୁ, ସେଥିରେ ମୋର ହିଁ ଉପକାର ହୁଅନ୍ତା । ବିକ୍ରି ବିଭାଗରେ ତୋଠାରୁ ତ ବେଶି ଜାଣିବା ଲୋକ କେହି ନାହାଁନ୍ତି । ତୋ ଜାଗାକୁ ଯିଏ ପ୍ରମୋଶନରେ ଆସୁଚି ସେ ଲୋକଟି ନିହାତି ଅକାମୀ । ତୁ ଯଦି ରାଜି ହେଉ, କମ୍ପାନୀରେ ଗୋଟାଏ ସେଲ୍ସ ଆଡ଼ଭାଇଜର ପୋଷ୍ଟ ତିଆର କରି ତତେ ପାଞ୍ଚବର୍ଷର କଣ୍ଟ୍ରାକ୍ଟ ଦେଇ ଦିଅନ୍ତି, ଆଉ ମୁଁ ନିଜେ ନିଶ୍ଚିତ ହୋଇଯା'ନ୍ତି ।

ଜୟସିଂହ ତା ଆଡ଼କୁ ଅନାଇଲା, କିନ୍ତୁ ରଙ୍ଗନାଥ କିଛି କହିଲା ନାହିଁ । ରଙ୍ଗନାଥକୁ ଚୁପ୍ ରହିବାର ଦେଖି ଜୟସିଂହ ତାକୁ ଅନୁଗ୍ରହ ମାଗିବା ଭଳି ଅନାଇ କହିଲା, ମୁଁ ଜାଣେ ତୋର କିଛି ଅଭାବ ନାହିଁ ଏବଂ ତୋର ଆଉ କାମ ଦରକାର ନାହିଁ । ତେବେ ତୁ ଯଦି ଏ କଥାରେ ରାଜି ହୋଇଯା'ନ୍ତୁ, ମୋର ଅନେକ ଉପକାର ହୁଅନ୍ତା ।

# ସବୁ ଅଛି କିଛି ନାହିଁ

ପ୍ରତିଥର ତାରାପଦ ଭାବେ ଯେ ସେ ଆଉ ଏଭଳି ସଭାସମିତିକୁ ଆସିବ ନାହିଁ, କିନ୍ତୁ ତା ପାଖକୁ ନିମନ୍ତ୍ରଣ ଗଲେ ସେ ପୁଣି ହଁ ଭରିଦିଏ । ବର୍ତ୍ତମାନ ଖାଲିମଞ୍ଚ ଉପରେ ବସି, ସାମନାର ଧାଡ଼ି ଧାଡ଼ି ଖାଲି ଚଉକି ଆଡ଼କୁ ଅନାଇ ମନେ ମନେ ବିରକ୍ତ ହେଲା ତାରାପଦ । ଏଇ ସମୟରେ ବିଜୁଳିବାଲା ତା ମୁଣ୍ଡ ଉପରେ ଜଳୁଥିବା ଗୋଟିଏ ବଲ୍‌ବକୁ ଛାଡ଼ି ବାକିସବୁ ଆଲୁଅକୁ ଲିଭାଇଦେଲା । କାଳେ ଏଇ ଅନ୍ଧାର ଭିତରେ ପାଖରେ ଠିଆ ହୋଇଥିବା ପଣବନ୍ଧୀ ପିଲାଟି ତାକୁ ଏକା ଛାଡ଼ିଦେଇ କୁଆଡ଼େ ପଳାଇଯିବ, ସେଥିପାଇଁ ତାରାପଦ ତାକୁ ବସିବାକୁ କହିଲା ଏବଂ ନିଜେ ନିଜର ଅସ୍ୱସ୍ତିକର କାଠ ଚଉକିଟି ଉପରୁ ଉଠିଯାଇ ସଭାପତିଙ୍କ ପାଇଁ ପଡ଼ିଥିବା ସିଂହାସନ ଭଳି ଚଉକିଟି ଉପରେ ଯାଇ ବସିଲା । ସଭା ଭାଙ୍ଗିବାର ଅଧଘଣ୍ଟାଏ ପରେ ବି ଗାଡ଼ି ଆସିନଥିଲା ତା ପାଇଁ ।

ପ୍ରତିଥର ଏଇପରି ହୋଇଥାଏ । ମଫସଲ କଲେଜର ବାର୍ଷିକ ଉତ୍ସବ ପାଇଁ ତାକୁ ଯେଉଁ ପିଲାମାନେ ଡାକିବାକୁ ଆସନ୍ତି, ସେମାନେ ଏତେ ତୋଷାମଦପୂର୍ଣ୍ଣ ମିଠା ମିଠାକଥା କହନ୍ତି ଯେ ତାରାପଦ ମାନିଯାଏ । ସଭାକୁ କେତେ ଲୋକ ଏବଂ ଆଉ କେଉଁ କେଉଁ ବିଶିଷ୍ଟ ବ୍ୟକ୍ତି ଆସିବେ, ତା'ର ଯିବା ଆସିବାର କି ପ୍ରକାର ବ୍ୟବସ୍ଥା କରାଯିବ ଇତ୍ୟାଦି ବିଷୟରେ ସେମାନଙ୍କ କଥାରେ ଯେ ଅତିରଞ୍ଜନ ଥାଏ, ତା ତାରାପଦକୁ ଭଲଭାବେ ଜଣା । ତେବେ ପିଲାମାନେ ଯେତେବେଳେ କହନ୍ତି ଯେ ସେ ଅଞ୍ଚଳର ଲୋକମାନେ ତା ଭଳି ଜଣେ ବରେଣ୍ୟ ସାହିତ୍ୟିକଙ୍କ ଭାଷଣ ଶୁଣିବା ପାଇଁ ବ୍ୟଗ୍ରତାର ସହିତ ଅପେକ୍ଷା କରୁଛନ୍ତି, ତାରାପଦ ସାଙ୍ଗେ ସାଙ୍ଗେ ରାଜି ହୋଇଯାଏ । ଥରେ ହଁ କରିବା ପରେ ନିମନ୍ତ୍ରଣ ପତ୍ରରେ ନାଁ ଛପା ହୋଇଗଲେ ତା'ପରେ ବିଚରା ଅତିଥିର କୌଣସି ନିୟନ୍ତ୍ରଣ ରହେ ନାହିଁ ପରିସ୍ଥିତି ଉପରେ । ସବୁବେଳେ ପରିଣତି ପ୍ରାୟ ଏକାଭଳି ହୁଏ ;  ଏଥରକ ତା'ର କୌଣସି ବ୍ୟତିକ୍ରମ ନଥିଲା ।

ଯୋଉ ସମୟରେ ତା ପାଖକୁ ଗାଡ଼ି ଆସିବ ବୋଲି କୁହାହୋଇଥିଲା, ଭଙ୍ଗା ଟ୍ୟାକ୍‌ସିଟି ତା ଘରେ ପହଞ୍ଚିଲା ତାହାର ଘଣ୍ଟାଏ ପରେ । ପୋଷାକପତ୍ର ପିନ୍ଧି ତାରାପଦ

ଅନେକବେଳୁ ଗାଡ଼ି ଅପେକ୍ଷାରେ ବସି ବିରକ୍ତ ହେଉଥିଲା । ଡେରିରେ ଆସିଥିବାରୁ କ୍ଷମା ମାଗିବା ବଦଳରେ ଟ୍ୟାକ୍‌ସି ଡ୍ରାଇଭର ତାକୁ ଓଲଟା କହିଲା, ସାର୍ ଆଉ ଡେରି କରନ୍ତୁନି, ରାସ୍ତା ବହୁତ ଖରାପ । ତାରାପଦ ଭାବିଥିଲା ତାକୁ ସାଙ୍ଗରେ ନେବା ପାଇଁ କିଏ କଲେଜ ପିଲା ଆସିବେ, କିନ୍ତୁ ଡ୍ରାଇଭର ତାକୁ ଯୋଉ ଚିଠିଟି ଦେଲା ସେଥିରେ ଲେଖାଥିଲା ସମସ୍ତେ ସଭାର ଆୟୋଜନରେ ବ୍ୟସ୍ତ ଥିବାରୁ ତାଙ୍କୁ ନେବା ପାଇଁ କେହି ଆସିପାରୁ ନାହାଁନ୍ତି, ତେବେ ସେ ଯେପରି ଠିକ୍ ସମୟରେ ଆସି ପହଞ୍ଚନ୍ତି । ଏଇ ତିନିଧାଡ଼ିର ଚିଠିରେ ତାରାପଦ ତିନୋଟି ବନାନ ଅଶୁଦ୍ଧି ଲକ୍ଷ୍ୟ କଲା ଏବଂ କାଗଜଟିକୁ ଗୁଳାକରି ଫିଙ୍ଗିଦେଇ ଗାଡ଼ିରେ ବସିଲା ।

ରାସ୍ତା ପ୍ରକୃତରେ ଖରାପ ଥିଲା ଏବଂ କିଛିବାଟ ଯିବା ପରେ ନିୟମ ମୁତାବକ ଗାଡ଼ିଟି ଖରାପ ହୋଇଗଲା । ନିଜର ଅଭିଜ୍ଞତାରୁ ତାରାପଦ ଗାଡ଼ି ଖରାପ ହେବାର ଆଉ ଗୋଟିଏ ଅନିର୍ବାର୍ଯ୍ୟ ବିଧି ବିଷୟରେ ମଧ୍ୟ ସଚେତନ ଥିଲା । ଗାଡ଼ି ବନ୍ଦ ହେବାର ନିଷ୍ପତ୍ତି ନିଏ ସବୁଠାରୁ ଟାଣ ଖରାବେଳେ ଏବଂ ରାସ୍ତାର ଯେଉଁ ଜାଗାରେ ଆଖପାଖରେ ଗଛବୃକ୍ଷ ନଥାଏ ଠିକ୍ ସେଇ ଜାଗାରେ । ଏଭଳି ଜାଗାରେ ତାରାପଦ ପ୍ରଥମେ ପ୍ରଥମେ ବିରକ୍ତ ହେଉଥିଲା, କିନ୍ତୁ ଆଜିକାଲି ସେ ଏହାକୁ ଗ୍ରହଣ କରିନେଉଥିଲା ଦାର୍ଶନିକତାର ସହିତ । ଖବରକାଗଜରେ ବିଞ୍ଚିହୋଇ, ମୁଣ୍ଡରେ ରୁମାଲ ବାନ୍ଧି ସେ ତଳକୁ ଓହ୍ଲାଇ ଆସିଲା ଏବଂ ଅତ୍ୟନ୍ତ ଅନାସକ୍ତିର ସହ ଅପେକ୍ଷା କଲା ପରବର୍ତ୍ତୀ କାର୍ଯ୍ୟକ୍ରମମାନଙ୍କର । ଗାଡ଼ି ଓ ତା'ର ମାଲିକଙ୍କୁ ବିଭିନ୍ନ ଶ୍ଳୀଳ ଅଶ୍ଳୀଳ ଆଖ୍ୟାମାନ ଦେଇସାରି ଡ୍ରାଇଭର ଗାଡ଼ିର ସମସ୍ୟା ପ୍ରତି ଧ୍ୟାନ ଦେଲା ଓ ରାସ୍ତାରେ ଙ୍କାଁ ଭାଁ ଯାଉଥିବା ଅନ୍ୟ ଗାଡ଼ିର ଡ୍ରାଇଭର ମଧ୍ୟ ତା'ର ଉଦ୍ୟମରେ ଯୋଗ ଦେଲେ । ବେଶ୍ କିଛି ସମୟ ପରେ ଦୁଷ୍ଟ ପ୍ରକୃତିର ଗାଡ଼ିଟି ଏମାନଙ୍କ ସହିତ ବିଭିନ୍ନ ପ୍ରକାରର ଖେଳ ଖେଳି ଶେଷରେ ଥକିଯାଇ ପୁଣି ଚାଲିବା ପାଇଁ ରାଜି ହୋଇଗଲା ।

ସଭାସ୍ଥଳରେ ଡେରିରେ ପହଞ୍ଚିବ, ସେଥିପାଇଁ ଚିନ୍ତିତ ନଥିଲା ତାରାପଦ, କାରଣ ଏଭଳି ସବୁ ସଭା ଆରମ୍ଭ ହେବାର କୌଣସି ସଠିକ ସମୟ ନଥାଏ । ସେଦିନ ସେ କଲେଜ ପାଖରେ ପହଞ୍ଚିବା ବେଳକୁ ଅଳ୍ପ କେତେଜଣ ଲୋକ ମାତ୍ର ସଭାସ୍ଥଳରେ ଥିଲେ । ଆହୁରି କିଛି ଲୋକ କୁଆଡ଼େ ମନ୍ତ୍ରୀଙ୍କୁ ଆଣିବା ପାଇଁ ଯାଇ ରାସ୍ତା ପାଖରେ ଠିଆ ହୋଇଥିଲେ । ତାକୁ ନିମନ୍ତ୍ରଣ କରିବାକୁ ଯାଇଥିବା ପିଲାଟିକୁ ଦେଖିବା ମାତ୍ରେ ସେ ତାକୁ ଅଲଗା ଡାକିନେଇ ଦୁଇଟି ଜରୁରୀ ଜିନିଷ ବିଷୟରେ ଖବର ନେଲା, ସଭା ପାଖରେ ମୂତ୍ରାଳୟ ବା ଅନ୍ଧାରୁଆ ଜାଗା କେଉଁଠି ଅଛି, ଏବଂ ବକ୍ତୃତା ଦେବା ଆଗରୁ ପିଇବା ପାଣି କିପରି ମିଳିବ । ଏକଥା ନିଶ୍ଚୟ କରିସାରିବା ପରେ ସେ ଚେତାବନୀ ଦେଇଦେଲା ଯେ ତା'ର ଫେରିବା ସମୟରେ ଯେପରି

ଗୋଟିଏ ଭଲ ଗାଡ଼ିର ବନ୍ଦୋବସ୍ତ କରାଯାଏ ।

କାହିଁକି ସେ ଏଭଳି ସଭାମାନଙ୍କୁ ଆସେ, ନିଜକୁ ପ୍ରଶ୍ନ କଲା ତାରାପଦ । ନିଜର ସ୍ୱର ଶୁଣିବାର ଇଚ୍ଛା ? ନିଜର ପ୍ରତିଷ୍ଠା ଓ ଲୋକପ୍ରିୟତା ବ୍ୟାହତ ହୋଇ ନଥିବାର ଆଶ୍ୱାସନା ? କଥାର ଛାଲରେ ଗୋଟିଏ ଶ୍ରୋତାମଣ୍ଡଳୀକୁ ବାନ୍ଧି ରଖିଥିବାର ସନ୍ତୋଷ ? ବହୁ ପ୍ରସ୍ତୁତି ଓ ପୂର୍ବାଭ୍ୟାସପ୍ରସୂତ କୌଣସି ମହତ୍ତ୍ୱପୂର୍ଣ୍ଣ ବକ୍ତବ୍ୟ ପାଇଁ ମିଳୁଥିବା ହାତତାଳିର ଶ୍ରୁତିମଧୁର ଧ୍ୱନି ? କିମ୍ବା ଏସବୁ ଏବଂ ଆହୁରି କିଛି ?

କୌଣସି ସନ୍ଦେହ ନଥିଲା ସାହିତ୍ୟ ଜଗତରେ ତା'ର ପ୍ରସିଦ୍ଧି ଏବଂ ପ୍ରତିପତ୍ତି ବିଷୟରେ । କେହି କେହି ତାକୁ ବ୍ୟଙ୍ଗ କରି ସାହିତ୍ୟ ମଠର ମଠାଧୀଶ ବୋଲି ମଧ କହୁଥିଲେ ଏବଂ ଏଭଳି ଉପନାମ ସବୁ ସେ ଆନନ୍ଦର ସହିତ ଗ୍ରହଣ କରି ନେଇଥିଲା । ସେ ବିଭିନ୍ନ ପ୍ରକାରର ପୁରସ୍କାର ପାଇ ସାରିଥିଲା, ତା'ର ସମାଲୋଚନା ପ୍ରବନ୍ଧ ତଥା ସୃଜନଶୀଳ ସାହିତ୍ୟର ବହି ସବୁ ଆଦୃତ ହୋଇଥିଲା, ସେ ବିଭିନ୍ନ ସାହିତ୍ୟ ସଂସ୍ଥାର କର୍ତ୍ତା ଥିଲା । ଦେଶ ବିଦେଶରୁ ତା ପାଖକୁ ନିମନ୍ତ୍ରଣ ଆସୁଥିଲା ଏବଂ ବିଭିନ୍ନ ଅନୁଷ୍ଠାନ ତାକୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଆଗଭର ଥିଲେ । ଏସବୁ ସତ୍ତ୍ୱେ ସେ କାହିଁକି ଆସୁଥିଲା ଏଭଳି ଅନାମଧେୟ ଗୋଷ୍ଠୀମାନଙ୍କୁ ?

ସେଦିନ ସଭାଟିରେ ତା'ର ବକ୍ତୃତା ବିଷୟରେ ସେ ସନ୍ତୁଷ୍ଟ ଥିଲା । ସଭା ଆରମ୍ଭରେ ତା'ର ଯେଉଁ ପରିଚୟ ଦିଆଯାଇଥିଲା ଅତ୍ୟନ୍ତ ପ୍ରୀତିକର ଥିଲା । ଅନେକ ଦିନ ଆଗେ ତା'ର ପରିଚୟ ଦେବାବେଳେ ସେ ଲେଖିଥିବା ବହିମାନଙ୍କର ଭୁଲ ନାଁ, ତା'ର ଶିକ୍ଷାଗତ ଯୋଗ୍ୟତା ଓ ଅନ୍ୟାନ୍ୟ କୃତିତ୍ୱର ଭୁଲ ବିବରଣୀ ଇତ୍ୟାଦି ଶୁଣିବା ପରେ ସେ ସତର୍କ ହୋଇଯାଇଥିଲା । ତାକୁ କେହି କୌଣସି ସଭାକୁ ଡାକିଲେ ସେ ଆଜିକାଲି ସେମାନଙ୍କୁ ନିଜ ବିଷୟରେ ଏକ ଛପା କାଗଜ ଦେଇ ଦେଉଥିଲା, ଯେଉଁଥିରେ ତା'ର କୃତି ଓ କୃତିତ୍ୱର ସଠିକ ଓ ସୁଦୀର୍ଘ ତାଲିକା ଥିଲା । ଆଜିକାଲି ସଭାରେ ଉଦ୍ୟୋକ୍ତାମାନେ ଏହି କାଗଜର ବିବରଣୀମାନ ଅତିରଞ୍ଜନ କରି କହି ତାରାପଦକୁ ସନ୍ତୁଷ୍ଟ ଓ ପୁଲକିତ କରୁଥିଲେ ।

ଆଜିର ସଭାର ଏକ ବିଶେଷ ଘଟଣା ଥିଲା ଶିକ୍ଷାମନ୍ତ୍ରୀଙ୍କର ଯୋଗଦାନ । ନିଜେ ଜଣେ ଅଧ୍ୟାପକ ଥିବାରୁ କେବେ ହୁଏତ ତାରାପଦ ଶିକ୍ଷାମନ୍ତ୍ରୀଙ୍କୁ ସାମାନ୍ୟ ସମ୍ଭ୍ରମର ସହିତ ଦେଖୁଥିଲା, କିନ୍ତୁ ବର୍ତ୍ତମାନ ନିଜର ପ୍ରତିଷ୍ଠା ଓ ସାହିତ୍ୟିକ ପ୍ରତିପତ୍ତି ଯୋଗୁଁ ସେ ନିଜକୁ ସେମାନଙ୍କର ଉର୍ଦ୍ଧ୍ୱରେ ନହେଲେ ମଧ ସମକକ୍ଷ ବୋଲି ଭାବୁଥିଲା । ତା ବ୍ୟତୀତ ବର୍ତ୍ତମାନ ଯେ ମନ୍ତ୍ରୀ ଥିଲେ, ଏକଦା ସେ ତାରାପଦର ସହପାଠିନୀ ଥିଲେ । ତେଣୁ ସଭାରେ ହଠାତ ତାଙ୍କ ସହିତ ଦେଖା ହୋଇଯିବା ପରେ ତାରାପଦ ନିଜକୁ ତାଙ୍କ ପାଖରୁ ଅଲଗା ରଖିଲା । କଲେଜବେଳେ ସୁଖଦା ଗମ୍ଭୀର ପ୍ରକୃତିର ଝିଅ ଥିଲା,

କାହାରି ସହିତ ମିଶୁ ନଥିଲା, ଏବଂ କଲେଜର ଚାରିବର୍ଷ ଭିତରେ ତାରାପଦର ତା ସହିତ ଦୁଇ ଚାରିଥର କଥାବାର୍ତ୍ତା ହୋଇଥିଲା କି ନାହିଁ ସନ୍ଦେହ । କଲେଜ ପରେ ମଧ୍ୟ ସୁଖଦା ସହିତ କେବେ ସାକ୍ଷାତ ହେବାର ଅବକାଶ ହୋଇନଥିଲା, ଯଦିଓ ତାରାପଦ ସୁଖଦାର ରାଜନୈତିକ ଜୀବନରେ ଅଗ୍ରଗତିର ଖବର ରଖିଥିଲା । ତେଣୁ ଏଇ ସଭାରେ ତାରାପଦ ସୁଖଦାକୁ ହଠାତ ଦେଖି ତା ସହିତ ନିଜର ପୂର୍ବ ପରିଚୟର କୌଣସି ସୂଚନା ଦେଇ ନଥିଲା ।

ବର୍ତ୍ତମାନ ତାରାପଦ ନିଜର ଏହି ବ୍ୟବହାର ପାଇଁ ଅନୁତପ୍ତ ଥିଲା, କାରଣ ସଭାର ସର୍ବସାଧାରଣଙ୍କୁ ତାରାପଦ ସହିତ ନିଜର ପୂର୍ବ ପରିଚୟର ସୂଚନା ଦେଲା ସୁଖଦା ନିଜେ । ସେଦିନ ସଭାରେ ଆଲୋଚନାର ବିଷୟ ସାହିତ୍ୟରେ ସାମାଜିକ ନ୍ୟାୟ ଉପରେ ଭାଷଣ ଆରମ୍ଭ କରି ସୁଖଦା କହିଲା, ଯଦି ସମାଜରେ ନ୍ୟାୟ ହେଉଥା'ନ୍ତା, ତେବେ ଶିକ୍ଷା ବିଭାଗର ମନ୍ତ୍ରୀ ହୋଇଥା'ନ୍ତେ- ସେ ନୁହେଁ, ପ୍ରବୀଣ ଶିକ୍ଷାବିତ ଓ ପ୍ରତିଷ୍ଠିତ ସାହିତ୍ୟିକ ଏବଂ ଆଉ ଗୋଟିଏ ପରିଚୟ ଯାହା କହିବାକୁ ସେ ଗର୍ବିତ, ତା'ର ସହପାଠୀ ତାରାପଦ !

ନିଜକୁ ଅନେକ ଛୋଟ ମନେ ହୋଇଥିଲା ତାରାପଦର ଏକଥା ଶୁଣିବା ପରେ । ସେ ଚାହୁଁଥିଲା ନିଜର ଭୁଲ୍‌ର କ୍ଷତିପୂରଣସ୍ୱରୂପ ସଭାପରେ ସୁଖଦାକୁ ଦେଖାକରି ଅନ୍ତତଃ ସୌଜନ୍ୟସୂଚକ କିଛି କଥାବାର୍ତ୍ତା କରିବ । କିନ୍ତୁ ସଭା ସରିବା ସାଙ୍ଗେ ସାଙ୍ଗେ ମନ୍ତ୍ରୀଙ୍କ ଚାରିପାଖେ ଅନେକ ଲୋକ ଘେରିଗଲେ ଏବଂ ସୁଖଦା ଲୋକଙ୍କ ଗହଳିରେ ଗାଡ଼ି ପାଖକୁ ଯିବା ପର୍ଯ୍ୟନ୍ତ ତାରାପଦ ଆଉ ତା ସହିତ ଯୋଗାଯୋଗ କରିବାର ସୁଯୋଗ ପାଇଲା ନାହିଁ । ତା'ପରେ ପରେ ପିଲାଟି ଆସି ଖବର ଦେଲା ଯେ ସେ ଯେଉଁ ଗାଡ଼ିରେ ଆସିଥିଲା, ସେଇଟି ମରାମତି ହେଉଛି ।

ତାରାପଦ ହାତଘଡ଼ିକୁ ଦେଖିଲା ଏବଂ ନିଜର କ୍ରୋଧ ଓ ବିରକ୍ତିକୁ ଯଥାସମ୍ଭବ ସମ୍ବରଣ କରି ପାଖରେ ବସିଥିବା ପିଲାଟିକୁ କହିଲା, ଆଉ କେତେ ସମୟ ଲାଗିବ ? ପିଲାଟି କହିଲା, ଆପଣ ବସିଥା'ନ୍ତୁ, ମୁଁ ଯାଇ ଦେଖି ଆସୁଛି । ତାରାପଦ ଜାଣିଲା ଯେ ପିଲାଟି ଚାଲିଗଲେ ସେ ଏକା ପଡ଼ିଯିବ ଏବଂ ତାକୁ ଅନିର୍ଦ୍ଦିଷ୍ଟ ସମୟ ପାଇଁ ଅପେକ୍ଷା କରିବାକୁ ପଡ଼ିବ । ସେ ଏଥିପାଇଁ ନିଜେ ପିଲାଟି ସହିତ ବାହାରିଲା ଗାଡ଼ି କାମ ଦେଖିବା ପାଇଁ ।

ଗାଡ଼ିଟି ମରାମତି ହେଉଥିଲା କଲେଜରୁ କିଛି ଦୂରରେ ଥିବା ଡାକବଙ୍ଗଳା ପାଖରେ । ବଙ୍ଗଳାରେ ମନ୍ତ୍ରୀ ରହୁଥିବାରୁ ଭିଡ଼ ଜମିଥିଲା ଏବଂ ଫାଟକ ବାହାରେ ଯେଉଁ କେତୋଟି ଗାଡ଼ି ଥିଲା ତା'ର ଡ୍ରାଇଭରମାନେ ମିଶି ଗାଡ଼ିଟିକୁ ଠିକ୍ କରିବାର ଚେଷ୍ଟା କରୁଥିଲେ । ତାରାପଦକୁ ଦେଖି ଛାତ୍ରନେତା ଜଣକ କହିଲା, ଗାଡ଼ି ଏଇ ଠିକ୍ ହୋଇଗଲା

ବୋଲି ଜାଣନ୍ତୁ ସାର୍ । ତାରାପଦ ନିଜ ହାତଘଡ଼ିକୁ ଅନାଇ ତାକୁ କିଛି କହିବା ପୂର୍ବରୁ ଛାତ୍ରନେତା ତାକୁ ଓଲଟା କହିଲା, ଆପଣ ଯିବାକୁ ଯେତେ ବ୍ୟସ୍ତ ହେଲେ ବି ଗାଡ଼ି ଠିକ୍ ନହେଲେ ଆମେ ଆପଣଙ୍କୁ ରାତିରେ ଯିବାକୁ ଦେବୁ ନାହିଁ । ଚାଲନ୍ତୁ, ଡାକବଙ୍ଗଳାରେ ଟିକିଏ ବିଶ୍ରାମ ନେଇନେବେ । ତାରାପଦ ଚାହୁଁନଥିଲା ଭିତରକୁ ଯାଇ ମନ୍ତ୍ରୀଙ୍କ କୃପାପ୍ରାର୍ଥୀଙ୍କ ଭିଡ଼ ଭିତରେ ସାମିଲ ହେବ । ତଥାପି ସେ ଭିତରକୁ ଗଲା, କିନ୍ତୁ ବସିଲା ଯାଇ ମନ୍ତ୍ରୀ ବାରଣ୍ଡାର ଯେଉଁ ପାଖରେ ବସିଥିଲେ ତା'ର ଅନ୍ୟ ଦିଗରେ । ଏଇ ସମୟରେ ସୁଖଦା ବୋଧହୁଏ ଦୂରରୁ ତାକୁ ଦେଖିଲା, କାରଣ ମନ୍ତ୍ରୀଙ୍କ ବ୍ୟକ୍ତିଗତ ସେକ୍ରେଟେରୀ ଯୁବକ ଅଫିସରଟି ଆସି ତାରାପଦକୁ ଡାକିଲା ସେପାଖକୁ ଯିବା ପାଇଁ । ତାରାପଦ ଯାଇ ସୁଖଦା ସାମନାରେ ପଡ଼ିଥିବା ଚଉକିରେ ବସିଲା, କିନ୍ତୁ ଘେରି ରହିଥିବା ଲୋକମାନଙ୍କର ଏତେ ଆପତ୍ତି ଅଭିଯୋଗ ସୁପାରିସ ଅନୁରୋଧ ଲାଗି ରହିଥିଲା ଯେ, ସୁଖଦା ତା ସହିତ କଥାବାର୍ତ୍ତା କରିପାରୁ ନଥିଲା । ଶେଷରେ ସୁଖଦା ଉଠି ଠିଆହେଲା, ସମସ୍ତଙ୍କୁ କହିଲା, ଆପଣମାନେ କାଲି ସକାଳେ ଆସିବେ । ମୋର ବର୍ତ୍ତମାନ ଜରୁରୀ କାମ ଅଛି । ଯୁବକ ଅଫିସରଟି ଅନେକ କଷ୍ଟରେ ଲୋକମାନଙ୍କୁ ସେଠାରୁ ହଟାଇଲା, କିନ୍ତୁ ସେମାନେ ବାରଣ୍ଡାରୁ ତଳକୁ ଓହ୍ଲାଇ ସେଠାରୁ ଆଉ ଦୂରକୁ ନଯାଇ ଭିଡ଼ କରି ରହିଲେ ।

ସୁଖଦା କହିଲା, ମୁଁ ସଭା ପରେ ଆପଣଙ୍କ ସହିତ କଥାବାର୍ତ୍ତା କରିବାକୁ ଚାହୁଁଥିଲି, କିନ୍ତୁ ଏମିତି ଭିଡ଼ ଭିତରେ ସମ୍ଭବ ହେଲା ନାହିଁ । ଯାହାହେଉ ଆପଣ ଏବେ ଆସିଲେ, ଭଲ ହେଲା । ପାଞ୍ଚମିନିଟ ଅନ୍ତତଃ ଏକାନ୍ତରେ କଥା କହିହେବ । ଏକାନ୍ତ କିନ୍ତୁ ସମ୍ଭବ ନଥିଲା, କାରଣ ସେକ୍ରେଟେରୀ ଏଇ ସମୟରେ ଅନେକ କାଗଜପତ୍ର ଫାଇଲ ଧରି ଆସି ପହଞ୍ଚିଲା । ସୁଖଦା ଯେତେବେଳେ ତାକୁ କହିଲା ଯେ ସେ ପରେ ସେସବୁକୁ ଦେଖିବ, ସେକ୍ରେଟେରୀ କହିଲା, ମାଡ଼ାମ, ଅନ୍ତତଃ ଏଇ ଗୋଟିଏ ଫାଇଲ ଦେଖିନିଅନ୍ତୁ, କାରଣ ତାକୁ ଫେରାଇ ନେବା ପାଇଁ ଲୋକ ଠିଆ ହୋଇଛି । ଅଗତ୍ୟା ସୁଖଦାକୁ ସେଇ ଫାଇଲଟି ଦେଖିବାକୁ ହେଲା ।

ଚୁପ୍‌ଚାପ ବସି ସୁଖଦା ଆଡ଼କୁ ଅନାଇ ତାରାପଦ ଭାବିଲା, ଅଦ୍ଭୁତ ଜୀବନ ଏମାନଙ୍କର । କୌଣସି ସୁଯୋଗ ନାହିଁ, ମୁହୂର୍ତ୍ତେ ନିଜ ପାଇଁ ଏକୁଟିଆ ହେବାର । ଏତେ ମାନସମ୍ମାନ କ୍ଷମତା ବଦଳରେ ଶେଷରେ ସ୍ୱୀକାର କରିନେବାକୁ ହୁଏ କାଚଘର ଭିତରେ ରହିଥିବାର ଅସ୍ୱସ୍ତିକୁ । ଫାଇଲ ଉପରୁ ମୁହଁ ଉଠାଇ ସୁଖଦା କହିଲା, ମୁଁ ଦି'ମିନିଟରେ ଏଇ କାଗଜଟା ଦେଖିନଉଛି, ତା'ପରେ କଥାବାର୍ତ୍ତା ହେବା । ସେକ୍ରେଟେରୀକୁ ଚା' ଆଣିବା ପାଇଁ ପଠାଇ ତାରାପଦର ଚିନ୍ତାକୁ ପ୍ରତିଧ୍ୱନିତ କରି ସୁଖଦା କହିଲା, ମଣିଷର ଉପାୟ ନାହିଁ ମୁହୂର୍ତ୍ତେ କେମିତି ଏକୁଟିଆ ରହିବ ।

ଚା' ଆସି ପହଞ୍ଚିଲା । ଫାଇଲରେ ଦସ୍ତଖତ କରି ସୁଖଦା ସେକ୍ରେଟେରୀକୁ କହିଲା, ତମେ ପଠାଇଦେଇ ଯାଅ, ମୁଁ ଆଜି ଆଉ କିଛି କାଗଜପତ୍ର ଦେଖିବି ନାହିଁ । ଅତି କୁଣ୍ଠିତ ହୋଇ ସେକ୍ରେଟେରୀ ତା'ର କାଗଜପତ୍ର ନେଇ ସେଠାରୁ ଗଲା । ବର୍ତ୍ତମାନ ସୁଖଦା ଓ ତାରାପଦ ସାମନାସାମନି ବସିଥିଲେ ହାତରେ ଚା'କପ୍ ଧରି । ତିରିଶ ବର୍ଷର ଦୂରତ୍ୱକୁ ସଂକୁଚିତ କରି ସୁଖଦା କହିଲା, ଆପଣଙ୍କ ସାଙ୍ଗରେ ଅନେକ ଦିନ ପରେ ଦେଖାହେଲା, ନା ?

ଏତେ ସମୟ ପରେ ତାରାପଦ ସୁଖଦାର ମୁହଁକୁ ନିଜସ୍ୱ ଦୃଷ୍ଟିରେ ଅନାଇଲା । ସଭା ମଞ୍ଚରେ ଏବଂ ଲୋକ ଗହଳିରେ ତା ପାଇଁ ସୁଖଦା ଥିଲା ଆସନ ଓ ପ୍ରତିପତ୍ତିର ଏକ ନିଃବୈକ୍ତିକ ପ୍ରତିନିଧି । ବର୍ତ୍ତମାନ ସହରଠାରୁ ଦୂରରେ, ବାହାରେ ଜମିଯାଇଥିବା ଅନ୍ଧାରର ଆଶ୍ରୟରେ ଡାକବଙ୍ଗଳା ବାରଣ୍ଡାରେ ବସିଥିବା ସୁଖଦା ଥିଲା ତିରିଶ ବର୍ଷ ପଛରେ ଛାଡ଼ିଦେଇ ଆସିଥିବା ଝିଅଟି । ଧଳା ହୋଇ ଆସୁଥିବା ବାଳ, ରେଖା ପଡ଼ି ଆସୁଥିବା ମୁହଁ ଭିତରୁ ତାରାପଦ ଆବିଷ୍କାର କଲା କଲେଜ ଜୀବନର ଶାନ୍ତ ସଲଜ୍ଜ ସତେଜ ସହପାଠିନୀକୁ । ଏତେ ବୟସ ସତ୍ତ୍ୱେ ସୁନ୍ଦର ଦିଶୁଥିଲା ସୁଖଦା । ସମୟ ଯେମିତି ତା ମୁହଁରେ ଆଣିଦେଇଥିଲା ଆତ୍ମପ୍ରତ୍ୟୟର ଏକ ସ୍ୱଚ୍ଛନ୍ଦ ଓ ସାବଲୀଳ ସୌନ୍ଦର୍ଯ୍ୟ । ତାରାପଦ ହଠାତ ସଚେତନ ହେଲା ଯେ ସୁଖଦା ତା ଆଡ଼କୁ ଅନାଇ ନିଜ ପ୍ରଶ୍ନର ଉତ୍ତର ଚାହୁଁଥିଲା । ଅପ୍ରତିଭ ହୋଇ ସେ କହିଲା, ଏ ସାକ୍ଷାତ ପୁଣି ଏଭଳି ଜାଗାରେ ହେବାର ଥିଲା ।

ଦୁହେଁ ମୁହୂର୍ତ୍ତେ ଚୁପ୍ ରହିଲେ । ତାରାପଦର ମୁଣ୍ଡ ଭିତରେ ଅନେକ ରୋମାଞ୍ଚକର କଳ୍ପନା ଖେଳିଗଲା । ପରିସ୍ଥିତିକୁ ପୂରାପୂରି ହାତକୁ ନେବା ଉଦ୍ଦେଶ୍ୟରେ ସେ ଆଉ ଇତସ୍ତତଃ ନ ହୋଇ କହିଲା, ସୁଖଦା ତମର ମନେ ଅଛି - । ସେ କିନ୍ତୁ ଆଉ କିଛି କହିବାର ସୁଯୋଗ ପାଇଲା ନାହିଁ କାରଣ ଏଇ ସମୟରେ ଛାତ୍ରନେତାଟି ହାତରେ ଚା'କପ୍ ଧରି ସେଠାରେ ଉଭା ହେଲା ଏବଂ ଖୁସିରେ ଖୁସିରେ କହିଲା, ସାର୍ ଗାଡ଼ି ପୂରା ଠିକ୍ ହୋଇଗଲା । ଏଥରକ ଛାତ୍ରନେତା ଗୋଟିଏ ଚଉକି ଟାଣିଆଣି ସୁଖଦା ପାଖରେ ବସିଲା ଏବଂ ତା ସହିତ ଆଞ୍ଚଳିକ ରାଜନୀତି ବିଷୟରେ ଆଲୋଚନା ଆରମ୍ଭ କରିଦେଲା । ପରବର୍ତ୍ତୀ ଚା' ଢୋକଟି ତାରାପଦକୁ ବିସ୍ୱାଦ ଲାଗିଲା ଏବଂ ସେ କପ୍‌ଟିକୁ ତଳେ ରଖିଦେଲା ।

ଏଥରକ ଉଠିବାକୁ ହେବ । ପୁଣି ସବୁକିଛି ମପାଚୁପା ଯଥାନିୟମ ଔପଚାରିକ । ତାରାପଦ କହିଲା, ମତେ ଅନେକ ବାଟ ଯିବାକୁ ହେବ । ପୁଣି ଦେଖାହେବ । ସୁଖଦା କହିଲା, ଆପଣମାନେ ବ୍ୟସ୍ତ ଲୋକ, ଆପଣଙ୍କୁ ପାଇବା କଷ୍ଟ । ଛାତ୍ରନେତା କହିଲା, ଆଜ୍ଞା ମତେ ଯେତେବେଳେ କହିବେ ମୁଁ ସାର୍‌ଙ୍କୁ ଆଣି ଆପଣଙ୍କ

ପାଖରେ ପହଞ୍ଚାଇ ଦେବି । ନମସ୍କାର ପର୍ବ ପରେ ତାରାପଦ ସୁଖଦାକୁ ଓ ନିଜର କଳ୍ପନା ସବୁକୁ ଡାକବଙ୍ଗଳା ବାରଣ୍ଡାରେ ଛାଡ଼ିଦେଇ ତଳକୁ ଓହ୍ଲାଇଲା ।

ଏଇ ସମୟରେ କେଜାଣି କେଉଁଠାରୁ ଆସି ଆରମ୍ଭ ହେଲା ଅପ୍ରତ୍ୟାଶିତ ଝଡ଼ । ହଠାତ ଆଖପାଖ ଶୁଖିଲାପତ୍ର ଧୂଳିରେ ଭରିଗଲା ଏବଂ ପବନରେ ଗଛସବୁ ଦୋହଲିବାରେ ଲାଗିଲା । ବଙ୍ଗଳା ଚାରିପାଖେ ଛିଡ଼ା ହୋଇଥିବା ଲୋକମାନେ ସେଠାରୁ ଦଉଡ଼ି ଚାଲିଗଲେ । ସେକ୍ରେଟେରୀ ତା'ର ଉଡ଼ିଯାଉଥିବା କାଗଜପତ୍ରକୁ ସମ୍ଭାଳିବାରେ ମନଦେଲା । କାଳେ ତାକୁ ଆହୁରି କିଛି ସମୟ ତାରାପଦର ଦାୟିତ୍ୱ ସମ୍ଭାଳିବାକୁ ପଡ଼ିବ, ସେଥିପାଇଁ ଛାତ୍ରନେତା କହିଲା, ସାର୍, ଶୀଘ୍ର ଗାଡ଼ି ଭିତରେ ପଶିଯାନ୍ତୁ । ଏକଥା କିନ୍ତୁ ସମ୍ଭବ ହେଲା ନାହିଁ, କାରଣ ସେଇ ମୁହୂର୍ତ୍ତରେ ଝଡ଼ ସହିତ ମୁଷଳଧାର ବର୍ଷା ଆରମ୍ଭ ହୋଇଗଲା । ବାଧ ହୋଇ ତାରାପଦକୁ ପୁଣି ଡାକବଙ୍ଗଳା ବାରଣ୍ଡାକୁ ଉଠି ଆସିବାକୁ ହେଲା । ଛାତ୍ରନେତା ଓ ସେ ପୁଣି ଯାଇ ସୁଖଦା ପାଖରେ ପଡ଼ିଥିବା ଚଉକିରେ ବସିଲେ । ସୁଖଦା କହିଲା, ସମୟରେ ଘରେ ପହଞ୍ଚିବା ଆଜି ଆପଣଙ୍କ ଭାଗ୍ୟରେ ନାହିଁ ।

ତା'ପରେ ଅନେକ ସମୟ ଚୁପ୍‌ଚାପରେ କଟିଗଲା । ସମସ୍ତେ ବର୍ତ୍ତମାନ ବର୍ଷା ଆଡ଼କୁ ଅନାଇ ନିଜ ନିଜ ଚିନ୍ତାରେ ବ୍ୟସ୍ତ ଥିଲେ । ତାରାପଦର ମନେହେଲା ଯେପରି ଏଇ ଅସମୟ ଝଡ଼ବର୍ଷା ତା ପାଇଁ ବିଧିନିର୍ଦ୍ଦିଷ୍ଟ ଥିଲା, ତାକୁ ସୁଖଦା ସହିତ ଆଉ କିଛିକ୍ଷଣ କଥାବାର୍ତ୍ତା କରିବାର ସୁଯୋଗ ଦେବା ପାଇଁ । କିନ୍ତୁ ସମୟଟି ବର୍ତ୍ତମାନ ସଂପୂର୍ଣ୍ଣଭାବେ ପ୍ରକୃତି ପାଖରେ ସମର୍ପିତ, ଏତେବେଳେ କୌଣସି ଶବ୍ଦୋଚାରଣ ଯେପରି ଭାଙ୍ଗି ଦେଇଥା'ନ୍ତା ଏକ ପ୍ରକୃତିସିଦ୍ଧ ନୈସର୍ଗିକ ଛନ୍ଦକୁ । ତାରାପଦର ମନ ଭିତରେ ଏକ ଅପୂର୍ବ ପ୍ରଶାନ୍ତିର ସଂବେଦନା ସଂଚରିଗଲା । ସୁଖଦା ଆଡ଼କୁ ଅନାଇ ତା'ର ମନେହେଲା ଏଇ ସ୍ତ୍ରୀଲୋକଟିକୁ ସେ ଯେପରି ଅତି ଅନ୍ତରଙ୍ଗ ଭାବରେ ଜାଣେ । ତାରାପଦ ନିଜ ମନ ଭିତରେ ତା ସହିତ ଏକ ସମୟାତିକ୍ରାନ୍ତ ସଂପର୍କର କଳ୍ପନା କଲା, ଯାହା କେବେବି ଘଟି ନଥିଲା । କେବଳ ସମୟ ହିଁ ଆଣିଦେଇପାରେ ମଣିଷର ମନରେ ଏଭଳି ଅଘଟିତ ଆତ୍ମୀୟତାର ଅତିନ୍ଦ୍ରୀୟ ସୁଖଦ ସ୍ମରଣ । ତାରାପଦ ନିଜକୁ ସମର୍ପଣ କରିଦେଲା ଏହି କଳ୍ପନା ପ୍ରବଣ ସ୍ମୃତିଚାରଣରେ ।

ପରିବେଶକୁ ଆସି ନିର୍ମମ ଭାବରେ ଭାଙ୍ଗିଦେଲା ଫାଇଲସର୍ବସ୍ୱ ସେକ୍ରେଟେରୀ । ହାତରେ ପୁଣି ଥାକେ କାଗଜ ଧରି ମନ୍ତ୍ରୀଙ୍କ ଚଉକି ଧାରରେ ଠିଆହୋଇ ସେ କହିଲା, ମାଡ଼ାମ, ଆହୁରି ଅନେକ ଜରୁରୀ କାଗଜ ଥିଲା । ସୁଖଦା ତା ଆଡ଼କୁ ପରିହାସର ସହିତ ଅନାଇ କହିଲା, ଭେଙ୍କଟ, ଦି'ମିନିଟ ବସିଯାଇ ବର୍ଷା ଆଡ଼କୁ ଅନାଅ । ଭେଙ୍କଟ ବସିଲା, ନିଜ କାଗଜପତ୍ରରେ ମନୋନିବେଶ କଲା ଏବଂ ମନ୍ତ୍ରୀଙ୍କୁ

ଶୁଭିବା ଭଳି ସ୍ୱଗତୋକ୍ତି କରି କହିଲା, ଏ ବର୍ଷା ଫସଲ ପାଇଁ ଭଲ ହେଲା । କିଛି ସମୟ ପୁଣି ଚୁପଚାପ କଟିଗଲା । ବର୍ଷା ଆଉ ବନ୍ଦ ହେବାର ଆଶା ନଦେଖି ଛାତ୍ରନେତା ଯିବାପାଇଁ ଉଠି ଠିଆହେଲା ; କହିଲା, ମୁଁ ଡ୍ରାଇଭରକୁ ଠିକ୍‌ଭାବେ ବୁଝାଇ ଦେଇ ଯାଉଛି, ଆପଣଙ୍କର କୌଣସି ଅସୁବିଧା ହେବ ନାହିଁ । ଗୋଟାଏ ମୁହୂର୍ତ୍ତ ତାରାପଦର ମନେହେଲା ସେ ନିରାପଦରେ ଗାଡ଼ି ଭିତରେ ବସିବା ପର୍ଯ୍ୟନ୍ତ ଏଇ ପିଲାଟିକୁ ଅଟକାଇ ରଖିବ, କିନ୍ତୁ ପର ମୁହୂର୍ତ୍ତରେ ସେ ସ୍ଥିରକଲା ଯେ ସେ ବର୍ତ୍ତମାନ ନିଜକୁ ପୂରାପୂରି ସମର୍ପଣ କରିଦେବ ସୁଖଦା ପାଖରେ ।

ତାରାପଦ ଅନେକ କିଛି କହିବାକୁ ଚାହୁଁଥିଲା, ହୁଏତ ସୁଖଦା ବି, କିନ୍ତୁ ଏଇ ମୂର୍ତ୍ତିମାନ କାଗଜପତ୍ର ଫାଇଲର ଲୋକଟି ସେମାନଙ୍କ ଭିତରେ କାନ୍ଥଟିଏ ଭଳି ବସି ରହିଥିଲା । ଶେଷକୁ ସୁଖଦା ହିଁ ସମାଧାନ କଲା ଏ ସମସ୍ୟାର । କହିଲା, ଭେଙ୍କଟ, ଆଜି ମୁଁ ଆଉ କୌଣସି କାମ କରିବି ନାହିଁ । ବାକି କାଗଜସବୁ କାଲି ସକାଳେ ଦେଖିବି । ଏ କଥା ସତ୍ତ୍ୱେ ଭେଙ୍କଟକୁ ସେଠାରୁ ଉଠୁ ନଥିବାର ଦେଖି ସୁଖଦା ଯୋଗ କଲା, ତମେ ଏଥର ଯାଇ ବିଶ୍ରାମ ନିଅ । ଅତି ଅନିଚ୍ଛା ସତ୍ତ୍ୱେ ସେ ସେଠାରୁ ଉଠିଲା, କିନ୍ତୁ ଯାଇ ବାରଣ୍ଡାର ଅନ୍ୟ ଦିଗରେ ବସିଲା ଯେଉଁଠାରୁ ସେ ଏମାନଙ୍କ ଉପରେ ନଜର ରଖିପାରିବ ଏବଂ ହୁଏତ ପ୍ରୟାସ କଲେ କଥାବାର୍ତ୍ତାରୁ ବି କିଛି ଶୁଣିପାରିବ ।

କିଛି ସମୟ ତଳର ଭାବଦଶାକୁ ସଂପୂର୍ଣ୍ଣ ବଦଳାଇ ଦେଇଥିଲା ଅସମୟ ବର୍ଷା । ପୁଣିଥରେ 'ସୁଖଦା ତମର ମନେ ଅଛି' ଭଳି କଥା କହିବା ଆଉ ସମ୍ଭବ ନଥିଲା ତାରାପଦ ପକ୍ଷରେ । ବର୍ତ୍ତମାନ ଆଉ ଯେପରି ବ୍ୟକ୍ତିଗତ କଥା କିଛି କହି ହେବ ନାହିଁ, କଥାବାର୍ତ୍ତା ସୀମିତ ହୋଇଯିବ ବର୍ଷା ବିଷୟରେ । ଏ କଥାର ବି ନିର୍ଣ୍ଣୟ କଲା ସୁଖଦା । କହିଲା ମୁଁ ତମର ସବୁ ବହି ପଢ଼ିଛି । ତା'ର ବହି କେହି ପଢ଼ିଛି, ଲେଖକ ପାଇଁ ଏହାଠାରୁ ପ୍ରୀତିକର କଥା କିଛି ନାହିଁ । ତାରାପଦ ଭାବିଥିଲା ସୁଖଦା ଏଥରକ ତା'ର କୌଣସି ନିର୍ଦ୍ଦିଷ୍ଟ ବହି ବିଷୟରେ ଅଥବା ତା'ର ଲେଖା ବିଷୟରେ କିଛି କହିବ । ସୁଖଦା କିନ୍ତୁ କହିଲା, ତମେ ବର୍ତ୍ତମାନ ସବୁଠାରୁ ବେଶି ସ୍ୱୀକୃତ ଲେଖକ, ନା ? ସ୍ୱୀକୃତିର କୌଣସି ସମ୍ପର୍କ ନାହିଁ, ତାରାପଦ କହିଲା, ଲେଖାର ଗୁଣ ସହିତ । କିନ୍ତୁ ତମକୁ କେମିତି ଲାଗିଲା ମୋର ଲେଖାସବୁ ?

ମୁଁ ଯଦି କହେ ଭଲ ଲାଗିଲା, ତା'ର କ'ଣ କୌଣସି ମାନେ ହେବ ? ଅବଶ୍ୟ ଏକଥା ମଧ୍ୟ ସତ ଯେ ମତେ ଯଦି ସେସବୁ ଭଲ ଲାଗି ନଥା'ନ୍ତା, ମୁଁ କ'ଣ ପଢ଼ିଥାନ୍ତି ତାକୁ ? ନା ତଥାପି ପଢ଼ିଥା'ନ୍ତି ଲେଖକ ମୋର ଏକଦା ସହପାଠୀ ବୋଲି ? ତମେ କ'ଣ ଭାବୁଛ ?

ଅନ୍ୟ ସମୟ ହୋଇଥିଲେ ଅଥବା ଭିନ୍ନ ପରିସ୍ଥିତିରେ ଏଭଳି କଥାରେ ରୁଷ୍ଟ

ହୋଇଥା'ନ୍ତା ତାରାପଦ । କିନ୍ତୁ ପ୍ରବଳ ବର୍ଷାର ଘେର ଭିତରେ ଅତୀତରୁ ବାହାରି ଆସି ଏଭଳି ରୋକଠୋକ କହୁଥିବା ବାନ୍ଧବୀ ଆଗରେ ବସି ଯେପରି ତାରାପଦର ମନ ପ୍ରସାରିତ ହୋଇଯାଇଥିଲା । ଏ ସମୟରେ କେବଳ ଆତ୍ମସମୀକ୍ଷା ହିଁ ସମ୍ଭବ ।

ତମେ ଠିକ୍ କହିଛ । ମୋ ଲେଖା କେମିତି, ଏଇଭଳି ହଠାତ ପ୍ରଶ୍ନର କ'ଣ ଉତ୍ତର ଦିଆଯାଇପାରେ 'ଭଲ ଲାଗିଲା' ଭଳି ଅତି ନଗଣ୍ୟ ପ୍ରତ୍ୟୁକ୍ତି ବ୍ୟତୀତ ? ପ୍ରକୃତରେ ଏଭଳି ପ୍ରଶ୍ନ ହିଁ ଅର୍ଥହୀନ । କାରଣ ଜଣକ ଲେଖା ବିଷୟରେ କହିବାକୁ ଗଲେ ତାକୁ କେଉଁ ମାନରେ ତଉଲିବାକୁ ହେବ, ପ୍ରଥମେ ସେ କଥା ସ୍ଥିର କରିବାକୁ ହେବ ।

ତମେ ନିଜେ କ'ଣ ଭାବୁଛ ତମ ଲେଖା ବିଷୟରେ ?

ମତେ ତମେ ବର୍ତ୍ତମାନ ଏକ ଜଟିଳ ସମସ୍ୟାରେ ପକାଇ ଦେଲ, କହିଲା ତାରାପଦ । ଏ ବିଷୟରେ ଗମ୍ଭୀର ଭାବରେ ଭାବିବାକୁ ପଡ଼ିବ । ସୁଖଦା ଆଡ଼କୁ ଅନାଇ ତାରାପଦ ଦେଖିଲା ଯେ ସେ ହସୁଥିଲା । ତାରାପଦର ମନେହେଲା ଯେ ତା'ର ସାହିତ୍ୟିକ କୃତି ସବୁ ସମ୍ପୂର୍ଣ୍ଣ ଅଳୀକ । ସବୁ ମିଛ ତା'ର ପୁରସ୍କାର ମାନପତ୍ର ସମ୍ବର୍ଦ୍ଧନା ଫୁଲମାଳ ହାତତାଳି । ଏକମାତ୍ର ସତ୍ୟ ହେଉଛି ବାହାରେ ବର୍ଷା ଏବଂ ସୁଖଦା ସାମନାରେ ସେ ବସି ରହିଥିବା ।

ହଠାତ୍ ବିଜୁଳି ଚାଲିଗଲା । ତାରାପଦର ମନେ ହେଲା ହାତ ବଢ଼ାଇ ସୁଖଦାକୁ ଛୁଇଁପାରିବ ଏବଂ ଚାଲିଯାଇ ପାରିବ ଏପରି ଏକ ଅପାର୍ଥିବ ଲୋକକୁ, ଯେଉଁଠାରେ ସାହିତ୍ୟ ନାହିଁ, ମନ୍ତ୍ରିତ୍ୱ ନାହିଁ, କିଛି ନାହିଁ କେବଳ ବର୍ଷା ବ୍ୟତୀତ । ଅନ୍ଧାରରେ ସେ କାହାର ସ୍ପର୍ଶ ଅନୁଭବ କଲା । ତା'ର ଚଉକି ପାଖରେ ଠିଆହୋଇ ଦାସତ୍ୱ ଓ ଖୋସାମତିମିଶା ଗଳାରେ ଭେଙ୍କଟ କହୁଥିଲା, ମାଡ଼ାମ, ଗୋଟାଏ ମିନିଟରେ ମୁଁ ପେଟ୍ରୋମାକ୍ସ ଲାଇଟ୍‌ର ବ୍ୟବସ୍ଥା କରୁଛି ।

ପେଟ୍ରୋମାକ୍ସ ଲାଇଟ୍ ଆସିଲା । ଭେଙ୍କଟ ପୁଣି ଅଯାଚିତ ଭାବେ ଆସି ସେମାନଙ୍କ କଥାବାର୍ତ୍ତାରେ ଯୋଗ ଦେଲା ଏବଂ ଆଲୋଚନା ଫେରିଗଲା ଅକିଞ୍ଚିତକର ବିଷୟକୁ । ସ୍ଥିର ହେଲା ଯେ ତାରାପଦ ରାତିରେ ଖାଇସାରି ବର୍ଷା ବନ୍ଦ ହେଲେ ଯାଇ ସେଠାରୁ ଯିବ । ଭେଙ୍କଟ ଯେତେବେଳେ ଏ ବନ୍ଦୋବସ୍ତ କରିବାକୁ ଗଲା, ତାରାପଦ କହିଲା ସେକ୍ରେଟେରୀ ତମର ପାଖ ଛାଡ଼ିବାକୁ ନାରାଜ । ସୁଖଦା କହିଲା, ମୁଁ ଜାଣେ । ସେକ୍ରେଟେରୀମାନେ ହେଲେ ଈର୍ଷାପରାୟଣା ସ୍ତ୍ରୀ ଭଳି ; ସ୍ୱାମୀକୁ ପାଦେ ପାଦେ ଜଗି ରହିବା ଏମାନଙ୍କର କାମ । ମୋ ସହିତ କିଏ କଥା କହିଲା, କ'ଣ କହିଲା, ମୋର ଘର, ପରିବାରରେ କିଏ କ'ଣ କାହିଁକି ସବୁ ଯେମିତି ତା'ର ଜାଣିବା ଦରକାର ।

ଏ କଥାକୁ ପ୍ରମାଣିତ କରିବା ଭଳି ମୁହୂର୍ତ୍ତକରେ ଭେଙ୍କଟ ଫେରି ଆସିଲା,

ଯେପରିକି ତା'ର ଅବର୍ତ୍ତମାନରେ ଅନେକ କିଛି ବିଶେଷ ଘଟଣା ଘଟିଯାଇପାରେ । କହିଲା, ମାଡ଼ାମ, ସବୁ ବ୍ୟବସ୍ଥା ହୋଇଯାଇଛି । ମନ୍ତ୍ରୀଙ୍କୁ ପୁଣି ଥରେ ଠିକ୍ ଅଛି, ତମେ ଯାଅ ବୋଲି କହିବାକୁ ହେଲା ଏବଂ ତା ଆଡ଼କୁ ଚାହିଁ ସୁଖଦା ଓ ତାରାପଦ ଯେ ନିଜ ନିଜ ଭିତରେ ଏକ ମନ୍ତ୍ରଣା କରିବା ଭଳି ହସ ହସୁଥିଲେ, ଭେଙ୍କଟ ତା ମଧ୍ୟ ବୁଝିପାରିଲା ନାହିଁ ।

ସୁଖଦା କହିଲା, ଆମେ ତମର ଲେଖା ବିଷୟରେ କଥା ହେଉଥିଲେ । ଆଜି ତମେ ଯେଉଁ ବକ୍ତୃତା ଦେଲ, ତା ଖୁବ୍ ସାରଗର୍ଭକ ଥିଲା । ଅନେକ ନୂଆ କଥା ଶିଖିଲି ମୁଁ ସେଥିରୁ । ମୋର ଆଉ ଗୋଟିଏ ସୁବିଧା ହେଲା ଯେ ମୁଁ ସେ କଥାରୁ କିଛି ବ୍ୟବହାର କରି ପାରିବି ମୋର କୌଣସି ଭବିଷ୍ୟତ ବକ୍ତୃତାରେ । ତାରାପଦ କହିଲା, ତମର ବକ୍ତୃତା ବି ତ ବେଶ୍ ଜ୍ଞାନସାପେକ୍ଷ ଥିଲା । ରାଜନୈତିକ ନେତାମାନଙ୍କ ପାଖରୁ ସଚରାଚର ଆଶା କରାଯାଇ ନଥାଏ ଏ ପ୍ରକାର ବକ୍ତୃତା । ସୁଖଦା ହସିଲା ; କହିଲା, ଓଃ, ମୋର ବକ୍ତୃତା ! ତମେ ଯଦି ଆଗରୁ କେବେ ମୋର ବକ୍ତୃତା ଶୁଣିଥା'ନ୍ତ, ଜାଣିଥା'ନ୍ତ ଯେ ଏଭଳି ଏକା କଥାକୁ ସାମାନ୍ୟ ପରିବର୍ତ୍ତନ କରି ମୁଁ ସବୁ ସାହିତ୍ୟ ସଭାରେ କହିଥାଏ । ମୋର ସମୟ କାହିଁ ବହି ପଢ଼ି, ତାକୁ ତର୍ଜମା କରି ନୂଆ କଥା କହିବା ପାଇଁ ? କିନ୍ତୁ ତମ କଥା ତ ଅଲଗା ।

ତାରାପଦ ଭାବିଲା, କହିବ ହଁ, ଏଇ ଗୋଟିଏ ବକ୍ତୃତା ପାଇଁ ମତେ ଅନେକ ଦେଶୀ ବିଦେଶୀ ବହି ପଢ଼ି କେତେ ନୋଟ୍ କରିବାକୁ ହୁଏ । ଅନ୍ୟ ପରିସ୍ଥିତିରେ ସେ ଏଭଳି ମିଛ କହିଥାନ୍ତା । କିନ୍ତୁ ସିଧାସଳଖ କଥା କହୁଥିବା ବାନ୍ଧବୀ ଆଗରେ ବସି ବର୍ଷା ଆଡ଼କୁ ଅନାଇ କିପରି କହିହେବ ଏଭଳି ଅନାବଶ୍ୟକ ମିଛ ? ସେ କହିଲା, ତମର ଭାବିବା ଭୁଲ । ଆମେମାନେ ବି ସେଇ ଗୋଟିଏ ବକ୍ତୃତାକୁ ବାରମ୍ବାର ଏପାଖ ସେପାଖ କରି କହିଥାଉ । ଆଉ ରହିଲା ବହି ପଢ଼ିବା କଥା । ଆମ ପାଖରେ ସମୟ ଅଛି ସତ, କିନ୍ତୁ ଏତେ ବହି ପଢୁଛି କିଏ ? କୌଣସି ବିଦେଶୀ ପତ୍ରିକାରୁ ଗୋଟାଏ ପ୍ରବନ୍ଧ ପଢ଼ି ତାକୁ ଅବଲମ୍ବନ କରି କିଛି ଲେଖିଦେଲେ କିମ୍ବା ସଭାସମିତିରେ ବକ୍ତୃତା ଦେଇଦେଲେ ସେଇ ହେଲା ଆମର ଜ୍ଞାନର ଚୂଡ଼ାନ୍ତ ନିଦର୍ଶନ । ଆଜି ମୁଁ ସଭାରେ ଯାହା କହିଲି, କିଏ ହୁଏତ ଭାବିବ ମୋର ଅନେକ ଦିନର ଗବେଷଣାପ୍ରସୂତ । କିନ୍ତୁ ଏଇ ବକ୍ତୃତାଟି ପ୍ରସ୍ତୁତ କରିବାକୁ ମୁଁ ପାଞ୍ଚମିନିଟ ସମୟ ବି ଦେଇନାହିଁ । କେବେ କ'ଣ ପଢ଼ିଥିଲି, କେବେ କେଉଁଠି କ'ଣ କହିଥିଲି ବା ଲେଖିଥିଲି, ଏଇଟି ଥିଲା ତା'ର ଚର୍ବିତଚର୍ବଣ ।

ସୁଖଦା କହିଲା, କିନ୍ତୁ ତମର ସୃଜନଶୀଳ ଲେଖାସବୁ ତ ତମର ନିଜର । ତାରାପଦ ଶୂନ୍ୟ ଦୃଷ୍ଟିରେ ସୁଖଦା ଆଡ଼କୁ ଅନାଇଲା । ସେ ଯେପରି ଆଜି ତାକୁ ଅନାବୃତ କରିବା ପାଇଁ ବଦ୍ଧପରିକର । କିନ୍ତୁ କିପରି ତାରାପଦ ଏତେ ସହଜରେ

ଭାଙ୍ଗିଦେଇ ପାରିବ ଏତେ ବର୍ଷ ଧରି, ଏତେ ଶ୍ରମ ସାଧନା ଛଳନା ଚକ୍ରାନ୍ତରେ ଗଢ଼ିଥିବା ନିଜର ସାହିତ୍ୟିକ ପ୍ରାସାଦକୁ ? ବର୍ଷା ପାଣିରେ ଭସାଇ ଦେବ ତା'ର ସମ୍ମାନ, ସ୍ୱୀକୃତି ଏବଂ ସ୍ୱୟଂର ସଂପୂର୍ଣ୍ଣ ଅବଲମ୍ବନ ? କାହିଁକି ସେ ସୁଖଦାକୁ ମିଛ କହିବାକୁ ବାଧ ହେବ କିମ୍ବା ତା ଆଗରେ ଛିଡ଼ାହେବ ସଂପୂର୍ଣ୍ଣ ଶ୍ରୀହୀନ ହୋଇ ? ତା'ର ଆତ୍ମରକ୍ଷାର ଏକମାତ୍ର ଉପାୟ ଥିଲା ସୁଖଦାକୁ ଓଲଟା ପ୍ରଶ୍ନ କରିବା । ତାରାପଦ କହିଲା, ତମେ ଆଗ ତମ ନିଜ ବିଷୟରେ କୁହ ।

କ'ଣ ଜାଣିବାକୁ ଚାହୁଁଚ ତମେ ମୋ ବିଷୟରେ ? ଯଦି ସେଇ କଲେଜ ସମୟରୁ କଣ ହେଲା ବୋଲି ପଚାର, ସଂକ୍ଷେପରେ କହିହେବ, ଫାଇନାଲ ଭୟରରେ ବାହାହୋଇ ପାଠ ବନ୍ଦ କଲି, ଦଶବର୍ଷ ଘରସଂସାର କରି ପିଲାମାନଙ୍କୁ ବଡ଼ କଲି, ତା'ପରେ ରାଜନୀତିରେ ମିଶିଲି, ବିଧାନସଭାକୁ ଆସିଲି ଏବଂ କିଛିଦିନ ଉପମନ୍ତ୍ରୀ ରହି ବର୍ତ୍ତମାନ ମନ୍ତ୍ରୀ । ବାହାରୁ ଦେଖିଲେ ଏକ ସରଳ ସହଜ ଏବଂ ସଫଳ କ୍ରମବିବର୍ତ୍ତନ ।

ମନ୍ତ୍ରୀ ଭାବରେ ତମର ଭଲ ନାଁ ଅଛି, ତାରାପଦ କହିଲା ।

ସୁଖଦା କହିଲା, ମୁଁ ଜାଣେ । ରାଜନୀତିରେ ତିଷ୍ଠିବାକୁ ହେଲେ ଏତିକି ଅନ୍ତତଃ ବୁଝିବାକୁ ପଡ଼େ । ନିଜର ଶକ୍ତି ସାମର୍ଥ୍ୟ ସମର୍ଥନ କେତେ ନ ଜାଣିଲେ ରାଜନୀତି କରିହୁଏ ନାହିଁ । ତମେ କ'ଣ ଭାବୁଛ ମୁଖ୍ୟମନ୍ତ୍ରୀ ମତେ ଯେତେବେଳେ ଅଳ୍ପ କେତେଦିନ ଭିତରେ ଉପମନ୍ତ୍ରୀରୁ ମନ୍ତ୍ରୀପଦ ଦେଲେ, ମୋ ଉପରେ ଦୟା କରି ? ଏକଥା ବ୍ୟତୀତ ତାଙ୍କର ଅନ୍ୟ ଉପାୟ ନ ଥିଲା, କାରଣ ସେତେବେଳେ- ଦେଖ, ମୁଁ ତମକୁ ଆମ ଦଳ-ରାଜନୀତିର ଚକ୍ରାନ୍ତ କଥା କହିବାକୁ ଯାଉଥିଲି !

ତାରାପଦ କହିଲା, ଆମର ସମସାମୟିକ ବନ୍ଧୁମାନଙ୍କ ଭିତରେ ତମେ ହିଁ ସବୁଠାରୁ ଉଚ୍ଚ ଆସନର ଅଧିକାରୀ ।

ମୁଁ ଯେତେବେଳେ ଡେରିରେ ରାଜନୀତିରେ ଯୋଗ ଦେଲି, ସେ ଦୃଷ୍ଟିରୁ ମୋର ଦୁଃଖ କରିବାର କିଛି ନାହିଁ ମୁଁ ଯାହା ପାଇଛି ସେଥିରେ । ଅବଶ୍ୟ ରାଜନୀତିରେ ସବୁ ସମ୍ଭବ, ତେବେ ମୁଁ ଏହାଠାରୁ ଆଉ ବେଶି କିଛି ପାଇବା ପାଇଁ ଚେଷ୍ଟା କରିବାକୁ ପ୍ରସ୍ତୁତ ନୁହେଁ ।

ତମେ ତ ବହୁତ କିଛି ପାଇଛ ।

ହଁ, ମୋର ସେକଥା ସ୍ୱୀକାର କରିବା ଉଚିତ । କ୍ଷମତା, ପ୍ରତିପତ୍ତି, ସାମାଜିକ ପ୍ରତିଷ୍ଠା, ପାରିବାରିକ ସୁଖ, ଆର୍ଥିକ ସ୍ୱାଚ୍ଛନ୍ଦ୍ୟ । ମୋର ଘର ଆଗେ ସବୁବେଳେ ଭିଡ଼ । ଲୋକମାନେ ସବୁବେଳେ ମୋ ପାଖରେ କୃପାପ୍ରାର୍ଥୀ । ମତେ ଦେଖିବାକୁ, ମୋ କଥା ଶୁଣିବାକୁ ଲୋକେ ବ୍ୟଗ୍ର । କେତେ ଅନୁଷ୍ଠାନ, କେତେ ଯୋଜନା, କେତେ ଲୋକ ମୋ ଉପରେ ନିର୍ଭରଶୀଳ । ମୁଁ ଯେତେବେଳେ ସେମାନଙ୍କୁ ଦେଖେ, ଭାବେ ବିଚରା

ଲୋକମାନେ ! ଏମାନଙ୍କ ତୁଳନାରେ ମୋର କେତେ ସୌଭାଗ୍ୟ । ମୋର ତ ସବୁ କିଛି ଅଛି ।

ଦୁହେଁ କିଛି ସମୟ ଚୁପଚାପ ରହିଲେ । ଏ ପର୍ଯ୍ୟନ୍ତ ବିଜୁଳି ଆସି ନଥିଲା । ଲିଭି ଆସୁଥିବା ଲାଇଟ୍‌କୁ କିଏ ପୁଣି ଆସି ଜଳାଇଦେଇ ଗଲା । ବର୍ଷା ଏ ପର୍ଯ୍ୟନ୍ତ ବର୍ଷୁଛି ଅବିରାମ ଗତିରେ । ଡାକବଙ୍ଗଳା ଭିତରେ ସବୁକିଛି ଶାନ୍ତ ଓ ସ୍ତବ୍ଧ । ଏପରିକି ଭେଙ୍କଟ ମଧ ବସି ଅନାଇ ରହିଛି ବର୍ଷା ଆଡ଼କୁ । ଏତିକିବେଳ ହଠାତ ଜୋର ପବନ ହୋଇ ବାରଣ୍ଡା ଉପରେ ବର୍ଷାପାଣିର ଛିଟିକା ପଡ଼ିବାରେ ଲାଗିଲା । କାହାରିକୁ କିଛି କହିବା ଆଗରୁ ଭେଙ୍କଟ ଆସି ପେଟ୍ରୋମାକ୍‌ସ ଲାଇଟ୍‌କୁ ବର୍ଷା ପାଣିରୁ ଘୁଞ୍ଚାଇ ରଖିଲା । ଏଇ ସୁଯୋଗରେ ସୁଖଦା କହିଲା, ଲାଇଟକୁ ଘର ଭିତରେ ରଖିଦିଅ ; ଆମେ ଯାଇ ଭିତରେ ବସିବୁ । ଅତି କୁଣ୍ଠିତ ଭାବରେ ଭେଙ୍କଟ ସେମାନଙ୍କୁ ଘର ଭିତରେ ବସାଇ ବାହାରକୁ ଗଲା ; ଏଥରକ ସେମାନେ ଭେଙ୍କଟର ବସିବା ଜାଗାରୁ ପୂରାପୂରି ଦୃଷ୍ଟି ଅଗୋଚରରେ ଥିଲେ । ତା ଆଡ଼କୁ ଅନାଇ ତାରାପଦ କହିଲା, ବିରହୋତ୍କଣ୍ଠିତ ଅବସ୍ଥାରେ ପଡ଼ିଗଲା ବିଚରା ।

ତା କଥାର କୌଣସି ଜବାବ ଦେଲା ନାହିଁ ସୁଖଦା । ଏପରିକି ତା ମୁହଁରେ ସାମାନ୍ୟ ହସ ବି ଦେଖାଗଲା ନାହିଁ । ସେ ବର୍ତ୍ତମାନ ଗମ୍ଭୀର ଥିଲା । ପୁରୁଣା କଥାର ଖିଅ ଧରି ସୁଖଦା କହିଲା, ପୁଣି କେବେ କେବେ ମୋର ମନେହୁଏ, ମୁଁ ଯେତେ ଯାହା ଭାବୁଛି ମୋର ଅଛି ବୋଲି, ସବୁ ଅର୍ଥହୀନ । ତମର କେବେ ଏମିତି ମନେ ହୋଇଛି ?

ମନେ ପକାଇବାକୁ ଚେଷ୍ଟା କଲା ତାରାପଦ । ଯଦିଓ କେବେ ଇଚ୍ଛା କରି ସେ ଏକଥା ଚିନ୍ତା କରିନାହିଁ, ସମୟ ଅସମୟରେ ଯେ ଏପରି ଭାବନା ସବୁ ତା ମୁଣ୍ଡକୁ ଆସିନାହିଁ, ତା ନୁହେଁ । ସେ ଅନେକ ବହି ଲେଖିଛି ସତ, କିନ୍ତୁ କେତେ ସ୍ଥାୟୀ ମୂଲ୍ୟ ସେ ସବୁ ଲେଖାର ? କ'ଣ ଏଭଳି ମୌଳିକ କଥା ଅଛି ତା'ର ଲେଖାରେ, ଯାହା ସମୟରୁ ଊର୍ଦ୍ଧ୍ୱରେ ବଞ୍ଚିରହି ପାରିବ ? ଯଦିଓ ଅନ୍ୟ କେହି ଏକଥା ଜାଣନ୍ତି ନାହିଁ, ତା'ର ଅନେକ ଲେଖା ତ ବିଦେଶୀ ଲେଖାର ଚତୁର ଅନୁଶୀଳନ ମାତ୍ର । ତା'ର ତଥାକଥିତ ବୌଦ୍ଧିକ ରଚନାମାନ ଅଜ୍ଞାତ ମନୀଷୀମାନଙ୍କ ଲେଖାର ସାରାନୁବାଦ । ତା'ର ସଂପୂର୍ଣ୍ଣ କୃତି ହେଉଛି ବିଭିନ୍ନ ସ୍ରୋତରୁ ଏକାଠି କରି ଆଣିଥିବା ଛୋଟ ଛୋଟ ଅଂଶକୁ କତୁରି ଓ ଅଠାଦେଇ ଯୋଡ଼ା ଯାଇଥିବା ନବଗୁଞ୍ଜର । ତା'ର ପାଠକ ଓ ସମାଲୋଚକମାନଙ୍କୁ ଏକଥା ଅଜଣା । କିନ୍ତୁ ସେ ନିଜେ କିପରି ଅସ୍ୱୀକାର କରିପାରିବ ନିଜ ପାଖରେ ନିଜର କୃତକର୍ମକୁ ? ଏବଂ ବର୍ତ୍ତମାନ ଏଇ ମୁହୂର୍ତ୍ତରେ ସେ ଯଦି ତା'ର ସ୍ୱୀକାରୋକ୍ତି ନ କରେ, ଆଉ କେବେ ଏଭଳି ସୁଯୋଗ ଆସିବ ତା ପାଖକୁ ଅକପଟ ସତ୍ୟକୁ ଅଙ୍ଗୀକାର

କରିବାର ? ତଥାପି ତା'ର ସାହସ ହେଲା ନାହିଁ ନିଜର ଦୁର୍ବଳତାକୁ ପ୍ରକାଶ କରିବା ପାଇଁ, ସେ ହେଉନା କାହିଁକି ସ୍ୱଳ୍ପ ପରିଚିତ ଆଉ ପୁଣି ଭବିଷ୍ୟତରେ କେବେ କେଉଁଠି ଦେଖାହେବ ନହେବା ଭଳି ଜଣକ ଆଗରେ । ସୁଖଦା କଥାର ଉତ୍ତର ନଦେଇ ତାରାପଦ ତାକୁ ଓଲଟା ପ୍ରଶ୍ନ କଲା, କାହିଁକି ତମର ଏପରି କେବେ କେବେ ମନେହୁଏ ଯେ ତମର କିଛି ନାହିଁ ?

ଏ କଥାର ଉତ୍ତର ତ ଅତି ସହଜ, ସୁଖଦା କହିଲା । ପ୍ରକୃତ ସତ୍ୟ ହେଉଛି ଯେ ମୋର କିଛି ନାହିଁ, କିନ୍ତୁ ମୁଁ ମିଛରେ ଭାବୁଛି ଯେ ମୋର ସବୁ ଅଛି । ମୁଁ କଣ ଚାହିଁଥିଲି ଏଇଭଳି ଜୀବନ ? କେହି ଜାଣନ୍ତି ନାହିଁ ମୁଁ କେମିତି, କାହିଁକି ରାଜନୀତିରେ ପଶିଲି । ମୋର ସ୍ୱାମୀ ସେତେବେଳକୁ ଚାକିରି କରୁଥିଲେ ଏବଂ ତାଙ୍କର ଚାକିରିରେ କ'ଣସବୁ ସମସ୍ୟା ହେଉଥିଲା । ସେ ଠିକ୍ କଲେ ଯେ ମୁଁ ଯଦି ସେତେବେଳେ କ୍ଷମତାରେ ଥିବା ରାଜନୀତିଜ୍ଞମାନଙ୍କ ପାଖରେ ପହଞ୍ଚିପାରେ, ତାଙ୍କର ଚାକିରିରେ ସୁବିଧା ହେବ । ମୋର ଆଦୌ ଇଚ୍ଛା ନଥିଲା ଏଥିରେ । ମୋର ବୟସ ବି କମ୍ ଥିଲା ଏବଂ ରାଜନୀତିର ନେତାମାନଙ୍କୁ ମୁଁ ଯେତିକି ଦେଖିଥିଲି, ଜାଣିଥିଲି ସେମାନେ କ'ଣ ଚାହାଁନ୍ତି । ତଥାପି ମୋର ସ୍ୱାମୀଙ୍କ ପ୍ରରୋଚନାରେ ମତେ ଧାଇଁବାକୁ ହେଲା ସେମାନଙ୍କ ପଛରେ । କ୍ରମେ କ୍ରମେ ମୋର ଭଲମନ୍ଦର ଅଭିଜ୍ଞତା ହେଲା, ଆତ୍ମବିଶ୍ୱାସ ବଢ଼ିଲା, ମୁଁ ଜାଣିପାରିଲି କାହାକୁ କେତେ ପାଖକୁ ଆସିବାକୁ ଦିଆଯାଇପାରେ ଏବଂ କିପରି କାହାକୁ ଦୂରରେ ରଖାଯାଇ ପାରେ, କେଉଁଥିପାଇଁ ନିଜକୁ କେତେ ପରିମାଣରେ ସମର୍ପଣ କରାଯାଇପାରେ ଇତ୍ୟାଦି । ଏକଥା ମୋ ପାଇଁ ଗୋଟିଏ ଖେଳ ଭଳି ଥିଲା ଏବଂ ମୁଁ ଏହାକୁ ଉପଭୋଗ କରିବାରେ ଲାଗିଲି । ରାଜନୈତିକ ପାହାଚରେ ମୋର କ୍ରମୋନ୍ନତି ହେଲା । ଶେଷରେ ଏପରି ଅବସ୍ଥା ପହଞ୍ଚିଲା ଯେ ମୋର ସ୍ୱାମୀ ଯେ କି ମତେ ରାଜନୀତିରେ ବାଧ୍ୟକରି ପୂରାଇଥିଲେ, ସେ ମୋର ରାଜନୀତି କରିବାକୁ ନାପସନ୍ଦ କଲେ ଏବଂ ଯୋଉ ଚାକିରି ପାଇଁ ଏତେକଥା, ସେ ସେଇ ଚାକିରିଟିକୁ ବି ଛାଡ଼ିଦେଲେ । କ'ଣ ନୀତିଶିକ୍ଷା ବାହାରୁଛି ଏ କଥାରୁ ?

ଟିକିଏ ସମୟ ଚୁପ୍ ରହି ନିଜେ ନିଜ ପ୍ରଶ୍ନର ଉତ୍ତର ଦେଲା ସୁଖଦା । ମୁଁ ଚାହୁଁଥାଏ ନଚାହୁଁଥାଏ, ସୁଖଦା କହିଲା, ମୋର ଜୀବନ ଯେଉଁଭଳି ଯେତେ ମୋଡ଼ ନେଇ ଏଇ ଅବସ୍ଥାରେ ପହଞ୍ଚିଛି, ସେଇଟି ମୋର ହିଁ ଜୀବନ ଏବଂ ମତେ ହିଁ ତାକୁ ବଞ୍ଚିବାକୁ ହେବ । ମୁଁ ଏଭଳି ଜୀବନ ଚାହିଁ ନଥିଲି, ଏକଥା ବର୍ତ୍ତମାନ କହିଲେ କି ଲାଭ ? ମୁଁ ଯେଉଁଭଳି ଜୀବନ ଚାହିଁଥିଲି, ସେଭଳି ଜୀବନ ମତେ ମିଳିଥା'ନ୍ତା, ତା'ର ବି କୋଉ ପ୍ରତିଶ୍ରୁତି ଥିଲା ? ଅନ୍ୟପକ୍ଷରେ, ମୁଁ କ'ଣ ନିର୍ଦ୍ଦିଷ୍ଟ ଭାବରେ ଜାଣିଥିଲି ସେତେବେଳେ ମୋର କି ପ୍ରକାରର ଜୀବନ ଦରକାର ଥିଲା ? ବର୍ତ୍ତମାନ ଅତୀତକୁ

ଅନାଇ ଭାବିବା ସହଜ, କିନ୍ତୁ ସେତେବେଳେ କ'ଣ ମୁଁ ଭାବିପାରିଥା'ନ୍ତି ଏଭଳି ସବୁ କଥା ଭବିଷ୍ୟତ ବିଷୟରେ ?

ତା କଥା ଶୁଣୁଶୁଣୁ ତାରାପଦ ଭାବିଲା ସେ ବି ନିଜର ପ୍ରାପ୍ତି ଅପ୍ରାପ୍ତି କଥା ସୁଖଦାକୁ ଶୁଣାଇ ହାଲୁକା କରିଦେବ ନିଜର ମନର ଭାରକୁ ; ଖୋଲି ରଖିଦେବ ଏତେଦିନ ଧରି ତା'ର ମନ ଭିତରେ ଜଟିଳ ହୋଇଯାଇଥିବା ଅଡୁଆ ସୂତାର ଖିଅକୁ । ସେ ସୁଖଦା ଆଡ଼କୁ ଅନାଇଲା । ତା'ର ମୁହଁକୁ ଦେଖି ମନେହେଲା ସୁଖଦା ଯେପରି ଅନ୍ୟ କେଉଁ ପୃଥିବୀରେ ଥିଲା ଏବଂ ଏତେକଥା ଯାହା ନିଜ ବିଷୟରେ କହିଗଲା, ସେସବୁ ତାରାପଦ ପାଇଁ ଉଦ୍ଦିଷ୍ଟ ନଥିଲା, ସେସବୁ ଥିଲା ନିଜ ପାଇଁ ସ୍ୱଗତୋକ୍ତି । ଏଥର ତାରାପଦର ଆଖିକୁ ଅନାଇ ସୁଖଦା ତାକୁ ଚିହ୍ନିଲା, ସାମାନ୍ୟ ହସିଲା ଏବଂ କହିଲା, ଏଥର ତମର ସ୍ୱୀକାରୋକ୍ତି ଶୁଣିବା । କଥାଟି ଠିକ୍ କିପରି ଆରମ୍ଭ କରିବ ତାରାପଦ ଏକଥା ଭାବୁଛି, ବିଜୁଳି ଆସିଗଲା । ଏତେ ସମୟ ଧରି ଉଜ୍ଜ୍ୱଳ ଆଲୁଅ ବିକିରଣ କରୁଥିବା ପେଟ୍ରୋମାକ୍ସ ଲାଇଟ୍‌ଟି ହଠାତ ନିଷ୍ପ୍ରଭ ହୋଇ ଫେରିଗଲା ସେମାନଙ୍କ ଦୃଷ୍ଟିର ପୃଷ୍ଠଭୂମିକୁ । ସେମାନଙ୍କ ଦୃଷ୍ଟି ଓ ଚେତନାରୁ ଅଗୋଚର ହୋଇଯାଇଥିବା ଡାକବଙ୍ଗଳାର କୋଠରି ବାରଣ୍ଡା, ଲୋକବାକ, ଭେଙ୍କଟସ୍ୱାମୀ ପୁଣି ମୂର୍ତ୍ତିମାନ ହୋଇଗଲେ ନିଜ ନିଜ ଜାଗାରେ । ତାରାପଦ କିଛି ନ କହି ଚୁପ୍ ରହିଲା ଏବଂ ଭେଙ୍କଟ ଆସି ଘୋଷଣା କଲା ଯେ ଖାଇବା ପ୍ରସ୍ତୁତ ।

ଭୋଜନପର୍ବଟି ଥିଲା ଅତି ଔପଚାରିକ, ପ୍ରୀତିକର ତଥା ଭେଙ୍କଟର ଉପସ୍ଥିତି ଯୋଗୁଁ ଆମୋଦଦାୟକ ମଧ୍ୟ ; ସୁଖଦାର ବ୍ୟବହାର ଅତି ସହଜ ଓ ମନ୍ତ୍ରୀସୁଲଭ । କୌଣସି ସୂଚନା ନ ଥିଲା ତା'ର କଥାବାର୍ତ୍ତା ଭାବଭଙ୍ଗୀରେ ଅଳ୍ପସମୟ ପୂର୍ବରୁ ହୋଇଥିବା ବ୍ୟକ୍ତିଗତ ଭାବପୂର୍ଣ୍ଣ ମାର୍ମିକ ଆଲୋଚନାର । ତାରାପଦ ଭାବିଲା ଖାଇସାରିବା ପରେ ପୁଣି ଡାକବଙ୍ଗଳାର ନିଭୃତ ବାରଣ୍ଡାରେ ବସି ସେ ଓ ସୁଖଦା ପୁଣି ଫେରିଯିବେ ଅଧା ରହିଯାଇଥିବା କଥୋପକଥନର ଗଭୀରତମ କେନ୍ଦ୍ରକୁ ଏବଂ ତାରାପଦ ନିଜକୁ ମୁକ୍ତ କରିଦେବ ବର୍ଷ ବର୍ଷ ଧରି କାହାକୁ କହିପାରୁ ନଥିବା ଅନ୍ତରଙ୍ଗ ଚିନ୍ତାର ଉତ୍ପୀଡ଼ନରୁ । କିନ୍ତୁ ଏପରି କିଛି ହେଲା ନାହିଁ । ସେମାନେ ଖାଇସାରି ବାରଣ୍ଡା ଉପରକୁ ଆସିବା ବେଳକୁ ବର୍ଷା ପୂରାପୂରି ଛାଡ଼ିଯାଇ ସାମାନ୍ୟ ଜହ୍ନ ଆଲୁଅ ଦିଶୁଥିଲା । ଡ୍ରାଇଭର ଗାଡ଼ି ନେଇ ଯିବାପାଇଁ ପ୍ରସ୍ତୁତ ଥିଲା । ଭେଙ୍କଟ ତା'ର ଟିପାଖାତାରୁ ପଢ଼ି ମନ୍ତ୍ରୀଙ୍କୁ ଶୁଣାଉଥିଲା କାଲି ସକାଳେ କି କି ଜରୁରୀ କାର୍ଯ୍ୟକ୍ରମ ସବୁ ରହିଛି ।

ସୁଖଦା ପାଖରୁ ବିଦାୟ ନେଇ ତାରାପଦ ଗାଡ଼ିରେ ଆସି ବସିଲା । ଅନେକ କଥା ଅକୁହା ରହିଗଲା ତାରାପଦର । ବିଦାୟ ପର୍ବଟି ଆଉ ଟିକିଏ ବ୍ୟକ୍ତିଗତ ହୋଇଥିଲେ

ସେ ଖୁସି ହୋଇଥା'ନ୍ତା । ସବୁ ଯେପରି ଅପୂର୍ଣ୍ଣ ରହିଗଲା ଆଜି । ଗାଡ଼ି ଠିକ୍ ହୋଇଯାଇଥିଲା ଏବଂ ଖାଇପିଇ ସାରି ଡ୍ରାଇଭର ଖୁସ୍‌ମିଜାଜ ଥିଲା । ସେ ତାରାପଦ ସହିତ କଥା ହେବା ଉଦ୍ଦେଶ୍ୟରେ କଥା ଆରମ୍ଭ କଲା, ସାର୍, ଗାଡ଼ି ଏଥରକ ଫାଷ୍ଟକ୍ଲାସ୍ ଚାଲିବ । ଡ୍ରାଇଭରକୁ ପ୍ରଶ୍ରୟ ନ ଦେବା ପାଇଁ ତାରାପଦ ଚୁପ୍ ରହିଲା ଏବଂ ସଂଧ୍ୟାର ଘଟଣାବଳୀକୁ ରୋମାଛନ କରିବାରେ ନିଜକୁ ନିମଜ୍ଜିତ କରିଦେଲା । ସୁଖଦା ସହିତ ଆଜିର ଆକସ୍ମିକ ସାକ୍ଷାତ୍‌କାର ପ୍ରତିଶ୍ରୁତିପୂର୍ଣ୍ଣ ଥିଲା । ତାରାପଦ ଶୀଘ୍ର ତା ସହିତ ପୁଣି ସାକ୍ଷାତର ବ୍ୟବସ୍ଥା କରିବ ଏବଂ ଦ୍ୱିତୀୟ ଥର ଦେଖାହେବାବେଳେ ପରସ୍ପରର ସଂପର୍କରେ ରୋମାନ୍ସର ସାମାନ୍ୟ ଆଙ୍ଗିକ ଦେବାପାଇଁ ଚେଷ୍ଟା କରିବ । ସେ ନିଜର କଳ୍ପନାକୁ ଆହୁରି ଅନିୟନ୍ତ୍ରିତ ଭାବେ ପ୍ରସାରିତ ହେବାକୁ ଦେଲା । ତା'ର ଓ ସୁଖଦାର ରୋମାଞ୍ଚକର ସଂପର୍କ ବର୍ତ୍ତମାନ ସହରର ନବୀନତମ ଅପବାଦ ଥିଲା । ଜଣେ ଜଣାଶୁଣା ଲେଖକ ଓ ଜଣେ ମନ୍ତ୍ରୀଙ୍କୁ ନେଇ କୁତ୍ସା ତାରାପଦକୁ ବିଶେଷ ଅପ୍ରିୟ ମନେହେଲା ନାହିଁ । ତେବେ ପରମୁହୂର୍ତ୍ତରେ ତାରାପଦର ଉପଲବ୍ଧି ହେଲା ଯେ ଏସବୁ କିଛି ବି ଘଟିବ ନାହିଁ । ତା'ର ଆଉ ଦେଖାହେବ ନାହିଁ ସୁଖଦା ସହିତ, ଯେପରି ହୋଇ ନଥିଲା ଏତେ ବର୍ଷଧରି । ଯଦିବି ଦଶବର୍ଷ ପରେ ପୁଣି ଦେଖାହୁଏ ଏପରି କୌଣସି ଅନୁଷ୍ଠାନରେ, ଦୁହେଁଯାକ ଆହୁରି ଦଶବର୍ଷ ବୟସ୍କ ହୋଇ ଜରାବସ୍ଥାରେ ପହଞ୍ଚି ସାରିଥିବେ । ସେଥରକ ହୁଏତ ତା'ର ଗାଡ଼ି ଖରାପ ହେବ ନାହିଁ । ପାଖରେ ଡାକବଙ୍ଗଳା ନଥିବ, ପାଗ ଭଲ ଥିବ ଏବଂ ଜଣେ ଆହୁରି କୌତୂହଳୀ ପ୍ରକୃତିର ଭେଙ୍କଟସ୍ୱାମୀ ଥିବ । ଏଭଳି ବିସ୍ୱାଦକର ଚିନ୍ତାକୁ ଇଚ୍ଛାକରି ତାରାପଦ ନିଜ ମନ ଭିତରୁ ଦୂର କରିଦେଲା ଏବଂ ଶୋଇବାକୁ ଚେଷ୍ଟା କରି ନିଜର ମନକୁ ନିବେଶ କଲା ସାହିତ୍ୟିକ ସଫଳତା ବିଷୟରେ । ସେ ପାଇନଥିବା ବିଭିନ୍ନ ପୁରସ୍କାର ତାକୁ ଆଖି ଆଗରେ ଦେଖାଦେଲେ । ସେ ଯେଉଁ ଶ୍ରେଷ୍ଠତମ ଗ୍ରନ୍ଥଟିକୁ ଲେଖିବାକୁ ଭାବୁଥିଲା ତା'ର ସଂଯୋଜନା ସବୁ ମନେପଡ଼ିଲା । ସେ ଭାବିନେଲା ତା'ର ଷଷ୍ଠି ପୂର୍ତ୍ତିରେ ପ୍ରକାଶ ପାଇବାକୁ ଯାଉଥିବା ଅଭିନନ୍ଦନ ଗ୍ରନ୍ଥ କେଉଁଭଳି ହେବ । ଏସବୁ କଥା ସହିତ ତା'ର ମନେପଡ଼ିଲା ସାହିତ୍ୟ ଜଗତରେ ତା'ର ପ୍ରତିବଦ୍ଧ ଶତ୍ରୁମାନଙ୍କ କଥା । ସେ ଦେଖିଲା ଯେ କେହି ଜଣେ ଚତୁର ସମାଲୋଚକ ଅତି ନିଷ୍ଠାର ସହିତ ତା'ର ସମସ୍ତ ସାହିତ୍ୟିକ ଚୌର୍ଯ୍ୟର ବିବରଣୀ ପ୍ରକାଶ କରିଦେଇଛି ଏବଂ ଜଣେ ଗଣ୍ୟମାଣ୍ୟ ସାହିତ୍ୟକାରରୁ ସେ ଖସି ଆସିଛି ଏକ ତୁଚ୍ଛ ସାମାନ୍ୟ ଲେଖକର ସ୍ତରକୁ । ଗୋଟିଏ ଉଚ୍ଚ ମଞ୍ଚ ଉପରୁ ଯେପରି କିଏ ତାକୁ ଓଟାରି ନେଇ ଫିଙ୍ଗିଦେଲା ତଳେ ନର୍ଦ୍ଦମା ଭିତରକୁ ।

ଏପରି ଅପ୍ରୀତିକର ଚିନ୍ତା କରୁଥିବାରୁ ନିଜକୁ ନିଜେ ଶାସନ କଲା ତାରାପଦ ଏବଂ ଏଭଳି ଛୋଟ ଗାଉଁଲି କଲେଜକୁ ବକ୍ତୃତା ଦେବାକୁ ଆସିଥିବାରୁ ନିଜକୁ

ଗାଳିଦେଲା । ସେ ନିଷ୍ପତ୍ତି କଲା, ଯଦିଓ ସେ ଜାଣିଥିଲା ଯେ ଏ ନିଷ୍ପତ୍ତିଟି ଅତି କ୍ଷଣସ୍ଥାୟୀ, ଯେ ସେ ଆଉ କେବେହେଲେ ଏଭଳି ନିମନ୍ତ୍ରଣ ରକ୍ଷା କରିବ ନାହିଁ । ଏଥରକ ସେ ଆବୁଡ଼ା ଖାବୁଡ଼ା ରାସ୍ତାରେ ତଳ ଉପର ହୋଇ ଯାଉଥିବା ଗାଡ଼ି ପାଖରେ ନିଜକୁ ସମର୍ପଣ କରିଦେଲା ।

# ଜଣା ଅଜଣା

ଜଣେ ମଣିଷ ଆଉ ଜଣକୁ ଯେତେଦୂର ବୁଝିବା ସମ୍ଭବ, ସେମାନଙ୍କ ଭିତରେ ସେଇଭଳି ବୁଝାମଣା ଥିଲା ଏବଂ ଏ ବିଷୟରେ କେବେହେଲେ କୌଣସି ସନ୍ଦେହ ନଥିଲା ରମାନାଥର । ସେ ଓ ସୀମା କାହାରି ଜୀବନରେ ଏପରି କୌଣସି ଘଟଣା ନଥିଲା ଯାହା ଅନ୍ୟର ଅଜଣା ଥିଲା । ଦୁହେଁ ଯେପରି ନିଜ ନିଜକୁ ସଂପୂର୍ଣ୍ଣ ଭାବେ ଖୋଲି ରଖିଦେଇଥିଲେ ପରସ୍ପର ପାଖରେ ; ଜଣେ ଜଣକର ସ୍ୱଚ୍ଛ ମନ ଭିତରକୁ ଉଙ୍କିମାରି ସହଜରେ ସବୁ ଗୋପନୀୟ କଥା ବୁଝିପାରୁଥିଲା ତା ବିଷୟରେ ।

ଏଥିରେ ଅବଶ୍ୟ କେବେ କେବେ କ୍ଷତି ହେଉଥିଲା ରମାନାଥର ହିଁ । ଅକାଳେ ସକାଳେ ସାଙ୍ଗଙ୍କ ମେଳରେ ବସି ଘରକୁ ଡେରିରେ ଫେରି ମିଛ ସ୍ପଷ୍ଟୀକରଣ ଦେଲାବେଳେ ସେ ସହଜରେ ଧରା ପଡ଼ିଯାଉଥିଲା । ଅଫିସରେ କେଉଁ କାମରେ ବ୍ୟସ୍ତ ରହି ଠିକ୍ କେତେ ସମୟ ଅଧିକା ବସି ରହିଥିଲା ଇତ୍ୟାଦି ଇତ୍ୟାଦି ଅନେକ ବାହାନାକୁ ସେ ମନ ଭିତରେ ତିଆରି କରି ଆସିବା ସତ୍ତ୍ୱେ ସୀମା ତା'ର ଆଖିକୁ ଦେଖି ତା'ର ସବୁ ଛଳକୁ ଧରି ପାରୁଥିଲା ଏବଂ ସେ କୋଉ କୋଉ ବନ୍ଧୁଙ୍କ ସାଙ୍ଗରେ କେଉଁଠାରେ କଣ କରୁଥିଲା ତା'ର ମୁକାବିଲା କରି ତାକୁ ଅପଦସ୍ଥ କରିଦେଉଥିଲା ।

କେବେ କେବେ ଏଭଳି ପରିସ୍ଥିତିରେ ରମାନାଥର ମନେ ହେଉଥିଲା ଯେ ହୁଏତ ସୀମାର କୌଣସି ଅତିଭୌତିକ ଶକ୍ତି ଅଛି । ଏକଥା ସେ ବିବାହର କିଛିଦିନ ପରେ ହିଁ ଲକ୍ଷ୍ୟ କରିଥିଲା । ଥରେ ସୀମା ଶୋଇବା ଘରେ ଝରକା ବାହାରକୁ ଅନାଇ ବସିଥିବାବେଳେ ରମାନାଥ ପାଦ ଚିପିଚିପି ଭିତରକୁ ପଶିଲା ତାକୁ ପଛରୁ ଧରିନେବ ବୋଲି । ଶେଷ ମୁହୂର୍ତ୍ତରେ କିନ୍ତୁ ସୀମା କହିଲା, କ'ଣ କିଛି ଦରକାର? କଥାଟାକୁ ସେ ଅନାୟାସ କହିଲା ଯେପରିକି ତା ଆଗରେ ଖୋଲା ଝରକା ନଥିଲା, ଥିଲା ଗୋଟିଏ ଦର୍ପଣ । ଏ କଥାରେ ସେତେବେଳେ ଚମକି ପଡ଼ିଥିଲା ଏବଂ ସାମାନ୍ୟ ଭୟଭୀତ ହୋଇଯାଇଥିଲା ରମାନାଥ ।

ଆଉଥରେ ତାଙ୍କ ଘରକୁ ଜଣେ ଦୂରସଂପର୍କୀୟ ଭଦ୍ରବ୍ୟକ୍ତି ଆସିଥିଲେ । ସେ ଯେଉଁ ଡୋରିଆ ଜାମାଟି ପିନ୍ଧିଥିଲେ, ତାକୁ ଦେଖି ରମାନାଥର ମନେପଡ଼ିଲା ଯେ

ତା'ର ମଧ୍ୟ ଅନେକ ବର୍ଷ ତଳେ ଏଇଭଳି କନାର ଜାମାଟିଏ ଥିଲା । ତାକୁ ଏଇ କନାଟି ଦେଇଥିଲେ ସେତେବେଳେ ପାଞ୍ଚବର୍ଷ ବିଲାତରେ ରହି ଫେରିଥିବା ଜଣେ ମାମୁ । ତା'ର ସେଇ ଜାମାଟି ଅନେକ ଦିନରୁ ଛିଣ୍ଡିଯାଇଥିଲା, କିନ୍ତୁ ଏଇ ଭଦ୍ରବ୍ୟକ୍ତି ପିନ୍ଧିଥିବା ଜାମାଟି ନୂଆ ଥିଲା । ତା ଅର୍ଥ, ତା'ର ମାମୁ ନିଶ୍ଚୟ ଶସ୍ତା ଦରରେ ଏଇ ଡୋରିଆ କନାର ଥାନ ନେଇ ଆସିଥିଲେ ଏବଂ ଏତେ ବର୍ଷ ଧରି ତା ଦେହରୁ ଖଣ୍ଡେ ଖଣ୍ଡେ କାଟି ନିଜର ବନ୍ଧୁବାନ୍ଧବଙ୍କୁ ଉପହାର ଦେଉଥିଲେ । ମନ ଭିତରକୁ ଏ ଚିନ୍ତା ଆସିବା ମାତ୍ରେ ତା ମୁହଁରେ ସାମାନ୍ୟ ହସ ବି ଆସିଲା । ଏଇ ସମୟରେ ସେ ସୀମା ଆଡ଼କୁ ଅନାଇ ଦେଖିଲା ଯେ ସେ ବି ତା'ର ହସକୁ ଲୁଚାଇବାକୁ ଚେଷ୍ଟା କରୁଥିଲା । ସୀମା ମନ ଭିତରେ ବି ନିଶ୍ଚୟ ଠିକ୍ ଏଇ ସମୟରେ ମାମୁଙ୍କ ବିଷୟରେ ଠିକ୍ ଏଇ ଭାବନାକ୍ରମଟି ଉତ୍ପନ୍ନ ହୋଇଥିଲା ।

କିଏ ଲେଖକ କେବେ କହିଥିଲା ଯେ, ପରସ୍ପରକୁ ସଂପୂର୍ଣ୍ଣ ଭାବରେ ବୁଝିପାରିବା ହିଁ ହେଉଛି ପ୍ରେମର ପରିଭାଷା । ରମ୍ୟାନାଥ ଜାଣୁଥିଲା ଯେ ଏହି ସଂଜ୍ଞା ଅନୁସାରେ ସୀମା ଓ ତା ଭିତରେ ଥିଲା ଏକ ଅଖଣ୍ଡ ପରିପୂର୍ଣ୍ଣ ପ୍ରେମ । ଯେଉଁ ଜିନିଷଟି ଅନ୍ୟ କାହାକୁ ବୁଝାଇବାକୁ ସମୟ ଓ ଭାଷାର ପ୍ରୟୋଜନ, ସେମାନେ ପରସ୍ପର ଆଡ଼କୁ ଅନାଇ ମୁହୂର୍ତ୍ତକରେ କଥାଟିକୁ ହୃଦୟଙ୍ଗମ କରି ପାରୁଥିଲେ । ଖାଇବା ଟେବୁଲ ଉପରେ ବସି ଚାମଚେ ତରକାରି ପାଟିକୁ ନେଇ ସେ ଯେତେବେଳେ ସୀମା ମୁହଁକୁ ଅନାଉଥିଲା, ତା'ର ଅବ୍ୟକ୍ତ ପ୍ରଶ୍ନର ଉତ୍ତର ଦେଇ ସୀମା କହୁଥିଲା, ହଁ, ତରକାରିରେ ଆଜି ଟମାଟୋ ପଡ଼ିନାହିଁ । ୟୁରିକ ଏସିଡ଼ ବଢୁଛି ବୋଲି ଡାକ୍ତର ଖାଇବାକୁ ମନା କରିଛନ୍ତି ।

ବ୍ୟବସ୍ଥିତ ବିବାହ ବିଷୟରେ ଯେ ଯାହା ଭଲମନ୍ଦ କହୁନା କାହିଁକି, ରମାନାଥର ଜୀବନରେ ସୀମା ଆସିଥିଲା ଏକ ବରଦାନ ଭଳି । ପ୍ରଥମ ଦର୍ଶନରେ ସେ ତା'ର ପ୍ରେମରେ ପଡ଼ିଥିଲା ଏବଂ ସେ ଯେତେବେଳେ ଏକଥା ଭାବୁଥିଲା, ଏଇ ନିଷ୍କର୍ଷରେ ପହଞ୍ଚୁଥିଲା ଯେ ଯଦି ସେ କେବେହେଲେ ସ୍ୱେଚ୍ଛାରେ କାହାକୁ ପ୍ରେମ କରି ବାହା ହୋଇଥା'ନ୍ତା, ତେବେ ସୀମାକୁ ହିଁ ବାହା ହୋଇଥାନ୍ତା, ଆଉ କାହାକୁ ନୁହେଁ । କେବେ କେବେ ଅବଶ୍ୟ ତା'ର ମନ ବିପଥଗାମୀ ହୋଇ ଅନ୍ୟ କେଉଁ ସ୍ତ୍ରୀ ବିଷୟରେ ଭାବୁଥିଲା ଯେ ସେ ତା'ର ସଙ୍ଗିନୀ ହୋଇଥିଲେ କିପରି ହୋଇଥା'ନ୍ତା । ଏକଥା ଚିନ୍ତା କରିବାମାତ୍ରେ ତା ମନ ଭିତରେ ହଠାତ ଏକ ଅଜଣା ପୁଲକ ଉପୁଜୁଥିଲା, କିନ୍ତୁ ସେ ଯେତେବେଳେ ସ୍ତ୍ରୀଲୋକଟିର ହାବଭାବ, ପ୍ରକୃତି, କଥାବାର୍ତ୍ତା ଇତ୍ୟାଦି ପ୍ରତି ଧ୍ୟାନ ଦେଉଥିଲା, ଜାଣୁଥିଲା ଯେ ଏପରି ଜଣକ ସହିତ ସପ୍ତାହକରୁ ବେଶି ସଂସାର କରି ରହିବା ଅସମ୍ଭବ । ମନରୁ ପାପ ଚିନ୍ତାକୁ ଦୂର କରି ସେ ସଂକଳ୍ପ କରୁଥିଲା ଯେ ମନ ଭିତରେ ଏପରି ମାନସିକ ପରକୀୟାକୁ ସେ ଆଉ ପ୍ରଶ୍ରୟ ଦେବନାହିଁ । ସୀମା ଏବଂ ଏକମାତ୍ର ସୀମା ହିଁ ତା'ର

ଜୀବନମରଣ, ଜନ୍ମଜନ୍ମାନ୍ତରର ସଙ୍ଗିନୀ । ସେ କ୍ଷମାଯାଚନା ଦୃଷ୍ଟିରେ ସୀମା ଆଡ଼କୁ ଅନାଉଥିଲା କାରଣ ସେ ଭୟ କରୁଥିଲା ଯେ ସୀମା ହୁଏତ ଏ ଭିତରେ ତା'ର ଦୁରାଗ୍ରହକୁ ଜାଣିନେଇ ପାରିଛି ।

ଏକଥା ଅବଶ୍ୟ ସତ ଯେ ରମାନାଥ ହିଁ ସୀମାକୁ ନିଜ ଜୀବନର ପ୍ରତ୍ୟେକଟି ଛୋଟ ବଡ଼ ଜିନିଷ ବିସ୍ତାରିତ ଭାବରେ କହୁଥିଲା । ଏହାର ଗୋଟିଏ କାରଣ ହୋଇପାରେ ଯେ ତା'ର ଆଉ କେହି ନିକଟବନ୍ଧୁ ନଥିଲେ । ରାସ୍ତାରେ ଅଫିସରେ ସହକର୍ମୀଙ୍କ ମେଳରେ ସାରାଦିନ ଯାହା ଯାହା ଘଟୁଥିଲା ତା'ର ଏକ ବିସ୍ତୃତ ଆଖିଦେଖା ବିବରଣୀ ସେ ଆଣି ପ୍ରତିଦିନ ସନ୍ଧ୍ୟାବେଳେ ଦେଉଥିଲା ସୀମାକୁ । ତା'ର ଅଧିକାଂଶ ବନ୍ଧୁଙ୍କୁ ଦେଖି ନଥିଲେ ମଧ୍ୟ ସୀମା ସେମାନଙ୍କ ବିଷୟରେ ପୂର୍ଣ୍ଣରୂପେ ଅବଗତ ଥିଲା । ଦିନେ ରମାନାଥ କହିଲା, ଷ୍ଟାଫ୍ ମିଟିଂରେ ମ୍ୟାନେଜର ସମସ୍ତଙ୍କୁ ଗାଳିମନ୍ଦ କରୁଥିଲେ ; ଆଜି ଯାହା ହେଉ ତାଙ୍କୁ କଡ଼ା କଡ଼ା ଜବାବ ମିଳିଗଲା । ସୀମା କହିଲା, ତମର କାହାରି ତ ସାହସ ନାହିଁ, ସେଇ ସୁବୋଧବାବୁ ହିଁ ତାଙ୍କୁ ଦିପଦ କହି ଦେଇଥିବେ । ଯଦିଓ ସୀମା ନା ମ୍ୟାନେଜର ନା ସୁବୋଧବାବୁଙ୍କୁ ଦେଖିଥିଲା, କଥାଟି ସତ ଥିଲା । ଆଉ ଥରେ ରମାନାଥ କେଉଁଠୁ କିଛି ନାହିଁ ଗୋଟିଏ ପୋଷ୍ଟକାର୍ଡ଼ ପାଇଲା : ମୋର ମଝିଆପୁଅ ଆଦିକନ୍ଦ ଇଣ୍ଟରଭିଉ ଦେବାକୁ ଯାଉଛି । ସେ ତୁମକୁ ଦେଖା କରିବ । ତୁମେ ତାହାକୁ ନିଶ୍ଚୟ ସାଧ୍ୟମତେ ସାହାଯ୍ୟ କରିବ । ମୁଁ ବର୍ତ୍ତମାନ ନିତାନ୍ତ ବ୍ୟସ୍ତରେ ଅଛି । ଇତି ତୁମର ବାଲ୍ୟବନ୍ଧୁ ବୁବୁନା । ଚିଠି ଉପରେ ଖାଲି ରଘୁନାଥପୁର ବୋଲି ଲେଖା ହୋଇଥିଲା । ଚିଠିଟିକୁ ଏପାଖ ସେପାଖ ଓଲଟାଇ ଯେତେ ଚେଷ୍ଟା କଲେ ବି କେହି ବୁବୁନା ତା'ର ମନେପଡ଼ିଲେ ନାହିଁ । ସୀମା କିନ୍ତୁ ମୁହୂର୍ତ୍ତରେ ସମସ୍ୟାର ସମାଧାନ କରିଦେଲା, ଏ ନିଶ୍ଚେ ତମର ସେଇ ଚୈତନ୍ୟବାବୁ । ତମେ ଯୋଉ କହୁଥିଲ ଚାକିରି ଛାଡ଼ିଦେଇ ଗାଁରେ ରହୁଛନ୍ତି ବୋଲି, ଏ ତାଙ୍କରି ପୁଅ ହୋଇଥିବ । ଏଭଳି କଥା ହୁଏତ ବହୁଦିନ ତଳେ ରମାନାଥ ତାକୁ କହିଥିବ, କାରଣ ତା'ର ବର୍ତ୍ତମାନ ଆଦୌ ମନେପଡୁନଥିଲା ଏ ବୁବୁନା ଓରଫ ଚୈତନ୍ୟବାବୁ କେବେ କେଉଁଠି ତା'ର ବାଲ୍ୟବନ୍ଧୁ ଥିଲେ । ଏକଥା ନ ଉଠାଇ ସେ କହିଲା, ତମେ କେମିତି ଜାଣିଲ ତାଙ୍କ ନାଁ ବୁବୁନା ବୋଲି ? ସୀମା କହିଲା, ଚାରି ପାଞ୍ଚବର୍ଷ ତଳେ ଆଉ ଗୋଟିଏ ଟୋକା ଦେଖା କରିବାକୁ ଆସିଥିଲା ମକରନ୍ଦ ବୋଲି, ଇଏ ନିଶ୍ଚେ ତା'ର ଛୋଟ ଭାଇ ।

ସେଦିନ ସକାଳେ ଅଫିସ ଯିବ ବୋଲି ସେ ଘର ବାରଣ୍ଡାରେ ପାଦ ଦେଇଛି, ସୀମା ଆସି ତା ଆଗରେ ଠିଆ ହେଲା, କହିଲା, ମୁଁ କହି ଦଉଚି, ତମେ କେବେହେଲେ ଆଜି ତମ ମ୍ୟାନେଜରଙ୍କ ପାଖକୁ ଯିବ ନାହିଁ । ରମାନାଥ ଚମକି ପଡ଼ିଲା ଏକଥା ଶୁଣି । ଦି'ଦିନ ତଳେ ମ୍ୟାନେଜରଙ୍କ ସାଙ୍ଗରେ ତା'ର ଉଚ୍ଚବାଚ୍ୟ ହୋଇଯାଇଥିଲା,

କିନ୍ତୁ ଏକଥା ସେ ସୀମାକୁ କହି ନଥିଲା । ପୂର୍ବଦିନ ଅନେକ ଭାବିଚିନ୍ତି ସେ ଠିକ୍ କରି ରଖିଥିଲା ଯେ ଆଜି ଯେମିତି ହେଉ ସେ ମ୍ୟାନେଜରଙ୍କୁ ଯାଇ ସିଧାସଳଖ ଶୁଣାଇଦେଇ ଆସିବ । ଅତି ସତର୍କତାର ସହିତ ନିଜର ଏହି ସିଦ୍ଧାନ୍ତଟିକୁ ସେ ସୀମା ପାଖରୁ ଗୋପନ ରଖିଥିଲା, କିନ୍ତୁ କିଛି ଫଳ ହେଲାନାହିଁ । ଅବଶ୍ୟ ସେ ଆଉ ମ୍ୟାନେଜରଙ୍କ ପାଖକୁ ଗଲା ନାହିଁ, କିନ୍ତୁ ସେଦିନ ଖରାବେଳେ ତା'ର ପାଖ କୋଠରିରେ ବସୁଥିବା ଭଦ୍ରବ୍ୟକ୍ତିଙ୍କ ପାଖକୁ ଗଲା । ବିହାରୀଲାଲବାବୁ ଶାନ୍ତଶିଷ୍ଟ ଗମ୍ଭୀର ପ୍ରକୃତିର ଏବଂ ପାଠୁଆ ଲୋକ ବୋଲି ଜଣାଶୁଣା ଥିଲେ । କିଛି ଭଲମନ୍ଦ ହେଲେ ରମାନାଥ ତାଙ୍କରି ପାଖକୁ ହିଁ ଯାଉଥିଲା, କାରଣ ଅନ୍ୟମାନେ ସବୁ ବିଷୟକୁ ଛୋଟକଥା ବୋଲି କହି ଉଡ଼ାଇ ଦେଉଥିବା ବେଳେ ବିହାରୀଲାଲ ଧୈର୍ଯ୍ୟ ଧରି ସବୁକଥା ଶୁଣୁଥିଲେ ଏବଂ ସୁଚିନ୍ତିତ ଉପଦେଶ ଦେଉଥିଲେ । ରମାନାଥ ତାଙ୍କୁ ସେଦିନର ଘଟଣା କହିବାରୁ ବିହାରୀଲାଲ କହିଲେ, ଆପଣ ତ ମ୍ୟାନେଜରଙ୍କୁ ଭଲଭାବରେ ଜାଣିଛନ୍ତି । ଦି'ଦିନ ପରେ ପୁଣି...। ରମାନାଥ କହିଲା, ନା ମୁଁ ମ୍ୟାନେଜରଙ୍କ କଥାରେ ବ୍ୟସ୍ତ ନାହିଁ ତାଙ୍କ ସାଙ୍ଗରେ ତ ଏମିତି ଲାଗି ରହିଥିବ । ମୁଁ ଜାଣିବାକୁ ଚାହୁଁଚି ମୋ ସ୍ତ୍ରୀ କେମିତି ଏ କଥା ଜାଣିପାରିଲେ ।

ଓଃ, ଆପଣ ସେକଥା ପଚାରୁଛନ୍ତି ? ଅନେକଦିନ ଏକାଠି ରହିବା ପରେ ସ୍ୱାମୀ ସ୍ତ୍ରୀ ପରସ୍ପର ବିଷୟରେ ଏତେ କଥା ଜାଣିପାରନ୍ତି ଯେ ସବୁ କଥା ମୁହଁରେ ଖୋଲି କହିବା ଆବଶ୍ୟକ ହୁଏ ନାହିଁ । ସତେ ଯେମିତି ଦି'ଜଣଙ୍କର ଦେହମନ ଏକା ହୋଇଯାଇଛି । କେତେ ଜାଗାରେ ଏପରି ମଧ ଦେଖାଯାଇଛି ଯେ ସ୍ୱାମୀ-ସ୍ତ୍ରୀ ଶେଷବେଳକୁ ଏକାଭଳି ଦିଶୁଛନ୍ତି ।

ଏକଥା କେମିତି ସମ୍ଭବ, ପଚାରିଲା ରମାନାଥ । ବିହାରୀଲାଲ କହିଲେ, ଆପଣଙ୍କ ଗଳିମୁଣ୍ଡରେ ଯୋଉ ମହାନ୍ତିବାବୁ ରହୁଛନ୍ତି, ଆପଣ ତାଙ୍କୁ କେତେବର୍ଷ ହେଲା ଜାଣନ୍ତି ?

ସତେ ତ ! ବୁଢ଼ାବୁଢ଼ୀ ଆଜିକାଲି ଭାଇଭଉଣୀ ଭଳି ଦିଶୁଛନ୍ତି । ଆଗେ ମହାନ୍ତିବାବୁ ରୋଗା ପତଳା ଥିଲେ, ତାଙ୍କ ସ୍ତ୍ରୀ ମୋଟୀ । ମହାନ୍ତିବାବୁଙ୍କ ଦେହରେ ମାଉଁସ ଲାଗି ଆଉ ତାଙ୍କ ସ୍ତ୍ରୀ ପତଳା ହୋଇ ଦେଖିବାକୁ ସମାନ ହୋଇଗଲେଣି । ତା ଛଡ଼ା ଦୁହେଁ ଆଜିକାଲି ପରସ୍ପରର କଥାବାର୍ତ୍ତା ଭାବଭଙ୍ଗୀକୁ ଅନୁକରଣ କରି କରି ଏକା ଭଳି ବ୍ୟବହାର କରୁଛନ୍ତି । ଦୁହେଁ ବର୍ତ୍ତମାନ ଏକ ମନ ଏକାଭଳି ଶରୀର । ଠିକ୍ କଥା କହୁଥିଲେ ବିହାରୀଲାଲ । ଭାଗ୍ୟରେ ଥିଲେ ରମାନାଥ ଓ ସୀମା ବି ଏଇ ମହାନ୍ତି ଦମ୍ପତିଙ୍କ ଭଳି ହୋଇଯିବେ ଦିନେ ।

କିନ୍ତୁ ସେ ସୌଭାଗ୍ୟ ହେଲା ନାହିଁ । ମାତ୍ର ଅଣଚାଶ ବର୍ଷ ବୟସରେ ସୀମା

ତାକୁ ଛାଡ଼ି ଚାଲିଗଲା । ରମାନାଥର ମନେହେଲା ଯେ ସୀମା ସବୁବେଳେ ଏକଥା ଜାଣିଥିଲା ଏବଂ କଥାଟିକୁ ତା ପାଖରୁ ଗୋପନ ରଖିଥିଲା । ଆଉ ସବୁକଥା ଜାଣିପାରୁଥିବାବେଳେ ସୀମାର ସବୁଠାରୁ ଏଇ ମୂଲ୍ୟବାନ କଥାର କୌଣସି ସୂଚନା ପାଇ ନଥିଲା ରମାନାଥ । ପରେ କିନ୍ତୁ ଅନେକ ଛୋଟ ଛୋଟ ଘଟଣା ମନେପଡ଼ି ରମାନାଥର ଆଉ କୌଣସି ସନ୍ଦେହ ନଥିଲା ସୀମାର ଅନ୍ତର୍ଦ୍ଧାନ ବିଷୟରେ । ମରିବା ଆଗରୁ ସବୁକିଛି ସୁବିନ୍ୟସ୍ତ କରି ରଖିଯାଇଥିଲା ସୀମା । ଯଦିଓ ତା'ର ମୃତ୍ୟୁ ଅପ୍ରତ୍ୟାଶିତ ଥିଲା, କୌଣସି ଜିନିଷ ସେ ଅଧା ଛାଡ଼ି ଯାଇନଥିଲା । ତା'ର ନିଜର ଜିନିଷପତ୍ର, ପୁଅର ବିବାହ, କାହାକୁ କ'ଣ ଦେବାର ଅଛି, କାହାଠାରୁ କ'ଣ ପାଇବାର ଅଛି ଛୋଟ ବଡ଼ ସବୁ କଥାର ବ୍ୟବସ୍ଥା ଓ ସମାଧାନ କରି ଯାଇଥିଲା ସେ । ରମାନାଥକୁ କୌଣସି ଚିନ୍ତା କରିବାକୁ ହୋଇନଥିଲା ଘର ଚଳାଇବା ପାଇଁ ସୀମାର ଅବର୍ତ୍ତମାନରେ ।

ରମାନାଥର ମନେପଡ଼ିଲା ଥରେ ହଠାତ କୋଉ କଥାରୁ ସୀମା କହିଲା, ଆମେମାନେ କେବେ ବିଧବା ହେବୁନାହିଁ । ସେ ଏକଥା ଏତେ ଗର୍ବ ଓ ଆତ୍ମବିଶ୍ୱାସର ସହିତ କହିଲା ଯେ ରମାନାଥ ବିଚଳିତ ହୋଇଗଲା । କ'ଣ ହୋଇପାରେ ଏ କଥାର ଅର୍ଥ ? ସେ ଭୟରେ ଭୟରେ ପଚାରିଲା, ତା'ମାନେ ? ସୀମା କହିଲା, ତା ମାନେ ହେଲା ଯେ ମୁଁ ତମ କୋଳରେ ମୁଣ୍ଡ ରଖି ମରିଯିବି ସୁଭଗା ସୀମନ୍ତିନୀ ହୋଇ । ରମାନାଥ ଏ କଥା ଭୁଲିଯାଇଥିଲା, କିନ୍ତୁ ବିପ୍ରାତଟି ଘଟିଲା ଠିକ୍ ସୀମା କହିଥିବା ଭଳି । କେବେ ଦିନେହେଲେ ବେମାର ପଡ଼ି ନଥିବା ସୀମାକୁ ପ୍ରବଳ ଜ୍ୱର ହୋଇ ତାକୁ ହସ୍‌ପିଟାଲ ନେବାକୁ ହେଲା । ସେଠାରେ ମଧ୍ୟ ତା'ର ଅବସ୍ଥାର କୌଣସି ପରିବର୍ତ୍ତନ ହେଲା ନାହିଁ । ଅନେକ ପ୍ରକାର ପରୀକ୍ଷା କରିବା ପରେ ବି ଡାକ୍ତର କହିପାରିଲେ ନାହିଁ ତା'ର କି ବେମାର ହୋଇଛି । ଯାହାହେଉ, ଜ୍ୱର ନ କମିବା ସତ୍ତ୍ୱେ ବି ସୀମା ସବୁବେଳେ ନିଜକୁ ଖୁସି ରଖୁଥିଲା ଏବଂ ରମାନାଥ ବ୍ୟତିବ୍ୟସ୍ତ ହେଲେ ତାକୁ ବରଂ ଆଶ୍ୱାସନା ଦେଉଥିଲା । ହସପିଟାଲ ବିଛଣାରେ ପଡ଼ିରହି ସୀମା ଘରର ସବୁ ଖବର ଅନ୍ତର ନେଉଥିଲା । ରମାନାଥ ଅଫିସରୁ ଛୁଟିନେଇ ଅଧିକାଂଶ ସମୟ ତା ପାଖରେ ରହୁଥିଲା, କିନ୍ତୁ ସେ ଯେତେବେଳେ ପୁଅକୁ ଆସିବାକୁ ଖବର ଦେବାକଥା କହିଲା, ସୀମା ମନା କଲା । କହିଲା, ତାକୁ କାହିଁକି ହଇରାଣ କରୁଛ ? ସେ କାହିଁକି ଚାକିରିରୁ ଛୁଟି ନେଇ ଏତେଦୂର ଆସିବ ଏତେ ଟଙ୍କା ଖର୍ଚ୍ଚକରି ?

ଦିନସାରା ଏପାଖ ସେପାଖ ହୋଇ ରମାନାଥ କ୍ଲାନ୍ତ ହୋଇ ଶୋଇଯାଇଥିଲା ଖଟ ପାଖରେ ପଡ଼ିଥିବା ଚଉକି ଉପରେ । କେତେ ରାତି ହେବ, ଔଷଧ ଦେବାକୁ ଆସି ନର୍ସ ଆଲୁଅ ଜଳାଇବାରୁ ତା'ର ନିଦ ଭାଙ୍ଗିଗଲା । ରମାନାଥ ଆଖି ଖୋଲି ଦେଖିଲା ବାହାରେ ବର୍ଷା ହେଉଛି । ସୀମା ଖଟ ଉପରେ ଅତି ଅନିୟମିତ ଭାବେ ନିଃଶ୍ୱାସ

ନେଉଥିଲା ସେତେବେଳକୁ । ନର୍ସ ଯାଇ ସୀମାର କପାଳରେ ହାତ ଦେଇ ଦେଖିଲା, ରମାନାଥକୁ କହିଲା, ଆପଣ ଟିକିଏ ତାଙ୍କୁ ଧରି ନିଅନ୍ତୁ, ଔଷଧ ଦେଇଦେବା । ରମାନାଥ ଚଉକିରୁ ଉଠି ସୀମା ପାଖକୁ ଗଲା ; ଖଟ ଉପରେ ବସି ତା'ର ମୁଣ୍ଡକୁ ଉଠାଇ କୋଳରେ ରଖିଲା । ନର୍ସ ଯେତେବେଳେ ଔଷଧ ଖୁଆଇବା ପାଇଁ ସୀମା ମୁହଁରେ ପାଣି ଗ୍ଲାସ୍ ଦେଲା, ସୀମା ପାଟିରୁ ହିକ୍କା ଉଠିଲା । ଗ୍ଲାସ୍‌କୁ ରଖିଦେଇ ନର୍ସ ବାହାରକୁ ଦଉଡ଼ିଗଲା ଡାକ୍ତରଙ୍କୁ ଡାକିବା ପାଇଁ । କ'ଣ କରିବ ଜାଣିନପାରି ରମାନାଥ ସୀମାର ମଥାକୁ କୋଳରେ ଆହୁରି ଯତ୍ନରେ ରଖି ଝରକା ବାହାରକୁ ଅନାଇଲା । ବର୍ଷାର ଗତି ବଢ଼ିଯାଇଥିଲା ଓ ଘର ଭିତରକୁ ଥଣ୍ଡା ପବନର ଏକ ଝଲକା ଆସିଲା । ହାତଘଡ଼ିକୁ ଅନାଇ ରମାନାଥ ଦେଖିଲା ରାତି ଠିକ୍ ଦୁଇଟା ।

ଏଇ ରାତି ଦୁଇଟା ବିଷୟରେ ବି ସୀମା କେବେ କ'ଣ କହିଥିଲା ରମାନାଥକୁ, କିନ୍ତୁ ସେକଥା ଆଉ ଠିକ୍ ଭାବରେ ମନେ ନଥିଲା ତା'ର । ହୁଏତ ତାକୁ ସେ କହିଥିଲା ତା'ର ମୃତ୍ୟୁ ହେବ ଠିକ୍ ଏଇ ସମୟରେ । ସୀମା ମରିଯିବା ପରେ ତା'ର ଅଭାବକୁ ମାନିନେବା ପାଇଁ ଅନେକ ଦିନ ଲାଗିଯାଇଥିଲା ରମାନାଥକୁ । ପ୍ରଥମେ ତା'ର ମନେ ହୋଇଥିଲା ସୀମା ବିନା ବଞ୍ଚି ରହି ଲାଭ କ'ଣ ? ସବୁବେଳେ ତା'ର ମନେପଡୁଥିଲା ସୀମା କଥା, ଜୀବନର ଛୋଟ ଛୋଟ ଘଟଣା, କେତେବେଳେ ତାକୁ ସେ କ'ଣ କହିଥିଲା, କେତେବେଳେ ସେମାନେ କ'ଣ କରିଥିଲେ । କ୍ରମେ କ୍ରମେ ସୀମାର ଅବର୍ତ୍ତମାନ ବି ଅଭ୍ୟାସରେ ପଡ଼ିଗଲା । ନିତ୍ୟନୈମିତ୍ତିକ ଜୀବନ ବେଷ୍ଟିତ କରିଦେଲା ତାକୁ ।

ଚାକିରିରୁ ଅବସର ନେବା ପରେ ହାତରେ ଯେତେବେଳେ ଆଉ କିଛି କାମ ରହିଲା ନାହିଁ, ସୀମା ପୁଣି ଆସି ଅଧିକାର କରିନେଲା ରମାନାଥର ଖାଲି ସମୟ ସବୁକୁ । ସୀମା ଯେମିତି ତାକୁ କହୁଥିଲା, ଏତେଦିନ ମତେ ଫାଙ୍କିଦେଇ ରହିଲ, ଏବେ କିନ୍ତୁ ଯିବ କୁଆଡ଼େ ? କିମ୍ବା ସେ କେତେବେଳେ ଯଦି ଡାକ୍ତର ମନା କରିଥିବା କିଛି ଖାଇବାକୁ ଯାଉଥିଲା, ସୀମା କହୁଥିଲା, ଖବରଦାର ! ସେଥିରେ ଯେମିତି ହାତ ନଦିଅ । ଆଜିକାଲି ରମାନାଥକୁ ଠିକ୍‌ରେ ନିଦ ହେଉ ନଥିଲା, ଅଧରାତିରେ ବାରମ୍ବାର ନିଦ ଭାଙ୍ଗି ଆଉ ନିଦ ହେଉନଥିଲା ତା'ର । ଦିନେ ରାତିରେ ନିଦ ଭାଙ୍ଗିଯିବାରୁ ସେ ଉଠି ଦେଖିଲା ଯେ ବାହାରେ ଭୀଷଣ ବର୍ଷା ହେଉଥିଲା । ସେ ଯାଇ ଝରକା ବନ୍ଦ କରିଦେଲା, ପୁଣି ଶୋଇବାକୁ ଯିବା ଆଗରୁ ଘଣ୍ଟାରେ ଦେଖିଲା ଯେ ଦୁଇଟା ବାଜିଥିଲା । ଭୟର ଏକ ଶୀତଳ ଲହରୀ ଆସି ସଞ୍ଚରିଗଲା ତା ସାରା ଦେହର ଅସ୍ଥି ପଞ୍ଜରା ଶିରା ଉପଶିରା ଦେଇ ।

ରମାନାଥ ଠିକ୍ କଲା ଯେ ସେ ଏଥରକ ସୀମାର ଲୁଗାପଟା ଶାଢ଼ି ସବୁ ଆଉ କାହାକୁ ଦେଇଦେବ । ଏ ପର୍ଯ୍ୟନ୍ତ ସେ ସୀମାର ଜିନିଷରେ ହାତ ଦେଇ ନଥିଲା । ତା

ମନ ଭିତରେ ହୁଏତ ଏଭଳି ଏକ ଅସଂଗତ ଭାବ ଥିଲା ଯେ ସୀମା ହଠାତ ଦିନେ ଘରକୁ ଫେରିଆସି ଏସବୁ ପୁଣି ବ୍ୟବହାର କରିବ । ସମୟ ବିତିବା ସହିତ ରମାନାଥ ଏକଥା ସହିତ ମଧ୍ୟ ଚୁକ୍ତି କରିନେଲା ଏବଂ ଆଲମାରି ଖୋଲି ସୀମାର ଜିନିଷ ଓଲଟାଇଲା । ତା'ର ଆଉସବୁ କାମ ଭଳି ଆଲମାରି ଭିତରେ ସୀମାର ଲୁଗାପଟା ଅତି ସୁବ୍ୟବସ୍ଥିତ ହୋଇ ରହିଥିଲା । ତାକୁ ଖେଳାଇ ଦେଖିବାବେଳେ ରମାନାଥର ମନ ଭିତରେ ପୁଣି ପୁରୁଣା କଥା ସବୁ ଆସି ଅସ୍ତବ୍ୟସ୍ତ କରିବାରେ ଲାଗିଲେ । ନିଜ ମନକୁ ଦୃଢ଼ କରି ସେ ଗୋଟାଏ ଥାକ ଶାଢ଼ିକୁ ବାହାର କରି ଆଣିବାବେଳେ ତା ଭିତରୁ ଗୋଟିଏ ଲଫାପା ତଳେ ଖସି ପଡ଼ିଲା ।

ଲଫାପା ଉପରେ କାହାରି ନାଁ ଲେଖା ନଥିଲା ଏବଂ ସେଇଟି ବନ୍ଦ ଥିଲା । ତାକୁ ହାତରେ ଧରି କିଛିକ୍ଷଣ ବସି ରହିଲା ରମାନାଥ । କୌଣସି ଅଦରକାରୀ କାଗଜ ଚିଠିପତ୍ରକୁ ରଖୁନଥିଲା ସୀମା । ମରିବାର କିଛି ଦିନ ପୂର୍ବରୁ ସେ ତା'ର ପୁରୁଣା କାଗଜପତ୍ର ଖୋଲି ସବୁ ଚିରି ନଷ୍ଟ କରିଦେଇଥିଲା । ଏଇ ଲଫାପାଟି ରହିଯିବାର ଅର୍ଥ ସୀମା ହୁଏତ ଏଇଟିକି ଭୁଲି ଯାଇଛି, ନହେଲେ ଏଇଟିକୁ ଚିରି ଫିଙ୍ଗିଦେବାକୁ ଚାହିଁ ନାହିଁ । ଲଫାପାଟି ରମାନାଥକୁ ଅନେକ ଚିନ୍ତାରେ ପକାଇଦେଲା । ଥରେ ତା'ର ମନେହେଲା ଯେ ଏଇଟିକୁ ଖୋଲିବାର ତା'ର କୌଣସି ଅଧିକାର ନାହିଁ, ବିଶେଷରେ ସୀମା ଯେତେବେଳେ ତାକୁ ଜାଣିଶୁଣି ବନ୍ଦ କରି ରଖିଛି । କିନ୍ତୁ ଶେଷରେ ତା'ର କୌତୂହଳର ଜୟ ହେଲା ଏବଂ ସେ ଛୁରିରେ କାଟି ଲଫାପାଟିକୁ ଖୋଲିଲା । ଲଫାପାରେ ତିନୋଟି ଫଟୋ ଥିଲା ଏବଂ ଗୋଟିଏ ଛୋଟ ନୀଳରଙ୍ଗର କାଗଜ ଥିଲା । କାଗଜଟିରେ ମାତ୍ର ଦୁଇଧାଡ଼ିର ଲେଖା ଥିଲା : ମୁଁ ଗୁରୁବାର ସାଢ଼େ ତିନିଟା ନୁହେଁ, ଚାରିଟାବେଳେ ଆସିବି, ସେଇ ଜାଗାକୁ । ଏହାପରେ ତିନିଟି ଛକଚିହ୍ନ ଦିଆଯାଇ ତା ପାଖରେ କେବଳ 'ସୁ' ବୋଲି ଲେଖାଯାଇଥିଲା । ଏଇଟି ପଢ଼ିବା ପରେ ତା ଛାତି ଭିତରେ ଯେଉଁ ଆବେଗ ଆସୁଥିଲା ତାକୁ ସମ୍ବରଣ କରି ରମାନାଥ ଫଟୋଗୁଡ଼ିକୁ ଦେଖିଲା । ଏଇ କଳା ଧଳା ପ୍ରତିଟି ଫଟୋରେ ପାଞ୍ଚଜଣ ଝିଅ ଥିଲେ ସୀମାକୁ ମିଶାଇ । ସମସ୍ତଙ୍କ ବୟସ କୋଡ଼ିଏ ବାଇଶି ଭଳି ଥିଲା ଏବଂ ସମସ୍ତେ ଏକା ଭଳି ଶାଢ଼ି ପିନ୍ଧିଥିଲେ । ଗୋଟିଏ ଫଟୋରେ ପାଞ୍ଚଜଣଯାକ କ୍ୟାମେରା ଆଡ଼କୁ ଅନାଇ ହସୁଥିଲେ । ଆଉ ଗୋଟିଏ ଫଟୋରେ ସେମାନେ ବୃତ୍ତାକାରରେ ବସିଥିଲେ ପ୍ରତ୍ୟେକ ବାହାର ଆଡ଼କୁ ଅନାଇ । ତୃତୀୟଟିରେ ସେମାନେ ହାତ ଧରାଧରି ହୋଇ ମଝିରେ ରଖା ହୋଇଥିବା କୌଣସି ଜିନିଷ ଆଡ଼କୁ ଅନାଇଥିଲେ ; ଫଟୋରେ କିନ୍ତୁ ଜିନିଷଟି ଠିକ୍ ଭାବରେ ଦେଖାଯାଉ ନଥିଲା ।

ଲୁଗାପଟାକୁ ଅଲଗା ରଖିବା କାମ ଛାଡ଼ିଦେଇ ରମାନାଥ ଉଠି ଠିଆହେଲା ।

ଆଲମାରି ବନ୍ଦ କରି ସେ ଲଫାପାଟିକୁ ଧରି ନିଜ ଟେବୁଲ ପାଖକୁ ଆସିଲା ଏବଂ ପୁଣି ଥରେ ନୀଳ କାଗଜଟିର ଟୁକୁଡ଼ାଟିରେ ଧ୍ୟାନ ଦେଲା । ଗୋଲ ଗୋଲ ଅକ୍ଷରରେ ଲେଖା । ଏ ଅକ୍ଷର ଝିଅର ହୋଇପାରେ, ପୁଅର ବି । ନୀଳ କାଗଜର ପ୍ୟାଡ୍‌ଟି ନିଶ୍ଚୟ କେହି ସଉକ କରି କିଣିଥିବ ; କିନ୍ତୁ ପ୍ରେମପତ୍ର ଲେଖିବାକୁ ନଥିଲେ କିଏ କାହିଁକି କିଣିବ ଏଭଳି କାଗଜ ? ଅବଶ୍ୟ କଲେଜ ପଢୁଆ ଝିଅମାନେ ସେ ସମୟରେ ସାଙ୍ଗମାନଙ୍କ ପାଖକୁ ମଧ୍ୟ ଏଭଳି କାଗଜରେ ଚିଠି ଲେଖିଥା'ନ୍ତି । ରମାନାଥ ଏଥରକ କାଗଜଟିର ନୀଳବର୍ଣ୍ଣର ଘନତ୍ୱକୁ ପ୍ରଣିଧାନ କଲା । ଗାଢ଼ ନୀଳରଙ୍ଗ ହୋଇଥିଲେ ସେ ତାକୁ ଅପରିଣତ ବୟସର ଅନଭ୍ୟସ୍ତ ପସନ୍ଦ ବୋଲି ଭାବିଥାନ୍ତା । କିନ୍ତୁ ଏଇଟି ଥିଲା ହାଲୁକା ଉଜ୍ଜ୍ୱଳ ନୀଳ ଯାହା ଆଦର ଓ ଅନୁରାଗର ରଙ୍ଗ । ଛୋଟ କାଗଜ ଟୁକୁଡ଼ାରୁ ହିଁ ଉକୁଟି ଆସୁଥିଲା ଏକ ଅପ୍ରତିହତ ଅନୁଭବର ପଲ୍ଲବିତ ସନ୍ଦେଶ । ରମାନାଥର ଆଖି ଚାଲିଗଲା ଫଟୋ ଆଡ଼କୁ । ସୀମା ଅଦ୍ଭୁତ ସୁନ୍ଦର ଦେଖାଯାଉଥିଲା ଫଟୋରେ ; ତା'ର ସବୁ ବାନ୍ଧବୀମାନଙ୍କ ଭିତରୁ ବାରି ହୋଇଯାଉଥିଲା ସେ । ବାହା ହେଲାବେଳେ ଠିକ୍ ଏଇଭଳି ଦିଶୁଥିଲା ସୀମା । ସୀମାର ସେତେବେଳର ଫଟୋମାନଙ୍କର ଅଲଗା ଆଲବମ ଥିଲା । ରମାନାଥ ଠିକ୍ କଲା ଏ ତିନୋଟି ଫଟୋକୁ ସେଇ ଆଲବମରେ ଲଗାଇଦେବ ।

ଦି'ଧାଡ଼ିର ଚିଠିଟି କିନ୍ତୁ ତାକୁ ଚିନ୍ତିତ କରି ରଖିଲା । କିଏ ହୋଇପାରେ ଏ ସୁ ଜଣକ ? ଯେ କୁ ନୁହେଁ ? ସୁଜାତା ସୁନୀତା ସୁଖଦା ସୁମତି ସୁନନ୍ଦା ସୁଲତା ? ସୁଜଳା ଶୀତଳା ମଳୟଜା ଶୀତଳା ? କିମ୍ବା ହୋଇପାରେ ସୁବୋଧ ସୁନନ୍ଦ ସୁରେଶ ସୁବିମଳ ସୁଦର୍ଶନ । ସୁ ଅକ୍ଷରରେ ପୁରୁଷଙ୍କର ନାଁ ପାଇବା କଷ୍ଟ । ପୂରା ନାଁଟି ନ ଲେଖିବାର ଉଦ୍ଦେଶ୍ୟ କ'ଣ ? ଘନିଷ୍ଠତାର ଦାବି ନା ଅନୁସନ୍ଧାନୀ ଆଖିକୁ ଏଡ଼ିଦେବାର ସହଜ ଉପାୟ ? ଯଦି ସେ ଏଇ କାଗଜର ଟୁକୁଡ଼ାଟିକୁ ସୀମାର ଅନ୍ୟ ଚିଠିପତ୍ର ଭିତରେ ଦେଖିଥା'ନ୍ତା, କିଛି ବି ଅସଙ୍ଗତ ଚିନ୍ତା ଉପୁଜି ନଥା'ନ୍ତା ତା ମନରେ । କିନ୍ତୁ ଲଫାପା ଭିତରେ ବନ୍ଦ ସଯତ୍ନରେ ସୁରକ୍ଷିତ ଏହି ସଂକ୍ଷିପ୍ତ ବାର୍ତ୍ତାଟି ତାକୁ ଅସମଞ୍ଜସରେ ପକାଇ ଦେଇଥିଲା । ଚିଠିଟି ନିଶ୍ଚୟ ସୀମାକୁ ହିଁ ଉଦ୍ଦିଷ୍ଟ ଥିଲା । ଯଦି ଏଇଟି ଅନେକଦିନ ତଳର ଲେଖା, ସୀମା ଏଇଟିକୁ ଆଜି ପର୍ଯ୍ୟନ୍ତ ରଖିଥିଲା କାହିଁକି ! କାଗଜଟିକୁ ଧରି ରମାନାଥ ତା'ର ବୟସ ନିରୂପଣ କରିବାକୁ ଚେଷ୍ଟା କଲା । ଭଲ କାଗଜ ହୋଇଥିବାରୁ ନୂଆଭଳି ଥିଲା, ଦେଖିଲେ ହୁଏତ କେହି ମନେ କରିବ ଏଇମାତ୍ର ଚିଠିଟି ଲେଖା ହୋଇଛି । ଏକଥା ତେବେ କ'ଣ ସମ୍ଭବ ସୀମା ପାଖକୁ ଏଇଟି କିଏ ଲେଖିଥିଲା ନିକଟ ଅତୀତରେ, ସୀମାର ପରିଣତ ବୟସରେ ? ପୁଅ ବଡ଼ ହୋଇ ଘରୁ ଚାଲିଯିବା ପରେ ସେ ଯେତେବେଳେ ଅଫିସକୁ ବାହାରି ଯାଉଥିଲା କ'ଣ କରୁଥିଲା ସୀମା ଏକା ଏକା ଘରେ ବସିରହି ଏତେ ସମୟ ? ତାଙ୍କ ଅଫିସ୍‌ର ସୁବୋଧର ଅନେକ ବଦନାମ ଥିଲା

ଝିଅମାନଙ୍କୁ ନେଇ । ସେ ନାଁଟି ମଧ୍ୟ ସୁ ରେ ଆରମ୍ଭ । ସୁବୋଧର ହସ୍ତାକ୍ଷର କିନ୍ତୁ ରମାନାଥର ମନେ ପଡ଼ିଲା ନାହିଁ ।

ଛି ଛି, ଏ କ'ଣ ସବୁ ଭାବୁଛି ସେ । ଏକଥା କ'ଣ ସମ୍ଭବ ନୁହେଁ ଯେ ସୀମାକୁ ତା'ର ସଙ୍ଗିନୀ କିଏ ଲେଖିଥିଲା ଶାଢ଼ି ଦୋକାନରେ ଭେଟିବା ପାଇଁ ? ସୀମାର ବାନ୍ଧବୀମାନଙ୍କର ନାଁ ମନେପକାଇବାକୁ ଚେଷ୍ଟା କଲା ରମାନାଥ, କିନ୍ତୁ ସୁ ଅକ୍ଷରରେ ତା'ର କେହି ମନେପଡ଼ିଲେ ନାହିଁ । ସାଢ଼େ ତିନିଟାରୁ ଚାରିଟା ମାନେ ରମାନାଥ ଅଫିସରେ ଥିବା ସମୟ । ସବୁଠାରୁ ନିରାପଦ ବେଳ ଏଇଟି । ଇଉରୋପରେ ଏଇ ସମୟର ପରକୀୟା ପ୍ରୀତିକୁ କହନ୍ତି ଲଭ ଇନ୍ ଦି ଆଫଟରନୁନ୍ । କିନ୍ତୁ କୌଣସି ଅଭବ୍ୟତା ତ ନଥିଲା ଚିଠିଟିରେ । ସିଧାସଳଖ ବାର୍ତ୍ତାଟିଏ ମାତ୍ର । ତେବେ ତିନୋଟି ଛକିର ଉଦ୍ଦେଶ୍ୟ କ'ଣ ? ତିନୋଟି ଆଗରୁ ସ୍ଥିର କରି ରଖିଥିବା ପ୍ରୀତି ସମ୍ଭାଷଣ, ନା ତିନୋଟି ଚୁମ୍ବନ ନା ତିନୋଟି ଆଉ କିଛି । ପୁଣି ରମାନାଥର ସନ୍ଦିଗ୍ଧ ମନ ଚାଲିଯାଉଛି କୁରୁଚିପୂର୍ଣ୍ଣ ନିର୍ଣ୍ଣୟ ଆଡ଼କୁ । ସେ ସୀମାକୁ ଦେଖୁଛି ବେଶଭୂଷା ହୋଇ ଶାଢ଼ି ଦୋକାନ ଆଗରେ ଠିଆହୋଇ କାହାକୁ ଅପେକ୍ଷା କରୁଥିବାର ମୁଦ୍ରାରେ ।

ରମାନାଥ ଠିକ୍ କଲା ଆଉ ସେ ଚିଠିଟି କଥା ଭାବିବ ନାହିଁ । ସେ ଖାଇପିଇ ଶୋଇବାକୁ ଗଲା, କିନ୍ତୁ ଆଖିକୁ ନିଦ ଆସିଲା ନାହିଁ । ତା ଆଖି ଆଗରେ ସେଇ ନୀଳ କାଗଜର ଅକ୍ଷରଗୁଡ଼ିକ ପରିବର୍ଦ୍ଧିତ ହୋଇ ଦେଖାଗଲେ । ଆହୁରି ଦୁଶ୍ଚିନ୍ତାମାନ ଆସିଲେ ମନ ଭିତରକୁ । ସେ ଥରେ ଚାରିଦିନ ଘର ଛାଡ଼ି ବାହାରକୁ ଯାଇଥିବାବେଳେ ସୀମା କ'ଣ ସବୁ ଦୁଷ୍କୃତି କରିଥାଇପାରେ, ତା'ର କାଳ୍ପନିକ ତାଲିକା କଲା ରମାନାଥ । ଅନେକଦିନ ତଳର ଅତି ନଗଣ୍ୟ ଘଟଣାମାନ ମନେପଡ଼ି ସୀମାର ଚରିତ୍ର ସଂହାରର ଉପାଦାନ ଯୋଗାଇଲେ ତାକୁ । ଥରେ ଅତିଥିମାନଙ୍କ ଗହଣରେ ବସିଥିବାବେଳେ ସୀମାର ଛାତି ଉପରୁ ଶାଢ଼ି ଖସି ଯାଇଥିଲା । ଥରେ ସେ ବାଧ୍ୟ କରି ସୀମାକୁ ଅଶ୍ଳୀଳ ଶବ୍ଦମାନ କୁହାଇଥିଲା ଏବଂ ପରେ ଯେତେବେଳେ ତାକୁ ପଚାରିଲା ଏସବୁ କୋଉଠୁ ଶିଖିଲା ବୋଲି, ସୀମା କେବଳ ହସି ଦେଇଥିଲା । ବିବାହର ପ୍ରଥମ ପ୍ରଥମ ଦିନମାନଙ୍କରେ ସେ ଯେତେବେଳେ ତାକୁ ପଚାରୁଥିଲା ସେ ଆଗରୁ କାହାକୁ ଭଲ ପାଇଛି କି ନାହିଁ ବୋଲି, କଥାର ସିଧାସଳଖ ଜବାବ ନଦେଇ ସୀମା କହୁଥିଲା, ଛି, ଏସବୁ ଖରାପ କଥା କେମିତି ମୁହଁରେ ଧରୁଛ ?

ଅନିଦ୍ରା ରାତିଟି କଟାଇ ସେ ସକାଳୁ ଭାବିଲା ବିହାରୀଲାଲ ବାବୁଙ୍କୁ ଯାଇ ଏକଥା ପଚାରିବ । କିନ୍ତୁ କ'ଣ ବୋଲି କହିବ ତାଙ୍କୁ ? ଚିଠିଟି ଦେଖାଇ ପଚାରିବ ମୋର ସ୍ୱର୍ଗତା ସ୍ତ୍ରୀଙ୍କର ପ୍ରେମିକ କିଏ ହୋଇପାରେ ବୋଲି ଭାବୁଛନ୍ତି ? କିମ୍ବା ପଚାରିବ, ଆପଣ ସୀମା ବିଷୟରେ କେବେ କୌଣସି ଅପବାଦ ଶୁଣିଛନ୍ତି କି ? ବିହାରୀଲାଲ

ଅତ୍ୟନ୍ତ ଭଦ୍ରଲୋକ । ଯଦିବା ସେ ଏ ବିଷୟରେ କିଛି ଜାଣିଥିବେ, ତାକୁ କହିବେ, ଆପଣ କ'ଣ ପାଗଳ ହୋଇଗଲେ ? ଦେବୀଭଳି ସ୍ତ୍ରୀଙ୍କ ବିଷୟରେ ଏପରି କଥା କହୁଛନ୍ତି । ନା, ବିହାରୀଲାଲଙ୍କ ପାଖକୁ ଯିବାର ପ୍ରଶ୍ନ ଉଠୁନାହିଁ । ସେ ଭାବିଲା ଯଦି ସୀମା କିଛି ସମୟ ପାଇଁ ଫେରିଆସନ୍ତା ତା ପାଖକୁ, ତାକୁ ହିଁ ସେ ପଚାରନ୍ତା ଏଇ ଚିଠିଟିର ରହସ୍ୟ । କିନ୍ତୁ ସତରେ ପଚାରି ପାରିଥା'ନ୍ତା କି ? କାହିଁକି ତାକୁ ସେ ସେତିକିବେଳେ ପଚାରି ପାରିନଥିଲା ସେ ଅଶ୍ଳୀଳ ଶବ୍ଦସବୁ କାହା ପାଖରୁ ଶିଖିଥିଲା ବୋଲି ? ହୁଏତ ସୀମା ତାକୁ ଏମିତି ଗୋଟିଏ ସହଜ ଉତ୍ତର ଦେଇଥା'ନ୍ତା ଯାହାକୁ ସେ ବିଶ୍ୱାସ କରିବାକୁ ବାଧ ହୋଇଥା'ନ୍ତା । ବରଂ ଏଇ ଛୋଟ କଥାଟି ପାଇଁ ତାକୁ ସନ୍ଦେହ ଚକ୍ଷୁରେ ଦେଖୁଥିବାରୁ ସୀମା ରମାନାଥର ମନ ଭିତରେ ଏକ ଦୋଷ କରିଥିବାର ଲାଞ୍ଛନା ଆଣି ଦେଇଥା'ନ୍ତା ।

ଦିନ ପରେ ଦିନ ରମାନାଥ ଏଇ ଚିନ୍ତାରେ ଜଡ଼ି ରହିଲା । ପ୍ରଥମେ ପ୍ରଥମେ ଅନ୍ତତଃ କେବେ କେବେ ସେ ମନେ କରୁଥିଲା ଯେ ଏଇଟି ସୀମା ପାଖକୁ ତା'ର କୌଣସି ବାନ୍ଧବୀର ଚପଳ ଚିଠିଟିଏ । କ୍ରମେ କ୍ରମେ ସେ ଆଉ ଏଭଳି ଭାବି ସୀମାକୁ ଦୋଷମୁକ୍ତ କଲା ନାହିଁ, ବରଂ ତା'ର ଅପରାଧ ବିଷୟରେ ନିଃସନ୍ଦେହ ହୋଇଗଲା । ସାରା ଜୀବନ ପ୍ରତାରିତ ହୋଇଥିବାର ଦୁଃଖ ଓ ଅପମାନରେ ତା'ର ମନ ଘାରି ରହିଲା ।

ଏପରି ମନସ୍ଥିତିରେ ଆଉ ଗୋଟିଏ ଘଟଣା ଘଟିଲା ଯେଉଁଥିରେ ତା'ର ମାନସିକ ଭାରସାମ୍ୟ ହରାଇବାର ଅବସ୍ଥା ଆସି ପହଞ୍ଚିଲା । ଦିନେ ସେ କୌଣସି ପତ୍ରିକାରେ ଆଧୁନିକା ଡାକିନୀମାନଙ୍କ ସମ୍ପ୍ରଦାୟ ବିଷୟରେ ଲେଖାଟିଏ ପଢିଲା । ଏଇ ଲେଖା ସହିତ ଗୋଟିଏ ଚିତ୍ର ଥିଲା ଯେଉଁଥିରେ କେତେଜଣ ଝିଅ ବୃତ୍ତାକାରରେ ବସି ଡାହାଣୀ ହେବାର ପ୍ରାଥମିକ ଦୀକ୍ଷା ନେଉଥିଲେ । ଏ ଚିତ୍ରଟିକୁ ଦେଖିବା ମାତ୍ରେ ରମାନାଥର ମନେପଡ଼ିଲା ସୀମାର ଶାଢ଼ିଥାକ ଲଫାପାରୁ ବାହାରିଥିବା ଫଟୋ କଥା । ତାକୁ ଆଣି ଅଭିଭୂତ ହୋଇ ରମାନାଥ ଦେଖିବାରେ ଲାଗିଲା ତିନୋଟି ଚିତ୍ରକୁ ।

ଫଟୋଗୁଡ଼ିକରୁ ଜଣାଯାଉଥିଲା କୌଣସି ନିର୍ଜନ ଜାଗାରେ ଉଠାଯାଇଥିଲା କାରଣ ସେଥିରେ ଘାସ ପଡ଼ିଆ ଲଂଘି ଦୂରରେ ଜଙ୍ଗଲ ଦେଖାଯାଉଥିଲା । କୌଣସି ପିକନିକ କରିବା ଜାଗା ସମ୍ଭବତଃ । ଏଭଳି ଜାଗାକୁ ପାଞ୍ଚଟି ଝିଅ ଏକା ଯାଇଥିବେ କାହିଁକି ? ସେ ହଠାତ ହୃଦୟଙ୍ଗମ କଲା ଯେ ଏମାନଙ୍କ ବ୍ୟତୀତ ଆଉଜଣେ ବି ନିଶ୍ଚୟ ଥିବ ସେଠାରେ, ଫଟୋ ଉଠାଇବା ଲୋକ । ଏ ପାଞ୍ଚଜଣ କ'ଣ କୌଣସି ଗୁପ୍ତ ଗୋଷ୍ଠୀର ସଭ୍ୟା ଏବଂ ଏଇ ଅବସରଟି ଥିଲା ସେମାନଙ୍କର ଗୋପନୀୟ ଦୀକ୍ଷା ନେବାର ଶୁଭ ମୁହୂର୍ତ୍ତ ? କେଉଁ ତାନ୍ତ୍ରିକ ବିନ୍ୟାସର କେଉଁ ଶକ୍ତି ଚିହ୍ନକୁ ଘେରି ବସିଥିଲେ ସେମାନେ ? କିଭଳି ଦୈବୀ ମହିମାରେ ସେମାନଙ୍କୁ ମଣ୍ଡିତ କରିଥିଲା କେଉଁ ମାୟାବିନୀ ମନ୍ତ୍ରଟି ? ରମାନାଥର ମନେପଡ଼ିଲା ସୀମା ତାକୁ ଚମତ୍କୃତ କରି ଦେଇଥିବାର ଅନେକ ଆଧିଦୈବିକ

ଘଟଣା ଯାହା ସାଧାରଣ ମଣିଷ ପକ୍ଷରେ ସମ୍ଭବ ନୁହେଁ । ତା'ର ମନକଥା ସବୁବେଳେ ଠିକ୍ ଧରିପାରୁଥିଲା ସୀମା । ସେ ତା ପାଖକୁ ଯିବା ପୂର୍ବରୁ ସୀମା ଯେପରି ତା'ର ଉପସ୍ଥିତିକୁ ଉପଲବ୍ଧ କରି ତା'ର ଅପେକ୍ଷାରେ ରହୁଥିଲା । ନିଜର ଆସନ୍ନମୃତ୍ୟୁର ସଠିକ ସମୟ ମଧ୍ୟ ଜାଣି ରଖିଥିଲା ସୀମା । ସୀମାର ପ୍ରତିଟି ବ୍ୟବହାର ବର୍ତ୍ତମାନ ସନ୍ଦେହଜନକ ଜଣାଗଲା ରମାନାଥକୁ । ବସିବା ଘରେ ସୀମା କାହାରି ସହିତ ଚୁପଚୁପ କଥା କହିବା କୌଣସି ଗୁପ୍ତମନ୍ତ୍ରର ବିନିମୟ ଥିଲା ହୁଏତ । କେବେ କେବେ ସୀମା ତା'ର ଯେଉଁ ବାନ୍ଧବୀମାନଙ୍କ ଘରକୁ ଯାଉଥିଲା, ସେମାନେ ହୁଏତ ଥିଲେ ତା'ର ଡାକିନୀ ମଣ୍ଡଳୀର ସଭ୍ୟା । ଏଇ ସଭ୍ୟାମାନଙ୍କ ପାଇଁ ବୋଧହୁଏ ବିହିତ ଥିଲା ଯେ ସେମାନେ କେବେହେଲେ ବିଧବା ହେବେ ନାହିଁ ।

ରମାନାଥ ଏକଥା ଯେତିକି ଭାବିଲା ସେତିକି ନିଃସନ୍ଦେହ ହୋଇଗଲା ଯେ ସୀମା ତାଙ୍କର ଦାମ୍ପତ୍ୟ ଜୀବନ ବ୍ୟତୀତ ଏକ ସମାନ୍ତରାଳ ଜୀବନ ମଧ୍ୟ ଯାପନ କରୁଥିଲା । ଏହି ବିକଳ୍ପ ଜୀବନରେ ସୀମାର ପ୍ରେମିକ ଥିଲେ, ଗୋପନୀୟ ଗୋଷ୍ଠୀ ଥିଲା, ନିଭୃତ ମିଳନସ୍ଥଳୀ ଥିଲା ଏବଂ ସାଂକେତିକ ଭାଷା ଥିଲା । ଯେତେସମୟ ସେ ସୀମା ପାଖରେ ରହୁନଥିଲା ସେ ସମୟତକ ସୀମାର ଜୀବନରେ ତା'ର କୌଣସି ସ୍ଥାନ ନଥିଲା । ଅନ୍ୟପକ୍ଷରେ ଦେଖିଲେ ସୀମାର ଭରପୂର ଜୀବନରେ ରମାନାଥ ଥିଲା ଜଣେ ଗୌଣ ଚରିତ୍ର ମାତ୍ର । ସୀମା ନିଜେ ଏକ ଏକାନ୍ତ ରହସ୍ୟମୟ ଜୀବନ ବିତାଇ ସେଥିରୁ କିଛିମାତ୍ର କ୍ଷଣ ଅଲଗା କରି ରଖିଦେଉଥିଲା ରମାନାଥ ପାଇଁ । ରମାନାଥର ମନ ସୀମା ବିରୁଦ୍ଧରେ ଆକ୍ରୋଶରେ ଭରିଗଲା । ସୀମା ଥିଲା ସ୍ୱେଚ୍ଛାଚାରିଣୀ, ଭ୍ରଷ୍ଟା ଏବଂ ରମାନାଥ ତାକୁ ଦେଇ ଆସିଥିବା ସ୍ନେହ ମମତା ଶ୍ରଦ୍ଧାର ସଂପୂର୍ଣ୍ଣ ଅଯୋଗ୍ୟା ।

ଏକଥା ଭାବିଲାବେଳେ ରମାନାଥର ମନ ଭିତରେ ଭୟ ମଧ୍ୟ ଉପୁଜିଲା । ସତେ ଯେପରି ସୀମାର ପ୍ରେତାତ୍ମା ଆସି ତା ଆଗରେ ଠିଆହୋଇ ପ୍ରଶ୍ନ କରିବ କାହିଁକି ରମାନାଥ ତା ବିଷୟରେ ଏତେ ମନ୍ଦକଥା ଭାବୁଛି । ଗାଧୋଇ ସାରି ପଞ୍ଝାତଳେ ଓଦାବାଳ ଶୁଖାଉଥିବାବେଳେ ସୀମାର ଯେଉଁ ମୂର୍ତ୍ତିଟି ରମାନାଥକୁ ପୂର୍ବେ ମନଲୋଭା ମନେହେଉଥିଲା, ବର୍ତ୍ତମାନ ସେଇ ରୂପଟି ଆଗକୁ ଆସି ତାକୁ ତ୍ରସ୍ତ, ଶିହରିତ କରିଦେଲା । ସେ ନଥିଲା ତିରିଶ ବର୍ଷ ଧରି ଏକାସଙ୍ଗେ ଘରସଂସାର କରି ରହିଥିବା ତା'ର ସୀମା । ସେ ଥିଲା ଡାକିନୀ ସଭାର ସଦସ୍ୟା ସୀମା । ସେ ଥିଲା ବେଶଭୂଷା ହୋଇ ପ୍ରେମିକ ପାଇଁ ଅଭିସାରିକା ମୁଦ୍ରାରେ ଅପେକ୍ଷା କରୁଥିବା ସୀମା । ରମାନାଥର ମନେହେଲା ସେ ଆଦୌ ଜାଣେ ନାହିଁ, ଆଦୌ ଚିହ୍ନେ ନାହିଁ ଏଇ ସ୍ତ୍ରୀଲୋକଟିକୁ ।

# ଚରମ ପତ୍ର

ବୀରେଶ୍ୱର ଓ ଶ୍ରୀହରି ସ୍ୱପ୍ନରେ ମଧ୍ୟ କଳ୍ପନା କରିନଥିଲେ ଯେ ସେମାନେ ପୁଣି ଏକାଠି ହେବେ, ତା ପୁଣି ଏଭଳି ଜାଗାରେ । କେବେ ଅବଶ୍ୟ ଦୁହେଁ ଗୋଟିଏ ରାଜନୀତିକ ଦଳରେ ଥିଲେ ; କିନ୍ତୁ ବାରମ୍ବାର ଦଳବଦଳ, ଗୋଷ୍ଠୀକନ୍ଦଳ ଓ ନେତୃତ୍ୱ ପରିବର୍ତ୍ତନ ଭିତର ଦେଇ ସେମାନେ ଅନେକ ଦିନ ହେଲା ପରସ୍ପରର ଶତ୍ରୁପକ୍ଷ ହୋଇଯାଇଥିଲେ । ବର୍ତ୍ତମାନ ସେମାନଙ୍କୁ ଯେଉଁ ଗୋଟିଏ ଜିନିଷ ଏକାଠି କରୁଥିଲା ସେଇଟି ହେଲା ବର୍ତ୍ତମାନ କ୍ଷମତାରେ ଥିବା ସରକାରର ବିରୋଧ ଏବଂ ସେଇ ସୂତ୍ରରେ ଅନିଚ୍ଛା ସତ୍ତ୍ୱେ ସେମାନଙ୍କର ଏଇପରି ହୋଇଥିଲା ଗୋଟିଏ ଜାଗାରେ ଏକାଠି ହେବାର ସୁଯୋଗ ବା ଦୁର୍ଯୋଗ ।

ଦୈବକ୍ରମେ ଦୁହେଁଯାକ ପ୍ରଦେଶର ପୂର୍ବତମ ମୁଖ୍ୟମନ୍ତ୍ରୀ ମଧ୍ୟ ଥିଲେ । ଦୁଇଜଣ ମୁଖ୍ୟଙ୍କର ଏଭଳି ଭେଟାଭେଟି ହେବା ସାଧାରଣତଃ ଗୋଟିଏ ଅଭାବିତ ଘଟଣା ହୋଇଥା'ନ୍ତା, କିନ୍ତୁ ଏକଥା ଏଇଥିପାଇଁ ଆଶ୍ଚର୍ଯ୍ୟଜନକ ନଥିଲା ଯେ ବର୍ତ୍ତମାନ ପ୍ରଦେଶର ତେଇଶ ଜଣ ଭୂତପୂର୍ବ ମୁଖ୍ୟ ଜୀବିତ ଓ ସକ୍ରିୟ ଥିଲେ । ଘନଘନ ନିର୍ବାଚନ, ନୂଆ ନୂଆ ମେଣ୍ଟ ଓ ବାରମ୍ବାର ନେତୃତ୍ୱ ପରିବର୍ତ୍ତନ ହେତୁ ଅଳ୍ପ ସମୟରେ ମୁଖ୍ୟମନ୍ତ୍ରୀ ବଦଳୁଥିଲେ ; ଏପରିକି ଜଣେ ମୁଖ୍ୟଙ୍କର ରାଜତ୍ୱକାଳ ଥିଲା ମାତ୍ର ବାସ୍ତରି ଘଣ୍ଟା । ଏଥିଯୋଗୁଁ ଅକାଳେ ସକାଳେ ରାସ୍ତାଘାଟରେ କୌଣସି ଭୂତମୁଖ୍ୟଙ୍କୁ ଭେଟିବା ଅସମ୍ଭବ ନଥିଲା । ତେବେ ପ୍ରଥମେ ଯେଉଁଦିନ ସକାଳେ ବୀରେଶ୍ୱର ଶ୍ରୀହରିଙ୍କୁ ତା'ର ପାଖ କୋଠରିରୁ ବାହାରିବାର ଦେଖିଲା, ଆଶ୍ଚର୍ଯ୍ୟ ଓ ସତର୍କ ହୋଇଗଲା । ପୂର୍ବଦିନ ରାତିରେ କେତେବେଳେ ଶ୍ରୀହରିଙ୍କୁ ଅନ୍ୟ ଜେଲରୁ ଏ ଜେଲକୁ ଅଣା ହୋଇଥିଲା । ସକାଳେ ସାମନାସାମନି ହେବାରେ ବୀରେଶ୍ୱର ଶ୍ରୀହରିଙ୍କୁ ଭେଦ କରି ଆଗକୁ ଅନାଇଲା । ଶ୍ରୀହରି ମଧ୍ୟ ଊଣା ନଥିଲା ; ସେ ବୀରେଶ୍ୱରଙ୍କୁ ଚିହ୍ନି ନଥିବାର ଛଳନା କଲା ।

ବୀରେଶ୍ୱର ସବୁବେଳେ ଶ୍ରୀହରିଙ୍କୁ ନିଜଠାରୁ ନ୍ୟୂନ ବୋଲି ଗଣନା କରୁଥିଲା, କାରଣ ବେଶି ପଇସାବାଲା ହୋଇଥିବା ବ୍ୟତୀତ ରାଜନୀତିରେ ସେ ଅଧିକ ଅଭିଜ୍ଞ ଓ କ୍ଷମତାଶାଳୀ ଥିଲା । ସେ ଚାରିମାସ ମୁଖ୍ୟମନ୍ତ୍ରୀ ରହିବା ସ୍ଥଳେ ଶ୍ରୀହରି ରହିଥିଲା ମାତ୍ର ଦେଢ଼ମାସ ; ତେଣୁ ସେ ତା ଭଳି ପଇସାପତ୍ର କରିପାରି ନଥିଲା । ସବୁଠାରୁ ମୂଳକଥା

ହେଲା ଯେ ବୀରେଶ୍ୱର ବ୍ରାହ୍ମଣ ଥିଲା ଏବଂ ଶ୍ରୀହରି ଥିଲା ନୀଚ ଜାତିର । ଏଭଳି ଗୋଟିଏ ଲୋକକୁ ତା'ର ସମକକ୍ଷ କରି ତା'ର ପାଖ କୋଠରିରେ ରଖାଇବା ବୀରେଶ୍ୱରକୁ ସମ୍ମାନହାନିକର ମନେ ହେଲା ଏବଂ ଏଥିରେ ବର୍ତ୍ତମାନ ସରକାରଙ୍କର କିଛି ଦୁରଭିସନ୍ଧି ଅଛି ବୋଲି ନିଶ୍ଚୟ କଲା ସେ ।

ଉଭୟ ଜେଲକୁ ଆସିଥିଲେ ସରକାର ପ୍ରେସ୍ ସ୍ୱାଧୀନତାକୁ କ୍ଷୁଣ୍ଣ କରିବା ପାଇଁ ଯେଉଁ ଆଇନ ଲାଗୁ କରିବାକୁ ଯାଉଥିଲେ ତା'ର ପ୍ରତିବାଦ କରି । ନିର୍ବାଚନରେ ଚିତ୍‌ପଟାଙ୍ଗ ହେବା ପରେ ଅନେକ ଦିନ ଧରି ବିରୋଧୀ ଦଳମାନେ କୌଣସି କାର୍ଯ୍ୟକ୍ରମ ବିନା ଚୁପ ରହିଥିଲେ ଏବଂ ଅପେକ୍ଷାରେ ଥିଲେ ଯେ କିଛି ସୁଯୋଗ ପାଇଲେ ପୁଣି ଜନସାଧାରଣଙ୍କର ନେତ୍ରଗୋଚର ହେବାକୁ ଚେଷ୍ଟା କରିବେ । ଏଇ ସମୟରେ ପ୍ରେସ୍ ବିଲ୍‌ଟି ଆସିବାରୁ ସେମାନେ ନିଦରୁ ଉଠି ବାକ୍-ସ୍ୱାଧୀନତାର ପ୍ରବକ୍ତା ହୋଇଗଲେ ଏବଂ ବିଭିନ୍ନ ପ୍ରକାରର ପ୍ରତିବାଦ ଆରମ୍ଭ କରିଦେଲେ । ପ୍ରଦେଶର ବିଭିନ୍ନ ଅଞ୍ଚଳରେ ଏ ବିଷୟରେ ଆନ୍ଦୋଳନ ହେଲା ଏବଂ ଏହାର ନେତୃତ୍ୱ ନେଲେ ବୀରେଶ୍ୱର ଓ ଶ୍ରୀହରି, ଅବଶ୍ୟ ନିଜ ନିଜ ଦଳ ପକ୍ଷରୁ । ଯଦିଓ ଦୁହେଁ ନିଜେ କ୍ଷମତାରେ ଥିବାବେଳେ ଖବରକାଗଜମାନଙ୍କୁ ଖର୍ବ କରିବାରେ କୌଣସି ତ୍ରୁଟି କରି ନଥିଲେ, ଲୋକମାନେ ନିଜର ଅମାୟିକ ବିସ୍ମରଣ ଶକ୍ତି ଓ କ୍ଷମତାଶାଳୀ ଗୁଣରେ ସେକଥା ସବୁ ଭୁଲିଯାଇ ଦୁହିଁଙ୍କୁ ସମର୍ଥନ କଲେ ଏବଂ ଆନ୍ଦୋଳନ କ୍ରମେ ତେଜିଲା ।

ମୁଖ୍ୟମନ୍ତ୍ରୀ ପ୍ରଥମେ ଭାବିଥିଲେ ଯେ ଏ ଆନ୍ଦୋଳନଟି ମନକୁ ମନ ବନ୍ଦ ହୋଇଯିବ ଏବଂ ଏ ବିଷୟରେ କିଛି କାର୍ଯ୍ୟକ୍ରମ ନେଲେ ବିରୋଧୀ ନେତାମାନେ ଅଯଥା ପ୍ରାଧାନ୍ୟ ପାଇବେ । କିନ୍ତୁ ଗୋଳମାଳ ନ କମିବାରୁ ବାଧ ହୋଇ ମୁଖ୍ୟମନ୍ତ୍ରୀଙ୍କୁ ଏ ସମ୍ପର୍କରେ ଭାବିବାକୁ ପଡ଼ିଲା ଏବଂ ସେ ପୁଲିସ ଡି.ଜି.ଙ୍କୁ ଡକାଇ ପଠାଇଲେ ପରାମର୍ଶ ପାଇଁ । ମୁଖ୍ୟମନ୍ତ୍ରୀ ଅନିଦ୍ରା ରୋଗରେ ଭୋଗୁଥିଲେ ଏବଂ ଅଫିସରମାନେ ଜାଣିଥିଲେ ଯେ ତାଙ୍କ ସହିତ ଗୁପ୍ତ ଓ ମହତ୍ତ୍ୱପୂର୍ଣ୍ଣ ବିଷୟରେ ଆଲୋଚନା କରିବାର ପ୍ରକୃଷ୍ଟ ସମୟ ହେଉଛି ରାତି ଗୋଟାଏ ପରେ । ସେଥିପାଇଁ ତାଙ୍କୁ ଭେଟିବାର ଥିଲେ ଅଫିସରମାନେ ଗୋଟିଏ ସହଜ ଉପାୟ ବାହାର କରିଥିଲେ । ସେମାନେ ଡେରି ରାତି ପର୍ଯ୍ୟନ୍ତ କ୍ଲବ୍‌ରେ ବସି ମଦ୍ୟପାନ କରୁଥିଲେ ଏବଂ ସେଠାରୁ ସିଧା ମୁଖ୍ୟଙ୍କ ନିବାସକୁ ଯାଉଥିଲେ ।

ସେଦିନ ରାତିରେ କ୍ଲବ୍‌ରେ ଡି.ଜି.ର ମାତ୍ରାଧିକ ହୋଇଯାଇଥିଲା ଏବଂ ସେ ମୁଫତିରେ ଥିଲା, କିନ୍ତୁ ଏ ଅବସ୍ଥାରେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯିବାରେ ତା'ର କୌଣସି ସଂକୋଚ ନଥିଲା, କାରଣ ସେ ଥିଲା ତାଙ୍କର ଖାସ୍ ଲୋକ । ତା'ର ଅନେକ ଉପରିସ୍ଥ ଅଫିସରଙ୍କୁ ସୁପରସିଡ଼ କରି ସେ ଏ ଜାଗାକୁ ଆସିଥିଲା ମୁଖ୍ୟଙ୍କ କୃପାରୁ ଏବଂ ସେ

ଏହି ଅନୁଗ୍ରହର ଋଣକୁ ପରିଶୋଧ କରୁଥିଲା ବିଭିନ୍ନ ବେଆଇନ କାମ କରି । ସେ ମୁଖ୍ୟମନ୍ତ୍ରୀଙ୍କର ଆପଣାର ବୋଲି ଜଣାଥିଲା ଏବଂ ଏକଥା ତା'ର କାମରେ ବିଶେଷ ସହାୟକ ହେଉଥିଲା । ଏଇ ଗୁଣ୍ଡା ଭଳି ଦେଖାଯାଉଥିବା ପୁଲିସ କର୍ତ୍ତାଙ୍କ ଚେହେରା ସହିତ ଲୋକମାନେ ପରିଚିତ ଥିଲେ ଏବଂ ସେମାନେ ଏକଥା ମଧ୍ୟ ଜାଣିଥିଲେ ଯେ ଏ ସାମଞ୍ଜସ୍ୟ କେବଳ ଚେହେରା ପର୍ଯ୍ୟନ୍ତ ସୀମିତ ନୁହେଁ । ମୁଖ୍ୟମନ୍ତ୍ରୀଙ୍କ ଘରର ପୁଲିସ ବ୍ୟୂହକୁ ଭେଦ କରି ସେ ସିଧା ତାଙ୍କ ଶୋଇବା କୋଠରିକୁ ଚାଲିଗଲା । ମୁଖ୍ୟ ସେତେବେଳକୁ ଗୋଟିଏ ଲୁଙ୍ଗି ପିନ୍ଧି ଖାଲି ଦେହରେ ଖଟ ଉପରେ ପଡ଼ିଥିଲେ ଏବଂ ଜଣେ ଚାକର ତାଙ୍କର ଗୋଡ଼ ଘଷୁଥିଲା । ପାଖରେ ପାହାଡ଼ ଭଳି ଥୁଆ ହୋଇଥିବା ଫାଇଲରେ ତାଙ୍କ ବ୍ୟକ୍ତିଗତ ସଚିବ ତାଙ୍କର ଦସ୍ତଖତ ନେଉଥିଲା । ଡି.ଜି. ଆସିବାରୁ ସେ ମୁଖ୍ୟ ସଚିବକୁ ବିଦାୟ ଦେଇଦେଲେ । ଡି.ଜି. ଯାଇ ତାଙ୍କ ପାଦକୁ ଛୁଇଁ ନିଜ ଗୋଡ଼ରୁ ଜୋତା ଖୋଲି ପାଖରେ ପଡ଼ିଥିବା ଚଉକି ଉପରେ ଚକା ପକାଇ ବସିଲା ଏବଂ ମୁଖ୍ୟମନ୍ତ୍ରୀ ତାକୁ ଆଗରୁ ଯେଉଁ କେତୋଟି କାମ ଦେଇଥିଲେ ତାକୁ ସେ କିପରି ସୂଚାରୁ ରୂପେ ସଂପନ୍ନ କରିଛି ତା'ର ବିବରଣୀ ଦେଲା । ମୁଖ୍ୟମନ୍ତ୍ରୀ ସ୍ୱଳ୍ପଭାଷୀ ଥିଲେ ଏବଂ ଡି.ଜି. ସହିତ ନିତିଦିନିଆ ଦେହଘଷା ସଂପର୍କ ଯୋଗୁଁ ଦୁହେଁ ଦୁହିଁଙ୍କୁ ଭଲଭାବେ ବୁଝୁଥିଲେ । ମୁଖ୍ୟମନ୍ତ୍ରୀ ତା'ର ମୌଖିକ ରିପୋର୍ଟ ଶୁଣିଲା ପରେ ଭଗବାନଙ୍କ ନାଁ ନେବାଭଳି କେବଳ କହିଲେ, ବୀରେଶ୍ୱର ଶ୍ରୀହରି । ଡି.ଜି. ସବୁକଥା ଠିକ୍ ବୁଝିଗଲା ଏବଂ ଉଠି ଠିଆହେଲା । ମୁଖ୍ୟମନ୍ତ୍ରୀଙ୍କ ପାଦ ଛୁଇଁ ଯାଉ ଯାଉ କହିଲା, ଦିନକରେ ଠିକ୍ ହୋଇଯିବ । ମୁଖ୍ୟମନ୍ତ୍ରୀ କହିଲେ, ଭାଙ୍ଗିବା ଦରକାର ନାହିଁ । ଏ କଥାର ତାତ୍ପର୍ଯ୍ୟ ଥିଲା ଯେ ଆଉଥରେ ଡି.ଜି. ବିରୋଧୀ ଦଳର ଜଣକର ଗୋଡ଼ ଭାଙ୍ଗି ଦେଇଥିଲା ଏବଂ ଏହା ସରକାରଙ୍କୁ ସାମାନ୍ୟ ଅସୁବିଧାରେ ପକାଇ ଦେଇଥିଲା । ଡି.ଜି. କଥାଟି ସାଙ୍ଗେ ସାଙ୍ଗେ ବୁଝିଲା ; କହିଲା, ନାଇଁ ସାର ; ଭାଙ୍ଗିବା ଦରକାର ହେବ ନାହିଁ ।

ମୁଖ୍ୟମନ୍ତ୍ରୀଙ୍କ ନିବାସରୁ ଫେରି ଡି.ଜି. କ୍ଲବ୍‌କୁ ଗଲା, କିନ୍ତୁ କ୍ଲବ୍‌ର ବାର୍ ବନ୍ଦ ହୋଇ ସାରିଥିଲା । ତେଣୁ ସେ ସେଠାରୁ ଗଲା ସଦର ଥାନାର ସରପ୍ରାଇଜ୍ ଇନ୍ସପେକ୍ସନ କରିବା ପାଇଁ । ତା'ର ଡ୍ରାଇଭର ଯାଇ ଥାନା ଦାରୋଗାକୁ ନିଦରୁ ଉଠାଇଲା । ଦାରୋଗା ଏଭଳି ପରିଦର୍ଶନ ସହିତ ପରିଚିତ ଥିଲା । ଡି.ଜି.ଙ୍କୁ ଥାନାର ଗୋଟିଏ ଭିତର କୋଠରିରେ ବସାଇ ସେ ପାନୀୟର ବ୍ୟବସ୍ଥା କରିଦେଲା । ଏବଂ ଅଳ୍ପ ସମୟରେ ଢାବାରୁ ଆଣି ଖାଇବାର ବନ୍ଦୋବସ୍ତ ବି କରିଦେଲା । ରାତି ଅଢ଼େଇଟାରେ ଦି'ଜଣ ସିପାହି ଡି.ଜି.ଙ୍କୁ ଧରାଧରି କରି ଗାଡ଼ିରେ ବସାଇ ତା ଘରେ ପହଞ୍ଚାଇ ଦେଇ ଆସିଲେ ।

ସକାଳ ଏଗାରଟାରେ ନିଦରୁ ଉଠି ଡି.ଜି. ପ୍ରଥମ କାମ କଲା ବୀରେଶ୍ୱରକୁ ଫୋନ୍ କରିବା । ଗଳାକୁ ନରମ କରି ସେ କହିଲା, ସାର୍, ଯଦି ଆପଣଙ୍କର ସମୟ

ଥିବ ମୁଁ ଆପଣଙ୍କର ଦର୍ଶନ କରିବାକୁ ଆସିବି । ବୀରେଶ୍ୱର କିନ୍ତୁ ଏଇ ଧୁରନ୍ଧର ଲୋକଟିକୁ ହାଡ଼େ ହାଡ଼େ ଚିହ୍ନିଥିଲା, କାରଣ ନିଜେ କ୍ଷମତାରେ ଥିଲାବେଳେ ତାକୁ ବିଭିନ୍ନ ପ୍ରକାର କୁତ୍ସିତ ଓ ଜଘନ୍ୟ କାମରେ ବ୍ୟବହାର କରିଥିଲା ସେ । ସେ ମଧ୍ୟ ସ୍ୱରକୁ ମୁଲାୟମ କରି କହିଲା, ସେଥିପାଇଁ କ'ଣ ପଚାରିବାର ଥିଲା ? ମୋର ଘର ତ ସବୁବେଳେ ତମ ପାଇଁ ଖୋଲା । ତେବେ ତମେ ଡି.ଜି. ହେବା ଖୁସିରେ ମିଠେଇ ନେଇ ଆସୁଛ ନା ୱାରେଣ୍ଟ ନେଇ ଆସୁଛ ? ଡି.ଜି. କହିଲା, ସାର୍, ଆପଣଙ୍କର ସବୁବେଳେ ଥଟ୍ଟା କଥା ।

ସେ ପହଞ୍ଚିଲା ବେଳକୁ ବୀରେଶ୍ୱର ତା ଅପେକ୍ଷାରେ ବସିଥିଲା । ଡି.ଜି.କୁ ଦେଖି କହିଲା, ବସ ବସ । କ'ଣ ସକାଳୁ ସକାଳୁ କିଛି ଚଳିବ ନା ଖାଲି ଚା' ପିଇବ ? ଡି.ଜି. କହିଲା, ନାଇଁ ସାର୍, ଡି.ଜି. ହେବା ପରେ ପୂରାପୂରି ଛାଡ଼ିଦେଲି । ଏତେ କାମ କରିବାକୁ ସ୍ୱାସ୍ଥ୍ୟ ତ ଭଲ ରଖିବାକୁ ହେବ । ଆଉ କୌଣସି ଗୌରଚନ୍ଦ୍ରିକା ନକରି ବୀରେଶ୍ୱର କହିଲା, ବେଶ୍, ଏଥରକ କହିଦିଅ ମୁଖ୍ୟଙ୍କ ପାଖରୁ କି ସନ୍ଦେଶ ଆଣି ଆସିଛ । ଡି.ଜି. ମଧ୍ୟ ସିଧା ବିଷୟବସ୍ତୁ ଉପରକୁ ଆସି କହିଲା, ଆମେ ସାର୍ ଏଇ ଗଣ୍ଡଗୋଳ ଯୋଗୁଁ ବ୍ୟସ୍ତ ହୋଇଗଲୁଣି । ଆପଣ କିଛିଦିନ ପାଇଁ ବାହାରକୁ ଚାଲିଯା'ନ୍ତୁ । ଏ କଥାରେ ମଧ୍ୟ ରାଗି ନଯାଇ ବୀରେଶ୍ୱର କହିଲା, ମତେ ବି କ'ଣ ଭଲ ଲାଗୁଛି ଏ ସବୁ ଗୋଳମାଳ ? ତେବେ ଲୋକ କ'ଣ ମୋତେ ଯିବାକୁ ଦେବେ ? ମୁଁ ଭାବୁଛି ତମର ଏଇ ସରକାର ଭାଙ୍ଗିଗଲେ କିଛିଦିନ ଗାଁରେ ଯାଇ ବିଶ୍ରାମ ନେବି । ଡି.ଜି. ଜାଣିଲା ଯେ କଥାବାର୍ତ୍ତାର ସ୍ୱର ଓ ଭାଷା ନରମ ଥିଲେ ବି ଯୁଦ୍ଧ ଆରମ୍ଭ ହୋଇଯାଇଛି । ସେ କହିଲା, ନା ସାର୍, ଆପଣ ଗାଁ କାହିଁକି ଯିବେ, ଦିଲ୍ଲୀରେ ବଡ଼ ଘର, ସେଇଠି ଯାଇ ଆରାମରେ ରହିବେ ।

ଓଃ, ଦିଲ୍ଲୀରେ ଭାଇନାଙ୍କ ଘର ? ତମକୁ କୋଉ ଖବର ଅଜଣା ?

କିଏ ଆଜ୍ଞା ନଜାଣେ ଆପଣଙ୍କର ଏତେବଡ଼ ସର୍ବଭାରତୀୟ ପରିବାର ବୋଲି ? ଖାଲି କ'ଣ ଦିଲ୍ଲୀରେ ? ବାଙ୍ଗାଲୋରରେ ଆପଣଙ୍କ ନନାଙ୍କ ଘର, ବମ୍ବେରେ କକେଇଙ୍କ ଘର, କଲିକତାରେ ଦଦେଇଙ୍କ ଘର ।

କଥାକୁ ଏଇଠାରେ ଛିଣ୍ଡାଇ ଦେବା ପାଇଁ ବୀରେଶ୍ୱର କହିଲା, ତମେ ଯାଇ ତମ ମୁଖ୍ୟଙ୍କୁ କହିଦିଅ, ମୋର ବର୍ତ୍ତମାନ ସହର ଛାଡ଼ି ଯିବାର କୌଣସି ପ୍ରୋଗ୍ରାମ ନାହିଁ ।

ପୁଣି ନରମ ହୋଇ ଡି.ଜି. କହିଲା, ଆପଣ ତ ଜାଣନ୍ତି ମୁଖ୍ୟ କେମିତି ତରବରିଆ ଲୋକ । ତା'ପରେ ଆଜିକାଲି ଦେଶ ସୁରକ୍ଷା ଆଇନ ଇତ୍ୟାଦିରେ ହାତକୁ କେତେ କ୍ଷମତା ଆସିଗଲାଣି । ଆପଣ କାହିଁକି ହଇରାଣ ହେବେ ବୋଲି ମୁଁ ଯାହା କହୁଥିଲି ।

ବୀରେଶ୍ୱର କହିଲା, ଠିକ୍ ଅଛି, ବୁଝିଗଲି । ତମେ ଲୋକ ପଠାଇଲା ବେଳକୁ ମୁଁ ପ୍ରସ୍ତୁତ ହୋଇଥିବି । ଡି.ଜି. ଉଠିଲା । ଗଲାବେଳକୁ ବୀରେଶ୍ୱର ଆଡ଼କୁ ମୁରୁକି ହସ ଦେଇ କହିଲା, ଏଥରକ କିନ୍ତୁ ଆମେ ନଟକୁ ଆରେଷ୍ଟ କରିବୁ ନାହିଁ ।

ଏଇଟି ସବୁଠାରୁ ଦୁଃଖଦାୟକ ସମ୍ବାଦ ଥିଲା ବୀରେଶ୍ୱର ପାଇଁ । ରାଜନୈତିକ ଜୀବନରେ ଅନେକଥର ତାକୁ ଜେଲ ଯିବାକୁ ହୋଇଥିଲା, କିନ୍ତୁ ଏକ ଅଲିଖିତ ବୁଝାମଣା ବଳରେ ସବୁଥର ତା ସହିତ ଜେଲକୁ ଯାଉଥିଲା ତା'ର ଚାକର ନଟ । ଲୋକମାନେ ଏ ବିଷୟରେ ଖରାପ କଥାମାନ କହୁଥିଲେ, କିନ୍ତୁ ଜେଲ୍‌ରେ ପ୍ରଥମ ଶ୍ରେଣୀର କଇଦୀ ହୋଇ ନଟ ପାଖରେ ଥାଇ ବୋଲହାକ କରୁଥିବାରୁ ଜେଲ୍‌ର କୌଣସି କଷ୍ଟ ବାଧୁ ନଥିଲା । ଏଥରକ ନଟ ଯଦି ଆରେଷ୍ଟ ନହେବ, ତାହା ହିଁ ହେବ ବୀରେଶ୍ୱରର ପ୍ରକୃତ ଶାସ୍ତି ।

ଘରକୁ ଫେରି ଶ୍ରୀହରି ପାଇଁ ଭିନ୍ନ ପନ୍ଥା ଉପଯୋଗ କଲା ଡି.ଜି. । ଟେଲିଫୋନ ଉଠାଇ ସିଧାସଳଖ କହିଲା, କ'ଣବେ ଶଳା ଶିଅଳ, ମତେ ଚିହ୍ନିଲୁ ? ଦେଢ଼ମାସ ଭିତରେ ସେ ମୁଖ୍ୟମନ୍ତ୍ରୀ ଶ୍ରୀହରି ପାଖରୁ କୌଣସି ଫାଇଦା ଉଠାଇବାରେ ସଫଳ ହୋଇ ନଥିଲା ଏବଂ ସେତେବେଳେ ସେମାନଙ୍କର କୌଣସି ବିଶେଷ ସଂପର୍କ ନଥିଲା । ତଥାପି ଶ୍ରୀହରି ତା'ର ସ୍ୱର ଜାଣିପାରିଲା, ମନେ ମନେ ରାଗିଲା, କିନ୍ତୁ ଶାନ୍ତ ସ୍ୱରରେ କହିଲା, ଆପଣ କିଏ କହୁଛନ୍ତି ? ଆଗେ ତା'ର ଜାତି ନେଇ କିଏ କ'ଣ କହିଲେ ଶ୍ରୀହରିର ମୁଣ୍ଡକୁ ପିତ୍ତ ଚଢୁଥିଲା, କିନ୍ତୁ ଆଜିକାଲି ଏ କଥା ଦେହସୁହା ହୋଇଯାଇଥିଲା ଏବଂ ଏ ପରିସ୍ଥିତିରେ ନିଜକୁ ଥଣ୍ଡା ରଖୁଥିଲା । ତାକୁ ରଗାଇବାରେ ବିଫଳ ହୋଇ ଡି.ଜି. ଠିକ୍ କଲା ଯେ ଆଉ ଏ ଲୋକ ପଛରେ ସମୟ ନଷ୍ଟ କରି ଲାଭ ନାହିଁ । ସେ ଟେଲିଫୋନ ରଖିଦେଲା ।

ସେଇଦିନ ସଞ୍ଜବେଳେ ବୀରେଶ୍ୱର ଓ ଶ୍ରୀହରି ଦୁହେଁ ଆରେଷ୍ଟ ହେଲେ । ବୀରେଶ୍ୱରର ଘର ଆଗରେ ସେ ସମୟରେ ଭଡ଼ାରେ ଅଣାଯାଇଥିବା ଲୋକ, ଖବରକାଗଜବାଲା, ଫଟୋଗ୍ରାଫର ଜମା ହୋଇଥିଲେ । ଶ୍ରୀହରି ବିଚରା ଧରାହେଲା ତାଙ୍କର ଭଙ୍ଗାରୁଜା ପାର୍ଟି ଅଫିସରୁ । ଶ୍ରୀହରିକୁ ସେଇ ସହରର ଜେଲରେ ରଖାହେଲା, କିନ୍ତୁ ବୀରେଶ୍ୱରକୁ ପଠାଇ ଦିଆହେଲା ଦୂର ଜେଲକୁ, କାରଣ ବୀରେଶ୍ୱର ରାଜଧାନୀରେ ରହିଲେ ଆହୁରି ଗଣ୍ଡଗୋଳର ଆଶଂକା ଥିଲା । ଯଦି ମୁଖ୍ୟମନ୍ତ୍ରୀ ଭାବିଥିଲେ ଯେ ଏ ଦୁହିଁଙ୍କୁ ବାନ୍ଧି ନେଲେ ସମସ୍ୟାର ସମାଧାନ ହୋଇଯିବ, ସେ ଧାରଣାଟି ଭୁଲ ଥିଲା । ବୀରେଶ୍ୱର ଓ ଶ୍ରୀହରିଙ୍କ ଅବର୍ତ୍ତମାନରେ ମଧ ଗଣ୍ଡଗୋଳ ଧିମା ପଡ଼ିଲା ନାହିଁ । ଅନେକ ଦିନ ଧରି ଯେତେବେଳେ ଆନ୍ଦୋଳନ ଲାଗି ରହିଲା ଏବଂ ଦୁଇ ନେତାଙ୍କୁ ଛାଡ଼ିଦେବା ପାଇଁ ବିରୋଧୀଦଳମାନେ ଦାବି କରିବାରେ ଲାଗିଲେ, ଶ୍ରୀହରିକୁ ମଧ ସେହି ଜେଲକୁ

ପଠାଇ ଦିଆହେଲା ଯେଉଁଠାରେ ବୀରେଶ୍ୱର ଆଗରୁ ଥିଲା ।

ରାଜଧାନୀଠାରୁ ଏତେ ଦୂରର ଜେଲକୁ ଯେ ଏମାନଙ୍କୁ ପଠାଗଲା, ତା'ର ଗୋଟିଏ କାରଣ ଥିଲା ସେମାନଙ୍କୁ ରାଜଧାନୀରୁ ଯେତେ ସମ୍ଭବ ଦୂରରେ ରଖିବା । ଏହା ଅପେକ୍ଷା ଆହୁରି ଗୋଟିଏ ମହତ୍ତ୍ୱପୂର୍ଣ୍ଣ କାରଣ ଥିଲା ଯେ ସେ ଜେଲ ଦାୟିତ୍ୱରେ ଯେଉଁ ଅଫିସରଟି ଥିଲା, ସେ ଥିଲା ଗୋଟିଏ ପାଜି । କଇଦୀମାନଙ୍କୁ କିପରି ହଇରାଣ କରି ନୟାନ୍ତ କରାଯାଇପାରେ, ସେ ବିଷୟରେ ତା'ଠାରୁ କାହାରିକୁ ବେଶି ଜଣା ନଥିଲା । ବୀରେଶ୍ୱର ଯେତେବେଳେ ତାଙ୍କ ଜେଲରେ ପହଞ୍ଚିଲା, ଜେଲର ଜାଣିଗଲା କାହିଁକି ତାକୁ ସେଠାକୁ ପଠାଯାଇଛି, ଏ ବିଷୟରେ ତାକୁ ଆଉ କୌଣସି ନିର୍ଦ୍ଦେଶ ଦେବାର ପ୍ରୟୋଜନ ନଥିଲା । ସେ ଚଉକିରୁ ଉଠି ବୀରେଶ୍ୱରକୁ ପାଛୋଟି ନେଲା, ନିଜ ଅଫିସ ଘରୁ ସମସ୍ତଙ୍କୁ ବାହାର କରିଦେଇ ସମ୍ମାନର ସହିତ ତାକୁ ବସାଇ କହିଲା, ମୋର ଭାଗ୍ୟ ଏ ଜେଲରେ ଆପଣଙ୍କର ପାଦଧୂଳି ପଡ଼ିଲା । ଆପଣ ଯେତେଦିନ ଏଠାରେ ରହିବେ, ସେ ମାସେ ହଉ କି ପାଞ୍ଚବର୍ଷ ହଉ, ଆପଣଙ୍କର କିଛି ଅସୁବିଧା ହେବ ନାହିଁ । କିଛି କ'ଣ ହେଲେ ମତେ ଖବର ପଠାଇଦେବେ, ମୁଁ ଆସି ହାଜର ହୋଇଯିବି । ଏଇ ବକ୍ତବ୍ୟଟି ପରେ ସେ ବୀରେଶ୍ୱରକୁ ନେଇଗଲା ପ୍ରଥମ ଶ୍ରେଣୀର କଇଦୀମାନଙ୍କ ପାଇଁ ଯେଉଁ ଅଲଗା ଦୁଇଟି କୋଠରି ଥିଲା ସେଠାକୁ । ବୀରେଶ୍ୱରକୁ ସେଠାରେ ଛାଡ଼ିଦେଇ ଆସିବା ପରେ ଜେଲରର ଆଉ ଦେଖା ମିଳିଲା ନାହିଁ ।

ଏ ଜେଲ୍‌ର ପ୍ରଥମ ଶ୍ରେଣୀ କଇଦୀଙ୍କ ମହଲାଟି ମୁଖ୍ୟ କଇଦୀଖାନାରୁ ଦୂରରେ ଗୋଟିଏ ତାରଘେରା ଜାଗାରେ ଥିଲା । ତା ଭିତରେ ଦୁଇଟି କୋଠରି ଥିଲା, ରନ୍ଧାଘର ଥିଲା, ପାଇଖାନା ଥିଲା । ନିଜର କୋଠରି ଭିତରେ ପଶି ବୀରେଶ୍ୱର ପ୍ରଥମେ ଖଟ କମ୍ବଳ ଚାଦରକୁ ପରଖି ନେଲା, ପାଇଖାନା ଘର କଳରେ ପାଣି ଆସୁଛି କି ନାହିଁ ଦେଖିଲା, ଖଟ ଉପରେ ତକିଆ କୋଉ ଦିଗକୁ ଅଛି ଅନ୍ଦାଜ କଲା । ଏଠାରେ କେତେଦିନ ରହିବାକୁ ପଡ଼ିବ କିଏ ଜାଣେ ? ଜେଲର ତାକୁ ଯେଉଁ ୱାର୍ଡ଼ର ଜିମାରେ ଛାଡ଼ିଦେଇ ଯାଇଥିଲା, ସେ ବୀରେଶ୍ୱରକୁ ପଚାରିଲା, କ'ଣ ସାର୍ ସବୁ ଠିକ୍ ଅଛି ତ ? ବୀରେଶ୍ୱର ଆଉ ଥରେ କୋଠରିର ସବୁ ଜିନିଷକୁ ଆଖି ବୁଲାଇ ନେଇ କହିଲା, ଏବେ ତ ଠିକ୍ ଜଣାପଡୁଛି, ଯଦି ଆଉ କ'ଣ ଦରକାର ହେବ କହିବି । ୱାର୍ଡ଼ର କହିଲା, ଆଜି ଆପଣଙ୍କୁ ସାଧାରଣ କଇଦୀଙ୍କ ଖାନା ଦିଆଯିବ ; କାଲିଠାରୁ ଆପଣଙ୍କ ପାଖରେ ଜଣେ ରୋଷେଇଆ ଲାଗିବ । ଏତିକି କହି ୱାର୍ଡ଼ର ବୀରେଶ୍ୱରକୁ ଏକୁଟିଆ ଛାଡ଼ିଦେଇ ତାରଘେରା ଫାଟକରେ ତାଲା ପକାଇ ଚାଲିଗଲା ।

ଦିନ ଏଗାରଟାରେ ଜେଲରେ ପହଞ୍ଚିଲା ବୀରେଶ୍ୱର । ବର୍ତ୍ତମାନ ବାରଟାବେଳେ ଜେଲ ଖଟ ଉପରେ ଏକୁଟିଆ ବସି କ'ଣ କରିବ ବୁଝିପାରିଲା ନାହିଁ ସେ । ଏ ଅଂଶଟି

ଜେଲ୍‌ର ଗୋଟିଏ ଅବ୍ୟବହୃତ କଣରେ ଥିଲା, ଏଠାରୁ ଖାଲି କାନ୍ଥ ଛଡ଼ା ଆଉ କିଛି ଦେଖାଯାଉ ନଥିଲା । କୋଠରି ବାହାରେ ଯେଉଁ ଖୋଲା ଜାଗା ଥିଲେ ସେଇଟି ବଗିଚା ପାଇଁ ଉଦ୍ଦିଷ୍ଟ ଥିଲା, କିନ୍ତୁ ବର୍ତ୍ତମାନ ସେ ଜାଗାଟି ଖୋଳା ହୋଇ ଶୁଖିଲା ପଡ଼ିଆ ପଡ଼ିଥିଲା । ଚାରିଆଡ଼ ଶୂନଶାନ ଥିଲା । ବୀରେଶ୍ୱର ତା'ର ଜିନିଷପତ୍ର ଖୋଲି ରଖିଲା । ସାଙ୍ଗରେ କିଛି ବହି ଆଣିଥିଲେ ହୋଇଥା'ନ୍ତା । ସେ ଚିଠି ଲେଖି କିଛି ବହି ମଗାଇବ । ବର୍ତ୍ତମାନ ଆଉ କିଛି କାମ ନଥିବାରୁ ତାକୁ ଭୋକ ଲାଗିଲା । ସେ ସୁରେଇରୁ ପାଣି ନେଇ ପିଇଲା । ପାଣି ବୋଧହୁଏ ହପ୍ତାଏ ତଳୁ ବଦଳା ହୋଇ ନଥିଲା, ପେଟରେ ପଡ଼ିବାରୁ ବାନ୍ତି ଲାଗିଲା । ଲୋକଟି ସେଠାରେ ଥିବାବେଳେ ତା'ର ଉଚିତ ଥିଲା ପାଣିକୁ ଦେଖିନେବା । ସେ ଖଟ ଉପରେ ଶୋଇ କେତେବେଳେ ଖାଇବାକୁ ଆସିବ ଅପେକ୍ଷା କଲା ।

ଏମିତିରେ ତାକୁ କେତେବେଳେ ନିଦ ବି ଆସିଗଲା । ନିଦ ଭାଙ୍ଗିବାରୁ ଦେଖିଲା ଦିନ ଦି'ଟା, କିନ୍ତୁ କେହି ଲୋକବାକ, ଖାଇବାର ଦେଖା ନାହିଁ । ଶୋଷ ଲାଗିବାରୁ ମନେପଡ଼ିଲା ଯେ ସୁରେଇରେ ବାସି ପାଣି ଅଛି । ସେ ସୁରେଇ ପାଣିରେ ମୁହଁହାତ ଧୋଇ ବାକି ପାଣିକୁ ଢାଳିଦେଲା ଏବଂ କେତେବେଳେ ଖାଇବା ଆସି ଅପେକ୍ଷା କଲା । ଏଇପରି ଭୋକରେ ପେଟ ଆଉଟୁପାଉଟୁ ହେଉଥିବାବେଳେ ୱାର୍ଡ଼ର ଆସି ପ୍ରଥମ ଶ୍ରେଣୀ ଖୁଆଡ଼ର ଫାଟକକୁ ଖୋଲିଲା ଚାରିଟାବେଳେ । ତାକୁ ଦେଖି ବୀରେଶ୍ୱର ରାଗିଯାଇ ଯାହା ଇଚ୍ଛା ତାହା ଗାଳି ଦେଲା । ୱାର୍ଡ଼ର ସାଙ୍ଗରେ ଖାଇବାକୁ ନେଇ ଆସିଥିବା ପୁରୁଣା ଦାଗୀ ଭଳି ଦେଖାଯାଉଥିବା ଲୋକଟି ଘର ଭିତରେ ଥାଳି ରଖିଦେଇ ଚାଲିଯିବା ପରେ ୱାର୍ଡ଼ର ବୀରେଶ୍ୱରକୁ କହିଲା, ସେ ଲୋକଟା ଆଗରେ ମୁଁ ଆପଣଙ୍କୁ କିଛି କହିଲି ନାହିଁ । ଆପଣ ନୂଆ ଲୋକ ତ ଏଠାରେ, ଏଠାକାର ରୀତି ରିବାଜ ଜାଣିନାହାନ୍ତି । ଆଗକୁ ଆପଣ ଏତେ ବଡ଼ପାଟିରେ କଥାବାର୍ତ୍ତା କରିବେ ନାହିଁ । ଏଇ ଯୋଉ ଲୋକଟି ଆସିଥିଲା, ଜଣେ ପୁରୁଣା ଦାଗୀ । ସେ କ'ଣ ଜାଣିଲା ଆପଣ ମୋ ଉପରେ ପାଟି କରୁଛନ୍ତି ନା ତା ଉପରେ ? ପାଞ୍ଚଟି ଖୁନ୍ କରି ସେ ଜେଲରେ ଅଛି । ଆଉ ଗୋଟାଏ ଖୁନକୁ ତା'ର ଡର କ'ଣ ?

ଏଇଭଳି କଥାସବୁ କହି ୱାର୍ଡ଼ର ବୀରେଶ୍ୱରକୁ ବେଶ୍ ଭୟ ଦେଖାଇ ଫାଟକରେ ତାଲା ପକାଇ ଚାଲିଗଲା । ବୀରେଶ୍ୱର ଶୁଖିଲା ରୁଟିକୁ ପାଟିକୁ ନେଇ ଦେଖିଲା ଯେ ସେଇଟି ଅଖାଦ୍ୟ ଥିଲା । ତଥାପି ସେ ଭୋକରେ ଦି'ଖଣ୍ଡ ରୁଟି ଖାଇଦେଲା । ତା'ପରେ ପାଣି ପିଇବାକୁ ଯାଇ ତା'ର ମନେପଡ଼ିଲା ଯେ, ରାଗ ଭିତରେ ସେ ପାଣି ବଦଳାଇବା କଥା କହିବାକୁ ଭୁଲିଯାଇଛି । ପ୍ରକୃତରେ ତା'ର ରାଗିବା ଉଚିତ ନଥିଲା । ଶାନ୍ତ ଚିତ୍ତରେ ଥିଲେ ସେ ପାଣି କଥା ଭୁଲି ନଥା'ନ୍ତା ।

ବର୍ତ୍ତମାନ ଆଉ ୱାର୍ଡ଼ରର ଦେଖା ମିଳିବାର ସମ୍ଭାବନା ନଥିଲା । ସେ ପାଇଖାନା ଘର ବାଲିଟିରୁ ଯାଇ ଗିଲାସେ ପାଣି ଆଣିଲା । ଏ ପାଣି ବି ଭଲ ନଥିଲା, ତେବେ ତାକୁ ଏତେ ଶୋଷ ଲାଗୁଥିଲା ଯେ ସେ ତାକୁ ଢକଢକ କରି ପଇଦେଲା । ଅଖାଦ୍ୟ ଖାଇ, ଦୁର୍ଗନ୍ଧ ପାଣି ପିଇ ବୀରେଶ୍ୱର ମନେ ମନେ ଭାବିଲା, ନା, ଏ ଶଳା ଛୋଟଲୋକଙ୍କ ଉପରେ ରାଗି ଲାଭ ନାହିଁ । ସେଦିନ ସନ୍ଧ୍ୟାବେଳେ ୱାର୍ଡ଼ର ରାତି ଖାଇବା ନେଇ ଆସିବାରେ ସେ ତା ସହିତ କେବଳ ଭଲରେ ନୁହେଁ, ଖୋସାମତି କଲା ଭଳି କଥାବାର୍ତ୍ତା କଲା, ପିଇବା ପାଣି ମଗାଇ ରଖିଲା ଏବଂ ବିଛଣାରେ ପଡ଼ିଥିବା ଛିଣ୍ଡା କମ୍ବଳଟି ବଦଳରେ ଗୋଟିଏ ଭଲ କମ୍ବଳ ଦେବାକୁ କହିଲା । ରାତିରେ ଶୋଇବାକୁ ଯିବାବେଳେ ତା'ର ମନେପଡ଼ିଲା ଯେ ସେ ଏଥରକ ତା'ର ଔଷଧ ସବୁ ଆଣିବାକୁ ଭୁଲିଯାଇଛି, ଏ ବିଷୟରେ ଘରକୁ ଲେଖିବାକୁ ପଡ଼ିବ । ନଟ କଥା ମଧ୍ୟ ତାକୁ ବିଶେଷରେ ମନେପଡ଼ିଲା, କାରଣ ପ୍ରତିଦିନ ଏଇ ସମୟରେ ନଟ ତା'ର ଗୋଡ଼ ମୋଡ଼ି ଦେଉଥିଲା ।

ପରଦିନ ତା ପାଇଁ ରାନ୍ଧୁଣିଆ ଯୋଗାଡ଼ ହୋଇଗଲା । ଯେଉଁ କଇଦୀକୁ ଏ ଦାୟିତ୍ୱରେ ରଖାଗଲା ସେ ଗୋଟିଏ ନିର୍ବୋଧ ଥିଲା । ତେବେ ପ୍ରଥମ ଥର ପାଇଁ ତା' ହାତରୁ ରନ୍ଧା ଖାଇ ବୀରେଶ୍ୱର ଜାଣିଲା ଯେ ସେ ରାନ୍ଧୁଥିଲା ଭଲ । ସେ ଖୁସି ହୋଇଗଲା ଯେ ଯାହା ହେଉ ଖାଇବାରେ ବିଶେଷ କଷ୍ଟ ହେବ ନାହିଁ ତା'ର । କିନ୍ତୁ ସେଦିନ ରାତିରେ ଲୋକଟି ତାକୁ ଯାହା ଖାଇବାକୁ ଦେଲା ତାହା ପୂରାପୂରି ଅଖାଦ୍ୟ ଥିଲା ଏବଂ ବୀରେଶ୍ୱର ତାକୁ ଖାଇପାରିଲା ନାହିଁ । ଲୋକଟି ସହିତ କଥାବାର୍ତ୍ତା କରି ବୀରେଶ୍ୱର ବୁଝିଲା ଯେ ସେ ସମ୍ପୂର୍ଣ୍ଣ ପାଗଳ ଥିଲା, କିଛି କଥା ବୁଝୁ ନଥିଲା ଏବଂ ଯାହା ମନେ ହେଉଥିଲା ତା କରୁଥିଲା । ବୀରେଶ୍ୱର ଠିକ୍ କଲା ଯେ, ସେ ଜେଲରଙ୍କୁ ଦେଖାକରି ଏ କଥାର କିଛି ମୀମାଂସା କରିବ ।

କିନ୍ତୁ ଜେଲରଙ୍କୁ ଦେଖା କରିବା ସହଜ କଥା ନଥିଲା । ୱାର୍ଡ଼ରକୁ ଏକଥା କହିବାରୁ ସେ କହିଲା, ଆଜିକାଲି ସାହେବ ଇନ୍ସପେକ୍ସନରେ ବ୍ୟସ୍ତ ଅଛନ୍ତି । ଦି'ଦିନ ଗଲେ ଦେଖାଦେବେ । ଏକଥା ଶୁଣି ବୀରେଶ୍ୱର ମୁଣ୍ଡକୁ ରାଗ ଚଢ଼ିଗଲା । ଛାର୍ ଜେଲର, କି ଏମିତି ଲାଟସାହେବ ଯେ ଦେଖା କରିବାକୁ ସମୟ ନାହିଁ । ତେବେ ଏମାନଙ୍କ ଉପରେ ରାଗି ଲାଭ ନାହିଁ । ସେ କହିଲା, ମତେ କାଗଜ କଲମ ଆଣି ଦିଅ, ମୁଁ ଦରଖାସ୍ତ ଲେଖିଦେବି । ସେଦିନ ରାତିରେ ବୀରେଶ୍ୱର ଗୋଟିଏ ଦରଖାସ୍ତ ଲେଖିଲା ଯେଉଁଥିରେ ତା'ର ଅସୁବିଧାମାନଙ୍କର ଦୀର୍ଘ ତାଲିକା ଥିଲା । ଏଇଟି ଦେବାର ପରଦିନ ଯେତେବେଳେ ସେ ଦରଖାସ୍ତଟି ବିଷୟରେ ପଚାରିଲା, ୱାର୍ଡ଼ର କହିଲା, ସାହେବଙ୍କ ଟେବୁଲ ଉପରେ କାଗଜଟି ଅଛି । ତେବେ ତାଙ୍କର ଆଜିକାଲି ନିଃଶ୍ୱାସ ନେବାକୁ ସମୟ ନାହିଁ । ଫୁରୁସତ ପାଇଲେ ନିଶ୍ଚେ ଆପଣଙ୍କ ଅର୍ଜି ପଢ଼ି ତା ଉପରେ ଅର୍ଡ଼ର

କରିଦେବେ । ବୀରେଶ୍ୱର ମନେ ମନେ କହିଲା, ଶଳା ଜେଲର ।

ଆଉ ଦି'ଦିନରେ ବୀରେଶ୍ୱରର ମୁଣ୍ଡ ଖରାପ ହୋଇଗଲା । କଥାବାର୍ତ୍ତା କରିବାକୁ ପାଖରେ କେହି ନାହିଁ ଏଇ ନିର୍ବୋଧ ପାଗଳ ଲୋକଟି ଛଡ଼ା । ତା ବ୍ୟତୀତ ସେ ଯାହା ଖାଇବାକୁ ଦେଉଛି ଅଧିକାଂଶ ସମୟରେ ଅଖାଦ୍ୟ । ଜେଲ କର୍ମଚାରୀମାନେ ପାଖଛଡ଼ା ରହୁଛନ୍ତି । ଆଗରୁ ସେ ଯେତେଥର ଜେଲ ଯାଇଥିଲା କେବେହେଲେ ଏଭଳି ଅବସ୍ଥା ହୋଇନଥିଲା ତା'ର । ସେମାନେ ଦଳେଲୋକ ଧରାହୋଇ ଆସି ଏକାଠି ରହୁଥିଲେ, ନଟ ପାଖରେ ଥିଲା ସେବା କରିବା ପାଇଁ, ହସଖୁସିରେ ଦିନ କଟିଯାଉଥିଲା । ଏଥରକ ତା'ର ହୋଇଗଲା ସଲିଟାରି ସେଲ୍‌ରେ ରହିବା ଅବସ୍ଥା । ତାକୁ ଯଦିଓ ମୁଖ୍ୟ ଜେଲ ଭିତରେ କ'ଣ ହେଉଛି ଦେଖାଯାଉ ନଥିଲା, ସେଠାରୁ ଯେଉଁ ହୋ-ହଲ୍ଲା ଶୁଭୁଥିଲା, ବୀରେଶ୍ୱର ଭାବୁଥିଲା ବରଂ ସାଧାରଣ କଇଦୀ ହୋଇ ରହିଥିଲେ ଭଲ ହୋଇଥା'ନ୍ତା । ଏପରି ଅବସ୍ଥାରେ ଶ୍ରୀହରିର ସେଠାକୁ ଆସିବା ତା ପାଇଁ ସୁସମ୍ବାଦ ହେବା ଉଚିତ ଥିଲା, କିନ୍ତୁ ବୀରେଶ୍ୱର ଠିକ୍ କରି ନେଇଥିଲା ଯେ ପାଖ କୋଠରିରେ ରହୁଥିବା ଲୋକଟିକୁ ସେ ନିଜ ପାଖରୁ ଦୂରରେ ରଖିବ ।

ଯଦିଓ ସେମାନେ ପାଖ ପାଖ କୋଠରିରେ ରହୁଥିଲେ, ଗୋଟିଏ ପାଇଖାନା ବ୍ୟବହାର କରୁଥିଲେ ଏବଂ ଗୋଟିଏ ରାନ୍ଧୁଣିଆ ହାତରୁ ଖାଉଥିଲେ, ପରସ୍ପର ଆଡ଼କୁ ଅନାଉ ନଥିଲେ ଅଥବା ନିଜ ନିଜ ଭିତରେ କଥାବାର୍ତ୍ତା କରୁ ନଥିଲେ । କେବେ କେବେ ଶ୍ରୀହରି ବେଶି ସମୟ ପାଇଖାନା ଭିତରେ ରହିଗଲେ ବୀରେଶ୍ୱର ବିରକ୍ତ ହୋଇ କବାଟକୁ ପିଟୁଥିଲା କିନ୍ତୁ ତାକୁ କିଛି କହୁ ନଥିଲା । ମଝିରେ ମଝିରେ ସେ ବାରଣ୍ଡାରେ ପାଇଚାରି କରି ଲୁଚି ଲୁଚି ଝରକା ଦେଇ ଦେଖୁଥିଲା ଶ୍ରୀହରି ଭିତରେ କ'ଣ କରୁଛି । ଅଧିକାଂଶ ସମୟରେ ଶ୍ରୀହରି ତା'ର ଖଟ ଉପରେ ଆରାମରେ ଶୋଇ ରହିଥିବାର ଦେଖାଯାଉଥିଲା । ବୀରେଶ୍ୱର ଏକଥା ମଧ୍ୟ ଲକ୍ଷ୍ୟକଲା ଯେ ସେ ଖାଇବା ବିଷୟରେ ଏତେ ବିବ୍ରତ ଥିବାବେଳେ ଶ୍ରୀହରି ଯାହା ମିଳିଲା ନିର୍ବିକାର ସନ୍ତୋଷରେ ଖାଉଥିଲା । ବୀରେଶ୍ୱର ମନେ ମନେ କହୁଥିଲା, ଶଳା ନଅଙ୍କିଆ କାଙ୍ଗାଳ । ଜୀବନସାରା ତ ଘରେ ଖାଇବାକୁ ନଥିଲା, ଯାହା ମିଳିଲା ଭଲ ନ ଲାଗିବ କେମିତି ?

ଦିନେ ସକାଳେ ବୀରେଶ୍ୱରକୁ ଡକା ଆସିଲା ଜେଲରଙ୍କ ପାଖକୁ ଯିବା ପାଇଁ । ବୀରେଶ୍ୱର ଭାବିଲା ବୋଧହୁଏ ତାକୁ ଛାଡ଼ି ଦିଆ ହୋଇଛି, ଏପରି କିଛି ଭଲ ଖବର ମିଳିବ ତାକୁ । ତା ମନ ଭିତରେ ଏକଥା ମଧ୍ୟ ଉଠିଲା ଯେ ତାକୁ ଛାଡ଼ିଦେଇ ଶ୍ରୀହରିକୁ ଯଦି ଆଉ କିଛିଦିନ ବନ୍ଦକରି ରଖାଯା'ନ୍ତା ଭଲ ହୁଅନ୍ତା । ବୀରେଶ୍ୱର ଆସି ଜେଲ୍ ଅଫିସରେ ବସିବାର ଅଧଘଣ୍ଟାଏ ପରେ ଜେଲର ଆସିଲା, କହିଲା, ଆଜ୍ଞା ବହୁତ କାମ ଆଜି । ଆପଣଙ୍କ ସାଙ୍ଗରେ କଥା କହିବାକୁ ବି ସମୟ ନାହିଁ । ଆପଣଙ୍କ ଘରୁ କ'ଣ

ସବୁ ଜିନିଷ ଆସିଥିଲା ସେଥିପାଇଁ ଆପଣଙ୍କୁ କଷ୍ଟ ଦେଲି । ଜଣେ ସିପାହି ଗୋଟିଏ ଖୋଲା ହୋଇଥିବା ପ୍ୟାକେଟର ଜିନିଷସବୁ ବୀରେଶ୍ୱର ଆଗରେ ରଖିଦେଲା । ବୀରେଶ୍ୱର ତାକୁ ଠିକ୍‌ରେ ଦେଖିବା ଆଗରୁ ଜେଲର ସେଥିରେ ଥରେ ହାତବୁଲାଇ ନେଲା । ବିଭିନ୍ନ ପ୍ରକାର ଔଷଧ ଇତ୍ୟାଦି ସହିତ ଅନେକ ଛୋଟବଡ଼ ଜିନିଷ ବି ଥିଲା, ଯଥା ଗୋଟିଏ ରୂପାର ଦାନ୍ତଖୁଣ୍ଟା, ଅଣ୍ଟାରେ ବାନ୍ଧିବାର ମ୍ୟାଗନେଟିକ ବେଲ୍‌ଟ, ପ୍ଲାଷ୍ଟିକରେ ଗୁଡ଼ା ହୋଇଥିବା ଛୋଟ ଭଗବତଗୀତା ଇତ୍ୟାଦି । ଗୋଟିଏ ଆୟୁର୍ବେଦ ଔଷଧ ବୋତଲ ଖୋଲି ସେଥିରୁ କିଛି ଧଳାଗୁଣ୍ଡ ନିଜ ପାପୁଲିରେ ଢାଳି ଜେଲର ତାକୁ ନାକ ପାଖକୁ ନେଲା, କହିଲା, ଏସବୁ ଜିନିଷ କଇଦୀମାନଙ୍କୁ ଦେବାକଥା ନୁହେଁ, ଏଇଟା ବିଷ କି ନୁହେଁ କିଏ ଜାଣେ ? ଆପଣଙ୍କ ପାଇଁ ଏଥର ଛାଡ଼ିଦଉଛି । ଆପଣ ଘରକୁ ଲେଖିଦେବେ ଭବିଷ୍ୟତରେ ସେମାନେ ଯେମିତି ଆଉ ଏଭଳି ଆଲୁକୁଚି ମାଲୁକୁଚି ନ ପଠାନ୍ତି । ଏତିକି କହି ଜେଲର ଉଠି ଠିଆହେଲା ଏବଂ ଯେମିତି ତା'ର କେଉଁଠି ବହୁତ ଜରୁରୀ କାମ ଅଛି, ଶୀଘ୍ର ବାହାରି ଚାଲିଗଲା । ବୀରେଶ୍ୱର ଯେ ତା ପାଖକୁ ଏତେ ଆପତ୍ତି ଅଭିଯୋଗ ମନରେ ନେଇ ଆସିଥିଲା, କହିବାକୁ ସମୟ ପାଇଲା ନାହିଁ । ବିଶେଷରେ ଜେଲର ଶେଷରେ ଯାହା କହିଗଲା, ସେକଥା ତା ମୁଣ୍ଡରେ ପଶି ତାକୁ ଆଉ କିଛି କହିବାକୁ ସୁଯୋଗ ଦେଲା ନାହିଁ ।

ନିଜ ଖୁଆଡ଼କୁ ଆସି ବୀରେଶ୍ୱର ଭାବିଲା, ଜେଲର ଯାହା କହିଲା ଆଲୁକୁଚି ମାଲୁକୁଚି ବୋଲି ତା'ର ମତଲବ କ'ଣ ? ଘରୁ ଆସିଥିବା ଜିନିଷସବୁ ପୁଣି ଥରେ ତନ୍ନ ତନ୍ନ କରି ଦେଖିଲା ବୀରେଶ୍ୱର, କିନ୍ତୁ ସେଥିରେ ଆଲୁକୁଚି ମାଲୁକୁଚି ଭଳି କୌଣସି ଦ୍ରବ୍ୟ ତା ଆଖିରେ ପଡ଼ିଲା ନାହିଁ । କ'ଣ ହୋଇପାରେ ଏ ଶବ୍ଦଟିର ଅର୍ଥ ? ଛୋଟ ଲୋକମାନେ ବ୍ୟବହାର କରୁଥିବା କିଛି ଜିନିଷ ? ତା ହେଲେ ଶ୍ରୀହରିକୁ ଜଣା ଥାଇପାରେ । ଦିନସାରା କିଛି ଭଲ ଲାଗିଲା ନାହିଁ ବୀରେଶ୍ୱରକୁ । ଏଇ ଅଦ୍ଭୁତ ଶବ୍ଦଟି ତା ମନକୁ ବାରମ୍ବାର ବ୍ୟତିବ୍ୟସ୍ତ କଲା । ଶେଷରେ ସେ ଠିକ୍ କଲା ଯେ ନିଜର ମାନସମ୍ମାନକୁ ବଳିଦେଇ ସେ ଶ୍ରୀହରିର ଆଶ୍ରୟ ନେବ ଏବଂ ଜିନିଷଟି କ'ଣ ଜାଣିବ ହିଁ ଜାଣିବ ।

ଶ୍ରୀହରିର କୋଠରି ସାମାନା ବାରଣ୍ଡାରେ ଏପାଖ ସେପାଖ ହୋଇ ସେ ଭାବିଲା କଥାଟା କେମିତି ଆରମ୍ଭ କରିବ । ଶ୍ରୀହରି ନିଶ୍ଚେ ଗୋଡ଼ ଲମ୍ବାଇବ ସେ ତା ପାଖକୁ ଗଲେ, ତେବେ ଏ ପରିସ୍ଥିତିରେ ଆଉ କ'ଣ ବା କରାଯାଏ । ବୀରେଶ୍ୱର ଶ୍ରୀହରିର କବାଟ ପାଖରେ ଟିକିଏ କାଶି କହିଲା, ଆପଣଙ୍କ ପାଖରେ ମୁଣ୍ଡବ୍ୟଥା ଔଷଧ ଅଛି କି ? ଭାଗ୍ୟକୁ ଶ୍ରୀହରି ମଧ୍ୟ କାହା ସାଙ୍ଗରେ କଥାବାର୍ତ୍ତା କରିବାକୁ ଛଟପଟ ହେଉଥିଲା । ସେ ଆଉ କୌଣସି ଡମ ନଦେଖାଇ କହିଲା, ଆସନ୍ତୁ ଆସନ୍ତୁ,

ବାହାରେ କାହିଁକି ଛିଡ଼ା ହୋଇଛନ୍ତି ? ବୀରେଶ୍ୱର ଭିତରକୁ ଯାଇ ବସିବା ପରେ ସେମାନଙ୍କ ଭିତରେ କଥାବାର୍ତ୍ତା ଆରମ୍ଭ ହୋଇଗଲା ଯେପରିକି ସେମାନଙ୍କର ପ୍ରତିଦିନ ଭେଟ ହେଉଥିଲା ଏବଂ ଏଇ ପୂର୍ବର ପାଞ୍ଚ ଛ'ଦିନ ସେମାନଙ୍କ ଜୀବନରେ ଘଟି ନଥିଲା । ଏଇ କଥାବାର୍ତ୍ତା ଭିତରେ ଆଉ ମୁଣ୍ଡବ୍ୟଥା ଔଷଧ କଥା ବି ଉଠିଲା ନାହିଁ, କାରଣ ଉଭୟ ପକ୍ଷ ଜାଣିଥିଲେ ଯେ ଏଇଟି ଥିଲା ମୌନ ଭାଙ୍ଗିବାର ବାହାନା ମାତ୍ର । ବର୍ତ୍ତମାନ ଯୋଉ କାମ ପାଇଁ ବୀରେଶ୍ୱର ଆସିଥିଲା ସେ କଥା ଉଠାଇବାକୁ ଉପକ୍ରମଣିକା କରି କହିଲା, ଏଇ ଜେଲରଟା ଗୋଟାଏ ବଦମାସ ଲୋକ । ଶ୍ରୀହରି କହିଲା, ମୁଁ ଆଉ ଜେଲରୁ ଆସିବାବେଳେ ସେଠା କଇଦୀଙ୍କ ପାଖରୁ ଏ ଲୋକ ବିଷୟରେ ଶୁଣିଛି । ପକ୍‌କା ପାଜି । ତା'ର କୁଆଡ଼େ ପୁରୁଣା ଦାଗୀଙ୍କ ସାଙ୍ଗରେ ସଲାସୂତ୍ର ଅଛି । ରାତିରେ ସେ ଦାଗୀଙ୍କୁ ଚୋରି କରିବାକୁ ଛାଡ଼ିଦିଏ । ରାତିରେ ସେମାନେ ଯେତେ ମାଲ ଆଣିଲେ ଅଧା ତାଙ୍କର, ଅଧା ଜେଲରର । ବୀରେଶ୍ୱର କହିଲା, ଦେଖୁନାହାଁନ୍ତି କିପରି ବ୍ୟବହାର କରାଯାଉଛି ଏଠାରେ ଆମ ସାଙ୍ଗରେ । ଯେତେହେଲେ ଆମେ ତ କେବେ ମୁଖ୍ୟମନ୍ତ୍ରୀ ଥିଲେ ! ଶ୍ରୀହରି କହିଲା, ସେକଥା ଭୁଲିଯା'ନ୍ତୁ ବର୍ତ୍ତମାନ । ଯେତେଦିନ ପର୍ଯ୍ୟନ୍ତ ଏ ଶଳା ସରକାର ଆମକୁ ବନ୍ଦ କରି ରଖିଚି, ମୁହଁ ମାଡ଼ି ପଡ଼ିରହିବା କଥା । ଖଲାସ ହେଲେ ଦେଖାଯିବ ଏ ସରକାରର ତାକତ କେତେ । ବୀରେଶ୍ୱର କହିଲା, ସେକଥା ସତ ଯେ, ଯେତେଦିନ ଏଠାରେ ଅଛେ, ଟିକିଏ ଶାନ୍ତିରେ ତ ରହିବା । ଘରୁ କିଏ କଣ ଜିନିଷ ପଠାଇବ ତାକୁ ତ ଆଣିବା । ଶ୍ରୀହରି କହିଲା, ଜେଲ ଭିତରେ ପୁଣି କି ଶାନ୍ତି ? ଏଇ କେତେ ଦିନକୁ ଦୁର୍ଭାଗ୍ୟ ବୋଲି ଭାବି ସହିଯିବା କଥା ।

କଥାଟା ବାଗ ଧରୁ ନାହିଁ ଦେଖି ବୀରେଶ୍ୱର କହିଲା, ପ୍ରଥମ ଶ୍ରେଣୀର କଇଦୀ ଭାବରେ ଆମର ତ କିଛି ଅଧିକାର ଅଛି । ଖବରକାଗଜ, ବହି, ଘରୁ କିଛି ଜିନିଷ ଆସିବା ଯାକୁ ତ କୋଉ ଜେଲରର ବାପା ଅଟକାଇ ପାରିବ ନାହିଁ । ଆମ ଘରୁ ଯାହା ଆସିଲା ସବୁ ଆମର । ଶ୍ରୀହରି କହିଲା, ଆପଣଙ୍କର କଣ କିଛି ଜିନିଷ ବାଟମାରଣା ହୋଇଗଲା ? ବୀରେଶ୍ୱର କହିଲା, ନାଇଁ ଯେ, ତେବେ ଜେଲର ମୋ ଜିନିଷକୁ ଆଲୁକୁଚି ମାଲୁକୁଚି ବୋଲି କହିଲା । ଶ୍ରୀହରି କହିଲା, କିଛି ହଜିନାହିଁ ତ ! ଆପଣ ଏଥରକ ଘରକୁ ଲେଖି ଦିଅନ୍ତୁ ଦାମିକା ଜିନିଷ କିଛି ପଠାଇବେ ନାହିଁ । ତା'ପରେ କଥା ବୁଲିଗଲା ରାଜନୀତି ଆଡ଼କୁ । ଏବର ମୁଖ୍ୟମନ୍ତ୍ରୀଙ୍କ ବିରୁଦ୍ଧରେ ଉଭୟେ ନାନା ପ୍ରକାରର କୁତ୍ସା ବିନିମୟ କଲେ । ପ୍ରେସ୍ ବିଲ୍ ବିରୋଧୀ ଆନ୍ଦୋଳନ ବିଷୟରେ ମଧ୍ୟ ଆଲୋଚନା ହେଲା । ଶ୍ରୀହରି ପାଖରୁ ବାହାରିବା ବେଳକୁ ମଧ୍ୟ ବୀରେଶ୍ୱର ମନରୁ କଥାଟି ଯାଉନଥିଲା । ସେ କବାଟ ପାଖରୁ ପଚାରିଲା, ଆଲୁକୁଚି ମାଲୁକୁଚି ମାନେ କ'ଣ ? କିଛି ନଭାବି ନଚିନ୍ତି ଶ୍ରୀହରି ଉତ୍ତର ଦେଲା, କ'ଣ ଖାଇବା ଜିନିଷ ହୋଇଥିବ ପରା !

ଏଭଳି ବୀରେଶ୍ୱରର ସଂଶୟର କୌଣସି ସମାଧାନ ହେଲା ନାହିଁ, କିନ୍ତୁ ଏହି ଆଳରେ ଶ୍ରୀହରି ସହିତ ତା'ର ସମ୍ପର୍କ ସ୍ଥାପନ ହୋଇଗଲା । ଏଥରକ ସେମାନେ ନିଜ ନିଜ ଭିତରେ କଥାବାର୍ତ୍ତା କରୁଥିଲେ, ଯଦିଓ ଏପର୍ଯ୍ୟନ୍ତ ଆଳାପ ଆଲୋଚନା ବ୍ୟକ୍ତିଗତ ସ୍ତରକୁ ଆସି ନଥିଲା । ପ୍ରଥମେ ପ୍ରଥମେ ଆଲୋଚନା ହେଉଥିଲା ରାଜନୀତି ଓ ଦେଶର ପରିସ୍ଥିତି ବିଷୟରେ । କ୍ରମେ କ୍ରମେ ଏସବୁ ବିଷୟ ଭୁଲିଯାଇ ସେମାନେ କଥାବାର୍ତ୍ତା କଲେ ଜେଲର ସୁବିଧା ଅସୁବିଧା ବିଷୟରେ, ଯଥା ପାଇଖାନା ସଫା ନଥିବା, ସେମାନଙ୍କୁ ଠିକ୍ ସମୟରେ ଖାଇବାକୁ ଯୋଗାଇ ଦିଆଯାଉ ନଥିବା, ଖାଦ୍ୟରେ ଭିଟାମିନ ଓ କ୍ୟାଲୋରି ପରିମାଣ କମ୍ ଥିବା ଇତ୍ୟାଦି । ଏ ବିଷୟରେ ୱାର୍ଡ଼ରକୁ ବାରମ୍ବାର କହିବା ପରେ ମଧ୍ୟ ବ୍ୟବସ୍ଥାର କୌଣସି ଉନ୍ନତି ନ ହେବାରୁ ସେମାନେ ଠିକ୍ କଲେ ଯେ, ସିଧାସଳଖ ଏ ବିଷୟ ସରକାରଙ୍କ ପାଖରେ ଅଭିଯୋଗ କରିବେ । ବୀରେଶ୍ୱରର ଜେଲ ମାନୁଆଲ ବିଷୟରେ ଭଲ ଜ୍ଞାନ ଥିଲା ଏବଂ ଏଠାରେ ଜେଲ ନିୟମାବଳୀର କେଉଁ କେଉଁ ଧାରାର କିଭଳି ଲଘନ ହେଉଛି, ସେ ତା'ର ତାଲିକା କରିଦେଲା । ଏଥରକ ଏ ବିଷୟରେ ସରକାରଙ୍କ ପାଖକୁ ଦରଖାସ୍ତ ଲେଖି ସେଥିରେ ଦୁଇଜଣଯାକ ଦସ୍ତଖତ କରି ଜେଲରର ପାଖକୁ ପଠାଇଦେଲେ ।

ଦରଖାସ୍ତଟି ଉପରେ ଆଖି ବୁଲାଇ ଜେଲରର ମନରେ ହଠାତ ଭୟ ପଶିଲା । କାରଣ ଏଇଟି ତା ଜେଲରର ଗୋଟିଏ ପରିଦର୍ଶନ ନୋଟ୍ ଭଳି ଥିଲା । ସେଇଟିକୁ ଆଉ ଦି'ଥର ପଢ଼ିବା ପରେ ତା'ର ଭୀଷଣ ରାଗ ଉପୁଜିଲା ଏ ଦୁଇଟି କଇଦୀଙ୍କ ଉପରେ । ସେ କାଗଜଟିକୁ ଟିକି ଟିକି କରି ଚିରିଦେଲା । ଟେବୁଲ ଉପରର କଲିଂବେଲକୁ ଜୋରରେ ପିଟି ଅର୍ଦ୍ଦଳୀକୁ ଡାକିଲା ଏବଂ ପ୍ରଥମ ଶ୍ରେଣୀ ଦାୟିତ୍ୱରେ ଥିବା ୱାର୍ଡ଼ରକୁ ଆସିବାକୁ ଖବର ପଠାଇଲା । ୱାର୍ଡ଼ର ଆସିବାରୁ ସେ ତାକୁ ଯାହା ଇଚ୍ଛା ତାହା ଗାଳିଦେଲା, କହିଲା, ଶଳା ଦି'ଟା ବୋଲି ଖଦଡ଼ିଆଙ୍କୁ ସମ୍ଭାଳି ପାରିଲ ନାହିଁ ? ଏଥରକ ମୁଁ ନିଜେ ତାଙ୍କ କଥା ବୁଝିବି ।

ଜେଲ ଭିତରେ ଜେଲରର ନିଜର ଗୋଟିଏ କିଚେନ କ୍ୟାବିନେଟ୍ ଥିଲା । ଏଥିରେ ତା'ର ହାତଗଣତି ଜେଲ କର୍ମଚାରୀ ଥିଲେ, ଯାହାଙ୍କୁ ସେ ଧର କହିଲେ ବାନ୍ଧି ଆଣୁଥିଲେ । ଏଥିରେ ଜେଲ ଡାକ୍ତରଙ୍କୁ ବି ଅନ୍ତର୍ଭୁକ୍ତ କରାହୋଇଥିଲା ନିୟମିତ ଜେଲ ବଗିଚାରୁ ପରିବା ଇତ୍ୟାଦି ଯୋଗାଇ । କେହି କଇଦୀ ଅସମ୍ଭାଳ ହେଲେ ତାକୁ ଡାକ୍ତରୀ ଉପାୟରେ କିପରି କ'ଣ କରିବାକୁ ହେବ, ସେକଥା ଡାକ୍ତରଙ୍କୁ ଜଣାଥିଲା । ନାକ ବାଟେ ଖାଦ୍ୟ ଖୁଆଇବା, ବିନା କାରଣରେ ଗୋଡ଼ରେ ପ୍ରଚୁର ସାଲାଇନ ଇଞ୍ଜେକସନ ଦେଇ କଇଦୀକୁ ଦିନ ଦିନ ଧରି କଷ୍ଟରେ ରଖିବା ଉପାୟମାନରେ ଡାକ୍ତର ଥିଲା ଓସ୍ତାଦ । ଏହା ବ୍ୟତୀତ ଜେଲରର ହାତରେ ଥିଲେ କେତେ ଜଣ ବଛା ବଛା ଦାଗୀ, ଯେଉଁମାନେ ତା

ପାଇଁ ଥିଲେ ପ୍ରଭୁଭକ୍ତ କୁକୁର ଭଳି । ସେମାନଙ୍କୁ ଜେଲ ଭିତରେ ସାତଖୁଣ ମାଫ ଥିଲା ଏବଂ କଇଦୀମାନଙ୍କ ଉପରେ ରାଜୁତି ଥିଲା ସେମାନଙ୍କର । ଜେଲରଙ୍କ ଦୟାରୁ ଜେଲ ଭିତରେ ସେମାନଙ୍କ ପାଖରେ ମଦ, ନିଶାଦ୍ରବ୍ୟ ଇତ୍ୟାଦି ପହଞ୍ଚି ଯାଉଥିଲା, ତାଙ୍କୁ ଭଲ ଖାଇବାକୁ ମିଳୁଥିଲା, ମଫସଲିଆ ଅଳ୍ପ ବୟସର କଇଦୀ ତାଙ୍କର ସେବା ପାଇଁ ରହୁଥିଲେ । ଏସବୁ ସୁଯୋଗ ବଦଳରେ ସେମାନଙ୍କର କାମ ଥିଲା, ଜେଲର ପାଇଁ କଇଦୀମାନଙ୍କୁ ସମ୍ଭାଳିବା ଓ ଜେଲର ବିରୁଦ୍ଧରେ କିଛି ହେଲେ ତାକୁ ଦମନ କରିବା । ଜେଲର ଇଚ୍ଛା କରିଥିଲେ ତା'ର ଦୁଇ ଭି.ଆଇ.ପି. କଇଦୀଙ୍କ ପାଇଁ ଏମାନଙ୍କୁ ଲଗେଇ ଦେଇ ପାରିଥା'ନ୍ତା, କିନ୍ତୁ ଏ ଗୁଣ୍ଡାମାନଙ୍କର ଦେହଜୋର ଯେତିକି ଥିଲା ସେତିକି କମ୍ ଥିଲା ମୁଣ୍ଡର ବୁଦ୍ଧିବୃତ୍ତି । ଏମାନେ ପୁଣି କିଛି ସମସ୍ୟା ଉପୁଜାଇବାର ସମ୍ଭାବନା ଥିଲା । ଏଣୁ ଅନେକ ଭାବିଚିନ୍ତି ଜେଲର ପ୍ରଥମ ଶ୍ରେଣୀ ଖୁଆଡ଼ର ରାନ୍ଧୁଣିଆକୁ ବଦଳାଇ ସେଠାରେ ଭିକାରୀକୁ ଲଗାଇ ଦେଲା ଏବଂ ଜଣେ ଟାଣୁଆ ୱାର୍ଡ଼ରକୁ ସେଠାରେ ଡିଉଟି ଦେଲା ।

ଭିକାରୀ ଚତୁର୍ଥ ଶ୍ରେଣୀ କର୍ମଚାରୀ ଥିଲା ଏବଂ ଜେଲରଙ୍କର ଖାସ କାମ ପାଇଁ ଦୂତ ବୋଲି । ଜେଲ ସାରା ତା'ର ଅବାଧ ଯିବାଆସିବା ଥିଲା ଏବଂ କଇଦୀମାନଙ୍କ ସମେତ ସବୁ ଜେଲ କର୍ମଚାରୀ ତାକୁ ଡରୁଥିଲେ । ଚୋରା ଜିନିଷ ଜେଲରୁ ଭିତର ବାହାର କରିବାରେ ସେ ଧୁରନ୍ଧର ଥିଲା । ଏଇ ଲୋକଟିକୁ ପ୍ରଥମ ଶ୍ରେଣୀ ଖୁଆଡ଼କୁ ନେଇ ୱାର୍ଡ଼ର ଚିହ୍ନା କରାଇଦେଲା, କହିଲା, ଆପଣମାନେ କହୁଥିଲେ ରାନ୍ଧୁଣିଆ ଭଲ କାମ କରୁନଥିଲା ବୋଲି, ଏଥରକ ଜେଲର ଜଣେ ପୁରୁଖା ଲୋକ ଦିଆ ହଉଛି । ଆପଣଙ୍କର ଆଉ କିଛି ଅସୁବିଧା ହେବ ନାହିଁ । ଯଦିଓ ଲୋକଟି ସୁବିଧାର ଦେଖାଯାଉନଥିଲା, ବୀରେଶ୍ୱର ଓ ଶ୍ରୀହରି ଚୁପ୍ ରହିଲେ, କାରଣ ସେମାନେ ଆଗ ଲୋକଟି ବିରୁଦ୍ଧରେ ନାନା ଅଭିଯୋଗ କରିଥିଲେ । ବର୍ତ୍ତମାନ ଚବିଶ ଘଣ୍ଟା ଏଇ ଲୋକଟିର ଦାୟିତ୍ୱରେ ରହିବାକୁ ହେବ ତାଙ୍କୁ ; ସେଥିପାଇଁ ତାକୁ ହାତରେ ରଖିବା ଉଚିତ ।

ସେତେବେଳକୁ ସେମାନଙ୍କର ଜେଲରେ ରହିବାର ମାସେ ହୋଇଯାଇଥିଲା । ଯଦିଓ ଆନ୍ଦୋଳନ ବନ୍ଦ ହୋଇ ନଥିଲା, ଆସେମ୍ବ୍ଲି ଛୁଟି ହୋଇଯାଇଥିବାରୁ ବିଲ୍‌ଟି ପାସ୍ କରିବା କାମ ସ୍ଥଗିତ ହୋଇଯାଇଥିଲା ଏବଂ ସେଥିପାଇଁ ଉତ୍ତେଜନା ଶିଥିଳ ପଡ଼ି ଆସିଥିଲା । ତଥାପି ସେମାନଙ୍କୁ ଜେଲରୁ ମୁକୁଳାଇବା ପାଇଁ କୌଣସି ବ୍ୟବସ୍ଥା ହେବା ଭଳି ଜଣାଯାଉ ନଥିଲା । ସରକାର ଯେମିତି ଜେଲରୁ ପଠାଇ ଦେଇ ପୂରାପୂରି ଭୁଲିଯାଇଥିଲେ ଦି'ଜଣଙ୍କୁ । ଆନ୍ଦୋଳନ ମାନ୍ଦା ପଡ଼ିବାରୁ ସେମାନଙ୍କର ଦଳର ଲୋକ ଓ ଜନସାଧାରଣ ମଧ୍ୟ କୌଣସି ଖବର ନେଉ ନଥିଲେ ଏ ଦୁହିଁଙ୍କ ବିଷୟରେ । ଏପରି

ପରିସ୍ଥିତିରେ ବୀରେଶ୍ୱର ଓ ଶ୍ରୀହରି ସ୍ଥିର କରି ନେଇଥିଲେ ଯେ ଆଉ ଯେତେଦିନ ଏଠାରେ ରହିବାକୁ ପଡ଼ିବ କିପରି ଶାନ୍ତିରେ ରହିଯିବେ ।

ବୀରେଶ୍ୱର ଆଜିକାଲି ଶ୍ରୀହରି ସହିତ ମିଶୁଥିଲା ସିନା, ଏ ପର୍ଯ୍ୟନ୍ତ ମନ ଭିତରୁ ଏ କଥାଟି ଦୂର କରିପାରୁ ନଥିଲା ଯେ ଶ୍ରୀହରି ଗୋଟିଏ ଛୋଟଲୋକ । ପୂର୍ବରୁ ଅବଶ୍ୟ ଅନେକ ଥର ଜେଲରେ ତାକୁ ରହିବାକୁ ହୋଇଛି ଅସବର୍ଣ୍ଣ ଅଛବ ଲୋକଙ୍କ ସହିତ । ଅନେକ ଲୋକଙ୍କ ମେଳ ଭିତରେ ସେମାନଙ୍କ ସହିତ ମିଶିଯିବାରେ କିଛି ଜଣାଯାଏ ନାହିଁ, କିନ୍ତୁ ଗୋଟିଏ ଖୁଆଡ଼ରେ ମାତ୍ର ଦି'ଜଣ ଲୋକ ରହୁଥିବାବେଳେ ତା ପାଖ ଘରେ ଜଣେ ଅଛବ ଲୋକକୁ ରଖିଥିବା ନିଶ୍ଚୟ ମୁଖ୍ୟମନ୍ତ୍ରୀଙ୍କର କୁବୁଦ୍ଧି । ଶ୍ରୀହରିକୁ ସେ ପ୍ରଥମେ ଜାଣିବାବେଳେ ଶ୍ରୀହରି ଜଣେ ସାଧାରଣ କର୍ମୀ ଓ ପରେ ଗୌଣ ନେତାଟିଏ ଥିଲା । ଅବସ୍ଥାଚକ୍ରରେ କିଛିଦିନ ପାଇଁ ମୁଖ୍ୟମନ୍ତ୍ରୀ ହୋଇ ଶ୍ରୀହରି ନିଜକୁ କ'ଣ ନା କ'ଣ ବୋଲି ଭାବୁଥିଲା ଏବଂ ବୀରେଶ୍ୱରକୁ ମନେ କରୁଥିଲା ସମସ୍କନ୍ଧ । ବୀରେଶ୍ୱରକୁ ଏକଥା ଭଲ ଲାଗୁ ନଥିଲା ଏବଂ ସେ ଠିକ୍ କରିଥିଲା ଯେ ଜେଲରେ ଥିବା ସମୟତକ ସେ ଏଇ ଛୋଟଲୋକର ଦୌରାତ୍ମ୍ୟ ସହିଯିବ, କିନ୍ତୁ ଥରେ ବାହାରକୁ ଗଲେ ତାକୁ ଦେଖାଇ ଦେବ କାହା ସ୍ଥାନ କେଉଁଠି ।

ବର୍ତ୍ତମାନ ଶ୍ରୀହରିର ଚିନ୍ତା ଛାଡ଼ି ଭିକାରୀ ଉପରେ ଧ୍ୟାନ ଦେଲା ବୀରେଶ୍ୱର । ପ୍ରଥମ ଦିନରୁ ହିଁ ଜଣାପଡ଼ିଗଲା ଯେ ଭିକାରୀ ତାଙ୍କର ସେବା ପାଇଁ ଆସି ନଥିଲା, ଆସିଥିଲା ଜେଲରର ଚର ହୋଇ ସେମାନଙ୍କୁ ହଇରାଣ କରିବା ପାଇଁ । ତାଙ୍କ ଖୁଆଡ଼କୁ ଆସିବା ପରେ ସେଠାର ଗୋଟିଏ ବନ୍ଦ ଘରକୁ ଖୋଲି ଭିକାରୀ ନିଜର ଆସ୍ଥାନ ଜମାଇ ଦେଲା । ସେ କୋଠରି ଭିତରକୁ ନ ପଶିଲେ ବି ବାହାରୁ ନଜର ଆସ୍ଥାନ ଜମାଇ ଦେଲା । ସେ କୋଠରି ଭିତରକୁ ନ ପଶିଲେ ବି ବାହାରୁ ନଜର ପକାଇ ବୀରେଶ୍ୱର ଦେଖିଲା ଯେ ଭିକାରୀର ଜିନିଷପତ୍ର ତାଙ୍କଠାରୁ ଭଲ ଥିଲା । ତା ଭିତରେ ଗୋଟିଏ ଛୋଟ ଟେଲିଭିଜନ ବି ରଖିଥିଲା ଭିକାରୀ । ଯଦିଓ ସେମାନେ ଭାବିଥିଲେ ଭିକାରୀ ସେମାନଙ୍କର ରୋଷାଇ କାମ କରିବ, ପ୍ରକୃତରେ ଦେଖାଗଲା ଯେ ଭିକାରୀ ଆଉ ଜଣେ କଇଦୀକୁ ରାନ୍ଧୁଣିଆ ଲଗାଇ ନିଜେ ତା'ର ତଦାରଖ ମାତ୍ର କରୁଥିଲା । ପ୍ରଥମ ଦିନ ଯେତେବେଳେ ନୂଆ ଲୋକଟି ରୋଷେଇ କରିବାକୁ ଆସିଲା, କିଛି ଜାଣିବା ଉଦ୍ଦେଶ୍ୟରେ ଏବଂ କିଛି ତାକୁ ଖୁସି କରିବା ଉଦ୍ଦେଶ୍ୟରେ ବୀରେଶ୍ୱର କହିଲା, କଣ ଭିକାରୀବାବୁ, ତମେ କ'ଣ ରୋଷେଇ କରିବ ନାହିଁ କି ? ଆମେ ଭାବିଥିଲୁ ତମ ହାତରୁ ଭଲ ଖାଇବାକୁ ମିଳିବ । ଯଦିଓ ବୀରେଶ୍ୱର ହସି ହସି ଏକଥା କହିଥିଲା, ରୁକ୍ଷ ଗଳାରେ ଜବାବ ଦେଇ ଭିକାରୀ ଜଣାଇ ଦେଲା ଯେ ସେ ଏମାନଙ୍କର ବନ୍ଧୁତା ଚାହେଁ ନାହିଁ । ସେ କହିଲା, ଆଜ୍ଞା ମୁଁ ଜାତିରେ କରଣ ବୈଷ୍ଣବ । ସରକାରୀ ଚାକିରି କରି ମୁଣ୍ଡ ବିକି ଦେଇଛି ସିନା, ମୋର

ତ ପୁଣି ଜାତିଧର୍ମ ଅଛି । ହାଡ଼ି ବାଉରିଙ୍କ ସେବା କରିବା ମୋ ହାତରେ ହୋଇପାରିବ ନାହିଁ । ଏତକ କଥା ସେ ବେଶ୍ ଜୋରରେ ଶ୍ରୀହରିକୁ ଶୁଣାଇ ଶୁଣାଇ କହିଲା । ଶ୍ରୀହରି କିନ୍ତୁ ଏଭଳି ଉସୁକାଇବା ସହିତ ପରିଚିତ ଥିଲା ଏବଂ ନିଜକୁ ସମ୍ଭରଣ କରିନେଲା । ସେ ଜାଣିଥିଲା ଯେ ଏଭଳି କଥାରେ କଥା ଯୋଡ଼ିଲେ ପରିଣାମ ଖରାପ ହିଁ ହେବ । ଶ୍ରୀହରିକୁ ତା କଥା ଭିତରକୁ ଟାଣିବାରେ ବିଫଳ ହୋଇ ଭିକାରୀ ବୀରେଶ୍ୱରକୁ କହିଲା, ଆପଣଙ୍କ ପାଇଁ ମୁଁ ଯୋଉ ରାନ୍ଧୁଣିଆ ଯୋଗାଡ଼ କରିଦେଇଛି, ସେ ଜାତିରେ ସିନା କଣ୍ଡରା, କିନ୍ତୁ ତା'ର ହାତ ଭଲ । ଏକଥା ଶୁଣି ବୀରେଶ୍ୱରର ମୁହଁ ଶୁଖିଗଲା । ଅଛୁଆ, ଅସବର୍ଣ୍ଣ, ହରିଜନ ଇତ୍ୟାଦି କହିଲେ ଠିକ୍ ଅଛି, କିନ୍ତୁ ସିଧାସଳଖ ଜାତି ନାଁଟା କହିବାରୁ ତା ହାତରୁ ଖାଇବାକୁ ହେବ ଶୁଣି ବୀରେଶ୍ୱରର ମନ ଖରାପ ହୋଇଗଲା ଏବଂ ଦୂରରୁ ଏକଥା ଦେଖି ଶ୍ରୀହରି ସାମାନ୍ୟ ଖୁସି ହେଲା । ଭିକାରୀ ନିଜ ସ୍ୱରକୁ ଟିକିଏ ନୀଚ କରି କହିଲା, ଆପଣ ବ୍ରାହ୍ମଣ ବୋଲି ମୁଁ ଜାଣିଚି ଯେ ଆଜ୍ଞା, ତେବେ ଆଇନ କାନୁନ କଥାରେ ଆମେ କ'ଣ କରିବା ? ଏକଥା ତୁଣ୍ଡରେ ଧରିଲେ ତ ଜେଲ ହୋଇଯିବ । ବୀରେଶ୍ୱର ସାମାନ୍ୟ ମୁଣ୍ଡ ଝୁଙ୍କାଇ ହଁ ଭରିଲା ଯଦିଓ ତା'ର ମନେଥିଲା ଯେ ସେ ଜେଲ ଭିତରେ ହିଁ ଅଛି ।

ଏଥରକ ଭିକାରୀ ବିଧିବଦ୍ଧ ଭାବରେ ଲାଗିଗଲା ଦୁହିଁଙ୍କୁ ହଇରାଣ କରିବାର ନାନା ଉପାୟ ବାହାର କରିବାରେ । ଦୁଇବେଳାର ରନ୍ଧା ଏ ବିଷୟରେ ତା'ର ଗୋଟିଏ ପ୍ରଧାନ ମାଧ୍ୟମ ହେଲା । କେତେବେଳେ ଖାଇବାଟି ସଂପୂର୍ଣ୍ଣ ଅଲଣା ହେଉଥିଲା ତ ଏ ବିଷୟରେ ଆପତ୍ତି କଲେ ଅତ୍ୟଧିକ ଲୁଣ ପକାଇ ସେ ତାକୁ କରି ଦେଉଥିଲା ପୂରାପୂରି ଅଖାଦ୍ୟ । କେବେ କେବେ ତରକାରିରେ ବେଶି ଲଙ୍କା ପକାଇ ସେ ସେମାନଙ୍କ ଆଖିରୁ ଲୁହ ବାହାର କରି ଦେଉଥିଲା । ଏ ବିଷୟରେ ଶ୍ରୀହରିର ସହନ ଶକ୍ତି ବେଶି ଥିଲା । ତାକୁ ଯାହାଦେଲେ ଖାଇ ଦେଉଥିଲା । ବୀରେଶ୍ୱର ସବୁବେଳେ ରନ୍ଧା ବିଷୟରେ ପାଟିତୁଣ୍ଡ କରୁଥିବାରୁ ତା'ରି ଖାଦ୍ୟରେ ଲୁଣ ଲଙ୍କାର ପରିମାଣ ଅଧିକ ମାତ୍ରାରେ କମ୍ ବେଶି ହେଉଥିଲା । ସେମାନେ ଖାଇଲାବେଳେ ଭିକାରୀ ଠିଆ ହୋଇ ସେମାନଙ୍କର ଅସ୍ୱସ୍ତିକୁ ଉପଭୋଗ କରୁଥିଲା ଏବଂ କହୁଥିଲା, ରୋଷେଇ ହେଲା ନିଆଁ ପାଣିର କାମ, ରନ୍ଧା ହୋଇସାରିଲେ କେମିତି ଲାଗିବ, ସେ କଥା କାହା ହାତରେ ନାହିଁ ।

ଏସବୁ ବିଷୟରେ ୱାର୍ଡ଼ରକୁ କହି ଲାଭ ନଥିଲା କାରଣ ସେ ମଧ୍ୟ ଭିକାରୀକୁ ଡରୁଥିଲା । ଥରେ ଭିକାରୀ ସେଠାରେ ନଥିବା ବେଳେ ୱାର୍ଡ଼ର ସେମାନଙ୍କୁ ଚୁପଚୁପ କହିଲା, ଆଉ ଯାହା ହଉ ପଛେ, ଭିକାରୀକୁ ହାତରେ ରଖିଥାନ୍ତୁ । ଲୋକଟା ଏମିତି ବଦମାସ ଯେ ତା'ଯୋଗୁଁ ଥରେ ଜଣେ କଇଦୀ ଆତ୍ମହତ୍ୟା କରିଥିଲା । ଜେଲଖାନାରେ ସମସ୍ତେ ତାକୁ ଡରନ୍ତି ।

ଉଭୟ ବୀରେଶ୍ୱର ଓ ଶ୍ରୀହରିଙ୍କର ଆଗରୁ ଜେଲରେ ରହିବାର ଅଭିଜ୍ଞତା ଥିଲା ଏବଂ ଉଭୟେ ଜାଣିଥିଲେ ଯେ ଜେଲରେ ଅନେକ ପ୍ରକାରର ଅସୁବିଧା ଓ କଷ୍ଟ ସହିବାକୁ ହୁଏ । ତେବେ ଜଣେ ଲୋକ ସୁପରିକଳ୍ପିତ ଭାବେ ହଇରାଣ କରିବାରେ ଲାଗିଥିବା ସେମାନଙ୍କ ପାଇଁ ଏକ ନୂଆ ଅଭିଜ୍ଞତା ଥିଲା । ଭିକାରୀ ଆଜିକାଲି ଅନେକ ନୂଆ ପ୍ରଣାଳୀ ବାହାର କରିଥିଲା ସେମାନଙ୍କୁ ହୀନସ୍ତା କରିବାରେ । ରାତି ଅଧରେ ଖୁବ୍ ଜୋରରେ ରେଡ଼ିଓ ବଜାଇ ସେ ଆଉ ସେମାନଙ୍କୁ ଶୋଇବାକୁ ଦେଲାନାହିଁ । ଚାରିଦିନ କାଳ ତାଙ୍କ କୋଠରିକୁ ସଫା ଓ ମରାମତି କରିବା ଆଳରେ ସେ ତାଙ୍କର ଜିନିଷପତ୍ର ବାହାରେ ପକାଇ ଦେଇ ଦଳେ ଲୋକ ଆଣି ସେଠାରେ କାମ କରାଇଲା । ସେମାନେ ବଗିଚାରେ ପାଇଚାରି କରୁଥିବା ଦେଖି ସେ ସେଠାରେ ଗଛ ଲଗାଇବା ବାହାନାରେ ଖାତ ଖୋଳାଇ ଦେଲା, ଯାହା ଫଳରେ ସେମାନେ ଆଉ ଖୋଲା ଜାଗାରେ ଚଲାବୁଲା କରିପାରିବେ ନାହିଁ । ଏସବୁ ବ୍ୟତୀତ ଭିକାରୀର ଗୋଟିଏ ପ୍ରଧାନ ଅସ୍ତ୍ର ଥିଲା ସେମାନଙ୍କୁ ଶୁଣାଇ ଶୁଣାଇ ଗାଳିଗୁଲଜ କରିବା । ସେ ରାନ୍ଧୁଣିଆ ପାଖକୁ ଯାଇ ବଡ଼ପାଟିରେ କହୁଥିଲା 'ଏ ଶଳେ ନେତାମାନେ ଦେଶଟାକୁ ଖାଇଯିବେ' ଭଳି ସୁପ୍ରତୀତ, କିନ୍ତୁ କଇଦୀ ଦୁହିଁଙ୍କ ପାଇଁ ଅପ୍ରୀତିକର କଥାମାନ ।

ଦିନେ ବୀରେଶ୍ୱର ଭିକାରୀର ଶୁଣିବାରେ କହିଦେଲା ଯେ ତା'ର ଦେହ ଭଲ ଲାଗୁନାହିଁ । ଭିକାରୀ ସେଇଦିନ ଡାକ୍ତରଙ୍କୁ ଡାକି ଆଣିଲା ଏବଂ ସେ ତା'ର ହାତରେ ଯେଉଁ ଇଂଜେକସନଟି ଫୋଡ଼ିଲେ ତା'ର ଦରଜ ରହିଲା ପାଞ୍ଚଦିନ । ଏଇ ଘଟଣାଟି ପରେ ବୀରେଶ୍ୱର ଠିକ୍ କଲା ଯେ ନିଜର ମାନ ସମ୍ମାନକୁ ଭୁଲି ସେ ଯାଇ ଶ୍ରୀହରି ସହିତ ଆତ୍ମୀୟତା କରିବ । ଶ୍ରୀହରି ମଧ୍ୟ ଏଇ କଥାଟିର ଅପେକ୍ଷାରେ ଥିଲା ଏବଂ ଅଳ୍ପ ସମୟ ଭିତରେ ଉଭୟ ମିଳିମିଶି ଗଲେ ଭିକାରୀକୁ କିପରି ଜବତ କରିବାକୁ ହେବ, ତା'ର ଯୋଜନା କରିବାରେ । ଶ୍ରୀହରି ଉପରକୁ ଏପରି ବୋକା ଲୋକଟିଏ ଭଳି ଦେଖାଯାଉଥିଲେ କଣ ହେବ, ଥିଲା ନିତାନ୍ତ ଧୂର୍ତ୍ତ । ଭିକାରୀର ଅଜ୍ଞାତରେ ସେ ରାନ୍ଧୁଣିଆକୁ ହାତ କରିବାକୁ ଚେଷ୍ଟା କଲା, ନିଜେ ମଧ୍ୟ ଛୋଟଜାତିର ହୋଇଥିବାର ଦ୍ୱାହି ଦେଇ । ସେ ଏଥିରେ ସଫଳ ହେଲା ଏବଂ ଭିକାରୀର ପ୍ରରୋଚନା ଓ ନିର୍ଦ୍ଦେଶ ସତ୍ତ୍ୱେ ସେମାନଙ୍କର ଖାଇବା ପିଇବାରେ ଆଉ କୌଣସି କଷ୍ଟ ରହିଲା ନାହିଁ । ଦୁର୍ଭାଗ୍ୟକୁ ଭିକାରୀ ପାଖରେ ଏକଥା ବେଶିଦିନ ଛପି ରହି ପାରିଲା ନାହିଁ ଏବଂ ସେ ରାନ୍ଧୁଣିଆକୁ ବଦଳି କରିଦେଇ ଆଉ ଜଣେ ନୂଆ ବଦମାସ ଲୋକ ଆଣି ଲଗାଇ ଦେଲା । ସେମାନଙ୍କୁ ଶୁଣାଇ ଶୁଣାଇ କହିଲା, ତମେ ଡାଳେ ଡାଳେ ଗଲେ ମୁଁ ପତ୍ରେ ପତ୍ରେ ଯିବି ।

ଏଥରକ ଭିକାରୀ ଏକ ନୂଆ ଦୌରାତ୍ମ୍ୟ ଆରମ୍ଭ କଲା ପାଣିକଳକୁ ସମୟ ଅସମୟରେ ଇଚ୍ଛାମତେ ବନ୍ଦ କରିଦେବା । ପାଣି କଳର ଚାବିସବୁ କେଉଁଠି ଅଛି

ଭିକାରୀକୁ ଜଣା ଥିଲା ଏବଂ କେବେକେବେ ବୀରେଶ୍ୱର ବା ଶ୍ରୀହରି ପାଇଖାନା ଭିତରେ ଥିବାବେଳେ ଭିକାରୀ କଳ ମୋଡ଼ି ପାଣି ବନ୍ଦ କରିଦେଉଥିଲା । ଏହାପରେ ସେ ବିଜୁଳିର ଯୋଗାଯୋଗକୁ ବି ନିୟନ୍ତ୍ରଣ କରିବାରେ ଲାଗିଲା ଏବଂ ଖରାଦିନ ଦିପହରେ ପଙ୍ଖା ବନ୍ଦ କରିଦେଇ ସେମାନଙ୍କୁ ଯଥାସମ୍ଭବ କଷ୍ଟ ଦେଲା । ବୀରେଶ୍ୱର ଓ ଶ୍ରୀହରି ବୁଝିଗଲେ ଯେ ଜେଲରୁ ନ ମୁକୁଳିବା ପର୍ଯ୍ୟନ୍ତ ସେମାନଙ୍କର ମୁକ୍ତି ନାହିଁ ଏ ପାଜି ଲୋକଟିର ହାବୁଡ଼ରୁ ।

ଏଇ ସମୟରେ ପୁଣି ଆସେମ୍ବ୍ଲି ବସିବାରୁ ପ୍ରେସ୍‌ବିଲ୍‌ଟିର ଆଲୋଚନା ହେଲା ଏବଂ ବିରୋଧୀ ଆନ୍ଦୋଳନ ନବଜନ୍ମ ନେଲା । ଲୋକମାନଙ୍କର ଏତେବେଳକୁ ମନେପଡ଼ିଲା ଯେ ଦୁଇଜଣ ଭୂତପୂର୍ବ ମୁଖ୍ୟମନ୍ତ୍ରୀ ଏହି କାରଣରୁ ଏ ପର୍ଯ୍ୟନ୍ତ ଜେଲରେ ଅଛନ୍ତି । ମୁଖ୍ୟମନ୍ତ୍ରୀଙ୍କ ଉପରେ ଏଥିପାଇଁ ଚାପ ପଡ଼ିଲା ଏବଂ ସେ ଏ ବିଷୟରେ କାର୍ଯ୍ୟାନୁଷ୍ଠାନ କରିବାକୁ ବାଧ୍ୟ ହେଲେ । ସେଠାର ଜିଲ୍ଲା କଲେକ୍ଟର ପାଖକୁ ଖବର ଆସିଲା ଯେ ସେ ଯାଇ କଇଦୀ ଦୁଇଜଣଙ୍କୁ ମନାଉ ଏବଂ ତାଙ୍କୁ କହୁ ଯେ ସେମାନେ ଆନ୍ଦୋଳନ ପ୍ରତ୍ୟାହର କରିଦେବାର ଆଶ୍ୱାସନା ଦେଲେ ତାଙ୍କୁ ଜେଲରୁ ମୁକୁଳାଇ ଦିଆଯିବ । ସେମାନଙ୍କ ପାଖକୁ ଯେତେବେଳେ ଖବର ଆସିଲା ଯେ କଲେକ୍ଟର ତାଙ୍କ ପାଖକୁ ଆସିବାକୁ ଖବର ପଠାଇଛନ୍ତି, ବୀରେଶ୍ୱର ଅତି ଖୁସି ହୋଇଗଲା । କିନ୍ତୁ ଶ୍ରୀହରି କହିଲା, ଆପଣ ବୁଝିଲେ ନାହିଁ, ତାଙ୍କର ଗରଜ ଥିବାରୁ ଆମ ପାଖକୁ ଆସୁଛନ୍ତି । ଏତେବେଳେ ଆମର ଅଡ଼ି ବସିବା କଥା । ବୀରେଶ୍ୱର କହିଲା, ଏଠା ଜେଲର ଯେମିତି, ଆଉ କେବେ ଉପର ହାକିମଙ୍କୁ ଦେଖା କରିବାକୁ ମିଳିବ କି ନାହିଁ, ଏ ସୁବିଧା ଛାଡ଼ିଦେବା ? ଶ୍ରୀହରି କହିଲା, ଆମେ ସିଧା କହିଦବା ଯେ ଆମର ଦାବି ପୂରଣ ନହେଲେ ଆମେ କୌଣସି ଆଲୋଚନା ପାଇଁ ରାଜି ନୁହଁ ।

ଯଦିଓ ରାଜନୀତିକ ଚାଲବାଜିରେ ଭାଗ ନେବା ତା'ର କାର୍ଯ୍ୟଭୁକ୍ତ ନଥିଲା, ମୁଖ୍ୟମନ୍ତ୍ରୀଙ୍କ ଆଦେଶରେ କଲେକ୍ଟର ନିଜକୁ ପ୍ରସ୍ତୁତ କଲା ବୀରେଶ୍ୱର ଓ ଶ୍ରୀହରି ସହିତ କଥାବାର୍ତ୍ତା ପାଇଁ । ତାକୁ ଏଥିପାଇଁ ପ୍ରେସ୍ ଆଇନ ଓ ପ୍ରସ୍ତାବିତ ବିଲ୍‌ଟିକୁ ମୂଳରୁ ଶେଷ ପର୍ଯ୍ୟନ୍ତ ପଢ଼ିବାକୁ ପଡ଼ିଲା । ଆଇନଟି ପ୍ରକୃତରେ ଅତି କଠୋର ଓ ନିର୍ମମ ଥିଲା ଏବଂ ଥିଲା ମଧ୍ୟ ସଂପୂର୍ଣ୍ଣ ଗଣତନ୍ତ୍ର ବିରୋଧୀ । ସେ ଜାଣିଥିଲା ଯେ ଯଦି ବୀରେଶ୍ୱର ଓ ଶ୍ରୀହରି ତା ସହିତ ଏ ଆଇନର ବିଭିନ୍ନ ଧାରା ବିଷୟରେ ଆଲୋଚନା କରନ୍ତି, ତେବେ ତାକୁ ଯୁକ୍ତି ଦେଇ ସମର୍ଥନ କରିବା ତା ପକ୍ଷରେ କାଠିକର ପାଠ ହେବ । ତାକୁ ଜେଲର ଖବର ଦେଇଥିଲା ଯେ ବୀରେଶ୍ୱର ଓ ଶ୍ରୀହରି କହୁଛନ୍ତି ସେମାନେ ଗୋଟିଏ ଦାବିପତ୍ର ଲେଖି ପଠାଇବେ, ଯଦି ସରକାର ସେ ଦାବି ମାନି ନିଅନ୍ତି ତେବେ ଯାଇ ସେମାନେ କଲେକ୍ଟର ସହିତ ଆଲୋଚନା କରିବେ । କଲେକ୍ଟର ଆଶଙ୍କା କରୁଥିଲା

ଯେ ଏହି ପତ୍ରରେ ସେମାନେ ନିଶ୍ଚୟ ପ୍ରସ୍ତାବିତ ଆଇନର ବିଭିନ୍ନ ଦଫା ବିଷୟରେ ଆପତ୍ତି ଉଠାଇବେ ଏବଂ ଏହି ଆଳରେ ତା ସହିତ ଆଲୋଚନା କରିବାକୁ ମନା କରିଦେବେ ।

ବୀରେଶ୍ୱର ଓ ଶ୍ରୀହରିଙ୍କ ପାଖରୁ ଆସିଥିବା ଦାବିପତ୍ରଟିକୁ ଅତି ସନ୍ତର୍ପଣର ସହିତ ଖୋଲିଲା କଲେକ୍ଟର । ଛୋଟ ପତ୍ରଟି ତଳେ ଦୁଇଜଣଙ୍କର ଦସ୍ତଖତ ଥିଲା । ଚିଠିଟିରେ ପ୍ରେସ୍ ଆଇନ ବିଷୟରେ କୌଣସି ଉଲ୍ଲେଖ ନଥିଲା । ଏଥିରେ ଏକମାତ୍ର ଦାବି ଥିଲା ଯେ ଭିକାରୀ ନାୟକକୁ ଏ ଜେଲରୁ ଅନ୍ୟତ୍ର ବଦଳି କରି ଦିଆଯାଉ ।

# ଦେଖଣାହାରି

ବସ୍‌ର ସବା ପଛ ସିଟ୍‌ରେ ଆଉ ଟିକିଏ ଆରାମ କରି ବସି ପୁଣି ବହିଟି ପଢ଼ିବାରେ ମନ ଦେଲା ସଂଚିତ । ରାସ୍ତା ବିଶେଷ ଭଲ ନଥିଲା ଏବଂ ଗାଡ଼ିର ଝାଙ୍କରେ ପଢ଼ିବା କଷ୍ଟସାଧ୍ୟ ଥିଲା, ତେବେ ଅନ୍ୟମାନଙ୍କର ନିରର୍ଥକ କଥାବାର୍ତ୍ତାରେ ଭାଗ ନନେଇ ଅଲଗା ହୋଇ ରହିବା ପାଇଁ ବହିଟି ଥିଲା ଗୋଟିଏ ସହଜ ଉପଲକ୍ଷ । ତା'ର ବନ୍ଧୁମାନେ ବର୍ତ୍ତମାନ କୌଣସି ଜଣେ ନେତାଙ୍କର ଦଳୀୟ ରାଜନୀତିର ସୂକ୍ଷ୍ମାତିସୂକ୍ଷ୍ମ ହସ୍ତକୌଶଳ ବିଷୟରେ ଆଲୋଚନାରତ ଥିଲେ ଏବଂ ଏ ବିଷୟରେ ସାମାନ୍ୟ ବି ଅଭିରୁଚି ନଥିଲା ସଂଚିତର । ସେ ସବୁବେଳେ ଏପରି ଅଲଗା ହୋଇ ରହିଯାଉଥିଲା ତା'ର ସହଧର୍ମୀ ସାମ୍ବାଦିକମାନଙ୍କଠାରୁ ଏବଂ ସେମାନଙ୍କ ପାଖରୁ ଅପବାଦ ପାଉଥିଲା ଉନ୍ନାସିକ ହୋଇଥିବାର । କିନ୍ତୁ ତା'ର ସ୍ୱଭାବ ଓ ମନୋବୃତ୍ତି ହିଁ ଥିଲା ଏଇଭଳି ଏବଂ ତାକୁ ନେଇ ସେ ସନ୍ତୁଷ୍ଟ ଥିଲା । ତା'ର ଅଭିମାନ ଥିଲା ଯେ ଅନ୍ୟ ସାମ୍ବାଦିକମାନେ ଛୋଟ ଛୋଟ କଥାକୁ ନେଇ ବ୍ୟସ୍ତ ଥିବାବେଳେ ସେ ବିଭିନ୍ନ ରାଜନୀତିକ ସାମାଜିକ ସମସ୍ୟାମାନଙ୍କ ଉପରେ ଗଭୀର ଅଧ୍ୟୟନମୂଳକ ଶାଣିତ ପ୍ରବନ୍ଧମାନ ଲେଖୁଥିଲା ଏବଂ ସତ୍ତାରୂଢ଼ମାନଙ୍କୁ କଠୋର ସମାଲୋଚନା କରିବାରେ ପଶ୍ଚାତପଦ ହେଉ ନଥିଲା । ଏଥିପାଇଁ ସେ ବେଶ୍ ଅପ୍ରିୟ ଥିଲା, କିନ୍ତୁ ତା'ର ଲେଖାକୁ କେହି ଉପେକ୍ଷା କରିପାରୁ ନଥିଲେ ।

ବାହାରେ ଦିପହରରେ ଟାଣ ଖରା ଥିଲା, କିନ୍ତୁ ବାତାନୁକୂଳିତ ମିନିବସ୍ ଭିତରଟି ଥିଲା ଆରାମଦାୟକ । ସେମାନଙ୍କର ଯାତ୍ରାର ସବୁପ୍ରକାର ସ୍ୱାଚ୍ଛନ୍ଦ୍ୟ କରି ଦେଇଥିଲେ ସରକାର । ବସ୍ ଭିତରେ ଥଣ୍ଡାପାଣି ଓ ଫ୍ଲାସଭର୍ତ୍ତି ଚା' ଥିଲା । ତାଙ୍କର ସୁବିଧା ଅସୁବିଧା କଥା ବୁଝିବା ପାଇଁ ସାଙ୍ଗରେ ଯାଉଥିଲା ଜଣେ ଲୋକସଂପର୍କ ଅଫିସର । ଭେଟା ଭଳି ଦେଖାଯାଉଥିବା ଏହି କରିତକର୍ମା ଅଫିସରଟି ଏ କାମ ପାଇଁ ସଂପୂର୍ଣ୍ଣ ରୂପେ ଉପଯୁକ୍ତ ଥିଲା । ଜଣେ କର୍ତ୍ତବ୍ୟନିଷ୍ଠ ଏୟାରହଷ୍ଟେସ ପରି ସେ ସମୟମତେ ସେମାନଙ୍କୁ ପିଇବା ପାଣି ଓ ଚା' ଯୋଗାଉଥିଲା ଏବଂ ସେମାନଙ୍କର ବରାଦୀ ଗୀତର ଟେପ୍ ବଜାଇ ଶୁଣାଉଥିଲା । ତଥାପି ସନ୍ତୁଷ୍ଟ ନଥିଲେ ସାମ୍ବାଦିକମାନେ । ଚା' ସାଙ୍ଗରେ

ଖାଲି ବିସ୍କିଟ୍ ଦେଖି ଜଣେ କହିଲା, କ'ଣ ବାବୁ, ଆଜିକାଲି କ'ଣ ବଜାରରେ କାଜୁବାଦାମ ମିଳୁ ନାହିଁ ? ଯଦିଓ ସେ ଭଲଭାବେ ଜାଣିଥିଲା ଯେ କାଜୁବାଦାମ ଭଳି କୌଣସି ଜିନିଷ ସାଙ୍ଗରେ ଆସିନଥିଲା, ଭେଟା ତା ଗୋଡ଼ପାଖରେ ଥିବା ବାକ୍ସଟିକୁ ତନ୍ନତନ୍ନ କରି ଖୋଜିଲା, କହିଲା, ସାର୍, ଏଇ ସରକାରୀ ଗେଷ୍ଟହାଉସ କାମ ଏମିତି ; କହିଲେ କାଜୁ ପ୍ୟାକେଟ୍ ଦିଆହୋଇଛି ବୋଲି, କିନ୍ତୁ କାହିଁ ? ଏଥରକ କୋଉ ଭଲ ହୋଟେଲରୁ ଟା' ସଂରଞ୍ଜାମ ଆଣିବାକୁ ପଡ଼ିବ । ସରକାରୀ କାମକୁ ବିଶ୍ୱାସ ନାହିଁ । ଭେଟା ଜାଣିଥିଲା ଯେ ସାମ୍ବାଦିକମାନେ ଯେତେବେଳେ ଛୋଟ ଛୋଟ କଥାରେ ସରକାରଙ୍କୁ ସମାଲୋଚନା କରିବେ, ସେତେବେଳେ ସେମାନଙ୍କ ସାଙ୍ଗରେ ମିଶିଯାଇ କଥାଟିର ସମର୍ଥନ କରିବା ଚାଲାକିର କାମ । ଏଇଭଳି କାଜୁବାଦାମ ଅଭାବଜନିତ ସମସ୍ୟାକୁ ସରକାରୀ ଅପାରଗତା ଉପରେ ଲଦିଦେଇ ଭେଟା କହିଲା, ଥଣ୍ଡା ବିଅର କିନ୍ତୁ ମୁଁ ନିଜେ ଦେଖି ରଖାଇଛି ; ସେଥିରେ କୌଣସି ଗଣ୍ଡଗୋଳ ହେବ ନାହିଁ । ଏଥର ପକେଟରୁ ଗୋଟିଏ ବଟଲ ଓପନର ବାହାର କରି ସେ କହିଲା, ଆପଣ ଯେତେବେଳେ କହିବେ ବାହାର କରିଦେବି ।

ଜାଗରଣର ବିଶେଷ ସମ୍ବାଦଦାତା, ଯେ କି ଅସମୟରେ ଚା' ପିଇବାରେ ବିଶ୍ୱାସ କରୁନଥିଲା, କହିଲା, ତାହେଲେ ଆଉ ଡେରି କାହିଁକି ? ବସ୍ ଭିତରେ ସିନା ଖରା ନାହିଁ, କିନ୍ତୁ ବାହାରେ ତ ତଣ୍ଟି ଶୁଖିଯିବା ଅବସ୍ଥା । ସେମାନେ ଏଇମାତ୍ର ଚା' ପିଇଥିଲେ ଏବଂ ଦୈନିକ ସକାଳ କହିଲା, ଏବେ ତ ଜମା ସାଢ଼େ ଦଶଟା ବାଜିଛି । ଭେଟା କିନ୍ତୁ ଯେତେବେଳେ ଆଇସ୍‌ବକ୍ସ ଭିତରୁ ଗୋଟିଏ ଥଣ୍ଡା ବିଅର ବୋତଲ ବାହାର କରି ହାତରେ ଧରି ସମସ୍ତଙ୍କୁ ଦେଖାଇଲା, ଆଉ କାହାରି ଆପତ୍ତି ରହିଲା ନାହିଁ । ଅତି କୁଶଳତାର ସହିତ ଗ୍ଲାସ୍‌ରେ ବିଅର ଢାଳି ସେ ଜଣ ଜଣ କରି ସମସ୍ତଙ୍କ ହାତରେ ଦେଲା, କହିଲା, ଭଲ ହେଲା ଆପଣମାନେ ଆରମ୍ଭ କରିଦେଲେ, ନହେଲେ ମାଛଭଜା ଥଣ୍ଡା ହୋଇଯାଇଥା'ନ୍ତା । ବାର୍ତ୍ତା ସମ୍ପାଦକ ପ୍ରଥମେ ଢୋକେ ବିଅର ପିଇ କହିଲା, ଏଇଠି ତ ଆମକୁ ଏତେ ଖୁଆଇଲଣି, ଖରାବେଳେ ପୁଣି ଲଞ୍ଚ ମିଳିବ କି ନାହିଁ ? ଭେଟା କହିଲା, ସାର୍ ଆଜ୍ଞା, ଫରେଷ୍ଟ ବଙ୍ଗଳାରେ ତା'ର ବନ୍ଦୋବସ୍ତ ହୋଇଛି । ସେଥିପାଇଁ ବ୍ୟସ୍ତ ହେବାର ନାହିଁ । ଜନମତ କହିଲା, ସେଠି ଜଙ୍ଗଲରେ ଭଲ ଖାଇବାକୁ ମିଳିବ ନା ସେଇ ଗେଷ୍ଟହାଉସ୍ ଭଳି ଅବସ୍ଥା ? ସାପ୍ତାହିକ କ୍ରାନ୍ତି କହିଲା, ଯଦି ଫରେଷ୍ଟ ବଙ୍ଗଳାରେ ହରିଣ ମାଉଁସ ନ ମିଳିଲା, ତେବେ ସେ ପୁଣି କି ବନ୍ଦୋବସ୍ତ ? ଭେଟା କହିଲା, ସବୁ ମିଳିବ ଆଜ୍ଞା । ମୁଖ୍ୟମନ୍ତ୍ରୀ ନିଜେ ଚିଫ୍ କଞ୍ଜରଭେଟରଙ୍କୁ କହିଛନ୍ତି । ଖାଲି ଆମେ ଯାଇ ଠିକ୍ ସମୟରେ ପହଞ୍ଚିଲେ ହେଲା ।

ସକାଳ ସାତଟାବେଳେ ବାହାରିବାର ଥିଲା, କିନ୍ତୁ ସମସ୍ତେ ନିଜ ନିଜ ଖୁସିରେ ଆସି ପହଞ୍ଚିଲେ ଏବଂ ବାର୍ତ୍ତା ସଂପାଦକ ନ ଆସିବାରୁ ଶେଷରେ ବସ୍ ନେଇ ତାଙ୍କ

ଘରକୁ ଯିବାକୁ ହୋଇଥିଲା । ଏମିତି ହୋଇ ସେମାନେ ରାଜଧାନୀ ଛାଡ଼ିଲେ ନଅଟାବେଳେ । ଭେଟା ହିସାବ କରି ଦେଖିଲା ଯେ ସେମାନେ ଯାହା ଉପରବେଳା ପହଞ୍ଚିବାର ଥିଲା ହୋଇପାରିବ ନାହିଁ । ଫରେଷ୍ଟ ବଙ୍ଗଳାରେ ଲଞ୍ଚ ପାଇଁ ଅଟକି ପୁଣି ଚାରି ଘଣ୍ଟାର ଯାତ୍ରା କରୁ କରୁ ରାତି ହୋଇଯିବ ନିଶ୍ଚୟ । ଭଲ ହେଲା, ତାଙ୍କୁ ରାତିରେ ଖାଇବା ପିଇବାକୁ ଦେଇ ଶୁଆଇଦେବ ; ଆଜି ଆଉ ତାଙ୍କ ସାଙ୍ଗରେ ସହର ଭିତରେ ବୁଲିବାକୁ ପଡ଼ିବ ନାହିଁ ।

ରାଜଧାନୀଠାରୁ ଚାରିଶହ କିଲୋମିଟର ଦୂରର ଏଇ ଅନାମଧେୟ ଛୋଟ ସହରଟିରେ ସାଂପ୍ରଦାୟିକ ଦଙ୍ଗା ହୋଇଯାଇଥିଲା ପନ୍ଦରଦିନ ତଳେ । ଏ ଗଣ୍ଡଗୋଳରେ ତେର ଜଣ ମରିଥିଲେ, ଅନେକ ଲୋକ ଆହତ ହୋଇଥିଲେ, ଦୋକାନ ବଜାର ବସ୍ତିରେ ନିଆଁ ଲାଗି ଅନେକ କ୍ଷୟକ୍ଷତି ହୋଇଥିଲା । ସେଠାରୁ ଯାହାସବୁ ରିପୋର୍ଟ ଆସିଥିଲା, ସେଥିରୁ ଜଣାଯାଇଥିଲା ଯେ ପୋଲିସର ଅବହେଳାରୁ ହିଁ ଏଭଳି ପରିସ୍ଥିତିର ସୃଷ୍ଟି ହୋଇଥିଲା । ଦଙ୍ଗାର କିଛିଦିନ ଏ ପ୍ରକାର ଅବସ୍ଥା ଥିଲା ଯେ ବାହାର ଲୋକ, ଏପରିକି ରାଜଧାନୀର ଖବରକାଗଜବାଲା ମଧ୍ୟ ସେଠାକୁ ଯିବାକୁ ଭୟ କରୁଥିଲେ । ସ୍ଥାନୀୟ କର୍ତ୍ତୃପକ୍ଷଙ୍କ ବିରୁଦ୍ଧରେ ନାନା ଅଭିଯୋଗ ସତ୍ତ୍ୱେ ସରକାର କୌଣସି କାର୍ଯ୍ୟାନୁଷ୍ଠାନ କରି ନଥିଲେ ଏବଂ ଏକ ଯାଞ୍ଚ କମିଶନ ବସାଇବାର ଦାବିକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ଏଥିଯୋଗୁଁ ସେଠାର ପ୍ରଶାସନ ବର୍ତ୍ତମାନ ନିର୍ଭୟ ହୋଇ ଶାନ୍ତିରକ୍ଷା ଆଳରେ ସହରର ଲୋକଙ୍କ ଉପରେ ଦମନ ଲୀଳା ଆରମ୍ଭ କରି ଦେଇଥିଲେ ଏବଂ ଦଙ୍ଗାର ଆତଙ୍କରୁ ଯାଇ ଲୋକମାନେ ବର୍ତ୍ତମାନ ପଡ଼ିଥିଲେ ପୋଲିସର ଦୌରାତ୍ମ୍ୟରେ । ଏ ବିଷୟରେ ଖବରକାଗଜରେ ସମ୍ବାଦମାନ ପ୍ରକାଶ ପାଇବାରୁ ମୁଖ୍ୟମନ୍ତ୍ରୀ ଠିକ୍ କଲେ ଯେ ସେ ରାଜଧାନୀରୁ କିଛି ସାମ୍ବାଦିକଙ୍କୁ ସେଠାକୁ ପଠାଇବେ ; ସେମାନେ ନିଜେ ଯାଇ ଦେଖି ଆସନ୍ତୁ କିପରି ଦଙ୍ଗା ଶେଷ ହୋଇ ସହରରେ ଶାନ୍ତିଶୃଙ୍ଖଳା ଫେରି ଆସିଛି । ରାଜଧାନୀରୁ ଦଶଜଣ ସାମ୍ବାଦିକ ସରକାରଙ୍କ ବନ୍ଦୋବସ୍ତରେ ଯାଉଥିଲେ ଦଙ୍ଗା ଅଞ୍ଚଳ ଚାକ୍ଷୁଷ ଦେଖି ସେ ବିଷୟରେ ଲେଖିବା ପାଇଁ । ସଂବିତ ଭାବିପାରି ନଥିଲା ଯେ ଜାଗରଣ, ଜନମତ, ସକାଳ ସହିତ ସେ ମଧ୍ୟ ଏଇ ଗସ୍ତ ପାଇଁ ନିମନ୍ତ୍ରଣ ପାଇବ । କିନ୍ତୁ ମୁଖ୍ୟମନ୍ତ୍ରୀ ଜଣେ ଚତୁର ରାଜନୀତିଜ୍ଞ ଥିଲେ । ସେ ଜାଣିଥିଲେ ଯେ ଏଭଳି ସରକାରୀ ଗସ୍ତରେ ସାମ୍ବାଦିକମାନେ ଏପରି କିଛି ଦେଖିବାକୁ ପାଇବେ ନାହିଁ ଯାହା ତାଙ୍କ ବିପକ୍ଷରେ ଯିବ । ତା ବ୍ୟତୀତ ନିରପେକ୍ଷ ଓ ସ୍ୱାଧୀନଚେତା ସାମ୍ବାଦିକ ବୋଲି ଜଣାଥିବା ସଂବିତ ଭଳି ଲୋକ ଯଦି ଫେରିଆସି ଚାକ୍ଷୁଷ ବିବରଣୀ ପ୍ରକାଶ କରନ୍ତି, ତାହା ସରକାରଙ୍କୁ ସହାୟକ ହିଁ ହେବ ।

ବିଅର ପିଉ ପିଉ ସଂବିତ ଅନ୍ୟମାନଙ୍କ ଆଡ଼କୁ ଅନାଇଲା । ସମସ୍ତେ ଅତି ସନ୍ତୋଷର ସହିତ ପିଇବାରେ ମଗ୍ନ ଥିଲେ । ଭେଟା ଗୋଟିଏ ହାତରେ ନିଜର ଗ୍ଲାସ୍

ସମ୍ଭାଳି ଚଳନ୍ତା ବସ୍‌ରେ ସମସ୍ତଙ୍କୁ ମାଛଭଜାର ପ୍ଲେଟ୍ ଦେଖାଉଥିଲା । ପୂରା ଜିନିଷଟି ସଂବିତ ପାଇଁ ଦୃଷ୍ଟିକଟୁ ଥିଲା, କିନ୍ତୁ ସେ ସେମାନଙ୍କ ସହିତ ଯୋଗ ନଦେଇ ଉପାୟ ନଥିଲା । ନହେଲେ ସମସ୍ତେ ତାକୁ ଗର୍ବୀ ବୋଲି କହିଥାନ୍ତେ । ଅବଶ୍ୟ ତା'ର ଲେଖା ନେଇ ତାକୁ ସବୁବେଳେ ଅନ୍ୟ ସାମ୍ବାଦିକମାନଙ୍କର ଶରବ୍ୟ ହେବାକୁ ପଡୁଥିଲା । ଅନ୍ୟମାନେ ସରକାରଙ୍କ ଦୋଷତ୍ରୁଟି ଆଖିବୁଜା କରିଦେବା କିମ୍ବା ଅତି ହାଲୁକା ଭାବରେ ସମାଲୋଚନା କରିବାବେଳେ ସଂବିତ ଏଥିପାଇଁ ବ୍ୟବହାର କରୁଥିଲା କଠୋରରୁ କଠୋରତମ ଭାଷା । ସାମ୍ବାଦିକମାନଙ୍କ ମେଳରେ ଏଥିପାଇଁ ତାକୁ ଅନେକପ୍ରକାର କଥା ଶୁଣିବାକୁ ହେଉଥିଲା । ଥରେ କିଏ ଜଣେ ତାକୁ କହିଥିଲା, କଲେଜବେଳେ ଆମେ ଯେତେବେଳେ ହରତାଳ କରି ଜେଲ ଯାଉଥିଲୁ, ତୁ କ'ଣ କରୁଥିଲୁ ମନେ ଅଛି ? ତୁ ଯାଇ ଲାଇବ୍ରେରୀରେ ବସି ପାଠ ପଢୁଥିଲୁ । ଏମିତି କାଗଜ କଲମ ଧରି ସମାଲୋଚନା ଲେଖିଦେବା ସହଜ । ଯଦି ସାହସ ଅଛି ନିଜେ କାହିଁକି ଯାଇ ପ୍ରତିବାଦରେ ଯୋଗ ଦେଉ ନାହୁଁ ?

ଅନେକ ସମୟରେ ଏକଥା ନେଇ ବାଦବିସମ୍ବାଦ ହୁଏ । ସାମ୍ବାଦିକର କର୍ତ୍ତବ୍ୟ କ'ଣ ? ତା'ର ସାମାଜିକ ଦାୟିତ୍ୱ କେତେ ? ଖବରକାଗଜର ଫଟୋଗ୍ରାଫର କ'ଣ କରିବ- ନିଜକୁ ନିଆଁ ଲଗାଇ ଆତ୍ମାହୁତି ଦେଉଥିବାର ଲୋକର ଫଟୋ ଉଠାଇବ, ନା ଯାଇ ତାକୁ ରକ୍ଷା କରିବ ? ବୁଦ୍ଧିଜୀବୀକୁ କେତେଦୂର ସକ୍ରିୟତାବାଦୀ ହେବାକୁ ହେବ, ସେକଥା ଏ ପର୍ଯ୍ୟନ୍ତ ସ୍ଥିର ହୋଇପାରିନାହିଁ । ବୁଦ୍ଧିଜୀବୀମାନେ ସବୁବେଳେ ଚାହାଁନ୍ତି ଘଟଣାସ୍ଥଳରେ ପର୍ଯ୍ୟଟକ ଭଳି ପହଞ୍ଚି ଆନ୍ଦୋଳନରେ ଯୋଗ ଦେବେ, ସେଠାରେ ଖୁବ୍ ଅଳ୍ପ ସମୟ ରହି ଆନ୍ଦୋଳନର ପ୍ରସ୍ତୁତି ଓ ପରିଣାମର କୌଣସି ବି କଷ୍ଟ ନସହି ତା'ର ରୋମାଞ୍ଚକୁ ଉପଭୋଗ କରିବେ ଏବଂ ନିରାପଦରେ ସେଠାରୁ ପୁଣି ଚାଲିଯିବେ । ସଂବିତ ଅନେକ ସମୟରେ ଏ ବିଷୟରେ ଭାବେ, କିନ୍ତୁ କେବେ କୌଣସି ସମାଧାନ ପାଏ ନାହିଁ ଏ ପ୍ରଶ୍ନର । ବର୍ତ୍ତମାନ ସରକାରୀ ମାଛଭଜା ଖାଇ ବିଅର ପିଉ ପିଉ ତା ମୁଣ୍ଡକୁ ପୁଣି ଏ ପ୍ରଶ୍ନ ଆସିଲା, କିନ୍ତୁ ସେ ଜୋର କରି ଏ କଥାଟିକୁ ମନରୁ ଦୂର କରିଦେଲା ।

ଫରେଷ୍ଟ ବଙ୍ଗଳାରେ ବସ୍ ଯାଇ ପହଞ୍ଚିଲା ଦିନ ଅଢ଼େଇଟାବେଳେ । ଜଙ୍ଗଲ ବିଭାଗ ପ୍ରକୃତରେ ଭଲ ବନ୍ଦୋବସ୍ତ କରିଥିଲେ ଖାଇବା-ପିଇବାର । ଦିନେ ଆଗରୁ ସେଠାକୁ ଆସି ବିଭାଗର ଜଣେ ବରିଷ୍ଠ ଅଫିସର ନିଜେ ଏ ସବୁର ତଦାରଖ କରିଥିଲେ । ପୂର୍ବଦିନ ରାତିରେ ବଣରୁ ଚଢ଼େଇ ଶିକାର ହୋଇ ଆସିଥିଲା ଏବଂ ଗୋଟିଏ କୁକୁରା ମରା ଯାଇଥିଲା । ଆହୁରି ବିଅର ବୋତଲ ଥଣ୍ଡା କରି ରଖାଯାଇଥିଲା ବରଫ ଭିତରେ । ଖାଇବା ଘରର ଟେବୁଲ ଉପରେ ଧଳା ଚାଦର ପଡ଼ିଥିଲା ଏବଂ

ଡାକବଙ୍ଗଳା ବାରଣ୍ଡାରେ ଖାକି ପୋଷାକ ପିନ୍ଧି ଜଙ୍ଗଲ ଗାର୍ଡ଼ କେତେଜଣ ଆଦେଶ ଅପେକ୍ଷାରେ ଥିଲେ । ସାମ୍ବାଦିକ ଦଳ ଯାଇ ଆରାମ କରି ବସିବାରୁ ଭେଟା କହିଲା, ଯାହା କହନ୍ତୁ ଆଜ୍ଞା, ଆପଣ ଜଙ୍ଗଲ ବିଭାଗ ବନ୍ଦୋବସ୍ତକୁ ଖୁଣି ପାରିବେ ନାହିଁ । ଏଥର ଜଙ୍ଗଲ ବାବୁମାନଙ୍କ ଉପରେ ସମସ୍ତ ଦାୟିତ୍ୱ ସମର୍ପି ଦେଇ ଭେଟା ମଧ୍ୟ ଆରାମ କରି ବସିଗଲା । ମୁହୂର୍ତ୍ତକ ଭିତରେ ଗିଲାସରେ ଥଣ୍ଡା ବିଅର ଓ ପ୍ଲେଟରେ ମାଂସ ଆସି ପହଞ୍ଚିଗଲା ସମସ୍ତଙ୍କ ପାଖରେ । ଖରାଦିନର ଗରମ ଓ ଯାତ୍ରାର କ୍ଳାନ୍ତିକୁ ଭୁଲିବା ପାଇଁ ସମସ୍ତେ ସେଥିରେ ମନୋନିବେଶ କରିଦେଲେ ଏବଂ କଥାବାର୍ତ୍ତା ବର୍ତ୍ତମାନ ସୀମିତ ହୋଇଗଲା ପାନୀୟର ଶୀତଳତା ଓ ମାଂସର ସ୍ୱାଦ ବିଷୟରେ । ଦେଢ଼ଘଣ୍ଟା ପର୍ଯ୍ୟନ୍ତ ଏ ପର୍ବ ଚାଲିଲା ଏବଂ ଯେତେବେଳେ ଦେଖାଗଲା ଯେ ଏମାନଙ୍କ ଭିତରୁ କେହି ଉଠିବାର ମନଦଶାରେ ନାହାଁନ୍ତି, ଜଙ୍ଗଲ ଅଫିସର ଆସି ଭେଟାକୁ ଚୁପ୍‌ଚୁପ୍ କହିଲା, ଆଉ ବିଅର ନାହିଁ । ସାଙ୍ଗେ ସାଙ୍ଗେ ଭେଟାର ନିଶା ଛାଡ଼ିଗଲା ; ସେ ଉଠି ଠିଆହେଲା ଏବଂ ଜଣେ ଦାୟିତ୍ୱସଂପନ୍ନ ଲୋକର ମୁଦ୍ରାରେ କହିଲା, ଆଜ୍ଞା ଖାଇବାର ଥଣ୍ଡା ହୋଇଯାଉଛି ; ଏଥରକ ଚାଲନ୍ତୁ ଖାଇବା ଘରକୁ । ଜନମତ ତା'ର ଗ୍ଲାସ୍‌ର ବାକି ପାନୀୟକୁ ଏକାଶ୍ୱାସରେ ପିଇଦେଇ କହିଲା, କାହିଁକି ଶଳା ଖାଇବା ଖାଇବା ହଉଛ ? କିଏ ଏଠିକି ଆସିଛି ଖାଇବାକୁ ? ତମେ ଭାବୁଛ ଶଳା ଆମକୁ ଏମିତି ଖୁଆଇ ପିଆଇ ସରକାରଙ୍କୁ ସୁହାଇବା ଭଳି କଥା ଲେଖାଇନେବ, ନା ? ସେ ଆହୁରି କ'ଣ କହିବାକୁ ଯାଉଥିଲା, ଭେଟା କହିଲା, କି କଥା କହୁଛନ୍ତି ସାର୍ ? ମୁଁ ଖାଲି ଡେରି ହୋଇଯାଉଛି ବୋଲି କହୁଥିଲି । ସେ ଜଙ୍ଗଲ ବାବୁଙ୍କୁ ଧମକାଇବା ସ୍ୱରରେ କହିଲା, ଆମେ ଆଉ ଖାଇବା ଘରକୁ ଯାଇପାରିବୁ ନାହିଁ । ଏଇଠି ପ୍ଲେଟ୍‌ରେ ଆଣି ଖାଇବାକୁ ଦିଅ ।

ନିଜ ଗ୍ଲାସ୍‌କୁ ତଳେ ରଖୁ ରଖୁ ସଂବିତ ମନେ ମନେ ଭାବିଲା ସେ କ'ଣ ସତରେ ଏଇ ଅନ୍ୟମାନଙ୍କଠାରୁ ଭିନ୍ନ ? ବସ୍‌ରେ ଗୋଟାଏ କଣରେ ବସି ବହି ପଢ଼ିଲେ କଣ ସେ ନିଜକୁ ସ୍ୱତନ୍ତ୍ର କରିନେଇ ପାରିବ ଅନ୍ୟମାନଙ୍କଠାରୁ ? ତା'ର କ'ଣ ଅଧିକାର ଅଛି ସେ ନିଜକୁ ମନେ କରିବ ସେମାନଙ୍କଠାରୁ ଭିନ୍ନ ବୋଲି । ସେ କ'ଣ ଘରେ ବସି ପ୍ରତିବାଦର ଲେଖାମାନ ଲେଖୁଥିବ ନା ଓହ୍ଲାଇ ଆସିବ ରାସ୍ତା ଉପରକୁ ମୁହଁରେ ସ୍ଲୋଗାନ ଓ ହାତରେ ଝଣ୍ଡା ଧରି ? ସେ ସାହସ ତା'ର ନାହିଁ । ତା'ର ଯଦି ସେ ସାହସ ଥା'ନ୍ତା, ସେ କ'ଣ କଲେଜ ଧର୍ମଘଟବେଳେ ଲାଇବ୍ରେରୀରେ ବସି ବହି ପଢୁଥା'ନ୍ତା ? ବିଅର ନିଶାରେ ଏଭଳି କଥାମାନ ଭାବୁ ଭାବୁ ସଂବିତ ତା ହାତରେ ଧରାଇ ଦିଆଯାଇଥିବା ପ୍ଲେଟ୍‌ରୁ ଖାଇବାକୁ ଆରମ୍ଭ କଲା । ଜନମତ ସେତେବେଳକୁ ଖାଇବା ସହିତ ପାଳିଧରି ସରକାରଙ୍କୁ ଆହୁରି ଗାଳିଦେବାକୁ ଆରମ୍ଭ କରିଥିଲା । ଏଇପରି ଭାବରେ ଖାଇବା ପିଇବା ଅନେକ ଡେରିରେ ସରିଲା ଏବଂ ସେମାନେ ବସ୍ ଭିତରେ ବସିଲାବେଳକୁ

ସାଢ଼େ ପାଞ୍ଚଟା ବାଜି ସାରିଥିଲା । ଏତେବେଳେ ଜଣାଗଲା ଯେ ଜାଗରଣ ବସ୍ ଭିତରେ ନାହିଁ । ଭେଟା ଯାଇ ବାଥରୁମରେ ବାନ୍ତି କରି ଶୋଇପଡ଼ିଥିବା ଲୋକଟିକୁ ଉଠାଇଲା ଏବଂ ସମସ୍ତେ ଧରାଧରି କରି ତାକୁ ନେଇ ବସ୍‌ରେ ବସାଇଲେ ।

ବସ୍ ଯାଇ ଲକ୍ଷ୍ୟସ୍ଥଳରେ ପହଞ୍ଚିଲା ରାତି ଆଠଟା ପରେ । ସଂବିତ ଟିକିଏ ଶୋଇ ପଡ଼ିଥିଲା, ବର୍ତ୍ତମାନ ଆଖି ଖୋଲି ଅନାଇ ଦେଖିଲା ଯେ ବସ ସହର ଭିତରେ ପଶୁଥିଲା । ଛୋଟ ସହରର ଗୋଟିଏ ଲକ୍ଷଣ ହେଉଛି ଯେ ସେଠାରେ ଆଲୁଅ ସବୁ ରାତିରେ ମିଞ୍ଜି ମିଞ୍ଜି ହୋଇ ଜଳେ, ରାତି ହେଲେ ରାସ୍ତାରେ ଲୋକବାକ କମିଯା'ନ୍ତି ଏବଂ କେମିତି ଏକ ଉଦାସ ଉଦାସ ଭାବ ସହରର ରାସ୍ତାଘାଟକୁ ଘେରିଯାଏ । ବସ୍ ଅଟକିଲା ଏମିତି ଏକ ସହରର କେନ୍ଦ୍ର ଗାନ୍ଧିଛକରେ, ଯେଉଁଠାରେ ଗାନ୍ଧି ମୂର୍ତ୍ତିଟି ଠିକ୍ ଦେଖାଯାଉନଥିଲା, କିନ୍ତୁ ସାମନା ହୋଟେଲର ନିଅନ ନାମଫଳକଟି ସ୍ପଷ୍ଟ ଦିଶୁଥିଲା । ଏଇ ଛକର ଛୋଟ ଛୋଟ ଦୋକାନ ବଜାର ଉପରେ ଯେଉଁ ଘରଟି ପ୍ରାଧାନ୍ୟ ବିସ୍ତାର କରୁଥିଲା ସେଇଟି ଥିଲା ତିନିମହଲାର ଅର୍ଦ୍ଧବୃତ୍ତାକାର ପାର୍କ ହୋଟେଲ । ନାଁଟିର ସଂପର୍କ ଥିଲା ବୋଧହୁଏ ଛକ ଉପରର ଗାନ୍ଧିମୂର୍ତ୍ତି ଚାରିପାଖେ ଲୁହାବାଡ଼ ହୋଇଥିବା ଛୋଟ ଫୁଲ ବଗିଚାର ତଥାକଥିତ ପାର୍କ ସହିତ । ହୋଟେଲର ଝରକାସବୁ ଛକ ଆଡ଼କୁ ଖୋଲୁଥିଲା ଏବଂ କୋଠରିମାନଙ୍କର ଆଲୁଅ ଜଳି ବସ୍ ଭିତରୁ ହୋଟେଲଟି ଜଣାଯାଉଥିଲା ଯେପରି ଏକ ପ୍ରସିଦ୍ଧ ଐତିହାସିକ ସୌଧ । ଅନେକ ଭାବି ସଂବିତର ମନେପଡ଼ିଲା ଯେ ଏଇଟି ଦେଖାଯାଉଥିଲା ରୋମ୍‌ର ଭଙ୍ଗା କଲିସିଅମ ଭଳି, ଯାହା ଉପରେ ବସି ପ୍ରାଚୀନ ରୋମ୍‌ର ଦର୍ଶକମାନେ ରଙ୍ଗଭୂମି ଉପରେ ସିଂହ ମଣିଷକୁ ଖାଇଯାଉଥିବାର ଦୃଶ୍ୟ ଉପଭୋଗ କରୁଥିଲେ ।

ବସ ଅଟକିବାରୁ ଭେଟା ସମସ୍ତଙ୍କୁ ଅଧା ନିଦରୁ ଉଠାଇଲା ଏବଂ ହୋଟେଲ ଭିତରକୁ ନେଇଗଲା । ଏଇଟି ଥିଲା ସହରର ଏକମାତ୍ର ହୋଟେଲ ଯେଉଁଠାରେ ଏଇଭଳି ଗୋଟିଏ ଦଳକୁ ଏକା ଜାଗାରେ ରଖିହେବ । ସମସ୍ତଙ୍କ ପାଇଁ ରହିବା ବ୍ୟବସ୍ଥା ହୋଇଥିଲା ମଝି ମହଲାର ଦଶଟିଯାକ କୋଠରିରେ । ତଳମହଲାର ଗୋଟିଏ କୋଠରିକୁ ଖାଲି କରାହୋଇ ସେଠାରେ ପାନୀୟର ବ୍ୟବସ୍ଥା କରାହୋଇଥିଲା । ସମସ୍ତଙ୍କୁ ଯେତେ ଶୀଘ୍ର ସମ୍ଭବ ହାତ ମୁହଁ ଧୋଇ ତଳକୁ ଆସିବାକୁ କହି ଭେଟା ହୋଟେଲ ମ୍ୟାନେଜର ସାଙ୍ଗରେ ମିଶି ବନ୍ଦୋବସ୍ତରେ ଲାଗିଗଲା । ମାତ୍ର ଚାଳିଶ ହଜାର ଲୋକଙ୍କର ଏଇ ଛୋଟ ସହରଟିରେ କେବେ କୌଣସି ଉତ୍ତେଜନାକାରୀ ଜିନିଷ ଘଟି ନଥିଲା ଏଇ ସାମ୍ପ୍ରଦାୟିକ ଦଙ୍ଗା ପର୍ଯ୍ୟନ୍ତ । ଶହଶହ ବର୍ଷ ଧରି ହିନ୍ଦୁ ଓ ମୁସଲମାନମାନେ ଶାନ୍ତିରେ ବସବାସ କରୁଥିଲେ ଏବଂ କେହି ସ୍ୱପ୍ନରେ ବି ଭାବି ନଥିଲା ସେମାନେ ପରସ୍ପରର ଜୀବନ ଓ ଘରଦ୍ୱାର ଉପରେ ଆକ୍ରମଣ କରିବେ । ଏକଥା ସମ୍ଭବ ହୋଇଥିଲା ବାହାରୁ ଆସିଥିବା

ଦୁଇ ପକ୍ଷର ନେତା ଓ ଗୁଣ୍ଡାମାନଙ୍କର ପ୍ରରୋଚନାରେ ଏବଂ ସେତେବେଳେ ଏଇ ହୋଟେଲର ଭିନ୍ନ ଭିନ୍ନ କୋଠରି ହୋଇଯାଇଥିଲା ସେମାନଙ୍କର ମନ୍ତ୍ରଣା କକ୍ଷ ।

ତଳମହଲାର ଏଇଭଳି ଗୋଟିଏ କୋଠରିରେ ବସି ସେମାନେ ବର୍ତ୍ତମାନ ରାତ୍ରିଭୋଜନ ପୂର୍ବର ପାନୀୟର ସଦ୍‌ବ୍ୟବହାର କରୁଥିଲେ । ଯଦି ସେମାନେ ଉପରବେଳା ସୁଦ୍ଧା ପହଞ୍ଚି ପାରିଥା'ନ୍ତେ, ତାହେଲେ ସେଇଦିନ ଉପଦ୍ରୁତ ସ୍ଥାନମାନଙ୍କୁ ଯାଇ ଅନ୍ତତଃ କିଛି ଦେଖି ପାରିଥା'ନ୍ତେ । ଏ କାମ ସକାଳକୁ କରିବାକୁ ହେବ । ସଂବିତ ତଳକୁ ନଯାଇ ନିଜ କୋଠରିରେ ବସି ଏଇ ଯାତ୍ରାଟି କଥା ଭାବୁଥିଲା । ତା'ର ଉଚିତ ଥିଲା ଅଲଗା ଆସି ନିଜ ସୁବିଧାରେ ସ୍ୱାଧୀନ ଭାବରେ ପରିସ୍ଥିତିକୁ ଅନୁଧ୍ୟାନ କରିବା । ସରକାରୀ ବ୍ୟବସ୍ଥାରେ ଦଳେ ମଦ୍ୟପଙ୍କ ସାଙ୍ଗରେ ଆସି ଏଭଳି ଏକ ଗୁରୁତର ବିଷୟରେ କ'ଣ ପର୍ଯ୍ୟବେକ୍ଷଣ କରାଯାଇପାରେ ସ୍ୱଳ୍ପ ସମୟରେ ? ପ୍ରକୃତ ପକ୍ଷରେ ସବୁଠାରୁ ଭଲ ହୋଇଥାନ୍ତା, ଯଦି ସେ ଆସିପାରିଥା'ନ୍ତା ଏଠାର ଦଙ୍ଗା ସମ୍ବାଦ ପାଇବା ସଙ୍ଗେ ସଙ୍ଗେ । କାହିଁକି ସେ ଏକଥା କଲା ନାହିଁ ? ହଠାତ ସେ ଜବାବ ଦେଇପାରେ ଯେ ତା'ର ଅନ୍ୟ ଏକ ଜରୁରୀ କାମ ଥିଲା ସେତେବେଳେ । କିନ୍ତୁ ସେ ଜାଣିଥିଲା ଯେ ତା ମନରେ ଥିଲା ଗଣ୍ଡଗୋଳ ଜାଗାକୁ ଯିବାର ଭୟ । ସେ ଝରକା ପାଖରେ ଠିଆହୋଇ ଛକ ଉପରର ଗାନ୍ଧିମୂର୍ତ୍ତି ଆଡ଼କୁ ଅନାଇଲା । ନିଷ୍ପ୍ରଭ ଆଲୁଅରେ ଗାନ୍ଧିଙ୍କ ମୁହଁ ସ୍ପଷ୍ଟ ଦେଖାଯାଉ ନଥିଲା । କିନ୍ତୁ କୌଣସି ଅସ୍ପଷ୍ଟତା ନଥିଲା ହାତରେ ଲାଠି ଧରି ନୂଆଖାଲି ଆଡ଼କୁ ମାଡ଼ିଯାଉଥିବା ମୂର୍ତ୍ତିଟିର ଦୃପ୍ତ ପଦକ୍ଷେପରେ । ଶାନ୍ତି ପାଇଥିବା ଭଳି ମନସ୍ଥିତି ନେଇ ସେ ଝରକା ପାଖରୁ ଚାଲି ଆସିଲା ଏବଂ ତଳେ ଯାଇ ନିଜର ବନ୍ଧୁମାନଙ୍କ ସହିତ ଯୋଗ ଦେଲା ।

ପୁଣି ସେଇ ଦିନବେଳର ଅବସ୍ଥାର ପୁନରାବୃତ୍ତି ହେଉଥିଲା ସେଠାରେ । ଜନମତ ଆହୁରି କଟୁ ଓ ଅଶ୍ଳୀଳ ଭାଷାରେ ସରକାରଙ୍କୁ ଗାଳି ଦେଉଥିଲା, ଯଦିଓ ସମସ୍ତେ ଜାଣିଥିଲେ ଯେ ଲେଖିଲାବେଳେ ସେ ଶାସନକୁ ସମର୍ଥନ ହିଁ କରିବ । ହାତରେ ଗ୍ଲାସ୍ ଧରି ଜାଗରଣ ନିଜ ଚଉକି ଉପରେ ଶୋଇଯାଇଥିଲା । ଅନ୍ୟମାନେ ସ୍କଚ୍ ହ୍ୱିସ୍କି ଓ ସୂଚନା ବିଭାଗର ପ୍ରଶଂସା କରୁଥିଲେ । ସେମାନଙ୍କ ଭିତରୁ କେହି କିନ୍ତୁ ସେଇ ଦଙ୍ଗା ବିଷୟରେ କିଛି କହୁ ନଥିଲେ, ଯେଉଁଥିପାଇଁ ସେମାନେ ଏତେଦୂର ଆସିଥିଲେ ।

ଦୈନିକ ସକାଳ ଝରକା ଦେଇ ଦେଖାଯାଉଥିବା ଗାନ୍ଧିମୂର୍ତ୍ତି ଆଡ଼କୁ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରି କହିଲା, ଏତେବର୍ଷ ଛିଡ଼ାହୋଇ ଥକିଯିବା ପରେ ଗାନ୍ଧି କ'ଣ କଲେ ଜାଣ ? ତା'ର ଏଇ ଆଖ୍ୟାୟିକାଟି ସମସ୍ତଙ୍କୁ ଜଣା ଥିଲା ଏବଂ ସମସ୍ତେ ପାଟି କରି କହିଲେ ଆମେ ଜାଣିଛୁ ତମେ ଚୁପ୍ କର । ସକାଳ କିନ୍ତୁ ବନ୍ଦ ହେଲା ନାହିଁ । ସମସ୍ତଙ୍କୁ ଚୁପ୍ କରାଇ କହିଲା, ତାଙ୍କ ପାଦ ପାଖରେ ସବୁଦିନ ରାତିରେ ଯୋଉ

ଲୋକଟି ଶୋଇବାକୁ ଆସୁଥିଲା, ତାକୁ ଗାନ୍ଧି କହିଲେ ପୁଅ ମୁଁ ଛିଡ଼ା ହୋଇ ଥକିଗଲିଣି, ମୋ ପାଇଁ ଗୋଟିଏ ଘୋଡ଼ାର ବ୍ୟବସ୍ଥା କର । ଲୋକଟି ତାଙ୍କ କଥା ଶୁଣି ସକାଳୁ ଯାଇ ମନ୍ତ୍ରୀଙ୍କୁ ଏକଥା କହିଲା । ମନ୍ତ୍ରୀ ରାତିରେ ତା ସାଙ୍ଗରେ ଗାନ୍ଧିଙ୍କ ପାଖରେ ପହଞ୍ଚିଲେ । ମନ୍ତ୍ରୀଙ୍କୁ ଦେଖି ଗାନ୍ଧି ଲୋକଟିକୁ କହିଲେ, ପୁଅ, ମୁଁ ତତେ ଘୋଡ଼ା ପାଇଁ କହିଥିଲି, ତୁ ଗଧଟିଏ ଧରି ଆଣିଲୁ ? ଏହି ପୁରୁଣା ଚୁଟୁକି ଶୁଣି କେହି ଆମୋଦିତ ହେଲେ ନାହିଁ, କିନ୍ତୁ ସକାଳ ନିଜେ ହସି ହସି ଗଡ଼ିଗଲା ।

ଅବଶେଷରେ ଯେତେବେଳେ ଖାଇବା ପିଇବାର ପର୍ବ ସରିଲା, ଭେଟା ଖବର ଦେଲା ଯେ ମିନିବସ୍ ଖରାପ ହୋଇଯାଇଛି ଏବଂ ସେମାନଙ୍କୁ କାଲି ପୁଲିସ ଜିପରେ ବୁଲି ଯିବାକୁ ହେବ । ସଂବିତ ଜାଣିଲା ଯେ ଏଇଟ ପୂର୍ବ ପରିକଳ୍ପିତ । ଜନମତ କହିଲା, ଶଙ୍କା ଖବରଦାର, ପୁଲିସ ଜିପରେ ଯିବୁ ପଛେ, ଆମ ସାଙ୍ଗରେ ଯେମିତି ପୁଲିସବାଲା ନରହନ୍ତି ! ଭେଟା କହିଲା, ସାର୍ ପୁଲିସ ଯାଇଥା'ନ୍ତେ ଆପଣଙ୍କ ସୁରକ୍ଷା ପାଇଁ । ତେବେ ଆପଣ ଯଦି ମନା କରିବେ ପୁଲିସ ଡ୍ରାଇଭର ଛଡ଼ା କେହି ରହିବେ ନାହିଁ ଜିପ୍‌ରେ । ଯଦି କିଛି ହୁଏ, ଦେଖାଯିବ । ଯେତେହେଲେ ମୁଁ ତ ଥିବି ଆପଣଙ୍କ ସାଙ୍ଗରେ ।

ନିଜ କୋଠରିକୁ ଆସି ପୋଷାକ ବଦଳାଇ ଶୋଇବାକୁ ଚେଷ୍ଟା କଲା ସଂବିତ । କିନ୍ତୁ ଦିନସାରାର କ୍ଲାନ୍ତି ଓ ପାନୀୟ ସତ୍ତ୍ୱେ ନିଦ ଆସିଲା ନାହିଁ । ଘଡ଼ି ଦେଖିଲା ରାତି ବାରଟା । ନ ଶୋଇଲେ କାଲି ପୁଣି କାମ କରିହେବ ନାହିଁ । ଏମିତି ବିଛଣାରେ ପଡ଼ି ଛଟପଟ ହେଉ ହେଉ ତା'ର ଆଖି ଲାଗି ଆସିଥିଲା, ହଠାତ କାହାର ଚିତ୍କାରରେ ନିଦ ଭାଙ୍ଗିଗଲା । ସେ ଧଡ଼ପଡ଼ ହୋଇ ଉଠି ଆଲୁଅ ଜଳାଇଲା ଓ ଝରକା ପାଖକୁ ଯାଇ ବାହାରକୁ ଅନାଇଲା । ବାହାରେ ବର୍ତ୍ତମାନ ଉଜ୍ଜ୍ୱଳ ଜହ୍ନ ଆଲୁଅ ପଡ଼ିଥିଲା ଓ ସବୁକିଛି ସ୍ପଷ୍ଟ ଦେଖାଯାଉଥିଲା । ଗାନ୍ଧିମୂର୍ତ୍ତି ପାଖରେ ଦୁଇଜଣ ପୁଲିସବାଲା ଜଣେ ଲୋକକୁ ଧରିଥିଲେ, ସେ କ'ଣ କହୁଥିଲା ଶୁଣାଯାଉନଥିଲା, କିନ୍ତୁ ତା ଭାବଭଙ୍ଗୀରେ ଆତଙ୍କ ପ୍ରକଟ ଥିଲା । ବିକଳ ହୋଇ ଲୋକଟି ତା'ର ଝରକା ଆଡ଼କୁ ଅନାଇଲା । ପୁଲିସବାଲା ଲାଠି ଉଠାଇ ତାକୁ ପିଟିବାକୁ ଆରମ୍ଭ କଲେ ଏବଂ ଲୋକଟି ମରିଗଲି ମରିଗଲି ଚିତ୍କାର କରି ତଳେ ପଡ଼ିଗଲା । ଏଥରକ ପୁଲିସ ଦୁହେଁ ତାକୁ ତଳୁ ଉଠାଇ ତା'ର ହାତ ଧରି ଟାଣି ଟାଣି ତାକୁ ଗୋଟିଏ ଗଳି ଭିତରକୁ ନେଇଗଲେ ।

ଭାବାବିଷ୍ଟ ହୋଇ ଠିଆହୋଇ ରହିଲା ସଂବିତ । କ'ଣ କରିବା ଉଚିତ ଥିଲା ତା'ର ? ସେ ତଳକୁ ଦୌଡ଼ିଯାଇ ପୁଲିସବାଲାଙ୍କୁ ରୋକି ପାରିଥା'ନ୍ତା । ପାଟିକରି ହୋଟେଲର ଲୋକଙ୍କୁ ଉଠାଇ ଧରିପାରିଥା'ନ୍ତା ପୁଲିସ ଦୁଇଜଣଙ୍କୁ । ସେ ଝରକା ବାହାରକୁ ଝୁଙ୍କି ଦି'ପାଖକୁ ଅନାଇଲା । ହୋଟେଲର ସବୁଗୁଡ଼ିକ ଝରକା ଖୋଲା ଥିଲା ।

ଯଦିଓ ଆଉ କାହାରି ଆଲୁଅ ଜଳୁ ନଥିଲା, ତା'ଭଳି ହୁଏତ ସମସ୍ତେ ଲୋକଟିର ଚିତ୍କାର ଶୁଣି ଆସି ଝରକା ପାଖରେ ଠିଆ ହୋଇଥିଲେ, କିନ୍ତୁ କେହି କୌଣସି ପଦକ୍ଷେପ ନେଇ ନଥିଲେ ତା'ରି ଭଳି । ସଂବିତ ବାହାରକୁ ଅନାଇଲା । ଆଉ କୌଣସି ଚିହ୍ନବର୍ଣ୍ଣ ନଥିଲା ମୁହୂର୍ତ୍ତକ ତଳେ ହୋଇଯାଇଥିବା ଘଟଣାଟିର । ଜହ୍ନ ଆଲୁଅରେ ପାର୍କ ଛମଛମ କରୁଥିଲା । ହାତରେ ମୋଟା ଲାଠିଟି ଧରି ଗାନ୍ଧି ଛିଡ଼ା ହୋଇଥିଲେ । ସବୁକିଛି ଚୁପ୍‌ଚାପ୍ ଠିକ୍‌ଠାକ୍ ଥିଲା । ସେ ପୁଣି ବିଛଣାକୁ ଆସି ଶୋଇବାକୁ ଚେଷ୍ଟା କଲା । ତାକୁ ଏ ବିଷୟରେ କିଛି ନା କିଛି କରିବାକୁ ପଡ଼ିବ । ସକାଳେ ନିଶ୍ଚୟ ଅନ୍ୟମାନେ ଏକଥା ଉଠାଇବେ ଏବଂ ସେ ଅନ୍ୟ ବିଷୟରେ ଅନୁସଂଧାନ ସହିତ ଏ ଘଟଣାଟିର ମଧ୍ୟ ଖୋଳତାଡ଼ କରିବ । ନିଜର ଲେଖାରେ ସେ ଏହାର ସବିଶେଷ ଉଲ୍ଲେଖ କରିବ ଏବଂ ତା'ର ବର୍ଣ୍ଣନାଟି ଆରମ୍ଭ କରିବ ଏଇ ଅଧାରାତିର ସଂତ୍ରାସରୁ । ମନେମନେ ସେ ଲେଖାଟିର କେତୋଟି ବାକ୍ୟ ତିଆରି କରିନେଲା । କିନ୍ତୁ ଭାଷାର କୌଣସି ବି ପ୍ରୟୋଗ ସମର୍ଥ ନଥିଲା ଲୋକଟିର ଆତଙ୍କକୁ ସାକାର କରିବା ପାଇଁ । ସଂବିତ ଶୋଇବାକୁ ଚେଷ୍ଟା କଲା, କିନ୍ତୁ ଲୋକଟିର ଚିତ୍କାର ପୁଣି ତା'ର ଅନ୍ତସ୍ଥଳକୁ ବିଦ୍ଧ କରିଗଲା । ନିଜର ନିଷ୍କ୍ରିୟତାକୁ ଘୃଣା କରି ବିଛଣାରେ ପଡ଼ିରହିଲା ସେ ।

ସକାଳେ ସମସ୍ତେ ଭେଟିଲେ ଯେପରି ପୂର୍ବରାତିରେ କିଛି ବି ହୋଇନାହିଁ । ସଂବିତ ଭାବିଲା ସେ ନିଜେ ଏଇ କଥାଟି ଉତ୍‌ଥାପନ କରିବ, କିନ୍ତୁ ତା'ର ସଂକୋଚ ହେଲା ଯେ ତାକୁ ପ୍ରଶ୍ନ ହେବ ସେ ସାଙ୍ଗେ ସାଙ୍ଗେ କାହିଁକି ସମସ୍ତଙ୍କୁ ଉଠାଇ ଏ କଥା କହିଲା ନାହିଁ । ଲୋକଟିର ଚିତ୍କାର ଯେ ନିଜ ନିଜର ଖୋଲା ଝରକା ଦେଇ ଆଉ କେହି ଶୁଣି ନଥିବେ, ଏକଥା ସମ୍ଭବ ନୁହେଁ । ହୁଏତ ତା'ରି ଭଳି ସମସ୍ତେ ଭାବୁଥିଲେ, ମୁଁ କାହିଁକି ଅନ୍ୟମାନଙ୍କ ଆଗରେ ଦୋଷୀ ହେବି କିଛି ନକରି ଚୁପ୍ ରହିଥିବାର । ତା ହେଲେ ସଂବିତ କୋଉ ଗୁଣରେ ଭଲ ଅନ୍ୟମାନଙ୍କଠାରୁ ? ବର୍ତ୍ତମାନ ଆଉ କେହି ଏକଥା ଉଠାଉ ନଥିବାରୁ ସଂବିତ ପକ୍ଷରେ ଏ ବିଷୟରେ ଲେଖିବା ବି ସମ୍ଭବ ହେବ ନାହିଁ । ସେ କିପରି ଏ ଘଟଣାଟି ବିଷୟରେ ଲେଖି ସାରା ପୃଥିବୀକୁ ଜଣାଇ ଦେବ ନିଜର ନପୁଂସକତା ? ଏଇସବୁ କଥା ଭାବିବାବେଳେ ହଠାତ ତା'ର ମସ୍ତିଷ୍କ ଭିତର ଦେଇ ଲୋକଟିର ଚିତ୍କାର ବାହାରି ଚାଲିଗଲା ଏବଂ ସଂବିତ କିଛି ସମୟ କିଂକର୍ତ୍ତବ୍ୟବିମୂଢ଼ ହୋଇ ବସିରହିଲା ।

ଯେପରି ଆଶା କରାଯାଉଥିଲା, ସେମାନଙ୍କ ଅନୁସନ୍ଧାନ ସୁରୁଖୁରୁରେ ହୋଇଗଲା । ପୁଲିସ ଜିପ୍ ଗଳି ଭିତରକୁ ପଶିବାବେଳେ ଦେଖାଗଲା ଯେ ଘରେ ସ୍ତ୍ରୀ ଓ ପିଲାମାନଙ୍କ ଛଡ଼ା କେହି ନାହାଁନ୍ତି, ପୁରୁଷମାନେ କାମକୁ ବାହାରି ଯାଇଛନ୍ତି । ସ୍ତ୍ରୀଲୋକମାନେ ଦଙ୍ଗା ବିଷୟରେ କିଛି ଜାଣି ନଥିବାର କହିଲେ । ଯେଉଁ ଘରସବୁ

ଜଳିପୋଡ଼ି ଯାଇଥିଲା, ସେଠାରେ କେହି ଦେଖିବାକୁ ମିଳିଲେ ନାହିଁ । ଦୋକାନ ବଜାରରେ ଲୋକମାନେ ସବୁ ଠିକ୍‌ଠାକ୍ ଅଛି ବୋଲି କହିଲେ । ଜଣେ ଲୋକ କ'ଣ କହିବାକୁ ଯାଉଥିଲା, ତାକୁ ତା'ର ନାଁ ପଚାରିବାରୁ ସେ ସେଠାରୁ ଦଉଡ଼ି ପଳାଇଗଲା । ସାମ୍ବାଦିକମାନେ ନୋଟ୍‌ଖାତାରେ ସବୁ ଟିପି ନେଲେ, ଫଟୋ ଉଠାଇଲେ, ଜାଣିଲେ ଯେ ଅବସ୍ଥା ନିୟନ୍ତ୍ରଣାଧୀନ ହୋଇଯାଇଛି । ଆଉ କିଛି ଗଣ୍ଡଗୋଳ ନାହିଁ ଏଠାରେ । ଥାନାକୁ ଯାଇ ସେମାନେ କ୍ଷୟକ୍ଷତିର ବିବରଣୀ ଲେଖିନେଲେ, ଥାନାବାବୁଙ୍କ ପାଖରୁ ଆଶ୍ୱାସନା ପାଇଲେ ଯେ ସହରକୁ ଶାନ୍ତି ଫେରି ଆସିଲାଣି । ହୋଟେଲ ଥାନା ପାଖରୁ ବେଶି ଦୂର ନଥିଲା । ଥାନା ପାଖରେ ଜିପ୍ ଛାଡ଼ିଦେଇ ସେମାନେ ହୋଟେଲକୁ ଫେରି ଆସିଲେ । ବସ୍ ସେତେବେଳକୁ ମରାମତି ହୋଇ ଠିକ୍ ହୋଇସାରିଥିଲା । ନିଜ ନିଜ ଦାୟିତ୍ୱକୁ କର୍ତ୍ତବ୍ୟନିଷ୍ଠ ଭାବରେ ସମାପନ କରିଥିବାର ସନ୍ତୋଷ ନେଇ ସମସ୍ତେ ଫେରିବାର ରାସ୍ତା ଧରିଲେ ।

ଘରକୁ ଫେରିଆସି ମାନସିକ ସଂକଟରେ ପଡ଼ିଲା ସଂବିତ । ଯେତେ ଚେଷ୍ଟା କଲେ ବି ସେ ମନ ଭିତରୁ ସେଇ ରାତିର ଘଟଣାଟିକୁ ଦୂରକରି ପାରିଲା ନାହିଁ । ମଝିରେ ମଝିରେ ସେଇ ଅସହାୟ ଲୋକଟିର ଆର୍ତ୍ତଚିତ୍କାର ତାକୁ ଆସି ବ୍ୟତିବ୍ୟସ୍ତ କରିବାରେ ଲାଗିଲା । ସେ ଖବରକାଗଜ ପାଇଁ ତା'ର ରିପୋର୍ଟ ଲେଖିବା ପାଇଁ ବସିଲା, କିନ୍ତୁ ଗୋଟିଏ ଧାଡ଼ି ଲେଖି ପାରିଲା ନାହିଁ । ତାକୁ ନିଜର ବୋଧଶକ୍ତି ଉପରେ ସନ୍ଦେହ ହେଲା । ସେ ଶୋଇବାକୁ ଗଲା, କିନ୍ତୁ ମରିଗଲି ମରିଗଲିର ଆର୍ତ୍ତନାଦରେ ତା'ର ନିଦ ଭାଙ୍ଗିଗଲା ।

ସେ ମନଦେଇ ତା'ର ଅନ୍ୟ ବନ୍ଧୁମାନେ ଲେଖିଥିବା ବିବରଣୀମାନ ପଢ଼ିଲା । ସମସ୍ତେ ପୁଣି ଦଙ୍ଗାର ସେଇ ପୁରୁଣା ଖବରମାନଙ୍କର ପୁନରାବୃତ୍ତି କରିଥିଲେ ଏବଂ ଲେଖିଥିଲେ ଯେ ପରିସ୍ଥିତି ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଲାଣି । ପୁଲିସର ଦମନଲୀଳା ବିଷୟରେ ଯେଉଁ ଅଭିଯୋଗମାନ ହୋଇଥିଲା, ସେ ସଂପର୍କରେ କେହି କିଛି ହେଲେ ଲେଖି ନଥିଲେ । ପ୍ରକୃତରେ ସେଇ ଦିନକର ସରକାରୀ ଯାତ୍ରାରେ କ'ଣ ବି ଜଣା ପଡ଼ିଥାନ୍ତା ଏ ବିଷୟରେ ? କେବଳ ଜଣକର ଲେଖାରେ ସରକାରଙ୍କର ସାମାନ୍ୟ ସମାଲୋଚନା ଥିଲା ; ସେଇଟି ଥିଲା ଜାଗରଣର ସମ୍ବାଦଦାତାର ।

ଏଇ କେତେଦିନ ସଂବିତର ମନର ଭାରସାମ୍ୟ ରହିଲା ନାହିଁ । ପୁଲିସଠାରୁ ମାଡ଼ ଖାଇଥିବା ଲୋକଟିର ଚିତ୍କାର ସମୟ ଅସମୟ ତାକୁ ଆସି ବିବ୍ରତ କରିବାରେ ଲାଗିଲା । କାହା ସାଙ୍ଗରେ ଏ ବିଷୟରେ ଆଲୋଚନା କରିଥିଲେ ହୁଏତ ସେ ଶାନ୍ତି ପାଇଥା'ନ୍ତା, କିନ୍ତୁ ନିଜର ଦୁର୍ବଳତାକୁ ସେ କିପରି କାହା ଆଗରେ କହିବ । ଶେଷରେ ଯେତେବେଳେ ତା'ର ମନସ୍ଥିତି ଦୁର୍ବିସହ ହୋଇପଡ଼ିଲା, ସେ ଦିନେ ସକାଳେ ଗଲା

ଜାଗରଣ ଅଫିସକୁ । ସେଠାରେ ସମ୍ବାଦଦାତା ଜଣକ ସହିତ ଅନେକ ବିଷୟରେ କଥାବାର୍ତ୍ତା ହେଲା, କିନ୍ତୁ ସଂବିତ ଯେତେ ସଂକେତ ଦେଲେ ମଧ୍ୟ ସେ ତାକୁ ସେଦିନର ରାତି ବିଷୟରେ କିଛି କହିଲା ନାହିଁ । ଶେଷରେ ସଂବିତ ଠିକ୍ କଲା ସେ ତାକୁ ସିଧାସଳଖ ପଚାରିବ । ସେ କହିଲା, ସେଦିନ ରାତିଅଧରେ ଗାନ୍ଧିଛକରେ ମୁଁ ଦି'ଜଣ ପୁଲିସଙ୍କୁ ଗୋଟିଏ ଲୋକକୁ ମାଡ଼ ଦେବାର ଦେଖିଥିଲି । ସଂବିତ ତାକୁ ଏକଥା କହୁଥିବାବେଳେ ଲୋକଟି ପୁଣି ଚିତ୍କାର କଲା । ସଂବିତ କହିଲା, ଆପଣ କ'ଣ ଏ ବିଷୟରେ କିଛି ଜାଣନ୍ତି ?

ଅନେକ ସମୟ ପର୍ଯ୍ୟନ୍ତ ସେ କୌଣସି ଜବାବ ଦେଲା ନାହିଁ । ଶେଷରେ ଧୈର୍ଯ୍ୟ ଶେଷ ହୋଇ ସଂବିତ ପୁଣି ପ୍ରଶ୍ନଟି ପଚାରିବାକୁ ଯାଉଥିଲା, ସେ ଉତ୍ତର ଦେଲା ; ନା, ମୁଁ ଏଭଳି କିଛି ଦେଖିନାହିଁ । ତା'ର ଉତ୍ତର ଆହୁରି ଚିନ୍ତାରେ ପକାଇ ଦେଲା ସଂବିତକୁ । ସେ ନିଜେ ସତରେ କ'ଣ ଏଭଳି କିଛି ଦେଖି ନଥିଲା ଏବଂ ସଂପୂର୍ଣ୍ଣ ଅନୁଭୂତିଟି ଥିଲା ତା'ର ନିଶାଗ୍ରସ୍ତ ମନର ବିଳାସ ମାତ୍ର ? ଏକଥା ଭାବିବାରେ ତା'ର ମନ ସାମାନ୍ୟ ଆଶ୍ୱସ୍ତ ହୋଇଗଲା, କିନ୍ତୁ ଏଇ ମୁହୂର୍ତ୍ତରେ ପୁଣି ସେ ଚିତ୍କାରଟି ଶୁଣିବାକୁ ପାଇଲା । ସଂବିତ କହିଲା, ଆପଣ ସତ କହୁଛନ୍ତି ? ସଂବିତକୁ ବାହାରକୁ ବଳାଇ ଦେବାକୁ ଆସି ସେ କହିଲା, ସତ ହେଉଛି ସେତିକି, ଆମେ ଯେତିକି ସହି ପାରିବା ।

ଘରକୁ ଫେରିବାବେଳେ ଖୁବ୍ କ୍ଳାନ୍ତ ଓ ଅବସନ୍ନ ବୋଧ କରୁଥିଲା ସଂବିତ । ଖାଇପିଇ ସାରି ସେ ବିଛଣାରେ ପଡ଼ିଗଲା । ଯେତେବେଳେ ଆର୍ତ୍ତନାଦଟି ଆସି ପୁଣି ତାକୁ ଉତ୍ପୀଡ଼ନ କଲା, ନିଦ ଲାଗି ଆସୁଥିବାବେଳେ ସେ ଠିକ୍ କଲା ଯେ ପୁଣିଥରେ ସେଠାକୁ ଯାଇ ସେ ଏଇ ସମସ୍ୟାର ସମାଧାନ କରିବ । ତାକୁ ଜାଣିବାକୁ ହେବ ସେଦିନ ରାତିରେ ଲୋକଟିର କ'ଣ ହେଲା । ତାକୁ ଏଇ କଠୋର ସତ୍ୟଟିକୁ ସହିବାକୁ ହିଁ ହେବ ।

ସେ ଗାଡ଼ି ନେଇ ବାହାରିଲା । ସହର ଛାଡ଼ିବା ପରେ ଖରାପ ରାସ୍ତା ପଡ଼ିଲା ଓ ଅସମୟ ମେଘ ଘୋଟିଗଲା । ତଥାପି ସଂବିତ ଠିକ୍ କଲା ଯେ ସେ କେଉଁଠି ହେଲେ ଅଟକିବ ନାହିଁ । ମଝିରେ ଥରେ ରାସ୍ତା ଭୁଲ୍ କରି ତାକୁ ଅନେକ ବାଟ ଫେରିବାକୁ ପଡ଼ିଲା । ତା ସତ୍ତ୍ୱେ ଧୈର୍ଯ୍ୟ ନ ହରାଇ ସଂବିତ ଆଗକୁ ବଢ଼ି ଚାଲିଲା ସତକଥାର ମୁହାଁମୁହିଁ ହେବା ପାଇଁ ।

ଯେତେବେଳେ ସେ ସହର ଭିତରକୁ ପଶିଲା ଅଧାରାତି ହୋଇଯାଇଥିଲା ଏବଂ ଚାରିଆଡ଼ ଶୂନଶାନ ଥିଲା । ଛକ ପାଖରୁ ହୋଟେଲ ଆଡ଼କୁ ଅନାଇ ସେ ଭାବିଲା ପ୍ରଥମେ ବିଶ୍ରାମ ନେଇ ପରଦିନ ସକାଳେ ଯାହା କିଛି କରିବ । କିନ୍ତୁ ସେ ପର

ମୁହୂର୍ତ୍ତରେ ଠିକ୍ କଲା ଯେ ସେ ବର୍ତ୍ତମାନ ହିଁ ଥାନାକୁ ଯାଇ ପୁଲିସ ପାଖରୁ ଏ ବିଷୟରେ ପଚାରି ବୁଝିବ ।

ଥାନା ସାମନାରେ ଗାଡ଼ି ରଖି ସେ ଓହ୍ଲାଇଲା ଏବଂ ଅଫିସ ଭିତରକୁ ପଶିଲା । ଟେବୁଲ ପାଖରେ ଦି'ଜଣ ପୁଲିସ ବସିଥିଲେ । ସଂବିତ ଚିହ୍ନିଲା ଯେ ସେଦିନ ରାତିରେ ସେ ଏଇ ଦୁଇଜଣ ପୁଲିସଙ୍କୁ ଦେଖିଥିଲା ଛକ ଉପରେ । ପୁଲିସବାଲା ସଂବିତକୁ ପଚାରିଲା, କ'ଣ ଦରକାର ? ସଂବିତ କହିଲା, ସାତଦିନ ତଳେ ଗାନ୍ଧିଛକରେ ମୁଁ ଜଣେ ଲୋକକୁ ପୁଲିସ ମାଡ଼ ମାରି ନେଇଯିବାର ଦେଖିଥିଲି । ମୁଁ ଜାଣିବାକୁ ଚାହେଁ କ'ଣ ହେଲା ସେ ଲୋକଟିର । ଅନ୍ୟ ପୁଲିସବାଲା ହସିଲା, ଗୋଟାଏ ଖାତାକୁ ଓଲଟାଇ ଦେଖି କହିଲା, ଏଠାରେ ଏପରି କୌଣସି ଘଟଣା ଘଟିନାହିଁ । ସଂବିତ କହିଲା, ମୁଁ ନିଜ ଆଖିରେ ଦେଖିଛି ଏକଥା । ପୁଲିସ ଦି'ଜଣ ଉଠି ଠିଆହେଲେ, ମୁଣ୍ଡରେ ଟୋପି ପିନ୍ଧିଲେ, ହାତରେ ଲାଠି ଧରିଲେ, ସଂବିତକୁ କହିଲେ, ଚାଲ ଆମକୁ ଦେଖାଇ ଦେବ କୋଉ ଜାଗାରେ ।

ଥାନା ପାଖରୁ ଚାଲି ଚାଲି ସେମାନେ ଗାନ୍ଧିମୂର୍ତ୍ତି ତଳକୁ ଆସିଲେ । ପୁଲିସବାଲା କହିଲା, ଏଥର କହ କ'ଣ ଦେଖିଥିଲ ? ସଂବିତ କହିଲା, ମୁଁ ତମ ଦିଜଣଙ୍କୁ ଦେଖିଥିଲି ଜଣେ ଲୋକକୁ ମାଡ଼ ଦେଇ ଧରି ନେଇଯିବାର । ପୁଲିସ ଦି'ଜଣ ତା ପାଖକୁ ଲାଗି ଆସିଲେ ଏବଂ ତାଙ୍କ ଭିତରୁ ଜଣେ ତା'ର ଲାଠି ଉଠାଇଲା । ସଂବିତକୁ ଏଥରକ ଯେଉଁ ଚିତ୍କାରଟି ଶୁଣାଗଲା ସେଇଟି ତା'ର ନିଜର ଥିଲା । ସେ ଚାରିଆଡ଼କୁ ଅନାଇଲା କେହି କୁଆଡ଼େ ନଥିଲେ । ସେ ଦେଖିଲା ହୋଟେଲର ଗୋଟିଏ କୋଠରିରେ ଆଲୁଅ ଜଳିଲା । ତାକୁ ଦି'ଜଣ ପୁଲିସ ମିଶି ଲାଠିରେ ପିଟିବାରେ ଲାଗିଲେ ଏବଂ ସେ ମରିଗଲି ମରିଗଲି ଚିତ୍କାର କରି ତଳେ ପଡ଼ିଗଲା । ପୁଲିସ ଦୁହେଁ ତାକୁ ତଳୁ ଉଠାଇଲେ । ସେ ପୁଣିଥରେ ହୋଟେଲର ଝରକାମାନଙ୍କ ଆଡ଼କୁ ଅନାଇଲା, କିନ୍ତୁ ସେଠାରୁ କୌଣସି ଆଶ୍ୱାସନା ମିଳିଲା ନାହିଁ । ଏଥରକ ପୁଲିସ ତାକୁ ଟାଣି ଟାଣି ଗୋଟିଏ ଛୋଟ ଗଳି ଭିତରକୁ ନେଇଗଲେ ଯେଉଁଠାରୁ ଆଉ ହୋଟେଲର ଝରକା ଦିଶୁ ନଥିଲା ।

# ଭୃତ୍ୟ

ସକାଳୁ ସେ ଅଫିସ ଯିବାକୁ ବାହାରୁଛି, ସୁଧାକରକୁ ତା'ର ସ୍ତ୍ରୀ କହିଲା, ଯାହା ହଉ, କାଲିଠୁ ଆଉ ଏତେ ତରବର ହୋଇ ବାହାରିବାକୁ ପଡ଼ିବନି । ସୁଧାକର ମୁହଁ ବୁଲାଇ ସ୍ତ୍ରୀ ଆଡ଼କୁ ଅନାଇଲା । ଘରୁ ବାହାରିବାବେଳେ ଏମିତି କିଛି ଅପ୍ରୀତିକର କଥା କହି ତା'ର ମିଜାଜ ଖରାପ କରିଦେବା ରେଣୁକାର ପ୍ରକୃତି । ସୁଧାକର ଭାବୁଥିଲା, ରେଣୁକା ବୋଧହୁଏ କେବେହେଲେ ତାକୁ ଏମିତି କିଛି କହୁ ନଥିଲା ଯେଉଁଥିରେ ତା ପ୍ରତି ଏକ ପ୍ରଚ୍ଛନ୍ନ ସମାଲୋଚନା ରହୁ ନଥିଲା । ଦାମ୍ପତ୍ୟ ସମ୍ପର୍କରେ ସ୍ୱାମୀ-ସ୍ତ୍ରୀଙ୍କର କଥୋପକଥନ ସବୁବେଳେ ଦ୍ୱ୍ୟର୍ଥକ ; ସେଥିରେ ଗୋଟିଏ କଥା କୁହାଯାଏ, କିନ୍ତୁ ଭିନ୍ନକଥା ବୁଝାଯାଇଥାଏ । ରେଣୁକା ତା ସହିତ କଥାବାର୍ତ୍ତା କଲାବେଳେ ସୁଧାକରର ମୁଣ୍ଡ ଭିତରେ ଗୋଟିଏ ପ୍ରଚ୍ଛନ୍ନ ଅଭିଧାନ ରହୁଥିଲା ସେସବୁ କଥାର ପ୍ରକୃତ ଅର୍ଥ ବାହାର କରିବା ପାଇଁ । ଅତି ସହଜ ସରଳ ସିଧାସଳଖ କଥା, କିନ୍ତୁ ସେଥିରେ ସବୁବେଳେ ସୁଧାକର ପାଇଁ ନିହିତ ରହୁଥିଲା ଅନେକ ପ୍ରକାରର କୁଟିଳ ବ୍ୟଞ୍ଜନା । ରେଣୁକା କହୁଥିଲା, ଆଜି ହରିଶବାବୁଙ୍କ ଘରର ନିଅଁ ପଡ଼ିଲା । ସୁଧାକର ବ୍ୟାଖ୍ୟା କରୁଥିଲା : ତୋର ସବୁ ସାଙ୍ଗମାନେ ହରିଶ ଭଳି ଘରତୋଳା ଆରମ୍ଭ କଲେଣି ; ତୁ ଏତେ ଅପଦାର୍ଥ ଯେ, ଏ ପର୍ଯ୍ୟନ୍ତ ଜମି ଖଣ୍ଡେ ବି ଯୋଗାଡ଼ କରିପାରୁ ନାହୁଁ । ରେଣୁକା କହୁଥିଲା, ଅଫିସରୁ ଫେରିଲାବେଳେ ପରିବା ଦେଖିକରି କିଣିବ । ସୁଧାକରର ଅନୁବାଦ : ଦୋକାନୀମାନେ ଜାଣନ୍ତି ଯେ ତୁ ଗୋଟିଏ ଏକ ନମ୍ବରର ବୋକା ; ସେଥିପାଇଁ ସେମାନେ ତାଙ୍କର ରଦ୍ଦିମାଲସବୁ ତତେ ବିକ୍ରି କରିବା ପାଇଁ ଜଗି ବସିଛନ୍ତି । ଇତ୍ୟାଦି ଇତ୍ୟାଦି ।

ଅନ୍ୟ ଦିନ ହୋଇଥିଲେ ସେ ଅନ୍ତତଃ ମୁହଁରେ ସାମାନ୍ୟ ବିରକ୍ତି ଆଣି ରେଣୁକାର କଥାର ଏକ ମୌନ ମୃଦୁ ପ୍ରତିକ୍ରିୟା ଜଣାଇଥା'ନ୍ତା, କିନ୍ତୁ ଆଜି ତା'ର ମନ ପ୍ରକୃତରେ ଖରାପ ଥିଲା । ଆଜି ଥିଲା ଅଫିସରେ ବଡ଼ ସାହେବଙ୍କର ଶେଷଦିନ । ସେ ରିଟାୟାର କରିବା ପରେ ତାଙ୍କ ଜାଗାରେ କିଏ ଆସିବ ସ୍ଥିର ହୋଇ ନ ଥିଲା ଏବଂ ଏ ବିଷୟରେ ନାନା ଜଳ୍ପନାକଳ୍ପନା ଶୁଣାଯାଉଥିଲା ; କିନ୍ତୁ ସେଇଟି ସୁଧାକରର ଚିନ୍ତାର ବିଷୟ ନଥିଲା । ତା'ର ସମସ୍ୟା ଥିଲା ସାହେବ ତା ଜୀବନରୁ ଚାଲିଯିବା କଥା ଭାବି ତା ମନ ଭିତରେ

ଉପୁଜୁଥିବା ଶୂନ୍ୟତା । କୋଡ଼ିଏ ବର୍ଷରୁ ଉର୍ଦ୍ଧ୍ୱ ସେ ନିଜକୁ ସମର୍ପଣ କରିଦେଇଥିଲା ଏଇ ମୁନିବଙ୍କ ପାଖରେ । ତା'ର ଭଲ-ମନ୍ଦ ସୁଖ-ଦୁଃଖ ଅଭାବ-ଅସୁବିଧାର ହର୍ତ୍ତାକର୍ତ୍ତା-ବିଧାତା ଥିଲେ ତା'ର ବଡ଼ ସାହେବ ଏବଂ ତାଙ୍କ ଉପରେ ନିଜର ସମୟ ଜୀବନ ଓ ଭାଗ୍ୟକୁ ଛାଡ଼ିଦେଇ ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ନିଶ୍ଚିନ୍ତ ଥିଲା ସୁଧାକର ।

ଆଜି ସୁଧାକରର ମନେପଡ଼ିଲା ଯେତେବେଳେ ସେ ପ୍ରଥମେ ନାୟକ ସାହେବଙ୍କ ପାଖରେ କାମ କଲା, ସେକଥା । ଜଣେ ବଦରାଗୀ ଉଦ୍ଧତ କଟୁଭାଷା ଓ ଅଭଦ୍ର ଅଫିସର ଭାବରେ ଖ୍ୟାତି ଥିଲା ନାୟକଙ୍କର, ସେଥିପାଇଁ ତାଙ୍କ ପାଖରେ କୌଣସି ପ୍ରାଇଭେଟ୍ ସେକ୍ରେଟାରୀ ବେଶି ଦିନ ରହିପାରୁ ନଥିଲେ । କେବେ ତାଙ୍କ ପାଖରୁ ଗାଳି ଶୁଣି କୁଆଡ଼େ ଜଣେ କର୍ମଚାରୀର ହାର୍ଟ ଆଟାକ୍ ହୋଇଯାଇଥିଲା । ଅଳ୍ପ କିଛିଦିନ ତାଙ୍କ ପାଖରେ କାମ କରିବା ପରେ ପ୍ରାଇଭେଟ ସେକ୍ରେଟାରୀମାନେ ବିଭିନ୍ନ ଆଳରେ ଛୁଟି ନେଇ ଚାଲିଯାଉଥିଲେ । ଏଇଭଳି ପ୍ରକ୍ରିୟାରେ ଅନେକ ଅଦଳ ବଦଳ ପରେ ସୁଧାକରର ନିଯୁକ୍ତି ହୋଇଥିଲା ନାୟକ ସାହେବଙ୍କ ପାଖରେ । ତାକୁ ଶେଷ ପର୍ଯ୍ୟନ୍ତ ଏଇ କାମଟି ପାଇଁ ବଛା ହୋଇଥିଲା ଏଇଥିଯୋଗୁଁ ଯେ, ସୁଧାକର ଶାନ୍ତ ନିରୀହ ପ୍ରକୃତିର ଥିଲା, ଗଧ ଭଳି ଖଟୁଥିଲା ଏବଂ ଯେତେ ଅସୁବିଧା ପଡ଼ିଲେ ବି ଛୁଟିନେଇ ଚାଲିଯିବାର ଲୋକ ନଥିଲା ।

ପ୍ରଥମେ ପ୍ରଥମେ ସୁଧାକର ପାଇଁ ବି କଷ୍ଟକର ହେଲା ନାୟକଙ୍କର ନିଗ୍ରହ ସହିବା । ସେ ଯେଉଁଦିନ ଚାକିରିରେ ଯୋଗ ଦେଇ ପ୍ରଥମଥର ସାହେବଙ୍କୁ ଭେଟିବାକୁ ଗଲା, ନାୟକ ତାକୁ ତଳୁ ଉପରୁ ଦେଖିସାରିବା ପରେ ସିଗାରେଟକୁ ଦି'ଥର ଟାଣି, ପାଉଁଶ ଝାଡ଼ି ତାକୁ କହିଲେ, ମୁଁ ତମକୁ ଆଣିବାକୁ ଚାହିଁ ନଥିଲି, ତେଣୁ ତମର ଦୁର୍ଭାଗ୍ୟ ପାଇଁ ମୁଁ ଦାୟୀ ନୁହଁ । ତେବେ ତମେ ଯଦି ଛୁଟି ମାଗିବ, ତେବେ ଛୁଟି ତ ମିଳିବ ନାହିଁ, ତମ ନାଁରେ ପ୍ରସିଡ଼ିଙ୍ଗ ହେବ । ଯଦିଓ ଏଭଳି ସମ୍ଭାଷଣରେ ତା'ର ମନ ଖରାପ ହୋଇଗଲା, ମୁହଁରେ ହସ ଫୁଟାଇବାକୁ ଚେଷ୍ଟା କରି ସୁଧାକର କହିଲା, ନା ସାର୍, ଛୁଟି କାହିଁକି ନେବି ? ସାହେବଙ୍କ ପାଖରୁ ବାହାରି ଆସି ସେ ଯେତେବେଳେ ପ୍ରାଇଭେଟ ସେକ୍ରେଟେରୀମାନେ ବସୁଥିବା କୋଠରିକୁ ଗଲା, ତାକୁ ଅନ୍ୟମାନେ ଅପେକ୍ଷା କରି ବସିଥିଲେ । ଆଗରୁ ଥରେ ନାୟକଙ୍କ ପାଖରେ ଅପମାନିତ ହୋଇଥିବା ଲୋକଟି ତାକୁ ପଚାରିଲା, ଶଳା ନାୟକ ତମକୁ କ'ଣ କହିଲା ? ହଡ଼ବଡ଼ାଇ ଯାଇ ସୁଧାକର ମିଛ କହିଲା, ମୁଁ ଆଗରୁ କାହା ପାଖରେ କୋଉଠି ସବୁ ଚାକିରି କରିଛି ସେ କଥା ପଚାରିଲେ । ଅନ୍ୟ ଜଣେ ଭୁକ୍ତଭୋଗୀ ପଚାରିଲା, ପ୍ରସିଡ଼ିଙ୍ଗ ପ୍ରସିଡ଼ିଙ୍ଗ କଥା କହିନାହାଁନ୍ତି ତ ? ତା'ର ମିଛ ଧରାପଡ଼ିଯାଇଛି ଭାବି ସୁଧାକରର ମୁହଁ ଲାଲ ହୋଇଗଲା ; ସେ ମୁହଁରୁ ଝାଳ ପୋଛୁ ପୋଛୁ କହିଲା, ନା, ପ୍ରସିଡ଼ିଙ୍ଗ କଥା ଉଠିବ କାହିଁକି ? ଜାଣିବା

ଶୁଣିବା ଲୋକ କହିଲା, ହଉ, ଦେଖନ୍ତୁ କେତେଦିନ ତିଷ୍ଠିବେ ଏଇ ବଦମାସ ଲୋକ ପାଖରେ !

ସୁଧାକର କେବଳ ତିଷ୍ଠିଲା ନାହିଁ, ସେଇ ଲୋକ ସାଙ୍ଗରେ ରହୁ ରହୁ ରହିଗଲା କୋଡ଼ିଏ ବର୍ଷରୁ ବେଶି । ନାୟକ ସାହେବଙ୍କର ଏଇ ସମୟ ଭିତରେ ଅନେକ ବଦଳି ହେଲା, ପଦୋନ୍ନତି ହେଲା, କିନ୍ତୁ ସେ ସୁଧାକରକୁ ଛାଡ଼ିଲେ ନାହିଁ ପାଖରୁ । ଭିନ୍ନ ବିଭାଗକୁ ଗଲାବେଳେ ସେ ସୁଧାକରକୁ ସାଙ୍ଗରେ ନେଲେ ; ଯେତେବେଳେ ସୁଧାକରର ପ୍ରମୋଶନ ହେଲା, ତା ପାଇଁ ନୂଆ ପୋଷ୍ଟ ତିଆରି କଲେ । ଦୁହେଁ ଯେପରି ଥିଲେ ଗୋଟିଏ ବିଧି-ନିର୍ଦ୍ଦିଷ୍ଟ ଆଜୀବନ ଯୋଡ଼ି ଏବଂ ଜଣକ ପାଖରୁ ଆଉ ଜଣକର ନିଷ୍କୃତି ନଥିଲା ଯେପରି ।

ଏଇ ଦୀର୍ଘ ସମୟଟି ଉଭୟ ସୁଖ ଓ ଦୁଃଖରେ କଟିଥିଲା ସୁଧାକର ପାଇଁ । ନାୟକ ସାହେବ ସତରେ ଜଣେ ବଦମାସ ଲୋକ ଥିଲେ ଏବଂ ସମସ୍ତଙ୍କ ସାଙ୍ଗରେ ଖରାପ ବ୍ୟବହାର କରୁଥିଲେ । ସେ ଯେଉଁଠାରେ କାମ କରୁଥିଲେ, ନିତାନ୍ତ ଦରକାର ନପଡ଼ିଲେ କେହି ତାଙ୍କ ପାଖକୁ ଯାଉ ନଥିଲେ । ଏହାର ଫଳ ହୋଇଥିଲା ଯେ, ତାଙ୍କ ପାଖରେ ଯାହାର କାମ ଥିଲା, ସେ ଯାଇ ସୁଧାକରକୁ କହୁଥିଲା, କାରଣ ଏକମାତ୍ର ସୁଧାକର ହିଁ ନାୟକଙ୍କର ସବୁଠାରୁ ନିଜର ଓ ପାଖର ଲୋକ ଥିଲା ଏବଂ ସାହେବଙ୍କ ପାଖରେ ଗୁହାରି ପହଞ୍ଚାଇବାର ଏକମାତ୍ର ମାଧ୍ୟମ । ସେଥିପାଇଁ ନାୟକ ଯେଉଁଠାରେ କାମ କରୁଥିଲେ, ସେ ଅଫିସରେ ସୁଧାକରର ପ୍ରତିପତ୍ତି ବଢ଼ିଯାଉଥିଲା । ଯେତେ ଲୋକ ନାୟକଙ୍କୁ ଦେଖା କରିବାକୁ ଚାହୁଁଥିଲେ, ସମସ୍ତଙ୍କୁ ଯିବାକୁ ହେଉଥିଲା ସୁଧାକର ବାଟଦେଇ । ସେ ଯେତେ ବଡ଼ ଉଦ୍ୟୋଗପତି ବା ବଡ଼ ଅଫିସର ହୋଇଥା'ନ୍ତୁ, ନାୟକଙ୍କ ପାଖରୁ ଫେରିବାବେଳେ ନିଶ୍ଚୟ ସୁଧାକରକୁ ଦେଖା କରୁଥିଲେ ଏବଂ 'କେମିତି ଅଛନ୍ତି ସୁଧାକରବାବୁ ?', 'ସବୁ ଠିକ୍‌ଠାକ୍ ତ ?' କହିବାକୁ ଭୁଲୁ ନଥିଲେ । ଏକଥା ତା ପାଇଁ ପ୍ରୀତିକର ଥିଲା ଏବଂ ଏ ବ୍ୟବସ୍ଥାକୁ ବିଶେଷ ଭାବରେ ଉପଭୋଗ କରୁଥିଲା ସୁଧାକର ।

ତେବେ ସଂସାରରେ କୌଣସି ଜିନିଷ ବିନାମୂଲ୍ୟରେ ମିଳି ନଥାଏ । ପ୍ରତିଟି ଜିନିଷର ଦାମ ଥାଏ ଏବଂ ପ୍ରତିଟି ଆନନ୍ଦ ସହିତ ଅନୁରୂପ ଦୁଃଖ ଯୋଡ଼ି ହୋଇ ରହିଥାଏ । ଅଫିସରେ ଜଣେ କ୍ଷମତାସମ୍ପନ୍ନ ଲୋକ ହେବାକୁ ସୁଧାକରକୁ ଯେ କେବଳ ଦୀର୍ଘ ସମୟ କାମ କରିବାକୁ ପଡୁଥିଲା ତା ନୁହେଁ, ତା ସହିତ ତାକୁ ସହିବାକୁ ପଡୁଥିଲା ସାହେବଙ୍କର ରାଗରୋଷ, ଗାଳିମନ୍ଦ, ଫାଇଲ ଫିଙ୍ଗା, ଦୁର୍ବ୍ୟବହାର ଇତ୍ୟାଦି । ଅଧସ୍ତନ କର୍ମଚାରୀଙ୍କୁ ହଇରାଣ ଓ ଲାଞ୍ଛିତ କରିବାର ସମସ୍ତ କୌଶଳ ଜଣାଥିଲା ନାୟକଙ୍କୁ । କେବେ କେବେ ସେ ଜରୁରୀ କାମ ଅଛି ବୋଲି କହି ସକାଳ ଆଠଟାରେ ଆସିବା ପାଇଁ କହୁଥିଲେ । ଥରେ ଡେରିରେ ଆସି ଭୟଙ୍କର ତିରସ୍କୃତ ହୋଇଥିବାରୁ ସୁଧାକର

ସମୟାନୁବର୍ତ୍ତୀ ହୋଇଯାଇଥିଲା ଏବଂ ଠିକ୍ ଆଠଟାରେ ଆସି ଅଫିସରେ ପହଞ୍ଚୁଥିଲା । କିନ୍ତୁ ସେଇ ଦିନମାନଙ୍କରେ ସାହେବ ଦଶଟାରେ ଅଫିସକୁ ଆସୁଥିଲେ ଏବଂ ସୁଧାକର ବୁଝୁଥିଲା ଯେ, ତାକୁ ଆଗରୁ ଆସିବା ପାଇଁ କୁହାଯାଇଥିଲା କେବଳ ତାକୁ ହଇରାଣ କରିବା ପାଇଁ । ଠିକ୍ ସେହିପରି, ସାହେବ ଅନେକ ଡେରିଯାଏଁ ଅଫିସରେ ବସୁଥିଲେ ଏବଂ କାମ ନ ଥାଇ ସୁଧାକରକୁ ବସି ରହିବାକୁ ହେଉଥିଲା ଶେଷ ପର୍ଯ୍ୟନ୍ତ । ଏହା ବ୍ୟତୀତ ସାହେବଙ୍କ ପାଖରୁ କାରଣ ଅକାରଣରେ ଗାଳି ଶୁଣିବା ଥିଲା ନିତିଦିନିଆ କଥା । ଅତି କଟୁ, ରୁକ୍ଷ ଓ ଉଚ୍ଚ ଭାଷା ଓ ସ୍ୱରରେ ନାୟକ ଗାଳି ଦେଉଥିଲେ ଏବଂ ପ୍ରତିଥର ସୁଧାକର ଭାବୁଥିଲା ଯେ, ସେ ଆଜି ହିଁ ଲମ୍ବା ଛୁଟି ନେଇ ଚାଲିଯିବ ।

ଯେଉଁ ଉଗ୍ର ପ୍ରକୃତିର ହାକିମମାନେ ଅଧୀନସ୍ଥ କର୍ମଚାରୀମାନଙ୍କ ପାଇଁ ଏଭଳି କଠୋର ବ୍ୟବହାର କରିଥା'ନ୍ତି, ସେମାନେ ମଧ୍ୟ ମନ ଭିତରେ ନିଜର କ୍ରୂରତା ପାଇଁ ଏକ ସୀମାରେଖା ରଖିଥା'ନ୍ତି । ଏ ସୀମାରେଖା ନିର୍ଭର କରିଥାଏ ତଳ ଲୋକର ସହିଷ୍ଣୁତାର ପରିମାଣ ଉପରେ । ପ୍ରଥମ ପ୍ରଥମ ଚାକିରିରେ ଏ ଉପଲବ୍ଧି ହୋଇଥିଲା ନାୟକଙ୍କର । ଥରେ ଗୋଟିଏ ପ୍ରାଇଭେଟ ସେକ୍ରେଟାରୀକୁ ଡାକି ତା ଆଡ଼କୁ ଗୋଟିଏ ଦଶଟଙ୍କିଆ ନୋଟ ଫିଙ୍ଗିଦେଇ କହିଲେ, ପାଞ୍ଚଟା ଲଫାପା । କୃତକୃତ୍ୟ ହୋଇ ନୋଟଟି ଉଠାଇ ନେଇଯିବା ବଦଳରେ ଲମ୍ବା ଚଉଡ଼ା ଚେହେରାର ଯୁବକଟି ତାଙ୍କ ଆଗରେ ସଳଖ ହୋଇ ଠିଆହୋଇ ତାଙ୍କ ଆଖିକୁ ସିଧା ଅନାଇଲା । ମନ ଭିତରେ ହଠାତ ପଶିଥିବା ଭୟକୁ ଦମନ କରି ନାୟକ ତାକୁ କ'ଣ କହି ଗାଳିଦେବେ ଭାବୁଛନ୍ତି, ସେ ଓଲଟା ତାଙ୍କୁ କହିଲା, ଏଇଟା ସରକାରୀ କାମ ନୁହେଁ । ଏବଂ ସେଠାରୁ ଚାଲିଗଲା । ମୁହୂର୍ତ୍ତେ ଚୁପ୍ ହୋଇ ବସି ରହିଲେ ନାୟକ । ଭାଗ୍ୟକୁ ଲୋକଟି ତାଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ ନୋଟଟିକୁ ଉଠାଇ ପକେଟରେ ରଖିବାକୁ କହି ନଥିଲା ! କୌଶଳ କରି ସେ ଲୋକଟିକୁ ବଦଳାଇ ନାୟକ ଅନ୍ୟ ଜଣେ ପ୍ରାଇଭେଟ୍ ସେକ୍ରେଟେରୀ ରଖିଥିଲେ ସେଥରକ ଏବଂ ନିଜକୁ ଗୋଟିଏ ପାଠ ଶିଖାଇଥିଲେ ଯେ, କୌଣସି ଲୋକକୁ ଗାଳିଗୁଲଜ କରିବା ଆଗରୁ ସେ ଲୋକର ଶକ୍ତି ସାମର୍ଥ୍ୟ ଓ ସହନଶୀଳତାର ସୀମା ପରଖି ନେବା ଉଚିତ । ବୋଧହୁଏ ଏହି ସହଜ ପାଠଟି ଯୋଗୁଁ ହିଁ ସଂସାରରେ ବିଚରା ବାପୁଡ଼ା ଗୋବରଗଣେଷ ଭଳି ଲୋକମାନେ ହିଁ ସବୁବେଳେ ଗାଳି ମାଡ଼ ଅତ୍ୟାଚାରର ଶରବ୍ୟ ହୋଇଥା'ନ୍ତି । ଯଥା ସୁଧାକର ।

ବୟସ ଓ ଅନୁଭୂତି କ୍ରମେ ନାୟକ ଆହୁରି ମଧ୍ୟ ବୁଝିଥିଲେ ଯେ କେବଳ ଭର୍ତ୍ସନା ଓ ଦଣ୍ଡ ଦେଇ ନୁହେଁ, କାହାରିକି ଉପକୃତ କରି ମଧ୍ୟ ତାକୁ ନିଜର କିଣାଚାକର କରି ଦିଆଯାଇପାରେ । ଏ ଉପଲବ୍ଧିକୁ ସୁଧାକର ଉପରେ ପ୍ରୟୋଗ କରି ସେ ଭାବୁଥିଲେ ଯେ, ସେ ଶତ ପ୍ରତିଶତ ସଫଳ ହୋଇଛନ୍ତି । ଗାଳି ଧମକ, ଅଫିସରେ ଡେରି ପର୍ଯ୍ୟନ୍ତ

ବସାଇ ରଖିବା, ଦରକାର ବେଳେ ଛୁଟି ନଦେବା, ଚରିତ୍ର ପଞ୍ଜିକାରେ ଭଲ ମନ୍ତବ୍ୟ ନ ଦେବା ସହିତ ସେ ମଝିରେ ମଝିରେ ସୁଧାକରକୁ ଅନୁଗୃହୀତ ମଧ୍ୟ କରୁଥିଲେ । ଯୋଉଥର ସାହେବ ସୁଧାକରର ଘରେ ଟେଲିଫୋନ ଲଗାଇବାର ବ୍ୟବସ୍ଥା କରାଇଦେଲେ, କୃତାର୍ଥ ହୋଇଯାଇଥିଲା ସୁଧାକର । ସେ ରହୁଥିବା ତଳିଆ କର୍ମଚାରୀମାନଙ୍କ କଲୋନୀରେ ଏକମାତ୍ର ତା'ର ହିଁ ଟେଲିଫୋନ ଥିଲା । ଏ ଖବରଟି ସେ ଯେତେବେଳେ ଗର୍ବର ସହିତ ରେଣୁକାକୁ କହିଲା, ରେଣୁକା ଖୁସିରେ ଗଦଗଦ ହେବ କ'ଣ, କହିଲା, ଏଥରକ ରାତି ଅଧରେ ବି ସାହେବଙ୍କ କାମ କରିବାକୁ ସୁବିଧା ହେବ ତମର ! ସତକୁ ସତ ସମୟ ଅସମୟରେ ସାହେବ ତାକୁ ଟେଲିଫୋନରେ ଖୋଜୁଥିଲେ । ଅନେକ ସମୟରେ ସେ ତାକୁ ଟେଲିଫୋନରେ ହିଁ ଶ୍ରୁତଲିଖନ ଡାକୁଥିଲେ ଏବଂ ସୁଧାକର ଟେଲିଫୋନ ପାଖରେ ତା'ର ନୋଟ୍‌ଖାତା, ପେନସିଲ ରଖି ସାହେବଙ୍କ ଡାକକୁ ଅପେକ୍ଷା କରୁଥିଲା । ଥରେ ତାକୁ ଟେଲିଫୋନରେ ନପାଇ ନାୟକ କହିଲେ, ମୁଁ ଭାବୁଛି ଏଥରକ ତମ ଘରର ଟେଲିଫୋନ କଟାଇଦେବି । ଟେଲିଫୋନଟି ଥିଲା ସୁଧାକର ପାଇଁ ତାଙ୍କ କଲୋନୀରେ ତା'ର ପ୍ରତିଷ୍ଠା ଓ ପ୍ରତିପତ୍ତିର ଗୋଟିଏ ପ୍ରତୀକ । ଏଇଟିକୁ ହରାଇବାର ଆଶଙ୍କାରେ ସୁଧାକର ସାହେବଙ୍କ ପାଖରେ ଅଳି କରିବ ଭାବିଲା, କିନ୍ତୁ ତା ପାଟିରୁ କେବଳ ବାହାରିଲା ଭୟ ବିନୟ ଅନୁରୋଧ ମିଶା 'ସାର୍' ଟିଏ ।

ସେଥରକ ତା'ର ଟେଲିଫୋନ କଟିଲା ନାହିଁ, କିନ୍ତୁ ସେଇଦିନରୁ ନାୟକ ଏଇ ଧମକଟିକୁ ଅସ୍ତ୍ର ଭାବରେ ବ୍ୟବହାର କରିବାରେ ଲାଗିଲେ । ଟେଲିଫୋନ ଯେ କଟିଯାଇନାହିଁ, ସେଥିପାଇଁ ପ୍ରତିମାସ ଶେଷରେ ସୁଧାକର ସାହେବଙ୍କ ପାଖରେ ଋଣୀ ହୋଇ ରହୁଥିଲା । ଏହିପରି ଭାବରେ ସୁଧାକରକୁ ମଝିରେ ମଝିରେ ଖୁସି ଓ ଋଣୀ କରିବାକୁ ଯାଇ ନାୟକ ବିଦେଶ ଗଲେ ସୁଧାକରର ସ୍ତ୍ରୀ ପାଇଁ ପରଫ୍ୟୁମ ଆଣି ଦେଉଥିଲେ, ସମୟ ଆଗରୁ ସୁଧାକରର ପ୍ରମୋଶନ ହୋଇଯାଉଥିଲା ଓ ସୁଧାକର ଅନ୍ୟ ସମସ୍ତଙ୍କଠାରୁ ବେଶି ଓଭରଟାଇମ ପାଉଥିଲା । ଏପରିକି ଥରେ ସୁଧାକର ବେମାର ପଡ଼ିଥିବାବେଳେ ଅଫିସର ସମସ୍ତଙ୍କୁ ବିସ୍ମିତ କରିଦେଇ ସେ ତା ଘରକୁ ଯାଇ ତାକୁ ଦେଖି ଆସିଥିଲେ । ଦଶଥର ଗାଳି ଦେବାପରେ ତାକୁ ଥରେ ପଚାରୁଥିଲେ, ତମ ପୁଅର ଆଡ଼ମିଶନ ହୋଇଗଲା ତ ? ଗାଳିମନ୍ଦ ଶୁଣି ମୁହଁ ଶୁଖାଇ ବସିଥିବାବେଳେ ସୁଧାକର ମୁହଁରେ ହଠାତ ସାମାନ୍ୟ ହସ ଖେଳିଯାଉଥିଲା ଓ ସେ କୃତକୃତ୍ୟ ହୋଇଯାଉଥିଲା ।

ତେବେ ବର୍ତ୍ତମାନ ପଛ କୋଡ଼ିଏ ବର୍ଷକୁ ରୋମାନ୍ଥନ କରିବାବେଳେ ସୁଧାକର ମନକୁ ସେଇ ସାମାନ୍ୟ ସୁଖଦ ସ୍ମୃତିସବୁ ନଆସି ଆସୁଥିଲେ ଅତି ଅପ୍ରୀତିକର ଓ ପୀଡ଼ାଦାୟକ ଅନୁଭବମାନ । ଯେପରିକି ଥରେ ଜଣେ ଦର୍ଶନାର୍ଥୀଙ୍କୁ ସାହେବଙ୍କ ପାଖକୁ ପଠାଇବାର ପାଞ୍ଚମିନିଟ ପରେ ସାହେବଙ୍କର ଡାକରା ଆସିଲା । ସୁଧାକର ତାଙ୍କ କୋଠରିକୁ

ଯିବାବେଳକୁ ସାକ୍ଷାତ୍‌କାରୀ ବାହାରି ଆସୁଥିଲା, ତା ମୁହଁରୁ ଜଣାଯାଉଥିଲା ଯେ, ସାକ୍ଷାତଟି ସୁବିଧାର ହୋଇ ନଥିଲା । କୋଠରି ଭିତରେ ନାୟକ ସାହେବ ରାଗ ତମତମ ମୁହଁ କରି ବସିଥିଲେ । ସୁଧାକରକୁ ଦେଖି ତାଙ୍କର କ୍ରୋଧ ହଠାତ ପଞ୍ଚମକୁ ଚଢ଼ିଗଲା । କହିଲେ, ଏ ଲୋକଟାକୁ ମୋ ପାଖକୁ ପଠାଇବାକୁ ତମେ ତାଙ୍କ ପାଖରୁ କେତେ ଟଙ୍କା ନେଇଥିଲ ? ସୁଧାକର ଆଶ୍ଚର୍ଯ୍ୟ ହୋଇ କହିଲା, ସାର୍ ! ନାୟକ ପାଟିକରି କହିଲେ, ଏଇ ବ୍ୟବସାୟୀଙ୍କଠାରୁ ଟଙ୍କା ଖାଇ ଚଳୁଛ ତମେମାନେ । କିଏ କହିଲା ସେ ଲୋକକୁ ମୋ ପାଖକୁ ପଠାଇବାକୁ ? ଗୋଟି ଗୋଟି କରି ସମସ୍ତଙ୍କୁ ଭିଜିଲାନ୍ସରେ ଦେବି । ସୁଧାକର କହିଲା, ନାଇଁ ସାର୍... । ତାକୁ କହିବାକୁ ନଦେଇ ନାୟକ କହିଲେ, ଏ ଲୋକ କେମିତି ଜାଣିଲା ତା ଫାଇଲ ମୋ ପାଖରେ ଅଛି ବୋଲି ? ଏଥରକ ନାୟକ ଫାଇଲଟିକୁ ସୁଧାକର ଉପରକୁ ଲକ୍ଷ୍ୟ କରି ଫୋପାଡ଼ିଲେ ଏବଂ କହିଲେ, ଏ ଫାଇଲ ଆଲମାରିରେ ବନ୍ଦ କରି ରଖିବ ; ମୁଁ ନ କହିବାଯାଏଁ ଫାଇଲ ବାହାରିବ ନାହିଁ । ଶଳା ଭାବୁଛନ୍ତି ଟଙ୍କା ଦେଇ ସମସ୍ତଙ୍କୁ କିଣିନେବେ । ବ୍ଲଡ଼ି ବାଷ୍ଟାର୍ଡ଼ ! ଶେଷ କଥାଟି ହୁଏତ ସେଇ ବ୍ୟବସାୟୀ ପାଇଁ ଉଦ୍ଦିଷ୍ଟ ଥିଲା, କିନ୍ତୁ କୁହାଯାଇଥିଲା ସୁଧାକରକୁ ହିଁ । ସୁଧାକର ଫାଇଲଟିକୁ ତଳୁ ଉଠାଇ ଆଲମାରିରେ ରଖି ନିଜ କୋଠରିକୁ ଗଲା । ଏ ପର୍ଯ୍ୟନ୍ତ ତା'ର କାନମୂଳ ଜଳୁଥିଲା ଏବଂ ଅତି କଷ୍ଟରେ ସେ ଆଖିରୁ ଲୁହକୁ ଅଟକାଇ ରଖିଥିଲା । ମନେମନେ ଭାବିଲା, ନା, ଏଥରକ ସେ ନିଶ୍ଚୟ ଛୁଟି ନେଇଯିବ ।

ବାଥ୍‌ରୁମ୍‌ରେ ଯାଇ ମୁହଁ ଧୋଇ ସେ ନିଜ କୋଠରିକୁ ଫେରିଲା, କିନ୍ତୁ ଏଇ ଅପମାନର କଥା ନିଜ ସହକର୍ମୀ କାହାରିକୁ କହିଲା ନାହିଁ । ସେଦିନ ଘରକୁ ଫେରି ରେଣୁକାକୁ ସବୁକଥା କହିଲା ସୁଧାକର । ଅନେକ ଦିନରୁ ସେ ରେଣୁକାକୁ ନାୟକ ସାହେବଙ୍କ ବିଷୟରେ କହିବା ଛାଡ଼ିଦେଇଥିଲା ; ତା'ର କାରଣ, ନାୟକଙ୍କ ନାଁ ଶୁଣିଲେ ରେଣୁକା ରାଗୁଥିଲା । ତାଙ୍କ ପାଖରେ କାମ କରିବାଦିନୁ ସୁଧାକର ଡେରିରେ ଅଫିସରୁ ଫେରୁଥିଲା ଏବଂ ତା'ର ସ୍ୱଭାବ ଚିଡ଼ିଚିଡ଼ା ହୋଇଯାଇଥିଲା । ଘରେ ଯେତେ ସମୟ ରହୁଥିଲା, ସେତେବେଳେ ପିଲାମାନଙ୍କ କଥା, ଘରକଥା ବୁଝିବ କ'ଣ, ସୁଧାକର ସବୁବେଳେ ତା'ର ସାହେବଙ୍କ କଥା କହୁଥିଲା ଏବଂ ଏକଥା ଥିଲା ରେଣୁକା ପାଇଁ ସମ୍ପୂର୍ଣ୍ଣ ବିସଙ୍ଗତ ଓ ବିରକ୍ତିକର । ପ୍ରଥମେ ପ୍ରଥମେ ନାୟକ ତା ଉପରେ ରାଗୁଥିବା କଥା ମଧ୍ୟ ସେ ଆସି ରେଣୁକାକୁ କହୁଥିଲା, କିନ୍ତୁ ଏକଥା ଶୁଣି ରେଣୁକା କହୁଥିଲା, ଠିକ୍ ହୋଇଛି, ତମେ ପରା ତାଙ୍କର ଏତେ ପ୍ରଶଂସା କରୁଥିଲ, ତାଙ୍କ ଗୁଣ ଗାଉଥିଲ ? ଏଥରକ ମନ ବୁଝିଲା ତ ? ଏପରି ଭାବରେ କିଛିଦିନ ପରେ ସୁଧାକର ସ୍ତ୍ରୀକୁ ଆଉ ଅପ୍ରୀତିକର ଘଟଣାମାନ କହିଲା ନାହିଁ, କେବଳ ସାହେବଙ୍କର ମିଠା କଥାମାନ କହିଲା । ତେବେ ଯେଉଁଦିନ ସୁଧାକର ଅଫିସରୁ ମୁହଁ ଶୁଖାଇ ଫେରୁଥିଲା, ରେଣୁକା ଠିକ୍

ଜାଣିପାରୁଥିଲା ଯେ, ଆଜି ସାହେବଙ୍କଠାରୁ ଗାଳି ପଡ଼ିଛି । ସେ ସୁଧାକରକୁ କହୁଥିଲା, କାହିଁ, ଆଜି ସାହେବ କ'ଣ ପ୍ରେମ କଥା କହିଲେ କହିଲ ନାହିଁ ତ !

ଥରେ ଥରେ ବିରକ୍ତ ହୋଇ ସୁଧାକର ଭାବୁଥିଲା, ସେ ଆଉ ସାହେବଙ୍କ କଥା ସ୍ତ୍ରୀ ଆଗରେ କହିବ ନାହିଁ । କିନ୍ତୁ ଏକଥା କିପରି ସମ୍ଭବ ହୋଇଥା'ନ୍ତା ? ତା'ର କେବଳ ଅଫିସ ସମୟ ନୁହେଁ, ସମଗ୍ର ଜୀବନକୁ ଆବୋରି ରଖିଥିବା ପ୍ରଭୁଙ୍କ କଥା ସେ କିପରି ନକହି ରହିପାରିବ ? ସାହେବଙ୍କ ଗସ୍ତ, ସାହେବଙ୍କ ବେମାରି, ସାହେବଙ୍କ ପୁଅ ଚାକିରି ପାଇବା, ସାହେବଙ୍କ କୋଠରିର ଆସବାବ ବଦଳା ହେବା, ସାହେବ ତାଙ୍କର କେଉଁ ସହକର୍ମୀକୁ କଡ଼ା ଚିଠି ଲେଖିବା-ଏ ସବୁ ଅତି ମହତ୍ତ୍ୱପୂର୍ଣ୍ଣ କଥାକୁ ସେ କିପରି ନିଜ ମନ ଭିତରେ ଆବଦ୍ଧ କରି ରଖିପାରନ୍ତା ଭଲା ? ରେଣୁକା କିନ୍ତୁ ପ୍ରତିଟି କଥାରୁ ଖିଅ ଧରି ସୁଧାକରର ଦୋଷ ବାହାର କରୁଥିଲା । କହୁଥିଲା, ସାହେବଙ୍କ କୁକୁର ବେମାର ପଡ଼ିବାବେଳେ ତମେ ତା ପାଇଁ ଯେତେ ସମୟ ଦେଇଥିଲ, ମୁନୁର ଜଣ୍ଡିସ୍ ହୋଇଥିବାବେଳେ ସେତେ ସମୟ ତା ପାଖରେ ବସି ନଥିବ । କିମ୍ବା, ତମ ସାହେବଙ୍କର ପ୍ରମୋଶନ ହେଲା ବୋଲି ଯାଅ ଖୁସି ହୋଇ ଠାକୁରଙ୍କୁ ଭୋଗ ଚଢ଼ାଅ, ମିଠାଇ ବାଣ୍ଟ । ଆମକୁ ତାଙ୍କ ଦରମାରୁ ଭାଗ ମିଳିଯିବ । ଇତ୍ୟାଦି ।

ନାୟକଙ୍କ ଉପରେ ରେଣୁକାର ଆହୁରି ଗୋଟିଏ ରାଗ ଥିଲା, ଯାହା ସେ କେବେହେଲେ ସୁଧାକରକୁ କହି ନଥିଲା । ଅନେକ ବର୍ଷ ତଳେ ଥରେ ସୁଧାକର ବେମାର ପଡ଼ିଥିବାବେଳେ ସାହେବ ତାକୁ ଦେଖିବାକୁ ତାଙ୍କ ଘରକୁ ଯାଇଥିଲେ ଖରାବେଳେ । ଘରେ ରେଣୁକା ବ୍ୟତୀତ ଆଉ କେହି ନଥିଲେ ଏବଂ ବିଚରା ସୁଧାକର ଦୁର୍ବଳ ହୋଇ ବିଛଣାରେ ପଡ଼ିଥିଲା । ସାହେବଙ୍କୁ ବସାଇ ରେଣୁକା ତାଙ୍କୁ ଚା' ଦେଇଥିଲା ; ସାହେବ ସୁଧାକରର ଦେହମନ୍ଦ କଥା ପଚାରିଥିଲେ ଏବଂ କିଛି ସୁବିଧା ଅସୁବିଧା ହେଲେ ତାଙ୍କୁ ଜଣାଇବାକୁ କହିଥିଲେ । ସେ ଯିବାକୁ ଉଠିବାରୁ ରେଣୁକା ତାଙ୍କୁ ବାହାରକୁ ବଳାଇଦେବାକୁ ଗଲା । ସେତିକିବେଳେ ତାକୁ ଏକୁଟିଆ ପାଇ ନାୟକ ତା କାନ୍ଧ ଉପରେ ହାତ ରଖି ତାକୁ ପାଖକୁ ଟାଣିବାକୁ ସାମାନ୍ୟ ଚେଷ୍ଟା କଲେ ଏବଂ ରେଣୁକା କୌଣସି ପ୍ରତିକ୍ରିୟା ଦେଖାଇବା ପୂର୍ବରୁ ପୁଣି ହାତକୁ ଫେରାଇ ନେଇ ତରତର ହୋଇ ବାହାରିଗଲେ ।

ଟିକିଏ ଆଗରୁ ନାୟକ ତା ସହିତ ଅତି ଭଦ୍ରଭାବରେ କଥାବାର୍ତ୍ତା କରିଥିଲେ ଏବଂ ଭୟଙ୍କର ଲୋକ ହୋଇଥିବାର କୁଖ୍ୟାତି ଥିବା ଲୋକଟି ଏଭଳି ଶାନ୍ତଶିଷ୍ଟ ବ୍ୟବହାର କରୁଥିବାରୁ ରେଣୁକା ବରଂ ନିଜର ପୂର୍ବ ମନୋଭାବ ଯୋଗୁଁ ନିଜକୁ ଦୋଷୀ ମଣୁଥିଲା । ଲୋକଟି ତାକୁ ଆଦୌ ଖରାପ ଲାଗି ନଥିଲା ଏବଂ ସେ ଯଦି ସୁଧାକର ଆଗରେ ତା କାନ୍ଧରେ ହାତ ରଖିଥା'ନ୍ତେ, ହୁଏତ ସେ ନିଜେ ତାଙ୍କ ଆଡ଼କୁ ସାମାନ୍ୟ ଝୁଙ୍କିଯାଇ ତାଙ୍କ ପ୍ରତି ଆଗରୁ କରିଥିବା ମାନସିକ ଅବିଚାରର ଏକ ଦୈହିକ କ୍ଷମାପ୍ରାର୍ଥନା କରିଥା'ନ୍ତା ।

କିନ୍ତୁ ଏଭଳି ଲୁଚାଛପାରେ, କେହି ନଥିବାବେଳେ ତା'ର ଅସହାୟତାର ସୁଯୋଗ ନେଇ ତା'ର କାନ୍ଧରେ ହାତ ରଖି ତାକୁ ଏପରି ଅଶିଷ୍ଟ ଇଙ୍ଗିତ ଦେବା ରେଣୁକାକୁ ଅତ୍ୟନ୍ତ ଅଶ୍ଳୀଳ ବୋଧ ହେଲା । ସେ ଭାବିଲା ଯେ ସାଙ୍ଗେ ସାଙ୍ଗେ ଯାଇ ସୁଧାକରକୁ ଏ କଥା କହିବ । କିନ୍ତୁ ସୁଧାକର ସେତେବେଳକୁ ମଲାଭଳି ବିଛଣାରେ ପଡ଼ିଥିଲା ଏବଂ ତା'ଠାରୁ ଏଭଳି ଅନୁଯୋଗ ଶୁଣିବା ଅବସ୍ଥାରେ ନଥିଲା । ସେ ଭଲ ହେବା ପରେ ତାକୁ ଆଉ ଏ କଥାଟି କହିବାର ସୁଯୋଗ ଆସିଲା ନାହିଁ । ଗୋଟିଏ ଘଟଣା ଘଟିଯିବାର କିଛିଦିନ ପରେ ସେଇ ଘଟଣାଟି ଭୁକ୍ତଭୋଗୀକୁ ମଧ୍ୟ ଭିନ୍ନ ଭାବରେ ଦେଖାଯାଇଥାଏ । ରେଣୁକାକୁ ସେଦିନର ପ୍ରସଙ୍ଗଟି ଆଉ ଏତେ ଅଶ୍ଳୀଳ ଓ ଅପମାନଜନକ ମନେ ହେଉ ନଥିଲା, ଯାହା ସେଦିନ ତା'ର ମନେ ହୋଇଥିଲା । ବରଂ ସେ କେବେ କେବେ କଳ୍ପନା କରୁଥିଲା, ଯଦି ସେ ନିଜେ ସେତେବେଳେ ସାମାନ୍ୟ ଆଉଜି ଯାଇଥା'ନ୍ତା, ତାହେଲେ କ'ଣ ହୋଇଥା'ନ୍ତା ! ତେବେ ସେ ଠିକ୍ କରିନେଇଥିଲା ଯେ, ସେ ଆଉ ଏ ବିଷୟଟି କେବେହେଲେ ସୁଧାକରକୁ କହିବ ନାହିଁ । ସୁଧାକରର ମତିଗତି ସହିତ ଭଲଭାବେ ପରିଚିତ ଥିବାରୁ ସେ ତା'ର ପ୍ରତିକ୍ରିୟା କ'ଣ ହେବ ଠିକ୍ ଠିକ୍ ଜାଣିଥିଲା । ହୁଏତ ସୁଧାକର କହିଥା'ନ୍ତା, ତମେ ତମର କଥାବାର୍ତ୍ତା ଭାବଭଙ୍ଗୀରେ ଏମିତି କିଛି କରିଥିବ, ଯାହାଫଳରେ ସେ ଏକଥା କରିବାକୁ ସାହସ କଲେ । କିମ୍ବା ରେଣୁକାକୁ ତା'ର ଓ ସାହେବଙ୍କ ସମ୍ପର୍କ ଭିତରକୁ ଟାଣି ଆଣିବାକୁ ଚେଷ୍ଟାକରି କହିଥା'ନ୍ତା, ନା ନା, ତମେ ତାଙ୍କୁ ଭୁଲ ବୁଝୁଛ । ତାଙ୍କର କିଛି ଖରାପ ଉଦ୍ଦେଶ୍ୟ ନଥିଲା । ତାଙ୍କୁ ବରଂ ଆଉଥରେ ଘରକୁ ଡାକ, ଦେଖିବ କେମିତି ଭଲଲୋକ । ସେ ଯାହାହେଉ, ରେଣୁକା ସୁଧାକର ଆଗରେ କେବେହେଲେ ଏକଥା ଉଠାଇଲା ନାହିଁ, ଯଦିଓ ସେ ନିଜେ ମନ ଭିତରୁ ଘଟଣାଟିକୁ ଦୂର କରିପାରୁ ନଥିଲା ।

ସାହେବ ତାକୁ ଲାଞ୍ଚ ନେଉଥିବା ଆରୋପରେ ଗାଳି ଦେଇଥିବା କଥା ସୁଧାକର ଯେତେବେଳେ ଘରେ ଯାଇ ରେଣୁକାକୁ କହିଲା, ତାକୁ ସହାନୁଭୂତି ଦେଖାଇବ କ'ଣ, ସେ କହିଲା, ଠିକ୍ ହୋଇଛି । ମୁଁ କ'ଣ କହୁଥିଲି ତମକୁ ? ଏଇ ବଦମାସ ଲୋକ ପାଖରେ ବହୁତ ହୋଇଗଲା ଏଥରକ ଆଉ କୁଆଡ଼େ ବଦଳିରେ ଯାଅ । କିନ୍ତୁ ତମକୁ ତ ସେଇଠି ସ୍ୱର୍ଗ ମିଳିଛି । ଯାଇ ତାଙ୍କ ପାଦ ଚାଟୁଥାଅ, ଏମିତି ଗାଳିଗୁଲଜ ଶୁଣୁଥାଅ । ସୁଧାକର ମନଦୁଃଖରେ ଚୁପ ହୋଇଯାଇ ଆରଘରେ ବସିଲା । କିନ୍ତୁ ରେଣୁକାର ଉଲୁଗୁଣା ସେତିକିରେ ସରି ନଥିଲା । ସେ ସୁଧାକର ପାଖକୁ ଯାଇ ପଚାରିଲା, ତମେ କ'ଣ ସତରେ ସେ ଲୋକ ପାଖରୁ ଟଙ୍କା ନେଇଥିଲ ନା କ'ଣ, ତାକୁ ସାହେବଙ୍କ ସାଙ୍ଗରେ ଭେଟ କରାଇଦେବ ବୋଲି ?

ସୁଧାକରର ଆହୁରି ମନେପଡ଼ିଲା ଅନେକ ଦିନ ତଳେ ଥରେ କେମିତି ସାହେବ

ତାକୁ ତୁ ବୋଲି କହିଥିଲେ । ସେତେବେଳକୁ ସେ ମାତ୍ର କେତେଦିନ ଆଗରୁ ନାୟକଙ୍କ ପାଖରେ ଯୋଗ ଦେଇଥାଏ । ମନ୍ତ୍ରୀଙ୍କ ପାଖକୁ ଗୋଟାଏ କ'ଣ ଜରୁରୀ ନୋଟ୍ ସାଙ୍ଗେ ସାଙ୍ଗେ ଯିବାର ଥିଲା ; ଡିକ୍ଟେସନ ଲେଖି, ତାକୁ ଟାଇପ କରି ସାହେବଙ୍କ ଦସ୍ତଖତ ନେଇ ସେ ତାକୁ ପଠାଇ ଦେଇଥିଲା । ଦୁର୍ଭାଗ୍ୟକୁ ଟାଇପ କରିବାବେଳେ ସେଥିରେ ଗୋଟିଏ ମସ୍ତବଡ଼ ଭୁଲ ରହିଯାଇଥିଲା । ମନ୍ତ୍ରୀଙ୍କ ପାଖରୁ ଯେତେବେଳେ ଫାଇଲ ଫେରିଲା, ନାୟକ ଦେଖିଲେ ଯେ, ସେଥିରେ ମନ୍ତ୍ରୀ ଖୋଦ ଭୁଲ ଜାଗାଟି ଉପରେ ଲାଲ କାଳିର ମୁଣ୍ଡୁଳା ବୁଲାଇ, ଧାରରେ ଏକାଧିକ ପ୍ରଶ୍ନ ଚିହ୍ନ ଆଙ୍କି ଓ ନୋଟ୍ ତଳେ ବ୍ୟଙ୍ଗାତ୍ମକ ମନ୍ତବ୍ୟ ଲେଖି ତାକୁ ଗୋଟିଏ ଉପହାସର ପାତ୍ର କରିଦେଇଛନ୍ତି । ସେଥରକ ଅତ୍ୟନ୍ତ ଅକଥ୍ୟ ଭାଷାରେ ସୁଧାକରର ଚଉଦ ପୁରୁଷ ଉଦ୍ଧାର କରିସାରିବା ପରେ ନାୟକ ଶେଷରେ ତାକୁ କହିଥିଲେ, ତୁ କ'ଣ ମୋ ଚାକିରି ନବୁ ନା କ'ଣ ?

ସେ ସମୟରେ ସୁଧାକର ପ୍ରତିଦିନ ଘରକୁ ଫେରି ନିଜ ଅଫିସ କାମର ଏକ ଧାରା ବିବରଣୀ ଦେଉଥିଲା ରେଣୁକାକୁ । ରେଣୁକା ସେତେବେଳକୁ ନାୟକଙ୍କ ବିଷୟରେ ଏତେ ବିରୂପ ଧାରଣାମାନ କରି ନଥିଲା ଏବଂ ସେଦିନର ଘଟଣା କଥା ଶୁଣି ସୁଧାକରକୁ କହିଥିଲା, ସାହେବଙ୍କ ଆଚାର ବ୍ୟବହାର କିଛି ଭଲ ଜଣାଯାଉନି । ତମେ ତ କହୁଥିଲ ଆଗରୁ ତାଙ୍କ ପାଖରେ କେହି ତିଷ୍ଠିପାରୁ ନଥିଲେ । ତମେ କାହିଁକି ଛୁଟି ଫୁଟି ନେଇ ଆଉ କାହା ପାଖକୁ ବଦଳି ହୋଇ ଯାଉନ ?

ସୁଧାକର କିନ୍ତୁ ଛୁଟି ନେଇ ନଥିଲା ଅଥବା ବଦଳି ପାଇଁ ଚେଷ୍ଟା କରି ନଥିଲା । ଏକେତ ସେ ଭୟାଳୁ ପ୍ରକୃତିର ଥିଲା ଏବଂ ଭାବୁଥିଲା ଯେ ତା'ର ଛୁଟି ମାଗିବା ସାହେବଙ୍କ ଉପରେ ଏକ ମନ୍ତବ୍ୟ ଭଳି ହେବ । ଦ୍ୱିତୀୟରେ, ନିଜର ସହନଶୀଳତା ଉପରେ ତା'ର ଅଗାଧ ବିଶ୍ୱାସ ଥିଲା । ହଉ, ସାହେବ ରାଗିକରି କୋଉଦିନ କଣ କହିଦେଲେ ; ତାକୁ ଧରି ରଖିଲେ କ'ଣ ଚଳିବ ? ଘରେ ରେଣୁକା ସହିତ ସାହେବଙ୍କ ବିଷୟରେ କଥାବାର୍ତ୍ତା କଲାବେଳେ ତାକୁ ସେ ଏଇକଥା ହିଁ ବୁଝାଉଥିଲା ସବୁବେଳେ । ରେଣୁକା ଯେତେବେଳେ ତାକୁ ପୂର୍ବର ଦୁର୍ବ୍ୟବହାର କଥା ସବୁ ମନେ ପକାଇ ଦେଉଥିଲା, ସୁଧାକର କହୁଥିଲା, ହେଲା ଯେ, ସେଥର କେମିତି ମୋର ପ୍ରଭିଡେଣ୍ଟ ଫଣ୍ଡ ଟଙ୍କା ଗୋଟିଏ ଦିନରେ କରାଇ ଦେଇଥିଲେ ? ରେଣୁକା କିନ୍ତୁ ସନ୍ତୁଷ୍ଟ ହେଉ ନଥିଲା । ଓଲଟା କହୁଥିଲା, ସେଇଟା କ'ଣ ତାଙ୍କ ବାପର ଟଙ୍କା ନା କ'ଣ ? ତମ ଟଙ୍କା ତମକୁ ମିଳିଲା, ସାହେବଙ୍କୁ କାହିଁକି ଏତେ ମାନ୍ୟତା ଦିଆଯାଉଚି ସେଥିପାଇଁ ?

ରେଣୁକା ଏ କଥା କହିବା ସତ୍ତ୍ୱେ ନାୟକଙ୍କୁ ଛାଡ଼ିପାରିଲା ନାହିଁ ସୁଧାକର । ସାହେବଙ୍କ ରୋଷ, କ୍ରୋଧ, ଗାଳିଗୁଲଜ, ଦଣ୍ଡ, ଦୁର୍ବ୍ୟବହାର ସତ୍ତ୍ୱେ ତାଙ୍କର ବିନୀତତମ ଆଜ୍ଞାବହ ହୋଇ ରହିଲା ସେ । ସାହେବ ଯେତେବେଳେ ପ୍ରମୋଶନ ପାଇଲେ, ସେ

ଖୁସି ହେଲା ; ସାହେବଙ୍କ ନୋଟ୍ ଉପରୁ ଅଗ୍ରାହ୍ୟ ହୋଇ ଫେରିବାରେ ତା'ର ମନ କଷ୍ଟ ହେଲା ଏବଂ ସାହେବଙ୍କ ଝିଅ ବାହାଘରର ସବୁ ଦାୟିତ୍ୱ ସେ ନିଜ ମୁଣ୍ଡ ଉପରକୁ ନେଇନେଲା । ଶେଷବେଳକୁ ସାହେବ ଯେତେବେଳେ ତାକୁ ଛୋଟ ଛୋଟ ଚିଠି ନିଜେ ତିଆରି କରିବାର ଦାୟିତ୍ୱ ଦେଲେ, ସେ ଭାବିଲା ସେ ଗଡ଼ ଜିଣିଯାଇଛି । ଅନେକ ପରିଶ୍ରମ ଓ ବୁଦ୍ଧି ଲଗାଇ ଲେଖିଥିବା ତା'ର ଚିଠାକୁ ଯେତେବେଳେ ସାହେବ ପ୍ରସନ୍ନ ମୁଖଭଙ୍ଗୀ କରି ପଢୁଥିଲେ, ସୁଧାକର କୃତକୃତ୍ୟ ହୋଇଯାଉଥିଲା ଏବଂ ସାହେବ ଯେତେବେଳେ କୌଣସି କାରଣରୁ ତା ଉପରେ ଅସନ୍ତୁଷ୍ଟ ରହୁଥିଲେ, ସେ ଦିନଟି ସୁଧାକର ପାଇଁ ହୋଇଯାଉଥିଲା ବିରସ ଓ ବିଷଣ୍ଣ ।

ଯେତେବେଳେ ନାୟକ ସାହେବଙ୍କର ଅବସର ଗ୍ରହଣ କରିବାର ତାରିଖ ପାଖେଇ ଆସିଲା, ସୁଧାକରର ସୁଖଦୁଃଖର ଦୁଇସୀମା ଭିତରେ ଏଇ ଦିନଟିର ଛାଇ ପଡ଼ିବାରେ ଲାଗିଲା । ସାହେବ ତା ଉପରେ ଖୁସି ହେଲେ ସେ ଭାବୁଥିଲା, ଆହା, କେତେ ଶୀଘ୍ର ମୋ ସୁଖର ଦିନ ସରିଯିବ ! ସାହେବ ତାକୁ ଗାଳିଦେଲେ ସେ ଭାବୁଥିଲା, ଆହୁରି ଦି'ମାସ ଏ ରାକ୍ଷସ ପାଖରେ କାମ କରିବାକୁ ପଡ଼ିବ ; କିମ୍ବା, ହଁ ଆଉ ଦି'ମାସ ତ, ତା'ପରେ ମୁଁ କୁଆଡ଼େ, ତମେ କୁଆଡ଼େ ! ଆଜି କିନ୍ତୁ ଅଫିସରେ ସାହେବଙ୍କର ଶେଷ କାମ କରିବା ଦିନରେ ତା ମନରେ ଏସବୁ ଚିନ୍ତା ନଥିଲା । ତା'ର ଚିନ୍ତା, ଚୈତନ୍ୟ, ମନମାନସ, ଅନ୍ତର ଆତ୍ମାକୁ ଘେରି ରହିଥିବା ଲୋକଟି ତାକୁ ଯେପରି ଏକାକୀ ଓ ଅନାଥ କରି ଚାଲିଯାଉଥିଲା । ସାହେବଙ୍କର କାଗଜପତ୍ର ଠିକ୍ କରିବାବେଳେ, ତାଙ୍କ ବିଦାୟ ସଭାରେ ବସି ତାଙ୍କ ପ୍ରତି କୁହାଯାଉଥିବା ଅହେତୁକ ପ୍ରଶଂସାମାନ ଶୁଣିବାବେଳେ ସୁଧାକରର ମନେ ହେଉଥିଲା, ନାୟକ ସାହେବଙ୍କ ଭଳି ସୁସ୍ଥ ସବଳ କାର୍ଯ୍ୟକ୍ଷମ ଲୋକକୁ କେବଳ ବୟସ ଦୃଷ୍ଟିରୁ ଅବସର ଦେଇଦେବା ସରକାରଙ୍କର ଘୋର ଅନ୍ୟାୟ ।

ସେଦିନ ସନ୍ଧ୍ୟାବେଳେ ସାହେବଙ୍କ ବିଦାୟ ସଭା ପରେ ସେ ସିଧା ଘରକୁ ନଯାଇ ଅନେକ ସମୟ ଧରି ରାସ୍ତାରେ ଘୂରିବୁଲିଲା ଲକ୍ଷ୍ୟହୀନ ହୋଇ । ବୁଲୁବୁଲୁ ହଠାତ ଘଡ଼ିରେ ଦଶଟା ବାଜିବାର ଦେଖି ସେ ଘରକୁ ଫେରିଲା । ରେଣୁକା ଯେପରି ତାକୁ ଜଗି ବସିଥିଲା । ଘର ଭିତରକୁ ପଶୁ ପଶୁ କହିଲା, ଆଜି ବଡ଼ ସାହେବଙ୍କର ସବୁ କାମ ସାରିଦେଇ ଆସିଲ ତ ? ଯାଅ, ଏଥରକ ଶାନ୍ତିରେ ଶୋଇଯାଅ । ଖାଇପିଇ ସୁଧାକର ଶୋଇବାକୁ ଗଲା, କିନ୍ତୁ ତାକୁ ନିଦ ଆସିଲା ନାହିଁ । ଛଟପଟରେ ରାତି କଟିବା ପରେ ସକାଳେ ଉଠି ସେ ସଜ ହେଲା, କିନ୍ତୁ ତା'ର ଅଫିସ ଯିବାକୁ ମନ ହେଲା ନାହିଁ । ରେଣୁକା ଯଦି ତାକୁ ଗୋଡ଼େ ଗୋଡ଼େ ଜଗି ରହି ନଥା'ନ୍ତା, ସେ ଛୁଟିନେଇ ଦିନଟି ଘରେ ରହିଯାଇଥା'ନ୍ତା ; କିନ୍ତୁ ତାକୁ ଅଫିସ ଯିବାକୁ ହିଁ ହେଲା । ଏ ପର୍ଯ୍ୟନ୍ତ ନୂଆ ସାହେବ ଆସି ନଥିଲେ ଏବଂ ନାୟକଙ୍କ ଅନୁପସ୍ଥିତିରେ ତାଙ୍କର ପୁରୁଣା ବ୍ୟକ୍ତିଗତ

କର୍ମଚାରୀମାନେ ଏକ ହସଖୁସିର ବାତାବରଣରେ ଥିଲେ, କିନ୍ତୁ ସୁଧାକରକୁ କିଛି ଭଲ ଲାଗିଲା ନାହିଁ । ଅଫିସ ଛୁଟି ହେବା ଆଗରୁ ସେ ନାୟକ ସାହେବଙ୍କ ଘରକୁ ଗଲା ।

ନାୟକ ସାହେବ ତାକୁ ଅପେକ୍ଷା କରି ବସିଥିଲେ । ତାକୁ ଦେଖି ଖୁସି ହେବେ କ'ଣ, ତା ଉପରେ ସାମାନ୍ୟ ରାଗି, ତାକୁ ଥଟ୍ଟା କରିବା ଭଳି କହିଲେ, କଣ ସୁଧାକର ବାବୁ, ଅଫିସରେ ବେଶି କାମ ପଡ଼ିଗଲା ନା କ'ଣ ? ମୁଁ ସକାଳୁ ଆପଣଙ୍କୁ ଅନାଇ ବସିଛି । ତା'ର ଚିରାଚରିତ ଅଭ୍ୟାସଗତ କ୍ଷମା ମାଗିବାର ମିଛ କହି ସୁଧାକର କହିଲା, ମୋର ଦେହ ଟିକିଏ ଭଲ ନଥିଲା, ସେଥିପାଇଁ ଡେରିରେ ଅଫିସ ଗଲି । ନାୟକ ତା'ର ମିଛକୁ ଆଗଭଳି ଠିକ୍ ଧରିପାରିଲେ ; କହିଲେ, ଠିକ୍ ଅଛି । କାଲିଠାରୁ ସକାଳେ ଅଫିସ ଗଲା ବାଟରେ ଆସିଯିବ । ତା'ପରେ ନାୟକ କହିଲେ, ମୋର ବ୍ୟାଙ୍କକୁ ଗୋଟିଏ ଚିଠି ଦେବାର ଅଛି ; ଲେଖ । ସୁଧାକର ଦେଖିଲା ଯେ, ସେ ତା'ର ଡିକ୍ଟେସନ ନେବାର ଖାତା ଆଣି ନଥିଲା । ପକେଟରୁ ଗୋଟିଏ ଟୁକୁରା କାଗଜ ନେଇ ତା ଉପରେ ଶ୍ରୁତଲିଖନ ନେଉ ନେଉ ସାହେବ ତାକୁ ଆଉ କିଛି କହିବା ଆଗରୁ କହିଲା, କାଲିଠୁ ସାର୍ ମୁଁ ନୋଟ୍‌ଖାତା ନେଇ ଆସିବି ।

ସାହେବଙ୍କ କାମ କଥା ବୁଝି ଘରକୁ ଫେରିବା ବେଳକୁ ଆଜି ବି ଡେରି ହୋଇଗଲା ସୁଧାକରର । ସେ ଭାବିଥିଲା ଯେ ରେଣୁକା ଜାଣିପାରିବ ନାହିଁ ସେ ନାୟକଙ୍କ ପାଖକୁ ଯାଇଥିଲା ବୋଲି । କିନ୍ତୁ ତା ମୁହଁକୁ ଦେଖି ରେଣୁକା ଠିକ୍ ବୁଝିଗଲା ଏବଂ ସେ ଯେ ଭାବିଥିଲା ମିଛ କହି ଚଳାଇଦେବ ବୋଲି, ତା'ର ସାହସ ହେଲା ନାହିଁ । ସେ ରେଣୁକାକୁ କେମିତି କି ଭାବରେ କହିବ ଭାବୁଛି, ରେଣୁକା କହିଲା, ପୁରୁଣା ସାହେବଙ୍କର ବାକି କାମସବୁ ସାରିବାକୁ ଆଉ କେତେଦିନ ଲାଗିବ ? ଏଥରକ ଯଦି ଦି' ଦି'ଜଣ ସାହେବ ତମ ମୁଣ୍ଡ ଉପରେ ବସନ୍ତି, ତାହେଲେ ତ ଘରେ ଆଉ ତମର ଦେଖାଦର୍ଶନ ମିଳିବ ନାହିଁ ! ସୁଧାକର ତାକୁ ପ୍ରବୋଧନା ଦେବା ଭଙ୍ଗୀରେ ଦାର୍ଶନିକତା କରି କହିଲା, ଅଫିସର ରିଟାୟାର କଲେ ତାଙ୍କୁ କେହି ପଚାରନ୍ତିନି ; ସେଥିପାଇଁ ମୁଁ ଭାବିଲି ମୁଁ ଅନ୍ତତଃ ଯାଇ ତାଙ୍କୁ ଟିକିଏ ଦେଖା କରି ଆସେ । ରେଣୁକା କହିଲା, ଆଉ କେହି ନ ପଚାରିଲେ କ'ଣ ହେଲା, କାହାରି ଯଦି ତମ ଭଳି ପ୍ରଭୁଭକ୍ତ ହନୁମାନ ଥିବ, ତା'ର ଆଉ ଚିନ୍ତା କ'ଣ ? ସୁଧାକର କହିଲା, ତାଙ୍କର କ'ଣ ଛୋଟ ଛୋଟ କାମ ଅଛି ; ଦିନେ ଦି'ଦିନରେ ସରିଯିବ ।

ଦିନେ ଦି'ଦିନ ନୁହେଁ, ଅଫିସ ବାଟରେ ନାୟକଙ୍କ ଘର ଦେଇ ଯିବା ସୁଧାକରର ନିତିଦିନିଆ ଅଭ୍ୟାସ ହୋଇଗଲା । ଏଥିପାଇଁ ତାକୁ ଘଣ୍ଟାଏ ଆଗରୁ ଘରୁ ବାହାରିବାକୁ ପଡୁଥିଲା ଏବଂ ଦୁଇ କିଲୋମିଟର ଅଧିକା ସାଇକେଲ କରିବାକୁ ପଡୁଥିଲା । ନାୟକ ତାକୁ ଯୋଉ କାମ ଦେଉଥିଲେ, ତାକୁ ଅଫିସରେ ବସି କରିବାକୁ ହେଉଥିଲା । ନାୟକ

ବର୍ତ୍ତମାନ ସେଇ ସରକାରୀ ଘରେ ରହୁଥିଲେ ଏବଂ ଲୁଚାଛପାରେ କୋଉ ଗୋଟାଏ ବ୍ୟବସାୟୀ ସଂସ୍ଥାର କ'ଣ କାମ କରୁଥିଲେ ; ସେ ସମ୍ପର୍କରେ ଯେତେ ଯାହା ଲେଖାଲେଖି ଟାଇପ କରିବାର କାମ ଥିଲା, ତାକୁ ସେ କରାଉଥିଲେ ସୁଧାକରକୁ ଦେଇ । ଥରେ ସୁଧାକର ଗୋଟିଏ କାଗଜକୁ ଦିନେ ଡେରି କରି ଦେବାରୁ ତାକୁ ନାୟକ ଧମକାଇ ଦେଇଥିଲେ । ମଝିରେ ଥରେ ସୁଧାକରକୁ କହିଥିଲେ, କାମ ଟିକିଏ ବଢୁ, ମୁଁ ତମକୁ ଟଙ୍କା ଦେବାର ବ୍ୟବସ୍ଥା କରିବି । ସୁଧାକର ଅତି ଦୃଢ଼ ଭାବରେ ମୁଣ୍ଡ ହଲାଇ କହିଥିଲା, ନା ସାର୍, ଆପଣ ମୋ ପାଇଁ ଯାହାସବୁ କରିଛନ୍ତି, ଯଥେଷ୍ଟ ; ମତେ ଆଉ ଟଙ୍କା କଥା କହିବେ ନାହିଁ ।

ସତକୁ ସତ ନାୟକ ଆଉ ଟଙ୍କାଦେବା କଥା ଉଠାଇଲେ ନାହିଁ, କିନ୍ତୁ ଯେତିକି ସମୟ ସୁଧାକର ତାଙ୍କ ପାଖକୁ ଯାଉଥିଲା, ସେ ତା ସହିତ ଆଗଭଳି କଟୁ ତିକ୍ତ ବ୍ୟବହାର କରିବାରେ ଲାଗିଲେ । ସବୁ ପୁଣି ସେଇ ପୁରୁଣା ଅଭ୍ୟାସରେ ପଡ଼ିଗଲା ସୁଧାକରର । ଗାଳିମନ୍ଦ, ମଝିରେ ମଝିରେ ମିଠା କଥା , ପୁଣି ଗାଳିମନ୍ଦ । ଅଫିସରେ ଯୋଉ ନୂଆ ସାହେବ ଯୋଗ ଦେଇଥିଲେ, ତାଙ୍କ ସହିତ ଯେତିକି କମ୍ ସମ୍ଭବ, ସେତିକି କମ୍ ସମ୍ପର୍କ ରଖିଥିଲା ସୁଧାକର । ସେ ଠିକ୍ ସମୟରେ ଅଫିସ ଯାଉଥିଲା, ଅଫିସ କାମ ଠିକ୍‌ରେ କରୁଥିଲା, କିନ୍ତୁ ତା'ର ଜୀବନକୁ ଘେରି ରଖିଥିବା ବିରାଟ ପୁରୁଷଟି ଥିଲେ ନୂଆ ସାହେବ ନୁହେଁ, ନାୟକ ହିଁ । କିଛିଦିନ କ୍ରମାଗତ ଏ ବିଷୟରେ ସୁଧାକରକୁ ଜବାବଦେହି କରିବା ପରେ ରେଣୁକା କହିଲା, ନାୟକ ସାହେବ ମଲେ ଯାଇ ତମ ଉପରୁ ତାଙ୍କର ଭୂତ ଛାଡ଼ିବ । ସୁଧାକର କହିଲା, କି ଅଲକ୍ଷଣା କଥା ସବୁ କହୁଚ ଗୋଟାଏ ଭଲଲୋକ ପାଇଁ !

ଦିନେ ସକାଳେ ନାୟକଙ୍କ ଘରକୁ ଯାଇ ସୁଧାକର ଶୁଣିଲା ଯେ, ପୂର୍ବଦିନ ରାତିରେ ହାର୍ଟ ଆଟାକ୍ ହୋଇ ସେ ହସ୍‌ପିଟାଲରେ ଭର୍ତ୍ତି ହୋଇଛନ୍ତି । ଏକଥା ଶୁଣି ହଠାତ ତା ମୁଣ୍ଡ ଘୂରିଗଲା । କୌଣସିମତେ ଅଫିସକୁ ଫୋନ କରି ସାଇକେଲ ଚଢ଼ି ସେ ହସ୍‌ପିଟାଲକୁ ବାହାରିଲା । ସେଠାରେ ପହଞ୍ଚି, ହୃଦରୋଗ ବିଭାଗ ଖୋଜି ସେ ଯେତେବେଳେ ନାୟକ ରହୁଥିବା ୱାର୍ଡ଼କୁ ଗଲା, ସେଠାରେ ତାଙ୍କର ସ୍ତ୍ରୀ ପିଲା ବିଷଣ୍ଣ ବଦନରେ ବସିଥିଲେ । ନାୟକଙ୍କୁ ଇନ୍‌ଟେନ୍‌ସିଭ କେୟାରରେ ରଖା ହୋଇଥିଲା ଏବଂ ସେଠାକୁ ସମସ୍ତଙ୍କର ପ୍ରବେଶ ନିଷେଧ ଥିଲା । ନାୟକଙ୍କ ପରିବାରବର୍ଗଙ୍କୁ ନମସ୍କାର କରି ସେ ତଳକୁ ମୁହଁପୋତି ଠିଆହୋଇ ରହିଲା ଏବଂ କିଛି ସମୟ ପରେ ବାହାରକୁ ଆସିଲା । ସେ ସାଇକେଲ ନେଇ ହସ୍‌ପିଟାଲ ବାହାରକୁ ବାହାରୁଛି, ନାୟକଙ୍କର ଜଣେ ଆତ୍ମୀୟ ଦେଖା ହେଲେ । ସେ ତାକୁ କହିଲେ, ବଞ୍ଚିବା ଆଶା ବହୁତ କମ୍ । ସୁଧାକରର ମନେହେଲା ତା'ର ଯେପରି ଆଉ ଠିଆହୋଇ ରହିବାର ଶକ୍ତି ନାହିଁ ।

ସେ ସାଇକେଲରେ ନ ଚଢ଼ି ତାକୁ ଗଡ଼ାଇ ଗଡ଼ାଇ ଘର ପର୍ଯ୍ୟନ୍ତ ଆସିଲା । ସେତେବେଳକୁ ତା ଦେହରେ ଆଉ ଜୀବନ ନଥିଲା ଯେପରି ।

ସେ ରେଣୁକାକୁ କହିଲା ଯେ, ଦେହ ଖରାପ ହେବାରୁ ସେ ଅଫିସରୁ ଚାଲିଆସିଛି । ପୋଷାକ ବଦଳାଇ ସେ ଯାଇ ବିଛଣା ଉପରେ ଶୋଇଲା । ନିଃଶ୍ୱାସ ନେବାବେଳକୁ ତା'ର ଛାତିରେ କଷ୍ଟ ଲାଗିଲା । ଛାତି ଉପରେ ହାତ ରଖି ସେ ରେଣୁକାକୁ କହିଲା, ମୋର ଦେହ କ'ଣ ହୋଇଯାଉଛି ; ଶୀଘ୍ର କୋଉ ଡାକ୍ତରକୁ ଫୋନ କର ।

# ସ୍ୱାତୀ ଆସିବ

ସ୍ୱାତୀ ଆସିବ ଦୁଇମାସ ତିନିଦିନ ପରେ ।

ପୁଣି ଥରେ ଚିଠିଟିକୁ ପଢ଼ିଲା ଭାସ୍କର । ଏ ଚିଠିଟି ଯୋଉଦିନ ଆସିଥିଲା, ସେ ହିସାବ କରିଥିଲା ସ୍ୱାତୀ ଆସିବ ଦୁଇମାସ ଅଠର ଦିନ ପରେ । କେତେଥର ଯେ ସେ ଚିଠିଟିକୁ ପଢ଼ିଛି ଏ ଭିତରେ ତା'ର ଗଣନା ନାହିଁ । ସେ ବାରମ୍ବାର ଚିଠିଟିକୁ ପଢୁଥିଲା, ଯେପରିକି ପ୍ରତିଟି ପଢ଼ିବାରେ ସେ ଚିଠିଟିରୁ କୌଣସି ଏକ ନୂଆ ମର୍ମ ଆବିଷ୍କାର କରିବ । ଚିଠିଟି କିନ୍ତୁ ଅତି ସଂକ୍ଷିପ୍ତ ଓ ସାଦାସିଧା ଥିଲା ଏବଂ ଥିଲା ମଧ୍ୟ ସଂପୂର୍ଣ୍ଣ ବ୍ୟଞ୍ଜନା ରହିତ । ତଥାପି ଭାସ୍କର ସେଥିରୁ ନୂଆ ଅର୍ଥ ବାହାର କରିବାକୁ ଚେଷ୍ଟା କରୁଥିଲା ଏବଂ ଭାବୁଥିଲା ଯେ ପ୍ରତିଥର ନୂଆକରି ଚିଠିଟି ପଢ଼ିବାବେଳେ ସେ ଯେପରି ସ୍ୱାତୀର ଆଉ ଟିକିଏ ନିକଟତର ହୋଇଯାଇଛି ।

ଚିଠିଟିର ଆରମ୍ଭରେ କୌଣସି ସମ୍ବୋଧନ ନଥିଲା । ସ୍ୱାତୀ ଲେଖିଥିଲା ମୁଁ ନଭେମ୍ବର ପାଞ୍ଚ ତାରିଖରେ ତମ ସହରକୁ ଯାଉଛି ସ୍କଲାରସିପର ଇଣ୍ଟରଭିଉ ଦେବା ପାଇଁ । ସଞ୍ଜବେଳେ ରାଜଧାନୀ ଏକ୍ସପ୍ରେସ୍‌ରେ ପହଞ୍ଚିବି । ତମେ କିନ୍ତୁ ଷ୍ଟେସନ ଆସିବ ନାହିଁ । କାରଣ ସେଠିକି ମତେ ନେବାପାଇଁ ମାଉସୀଙ୍କ ଘରୁ କିଏ ହେଲେ ଆସିଥିବ । ମୁଁ ତା ହାତରେ ଜିନିଷ ପଠାଇଦେଇ କିଛି ବାହାନାରେ ଦି'ଘଣ୍ଟା ପାଇଁ ତମ ପାଖକୁ ଆସି ସେଠାରୁ ମାଉସୀଙ୍କ ଘରକୁ ଯିବି । ତମକୁ ବହୁତ କଥା କହିବାର ଅଛି । ତମେ ନିଜକୁ ଫ୍ରି ରଖିଥିବ । ଦେଖାହେଲେ ସବୁ । ତା ତଳେ ଚାରିଟି ଛକିଚିହ୍ନ ଥିଲା ଏବଂ ତା ତଳେ ଆଉ ଗୋଟିଏ ଧାଡ଼ି ଲେଖା ହୋଇଥିଲା : ଯଦି କୌଣସି କାରଣରୁ ସେଦିନ ଯିବାର ନହୁଏ, ମୁଁ ତମକୁ ଜଣାଇବି ।

ଚିଠିଟି ଗୋଟିଏ ଅତି ସାଧାରଣ, ରୁଲ୍‌ପକା ଖାତାରୁ ଚିରା ହୋଇଥିବା ଆବୁଡ଼ା ଖାବୁଡ଼ା କାଗଜ ଉପରେ ଲେଖା ହୋଇଥିଲା । କିନ୍ତୁ ସ୍ୱାତୀର ହସ୍ତାକ୍ଷର ଖୁବ୍ ପରିଚ୍ଛନ୍ନ ଓ ସୁନ୍ଦର ଥିଲା ଏବଂ ପ୍ରତିଟି ଅକ୍ଷର ଥିଲା ତା'ର ଆତ୍ମବିଶ୍ୱାସୀ ବ୍ୟକ୍ତିତ୍ୱର ପ୍ରତୀକ । ଚିଠିଟିକୁ ଆଖି ଆଗରେ ରଖିବାବେଳେ ଭାସ୍କର ଯେପରି ସ୍ୱାତୀର ସ୍ୱାଭିମାନୀ ମୁହଁଟିକୁ ଦେଖିପାରୁଥିଲା ପଂକ୍ତିମାନଙ୍କର ଅନ୍ତରାଳରୁ । ଚିଠିଟିର ପ୍ରତିଟି ଶବ୍ଦ ତା'ର

ମୁଖସ୍ଥ ହୋଇଥିବା ସତ୍ତ୍ୱେ ଭାସ୍କର ସେଥିପାଇଁ ବାରମ୍ବାର ଲଫାପା ଭିତରୁ ଚିଠିଟିକୁ ଖୋଲି ତାକୁ ପୁଣିଥରେ ପଢୁଥିଲା ଏବଂ ସଯତ୍ନରେ ତାକୁ ପୁଣି ଚଉଡି ଲଫାପାରେ ନେଇ ରଖୁଥିଲା । ପ୍ରଥମେ ଲଫାପାଟି ତା'ର ଟେବୁଲ ଉପରେ ରହୁଥିଲା, କିନ୍ତୁ ଭାସ୍କରର ଦିନେ ହଠାତ ଭୟ ହେଲା ଯେ, ଯଦି ଦୈବଦୁର୍ବିପାକରୁ ତା'ର ଟେବୁଲରେ ନିଆଁ ଲାଗିଯାଏ, ତେବେ ଚିଠିଟି ମଧ୍ୟ ଜଳିଯିବ । ସେଥିପାଇଁ ସେଇଦିନଠାରୁ ସେ ତାକୁ ନେଇ ଆଲମାରିର ବିଶେଷ ଡ୍ରୟରରେ, ଯେଉଁଠାରେ ତା'ର ସେୟାର ସାର୍ଟିଫିକେଟ, ଚେକ୍‌ବହି, ଲାଇସେନ୍ସ ଇତ୍ୟାଦି ଜରୁରୀ କାଗଜ ରହୁଥିଲା, ରଖିଲା । ଅବଶ୍ୟ ଦିନରେ ବାରମ୍ବାର ଆଲମାରି ଖୋଲି ଚିଠି ବାହାର କରି ତାକୁ ପଢ଼ି ପୁଣି ସେଠାରେ ରଖିବା ସୁବିଧାଜନକ ନଥିଲା, ତେବେ ଭାସ୍କର ନିଶ୍ଚିନ୍ତ ଥିଲା ଯେ, ସେଠାରେ ଚିଠିଟି ଥିଲା ସମ୍ପୂର୍ଣ୍ଣ ସୁରକ୍ଷିତ ।

ଚିଠିଟି ସତରେ ତା ପାଇଁ ଥିଲା ଏକ ମୂଲ୍ୟବାନ ସମ୍ପଦ । ଚିଠିଟି ପାଇବା ପରେ ସେ ଲଫାପାଟିକୁ ଖୋଲି ତଳେ ପକାଇ ଦେଇଥିଲା ଅନ୍ୟ ଛିଣ୍ଡା କାଗଜ ସହିତ । ଚିଠିଟିକୁ ତିନିଥର ପଢ଼ିସାରିବା ପରେ ତା'ର ଇଚ୍ଛା ହେଲା ଲଫାପାଟିକୁ ଦେଖିବାକୁ ଏବଂ ସେ ତାକୁ ଉଠାଇ ଆଣିଲା । ଏଇଟି ବି ତ ସ୍ୱାତୀର ହାତର ଲେଖା ! ଲଫାପାରୁ କାଳ୍ପନିକ ଧୂଳି ପୋଛି ସେ ଚିଠିଟିକୁ ସେଥିରେ ରଖିଦେଇଥିଲା । ତା ଉପରେ କେବଳ ତା'ର ଠିକଣାଟି ଲେଖା ଥିଲା, ଆଉ କିଛି ନୁହେଁ । ଡାକଟିକଟ ଉପରେ ଗୋଟିଏ ଅସ୍ପଷ୍ଟ ମୋହର ଲାଗିଥିଲା, ଯାହାକୁ ପଢ଼ିହେଉ ନଥିଲା । ତା'ର ଠିକଣାରେ କୌଣସି ଭୁଲ ନଥିଲା ଏବଂ ଚିଠିଟି ଠିକ୍ ସମୟରେ ଆସିଥିଲା । ଭାସ୍କର ମନେ ମନେ ଡାକ ବିଭାଗକୁ କୃତଜ୍ଞତା ଜଣାଇଥିଲା ନିରାପଦରେ ଚିଠିଟିକୁ ଆଣି ତା ପାଖରେ ପହଞ୍ଚାଇ ଦେଇଥିବା ପାଇଁ । ଅନେକ ଜରୁରୀ ଚିଠି ହଜିଯାଉଥିଲା ଏବଂ ଭାସ୍କରକୁ ଭାବିବାବେଳକୁ କଷ୍ଟ ହେଉଥିଲା ଯଦି କୌଣସି କାରଣରୁ ଚିଠିଟି ତା ପାଖରେ ପହଞ୍ଚି ନଥା'ନ୍ତା, ତେବେ ?

ଚିଠିଟି ଅତି ଆକସ୍ମିକ ଥିଲା ଭାସ୍କର ପାଇଁ, ଯେପରି ଥିଲା ସେଥରକ ଟ୍ରେନ୍‌ରେ ଗଲାବେଳେ ସ୍ୱାତୀ ସହିତ ଅଚାନକ ଭେଟ ହୋଇଯିବା । ଦୀର୍ଘ ରେଳଯାତ୍ରାବେଳେ ସକାଳେ ପ୍ଲାଟ୍‌ଫର୍ମରେ ଓହ୍ଲାଇ ଏପାଖ ସେପାଖ ହେଉଛି, ଝରକା ପାଖରେ ବସିଥିବା ଝିଅଟିର ମୁହଁଟି ତା'ର ପରିଚିତ ମନେହେଲା । ତା'ର ଯେତେଦୂର ମନେପଡ଼ିଲା, ଝିଅଟି ଲାଜକୁଳୀ ଥିଲା, କ୍ଲାସ୍‌ରେ ଚୁପ୍‌ଚାପ୍ ବସୁଥିଲା, କାହାରି ସାଙ୍ଗରେ କଥାବାର୍ତ୍ତା କରୁ ନଥିଲା । ନାଁ ତା'ର ଥିଲା ସ୍ୱସ୍ତି ନା କ'ଣ । ପଚିଶବର୍ଷ ତଳର କଥା ହେଲାଣି । ସେ ସିନା ବାହା ନହୋଇ ରହିଗଲା, ତା'ର ସାଙ୍ଗମାନେ ବର୍ତ୍ତମାନ କଲେଜପଢୁଆ, ଚାକିରି କରୁଥିବା ପିଲାଙ୍କର ବାପ ହେଲେଣି । ସେଇଭଳି ତାଙ୍କ ସାଙ୍ଗର ଝିଅମାନେ କିଏ

ହୁଏତ ଆଈମା ବି ହୋଇ ସାରିବେଣି ।

ପ୍ଲାଟ୍‌ଫର୍ମ ଶେଷମୁଣ୍ଡକୁ ଯାଇ ସେ ପୁଣି ଫେରିଲା ସେଇ କମ୍ପାର୍ଟମେଣ୍ଟ ସାମନା ଦେଇ । ଏଥର ଆଉ ସିଧାସଳଖ ସେଇ ଝିଅଟିର ମୁହଁକୁ ଚାହିଁବାକୁ ସାହସ ହେଲା ନାହିଁ ତା'ର ; ଆଖି କଣରେ ଅନାଇ ସେ ନିଶ୍ଚିତ ହେଲା ଯେ, ଯଦି ଝିଅଟି ତା'ର ପୁରୁଣା ସହପାଠିନୀ ହୋଇ ନଥିବ, ତେବେ ତା'ର ସାନଭଉଣୀ ନିଶ୍ଚୟ । ପରବର୍ତ୍ତୀ ଷ୍ଟେସନରେ ଓହ୍ଲାଇ ସେ ପୁଣି ସେଇ କମ୍ପାର୍ଟମେଣ୍ଟରେ ଏପାଖ ସେପାଖ ହେଲା, ଯେପରିକି ନିଜର ସନ୍ଦେହର ଏକ ଠିକ୍ ନିଷ୍ପତ୍ତି ଚାହୁଁଥିଲା ସେ । ତା'ର ଏଇ ସମସ୍ୟାର ସମାଧାନ କରିଦେଇଥିଲା ସ୍ୱାତୀ, ପର ଷ୍ଟେସନରେ । ପ୍ଲାଟ୍‌ଫର୍ମରେ ଓହ୍ଲାଇ ସେଇ କମ୍ପାର୍ଟମେଣ୍ଟ ସାମନା ବହି ଦୋକାନରେ ପତ୍ରିକା ଦେଖୁଥିବାର ଛଳନା କରୁଥିବାବେଳେ ଝିଅଟି ହାତଠାରି ତାକୁ ପାଖକୁ ଡାକିଲା । ତା ପାଖକୁ ଏଇ କେତେ ପାଦ ଗଲାବେଳେ ଭାସ୍କର ନିଜର କୁର୍ତ୍ତାକୁ ଟାଣି ଠିକ୍ କଲା ଏବଂ ବାଳକୁ ସଜାଡ଼ିବା ପାଇଁ ମୁଣ୍ଡକୁ ହାତ ନେଲା, ଯଦିଓ ସେ ଜାଣୁଥିଲା ଯେ ଏସବୁ କରିବାବେଳେ ସେ ଆହୁରି ଅପ୍ରସ୍ତୁତ ହୋଇଯାଉଛି । ଝିଅଟି ଯେମିତି ତା'ର ମନକଥା ବୁଝିପାରୁଥିଲା ; ସେ ପାଖରେ ପହଞ୍ଚିବାରୁ ତାକୁ ହସି ହସି କହିଲା, ତମେ ମତେ ଯିଏ ବୋଲି ଭାବୁଛ, ମୁଁ ସେଇ ।

ଭାସ୍କର ନିଜକୁ ପ୍ରଖରବୁଦ୍ଧି, ପ୍ରତ୍ୟୁତ୍ପନ୍ନମତି ଓ ସପ୍ରତିଭ ବୋଲି ମନେ କରୁଥିଲା, କିନ୍ତୁ ବର୍ତ୍ତମାନ ମାନିନେଲା ଯେ ସେ ହାରିଯାଇଛି । ଝିଅଟିର ନାଁ ବିଷୟରେ ତା'ର ସନ୍ଦେହ ଥିଲା ଏବଂ ସେ ହଠାତ ଆପଣ ଓ ତମେର ଦ୍ୱନ୍ଦ୍ୱକୁ କାଟିପାରିଲା ନାହିଁ । ତେବେ ନିଜର ଅସ୍ୱସ୍ତିକୁ ଯଥାସମ୍ଭବ ସମ୍ବରଣ କରି ସେ ପ୍ରଶ୍ନ ଓ ଉତ୍ତର ମିଶାମିଶି ସ୍ୱରରେ କହିଲା, ଲ' କଲେଜ ! ସ୍ୱାତୀ କହିଲା, ବିଲକୁଲ ଠିକ୍ । ଶହେରୁ ଶହେ । ତେବେ ଆଉ ପ୍ରଶ୍ନ ପଚାରି ତମକୁ ମୁଁ ଫେଲ୍ କରାଇବି ନାହିଁ । ମୁଁ ଜାଣୁଚି ଯେ ତମେ ମୋର ନାଁ ଭୁଲିଯାଇଛ । ମୋ ନାଁ ସ୍ୱାତୀ । ଭାସ୍କର ମୁହଁକୁ ପରବର୍ତ୍ତୀ କଥା ଆସିଲା ନାହିଁ, କିନ୍ତୁ ତା'ର ଭାଗ୍ୟକୁ ଏଇ ସମୟରେ ଟ୍ରେନ୍ ଚାଲିବାକୁ ଆରମ୍ଭ କଲା ଏବଂ 'ଆର ଷ୍ଟେସନରେ ଆସିବି' ବୋଲି ତରବର ହୋଇ ନିଜ କମ୍ପାର୍ଟମେଣ୍ଟ ଆଡ଼କୁ ଚାଲିଗଲା ଭାସ୍କର ।

ସ୍ୱାତୀ ଆସିବ ମାସେ ସତର ଦିନ ପରେ ।

ନା, ତା'ର ଗଣିବାରେ କିଛି ଭୁଲ ନାହିଁ, କାରଣ କ୍ୟାଲେଣ୍ଡର ସାମନାରେ ଅଛି ଏବଂ ନଭେମ୍ବର ମାସର ପାଞ୍ଚ ତାରିଖ ଉପରେ କୁଣ୍ଡଳୀ ଟଣାଯାଇଛି । ପ୍ରତିଦିନ ସକାଳେ ତା'ର ଅପେକ୍ଷାର ଗୋଟିଏ ଗୋଟିଏ ଦିନ କମିଯାଉଥିଲା, କିନ୍ତୁ ଦିନସବୁ ଅତି ଅଳସ ଗତିରେ ଯାଉଥିଲେ ବୋଲି ମନେ ହେଉଥିଲା । କ୍ୟାଲେଣ୍ଡର ପୃଷ୍ଠା ଉପରେ

ସେ ଅଙ୍ଗୁଳି ବୁଲାଇ ଆଣିଲା ; କେଉଁ ମନ୍ତ୍ର ବଳରେ ଯଦି ଦିନପଞ୍ଜିକାରୁ ଅଠଚାଳିଶଟି ଦିନ ଉଡ଼ାଇ ଦେଇପାରନ୍ତା !

ସେ ଉଠିଯାଇ ଆଲମାରି ଖୋଲି ଚିଠିଟି ଆଣିଲା । କାଲି ରାତି ଦଶଟାରେ ସେ ଶେଷଥର ତାକୁ ପଢ଼ିଥିଲା । ସେ ନିଜ ଟେବୁଲ ପାଖକୁ ଯାଉଛି, କବାଟରେ କିଏ ଘଣ୍ଟି ଦେଲା । କବାଟ ଖୋଲି ଭାସ୍କର ଦେଖିଲା ବାହାରେ ବ୍ଲାଇଣ୍ଡ ସ୍କୁଲର ପିଲା ଦୁଇଜଣ ଚାନ୍ଦା ଖାତା ଧରି ଠିଆ ହୋଇଥିଲେ । ଏଭଳି ଲୋକଙ୍କୁ ସେ ମନା କରି ସାଙ୍ଗେ ସାଙ୍ଗେ କବାଟ ବନ୍ଦ କରିଦେଉଥିଲା । ଆଜି କିନ୍ତୁ ତା ହାତରେ ସ୍ୱାତୀର ଚିଠିଟି ଥିଲା ଏବଂ ଏଇ କାଗଜଟି ତା ମନ ଭିତରକୁ ଆଣିଦେଉଥିଲା ସୁଖଦ ସମ୍ଭାବନା ସବୁ । ସେ ପିଲାଦୁହିଁଙ୍କୁ ଦଶଟଙ୍କା ଦେଲା ଏବଂ କବାଟକୁ ବନ୍ଦ କଲା ଅତି ମୃଦୁ ଭାବରେ ।

ଟେବୁଲ ପାଖରେ ବସି ଚିଠିଟିକୁ ପଢୁପଢୁ ସେ ନିଜ ଚାରିଆଡ଼କୁ ଅନାଇଲା । ତା'ର ବହିପତ୍ର ଠିକ୍ ଜାଗାରେ ଥିଲା, କିନ୍ତୁ ତାକୁ ଆହୁରି ଭଲଭାବେ ସଜଡ଼ା ଯାଇପାରେ । ଯୋଉଦିନ ସେ ସ୍ୱାତୀର ଚିଠି ପାଇଲା, ତାକୁ ପଢ଼ିସାରିବା ପରେ ତା'ର ଆଖି ଯାଇଥିଲା ଟେବୁଲ ଉପରର ବିଶୃଙ୍ଖଳାକୁ । ସେ ସାଙ୍ଗେ ସାଙ୍ଗେ ଟେବୁଲ କ୍ଲଥ୍‌କୁ ଟାଣି ତା'ର କୁଞ୍ଚକୁ ଠିକ୍ କରିଦେଇଥିଲା ଏବଂ ଲାଗିଯାଇଥିଲା ବହିପତ୍ରକୁ ଠିକ୍ ଜାଗାରେ ରଖିବାରେ । ତା'ପରେ ତା'ର ଚିନ୍ତା ଯାଇଥିଲା ଅନ୍ୟ କୋଠରିର ଅବ୍ୟବସ୍ଥାକୁ । ତେବେ ହାତରେ ସମୟ ଥିଲା ଏସବୁ ଠିକ୍ କରିବା ପାଇଁ । ଘରଟିରେ ଅନେକ ଦିନରୁ ରଙ୍ଗ ଦିଆହୋଇ ନଥିଲା ; ଘର ମାଲିକ ତା'ର ଅନୁରୋଧକୁ ନାନା ଆଳ ଦେଖାଇ ଟାଳି ଦେଉଥିଲେ । ସେ ଠିକ୍ କଲା ଯେ, ସେ ନିଜେ ପଇସା ଖର୍ଚ୍ଚକରି ଘରକୁ ଠିକ୍‌ଠାକ୍ କରିବ । ଏ ଖର୍ଚ୍ଚ ଘରଭଡ଼ା ବାବଦରେ କାଟିହେବ କି ନା, ସେକଥା ପରେ ଦେଖାଯିବ ।

ଅତି ଶୀଘ୍ର ସେ ଘର କାମ ଆରମ୍ଭ କରିଦେଲା । ତା'ର ଗାଧୁଆଘରର ଯେଉଁ କବାଟଟି ଭାଙ୍ଗିଯାଇଥିଲା, ତାକୁ ବି ବଦଳାଇଦେବା ପାଇଁ ଠିକ୍ କଲା ସେ । ତେବେ ରଙ୍ଗଦେବାବାଲା, କବାଟ ମରାମତି କରିବାର ବଢ଼େଇ ମଝିରେ ମଝିରେ କାମ ବନ୍ଦ କରିଦେଉଥିଲେ । ସେ ସେମାନଙ୍କ ଉପରେ ରାଗୁଥିଲା, ଗାଳିମନ୍ଦ କରୁଥିଲା ଏବଂ ଏଇ ସମୟତକ ଅତି ମାନସିକ ଚାପରେ ରହିଥିଲା । ଶେଷକୁ ସବୁ କାମ ସରିଗଲା, କେବଳ ଗାଧୁଆଘରଟି ରହିଗଲା ବିନା କବାଟରେ । ଭାସ୍କରର ଭୟ ହେଲା ଯେ, ସ୍ୱାତୀ ପହଞ୍ଚିବା ପୂର୍ବରୁ ବି ଏ କାମଟି ସରିପାରିବ ନାହିଁ । ଏଇଭଳି ଦୁଶ୍ଚିନ୍ତାରେ ଥିବାବେଳେ ଦିନେ ସକାଳେ ବଢ଼େଇ ଆସି ଅଧଘଣ୍ଟାକରେ କବାଟଟିକୁ ଠିକ୍‌ଠାକ୍ କରି ଲଗାଇଦେଲା ଏବଂ ଘର ମରାମତି ଛାଡ଼ି ଅନ୍ୟ ଚିନ୍ତାରେ ମନ ଦେଲା ଭାସ୍କର ।

ଯଥା ତା'ର ଶୋଇବାଘର ଓ ବିଛଣା । କୋଠରିଟିର କାନ୍ଥ ବର୍ତ୍ତମାନ ଧଉଳା ହୋଇ ସଫାସୁତୁରା ଦିଶୁଥିଲା ଏବଂ ଭାସ୍କର ମୋଟାମୋଟି ଠିକ୍ କରିନେଇଥିଲା

ବିଛଣା ଉପରେ ସେ କେଉଁ ରଙ୍ଗର ଚାଦରଟି ପକାଇବ । ସେ ତକିଆ ଦୁଇଟିକୁ ହାତରେ ନେଇ ପରଖ କଲା । କେହି କେହି ଉଚ୍ଚ ତକିଆ ପସନ୍ଦ କରନ୍ତି । ତା'ର ନିଜର ସ୍ପଣ୍ଡିଲାଇଟିସ ପରେ ଡାକ୍ତର ତାକୁ କହିଥିଲେ ଅତି ପତଳା ତକିଆ ବ୍ୟବହାର କରିବା ପାଇଁ । ସ୍ୱାତୀ କିଭଳି ତକିଆ ବ୍ୟବହାର କରୁଥିବ ? ସେ ମନେ ମନେ ସ୍ୱାତୀକୁ ତା'ର ବିଛଣା ଉପରେ ଶୋଇଥିବାର କଳ୍ପନା କରୁଥିଲା, ଯଦିଓ ତା'ର କୌଣସି ଦାବି ନଥିଲା ଏଭଳି ଦିବାସ୍ୱପ୍ନ ଦେଖିବାରେ । କେତେ ବା ସେ ଜାଣିଥିଲା ସ୍ୱାତୀକୁ ତାକୁ ନିଜ ଶୋଇବା ଘରକୁ ଆଣିବା ପାଇଁ ? କିନ୍ତୁ ପୁଣି ସେ ସ୍ୱାତୀର ଚିଠିର ପଂକ୍ତିଟି କଥା ଭାବୁଥିଲା, ଦେଖାହେଲେ ସବୁ । ଏଇ କେତୋଟି ପଦରେ ଯେପରି ସବୁ ପ୍ରକାରର ସମ୍ଭାବନା କଥା ସୂଚାଇ ଦେଇଥିଲା ସ୍ୱାତୀ ତା ପାଇଁ ।

ଏକଥା ଭାବିଲାବେଳେ କିନ୍ତୁ ତା ମନରେ ଉତ୍ତେଜନା ସହିତ ସାମାନ୍ୟ ଆଶଙ୍କା ବି ଜନ୍ମୁଥିଲା । ଦିନ ଥିଲା ଯେତେବେଳେ ତା'ର ନିଜର ସାମର୍ଥ୍ୟ ଉପରେ କୌଣସି ସନ୍ଦିଗ୍ଧତା ନଥିଲା ଭାସ୍କରର । ଆଜିକାଲି କିନ୍ତୁ କେବେ କେବେ ଦେହ ତା'ର ଦେହର ଇଚ୍ଛା ସହିତ ତାଳଦେଇ ନ ପାରି ତାକୁ ମୂହ୍ୟମାନ କରିଦେଉଥିଲା । ଏକଥା ମନେପଡ଼ି ମନ ଖରାପ ହୋଇଗଲା ତା'ର । ସେ ଜୋରକରି ସେ ଚିନ୍ତାକୁ ଦୂର କଲା ଏବଂ ସ୍ୱାତୀ କଥା ମନେ ପକାଇଲା ।

ପର ଷ୍ଟେସନରେ ଓହ୍ଲାଇ ସ୍ୱାତୀ ପାଖକୁ ଯାଇ କିଭଳି ଭାବରେ କଥାବାର୍ତ୍ତା କରି ପୁଣି ପରିସ୍ଥିତିକୁ ନିଜର ଆୟତ୍ତ କରିବ, ସେ ଯୋଜନା କଲା ଭାସ୍କର । ସେମାନଙ୍କର ଏଇ ଅଚାନକ ସାକ୍ଷାତ ଓ ସମ୍ପର୍କର ସମସ୍ତ କର୍ତ୍ତୃତ୍ୱ ନିଜ ହାତକୁ ନେଇ ନେଇଥିଲା ସ୍ୱାତୀ । ଏଥର କିନ୍ତୁ ସ୍ୱାତୀକୁ ସାମନା କଲାବେଳେ ଆଉ ଅପ୍ରତିଭ ରହିବ ନାହିଁ ସେ । ତା ପାଖକୁ ଯାଇ ଆତ୍ମପ୍ରତ୍ୟୟର ସହିତ କହିବ, ତମକୁ, ଆପଣଙ୍କୁ ନୁହେଁ, ନ ଚିହ୍ନିପାରିବାର କାରଣ ହେଲା ଯେ ଆମମାନଙ୍କର ସମସ୍ତଙ୍କ ବୟସ ବଢ଼ିଯାଇଥିବାବେଳେ କେବଳ ତମେ ସେମିତି ସେତିକି ଅଛ : ଅଳ୍ପବୟସୀ ଓ ସୁନ୍ଦରୀ ! ଷ୍ଟେସନରେ ଓହ୍ଲାଇବା ଆଗରୁ ସେ ହାତମୁହଁ ଧୋଇନେବ ଓ ବାଳକୁ ବି ଠିକ୍ କରିନେବ ।

ସ୍ୱାତୀ କିନ୍ତୁ ତାକୁ ଏ ସୁଯୋଗ ଦେଲା ନାହିଁ । କମ୍ପାର୍ଟମେଣ୍ଟମାନଙ୍କ ଭିତରେ ଥିବା ଦରଜାଦେଇ ସେ ଆସି ଭାସ୍କର ସାମନାରେ ପହଞ୍ଚିଲା ଏବଂ କହିଲା, ଭାବିଲି ତମକୁ କାହିଁକି କଷ୍ଟ ଦେବି ! ଏତେ ମାନସିକ ପ୍ରସ୍ତୁତି ସତ୍ତ୍ୱେ ଭାସ୍କରକୁ ପୁଣି ଥରେ କିଂକର୍ତ୍ତବ୍ୟବିମୂଢ଼ କରିଦେଲା ସ୍ୱାତୀ । ତା ପାଖରେ ବସି କହିଲା, ମୋ ପାଖରେ ଜିନିଷ ବୋଲି ଏଇ ବ୍ୟାଗ୍‌ଟି । ଭାବିଲି ଅନ୍ୟ ଷ୍ଟେସନ ପର୍ଯ୍ୟନ୍ତ ଅପେକ୍ଷା କରାଯିବ କାହିଁକି ?

ଘଡ଼ିକୁ ଅନାଇ ଭାସ୍କର ଦେଖିଲା ଯେ ଅଫିସ ଯିବାର ବେଳ ହୋଇଗଲାଣି ।

ତରତର କରି ସେ ଚିଠିଟିକୁ ନେଇ ଯଥାସ୍ଥାନରେ ରଖିଦେଲା ଏବଂ ଯିବାପାଇଁ ତିଆର ହେଲା ।

ସ୍ୱାତୀ ଆସିବ ଚାରି ସପ୍ତାହ ପରେ ।

ଭାସ୍କର ବର୍ତ୍ତମାନ ଲଫାପା ଭିତରେ ଗୋଟିଏ ଛୋଟ କ୍ୟାଲେଣ୍ଡର ରଖିଥିଲା । ସେ ସେଥିରେ ପ୍ରତିଟି ବିତିଯାଉଥିବା ଦିନକୁ ଛକିଦେଇ କାଟିଦେଉଥିଲା । ଆଜି ଲଫାପା ଖୋଲି ଚିଠିଟି ପଢ଼ିବାବେଳେ ସେ ଆଠ ତାରିଖ ଉପରେ ଚିହ୍ନଦେଇ ବାକି ଦିନଗୁଡ଼ିକୁ ଗଣିଲା ।

ଛକି ଦେବାରୁ ତା'ର ମନେପଡ଼ିଲା ସ୍ୱାତୀର ଚିଠିର ଚାରିଟି ଛକି କଥା । ପୂରା ନାଁ ବୋଧହୁଏ ସ୍ୱାତୀଲେଖା ଏବଂ ତା'ର ଚାରିଟି ଅକ୍ଷର ପାଇଁ ଚାରିଟି ଛକି । ନାଁଟି ସ୍ୱୟଂସମ୍ପୂର୍ଣ୍ଣ, ସୁନ୍ଦର ଓ ଆଭିଜାତ୍ୟପୂର୍ଣ୍ଣ ; କିନ୍ତୁ ଭାରୀ ଭାରୀ । ସମସ୍ତେ ନିଶ୍ଚୟ ତାକୁ ସ୍ୱାତୀ ନାଁରେ ଡାକୁଥିବେ କିମ୍ବା ଲେଖା ବୋଲି । ହୁଏତ ତା'ର ଆଉ ଗୋଟିଏ ସହଜ ଡାକ-ନାଁ ବି ଥିବ, ଯେମିତି ରିମ୍‌ଝିମ୍ ବା ଝିଲମିଲ ! ସେ ଏଥରକ ପଚାରି ବୁଝିବ ତା'ର ସେଇ ଛୋଟ ହାଲୁକା ନାଁଟି କ'ଣ ଏବଂ ଚେଷ୍ଟା କରିବ ତାକୁ ସେଇ ନାଁରେ ଡାକିବା ପାଇଁ ।

ଚିଠିର ଛକି ଚାରିଟିକୁ ଆଉଥରେ ଦେଖିଲା ଭାସ୍କର । ହସ୍ତାକ୍ଷରରେ ସେ ଯେପରି ସ୍ୱାତୀର ସ୍ୱୟଂକୁ ଦେଖିପାରୁଥିଲା, ମନେକଲା ଏଇଭଳି ଚାରିଟି ଛକି ଚିହ୍ନ ବି ସେଇଭଳି ସ୍ୱାତୀର ସମ୍ପୂର୍ଣ୍ଣ ବ୍ୟକ୍ତିଗତ ଅଭିଜ୍ଞାନ । ଆଉ ଅନେକ ପ୍ରକାରର ଛକିଚିହ୍ନ ଭିତରୁ ସେ ଯେପରି ବାରିଦେଇ ପାରିବ ସ୍ୱାତୀ ହାତର ଅଙ୍କା ଦୁଇଟି ଛୋଟ ଛୋଟ ରେଖାର ପ୍ରତିଚ୍ଛେଦନକୁ । ତା'ର ହଠାତ ମନେପଡ଼ିଲା ପାଶ୍ଚାତ୍ୟ ଦେଶରେ କୁଆଡ଼େ ଏଇ ଛକି ଚିହ୍ନଟିକୁ ବ୍ୟବହାର କରାଯାଇଥାଏ ଚୁମ୍ବନର ପ୍ରତୀକ ଭାବରେ । ଅଭିଧାନରେ କ'ଣ ଏକଥା ଥିବ ? ଏକ୍ସ ଅକ୍ଷରକୁ ଖୋଲି ଦେଖିଲା ଭାସ୍କର । ଏଇ ଅକ୍ଷରଟି ଯେପରି ଅଜ୍ଞାତର ପରିଚାୟକ, ସେଇପରି ଚୁମ୍ବନର ମଧ । ଚାରିଟି ଛକି, ଚାରିଟି ଚୁମ୍ବନ । କ'ଣ କହିବାକୁ ଚାହେଁ ସ୍ୱାତୀ ? ଦେଖାହେଲେ ସବୁ ?

ତା ମନ ଏକ ଅବଶ୍ୟମ୍ଭାବୀ ପୁଲକରେ ଭରିଗଲା ଏବଂ ସେ ଗ୍ଲାସ୍‌ରେ ପାଣି ଆଣଇ ଔଷଧ ବଟିକାଟି ଖାଇଲା । ତା'ର ଦେହମନ ଯେପରି ସମ୍ପୂର୍ଣ୍ଣ ସୁସ୍ଥ ଥାଉ ସ୍ୱାତୀ ଆସିବା ଦିନ । ମନପ୍ରାଣ ଦେଇ ସେ ଯେପରି ସ୍ୱାତୀର ସତ୍କାର କରିପାରେ ସେଇ ଦୁଇଟି ଘଣ୍ଟା ମହାର୍ଘ୍ୟ ସମୟ । କ'ଣ ଦେବ ସେ ସ୍ୱାତୀକୁ ? ସେଇଟି ଚା' ପିଇବାର ସମୟ ହୋଇଥିବ । ସେ ଚାକରକୁ ବାହାରକୁ ପଠାଇ ଦେଇଥିବ ଏବଂ ନିଜ ହାତରେ ତିଆରି କରି ଚା' ପିଇବାକୁ ଦେବ ସ୍ୱାତୀକୁ । ଏ ଭିତରେ ସେ କେତେଥର ଚା' କରି

ପରଖି ନେଇଥିଲା ନିଜର ଚା' କରିବାର ସାମର୍ଥ୍ୟକୁ । ମନ୍ଦ ଲାଗୁନଥିଲା ତାକୁ ନିଜ ତିଆରି ଚା'କପ । ଚା' ତିଆରି କରିବାର ସବୁ ସାମଗ୍ରୀ ଠିକ୍‌ଠାକ୍ ଅଛି ବୋଲି ମଧ୍ୟ ସେ ହିସାବ କରିସାରିଥିଲା ।

ଘର ରଙ୍ଗ କରିବାରେ ସେ ଯାହା ଭାବୁଥିଲା ଡେରି ହେବ ବୋଲି, କାହିଁ କେତେଦିନରୁ ସେ କାମ ସରିଯାଇଥିଲା । କୋଠରି ସବୁ ଜିନିଷପତ୍ର ସଜଡ଼ା ସଜଡ଼ି ହୋଇ ଠିକ୍ ଦେଖାଯାଉଥିଲେ । ତଥାପି କେଉଁଠି କେମିତି କ'ଣ ଅଭାବ ରହିଯାଉଥିଲା ବୋଲି ମନେ ହେଉଥିଲା ଭାସ୍କରର । ସେଦିନ ଯେମିତି କଲିଂବେଲ ଠିକ୍‌ରେ ବାଜିଲା ନାହିଁ । ଭାସ୍କର ଯାଇ ବେଲ୍‌କୁ ବାରମ୍ବାର ବଜାଇଲା ; ଘଣ୍ଟି ଠିକ୍ ବାଜୁଥିଲା । ଯଦି ସ୍ୱାତୀ ଆସିବା ଦିନ ପୁଣି ଖରାପ ହୋଇଯାଏ କିମ୍ବା ଯଦି ବିଜୁଳି ଚାଲିଯାଏ ସେଦିନ ? ନା, ସେ ତ ଘର କବାଟ ଖୋଲା ରଖି ଅପେକ୍ଷା କରିଥିବ । ନହେଲେ ଯାଇ ଘର ବାହାରେ ଠିଆ ହୋଇଥିବ ସ୍ୱାତୀର ଆସିବାକୁ ଅନାଇ । ଅବଶ୍ୟ ସେ ପକେଟରେ ଘର ଚାବିକୁ ରଖିବାକୁ ଭୁଲିବ ନାହିଁ ; ବାହାର କବାଟଟି ଯଦି ମନକୁ ମନ ବନ୍ଦ ହୋଇଯାଏ !

ଭାସ୍କରର ମନରେ ଏଇଭଳି ଅନେକ ଛୋଟ ଛୋଟ ଚିନ୍ତା, ଯେପରି ତାକୁ କ'ଣ ଖାଇବାକୁ ଦେବ । ଚା' ସହିତ କିଛି ଦେବା ସହଜ, କିନ୍ତୁ ସେ ଯଦି ସ୍ୱାତୀକୁ ଆଉ କିଛି ସମୟ ରହିବା ପାଇଁ ରାଜି କରାଇପାରେ ? ଅନ୍ଧାର ହୋଇଗଲେ ସେ କ'ଣ ତାକୁ ଡ୍ରିଙ୍କ ଯାଚିବ ? ସ୍ୱାତୀ କ'ଣ ଡ୍ରିଙ୍କ୍ କରୁଥିବ ? ସେ ତ ସ୍ୱାସ୍ଥ୍ୟ ବିଷୟରେ ଏତେ ସାବଧାନ । ଟ୍ରେନ୍‌ରେ ସେଥର ଆଉ କପେ ଚା' ପିଇବାକୁ ବି ମନା କରିଦେଲା ।

ତା ପାଖରେ ଜାଗା କରି ବସି ସ୍ୱାତୀ ସେଦିନ କହିଥିଲା, ତମେ ଭାବୁଥିବ ମୁଁ କାହିଁକି ଏମିତି ହଠାତ ତମ ପଛରେ ପଡ଼ିଗଲି ବୋଲି, ନା ? ଭାସ୍କର କହିଲା, ନା ନା, ମୋର ବରଂ ତମ ପାଖକୁ ଯିବା ଉଚିତ ଥିଲା । ତେବେ ପର ଷ୍ଟେସନ ଆଗରୁ ଯେ ଦେଖାହୋଇ ପାରିବା ସମ୍ଭବ, ସେକଥା ମୋ ମୁଣ୍ଡକୁ ଆସି ନଥିଲା । ସ୍ୱାତୀ କହିଲା, ତା'ର କାରଣ ହେଉଛି କାହାପାଇଁ କିଏ ବେଶି ଦରକାର । ତମେ ଯଦି ମତେ ସାଙ୍ଗେ ସାଙ୍ଗେ ଦେଖା କରିବାକୁ ଜରୁରୀ ମନେ କରିଥା'ନ୍ତ, ତେବେ ତମ ମନକୁ ଏ କଥା ଆସିଥାନ୍ତା । ଭାସ୍କର କହିଲା, ତା ମାନେ ତମେ ଏ ଦେଖାକୁ ଜରୁରୀ ମନେକଲ । ସ୍ୱାତୀ କହିଲା, ନିଶ୍ଚୟ ; ସେଥିରେ ଆଉ କ'ଣ ସନ୍ଦେହ ଅଛି ? ତମେ ଭାବୁଥିବ କାହିଁକି, ଏମିତି କ'ଣ ଥିଲା ଜରୁରୀ ? ମୁଁ ମୂଳରୁ କହିଦେଇ ତମର ସବୁ ସନ୍ଦେହ ଦୂର କରିଦିଏଁ । କଲେଜରେ ପଢ଼ିବାବେଳେ ତମ ପ୍ରତି ମୋର କେମିତି ଗୋଟାଏ ଦୁର୍ବଳତା ଥିଲା ।

ଭାସ୍କରର ଅସ୍ଥିମଜ୍ଜା ଦେଇ ଏକ ଅଭୂତପୂର୍ବ ପୁଲକର ଆଶ୍ଚର୍ଯ୍ୟ ଶିହରଣ ଚାଲିଗଲା । ସେ ସ୍ୱାତୀର ଆଖିକୁ ଅନାଇଲା । କିଛି ବି ସମ୍ପର୍କ ନଥିଲା ତା'ର ଏଇ ଝିଅଟି ସହିତ କଲେଜବେଳେ । ସେମାନେ ବୋଧହୁଏ ପରସ୍ପର ସହିତ କଥାବାର୍ତ୍ତା ବି

କରି ନଥିଲେ ବିନେହେଲେ । ସ୍ୱାତୀ ତା ଆଡ଼କୁ ଚାହିଁ ଅଳ୍ପ ଅଳ୍ପ ହସୁଥିଲା । ଏ କ'ଣ ଗୋଟିଏ ଚପଳମତି ଝିଅର ପ୍ରମୋଦ ପରିହାସ ଥିଲା ତା ପାଇଁ ? ନା ସତରେ ସ୍ୱାତୀ ପାଇଁ ତା'ର କିଛି ବିଶେଷତ୍ୱ ଥିଲା ସେଇ ଅତୀତ ସମୟରେ ?

ସ୍ୱାତୀ ଆସିବ ଅଠରଦିନ ପରେ ।

ଆସିବାର ଦିନ ଯେତିକି ନିକଟତର ହେଉଥିଲା, ଭାସ୍କରର ମନେ ହେଉଥିଲା ଯେ ଶେଷ ମୁହୂର୍ତ୍ତରେ କିଛି ନା କିଛି ପ୍ରମାଦ ଘଟିବ ଏବଂ ସ୍ୱାତୀ ଆସିବ ନାହିଁ । ହୁଏତ ଇଣ୍ଟରଭିଉର ତାରିଖ ବଦଳିଯିବ । ସ୍ୱାତୀ ସାଙ୍ଗରେ ଆଉ କିଏ ଆସିଯିବ । କିଛି ନ ହେଲେ ସେଦିନ ଟ୍ରେନ୍ ଏତେ ରାତିରେ ଆସି ପହଞ୍ଚିବ ଯେ ବାହାନା କରି ଦୁଇଘଣ୍ଟା ତା ପାଖକୁ ଆସିବା ସମ୍ଭବ ହେବ ନାହିଁ । ତା'ର ଆଶଙ୍କା ହେଉଥିଲା, ସ୍ୱାତୀର ଆଉ ଗୋଟିଏ ଚିଠି ଆସିବ ତାକୁ ଜଣାଇ ଯେ, ସେ କୌଣସି କାରଣରୁ ଆସିପାରୁ ନାହିଁ । ପ୍ରତିଦିନ ସେ ଭାବୁଥିଲା, ଡାକବାଲା ଆସି ତା ହାତକୁ ସ୍ୱାତୀର ନ ଆସିପାରୁଥିବାର ଟେଲିଗ୍ରାମ ବଢ଼ାଇଦେବ । ପ୍ରତି ଟେଲିଫୋନ ଉଠାଇଲାବେଳେ ଭୟ ହେଉଥିଲା ସ୍ୱାତୀର ସ୍ୱର ତାକୁ କହିବ, ଏଥର ହୋଇପାରୁ ନାହିଁ ; ପୁଣି ଥରେ କେବେ ।

ସେଦିନ ସେ ଚିଠିଟିକୁ ପକେଟରେ ନେଇ ଅଫିସ ଗଲା । ଅଫିସ କାମ ଭିତରେ ବି ତ ସେ ଚିଠିଟିକୁ ପଢ଼ିପାରିବ ! ଆଜିକାଲି ସ୍ୱାତୀର ଆସିବା କଥା ଭାବି ସେ ଠିକ୍‌ରେ କାମ କରିପାରୁ ନଥିଲା । ତା'ର ସଲିସିଟର କମ୍ପାନୀରେ ଅନେକ କାମ ଥିଲା, କିନ୍ତୁ ସବୁ ପଛରେ ପଡ଼ିଯାଇଥିଲା, କାରଣ ସେ ଫାଇଲଟିକୁ ଧରି ଘଣ୍ଟା ଘଣ୍ଟା ବସି ରହୁଥିଲା ; ତା ମୁଣ୍ଡ ଭିତରେ କିଛି ବି ପଶୁ ନଥିଲା ସ୍ୱାତୀର ଆସିବା ଖବର ବ୍ୟତୀତ ।

ତା ମନ ଭିତରେ ପ୍ରତି ମୁହୂର୍ତ୍ତରେ ସ୍ୱାତୀ ସହିତ ଏକ କାଳ୍ପନିକ କଥୋପକଥନର ଧାରାବାହିକୀ ଲାଗି ରହୁଥିଲା । ସ୍ୱାତୀ କ'ଣ କହିବ, ସେ ତା'ର କି ଜବାବ ଦେବ, ତା'ପରେ ସେମାନଙ୍କର କଥାବାର୍ତ୍ତା କୁଆଡ଼କୁ ଯିବ ଇତ୍ୟାଦି ଇତ୍ୟାଦି । ସ୍ୱାତୀ ସହିତ ଏତେଦିନର ନଥିବା ସମ୍ପର୍କକୁ ମାତ୍ର ଦୁଇଘଣ୍ଟା ଭିତରେ କିପରି ସଂକୁଚିତ କରି ରଖାଯାଇପାରିବ ସେ କଳ୍ପନା କରିପାରୁ ନଥିଲା । ସ୍ୱାତୀ ସହିତ ତା'ର ନା ଥିଲା ଚିଠିର ଆଦାନପ୍ରଦାନ ନା ଟେଲିଫୋନରେ କଥାବାର୍ତ୍ତା । ଥରେ ଥରେ ସେ ଟେଲିଫୋନରେ ସ୍ୱାତୀର ନମ୍ବର ମିଳାଉଥିଲା, ସେପାଖରେ ଘଣ୍ଟି ବାଜୁଥିଲା, କିନ୍ତୁ କେହି ଟେଲିଫୋନ ଉଠାଇ କଥା କହିବା ସଙ୍ଗେ ସଙ୍ଗେ ସେ ଲାଇନ କାଟିଦେଉଥିଲା । ତାକୁ ଟେଲିଫୋନ କରିବାକୁ କି ଚିଠି ଲେଖିବାକୁ ନିଶ୍ଚିତ ଭାବେ ମନା କରିଥିଲା ସ୍ୱାତୀ । ସେ ତାକୁ ଏକଥା ମଧ୍ୟ କହିଥିଲା ଯେ, ସେ ନିଜେ କେବେହେଲେ ଟେଲିଫୋନ ଉଠାଏ ନାହିଁ ।

ତଥାପି ଭାସ୍କର ତା'ର ନମ୍ବରକୁ ବାରମ୍ବାର ଡାଏଲ କରୁଥିଲା ଏବଂ ସ୍ୱାତୀର ଘରୁ ଟେଲିଫୋନର ଘଣ୍ଟି ଶୁଣି ସେତିକିରେ ସନ୍ତୁଷ୍ଟ ଥିଲା ।

ସ୍ୱାତୀ ସହିତ ସମ୍ପର୍କ କହିଲେ ବାସ୍ ସେଇ ଟ୍ରେନ୍‌ଯାତ୍ରାଟି, ଆଉ କିଛି ନୁହେଁ । ସେଦିନ କିନ୍ତୁ ମାତ୍ର କେତୋଟି ଘଣ୍ଟାର ସହଯାତ୍ରାରେ ନିଜ ବିଷୟରେ ସବୁକିଛି ତାକୁ କହିଥିଲା ସ୍ୱାତୀ । ତା'ର ଏମ୍.ଏ. ପରେ ବର୍ଷକ ପାଇଁ ଲ' ପଢ଼ିବା ସମୟରେ ବାହା ହୋଇଯିବା, ତା'ର ପିଲା ହେବା, କିଛିବର୍ଷ ପରେ ଲେକଚରର ଚାକିରି କରିବା, ସ୍ୱାମୀ ସାଙ୍ଗରେ ଭଲ ପଡୁନଥିବା ଇତ୍ୟାଦି ଇତ୍ୟାଦି । ଏଇ ସମୟତକ ଭାସ୍କର ଶ୍ରୋତା ମାତ୍ର ଥିଲା ଏବଂ ସ୍ୱାତୀର ପ୍ରଶ୍ନରେ ନିଜ ବିଷୟରେ ଯତ୍‌ସାମାନ୍ୟ କହିଥିଲା । ସେମାନେ ପରସ୍ପରର ଠିକଣା ଓ ଟେଲିଫୋନ ନମ୍ବର ବିନିମୟ କରିଥିଲେ, କିନ୍ତୁ ସ୍ୱାତୀ ଜୋର ଦେଇ କହିଥିଲା, ମତେ ତମେ ଚିଠି ଲେଖିବ ନାହିଁ କି ଫୋନ କରିବ ନାହିଁ, ତମକୁ ଠିକଣା ଦଉଛି ଖାଲି ଜାଣିବା ପାଇଁ । ମନେରହିଲା ତ, ଚିଠି ନୁହେଁ କି ଫୋନ ନୁହେଁ । ଭାସ୍କର କିଛି ପ୍ରଶ୍ନ ନ କରି ମାନିନେଇଥିଲା ସ୍ୱାତୀର ନିଷେଧ । ସ୍ୱାମୀ ପାଖରୁ ନିଶ୍ଚୟ ସମସ୍ୟା ଥିଲା ସ୍ୱାତୀର ।

ସ୍ୱାତୀ ଆସିବ ସାତଦିନ ପରେ ।

ବର୍ତ୍ତମାନ କାହିଁକି କେଜାଣି ଭାସ୍କର ମନରେ ବଦ୍ଧମୂଳ ଧାରଣା ହେଉଥିଲା ଯେ ଶେଷପର୍ଯ୍ୟନ୍ତ ସ୍ୱାତୀ ଆସିବ ନାହିଁ । କ'ଣ ବା ତା'ର ସ୍ୱାତୀ ସହିତ ସମ୍ପର୍କ ଥିଲା ଯେ ସେ ଲୁଚିଛପି ତା ପାଖକୁ ଆସିବ ଦୁଇଘଣ୍ଟା କଟାଇବା ପାଇଁ । ସ୍ୱାତୀର ନ ଆସିବା କଥା ଭାବିବାବେଳେ ତା ମନ କାହିଁକି କେଜାଣି ହାଲୁକା ହେଇଯାଉଥିଲା । ପୁଣି ସେ ତା'ର ଚିଠିକୁ ପଢୁଥିଲା । ସ୍ୱାତୀକୁ ସେ ଯେତିକି ବୁଝିଥିଲା, ଜାଣିଥିଲା, ତା'ର ବିଶ୍ୱାସ ଥିଲା ଯେ ଯଦି ସେ କୌଣସି କାରଣରୁ ନ ଆସିପାରେ, ତାକୁ ଜଣାଇବ ନିଶ୍ଚୟ ।

ଷ୍ଟେସନକୁ ଫୋନ କରି ଭାସ୍କର ବୁଝିଲା ରାଜଧାନୀ ଏକ୍ସପ୍ରେସ୍ କେତେବେଳେ ଆସେ । ସେଦିନ ଟ୍ରେନ୍ ଦୁଇଘଣ୍ଟା ଡେରିରେ ଆସିବାର ଥିଲା । ଏତେଦିନ ଆଗରୁ ଟ୍ରେନ୍‌ର ଖବର ନେବାର କୌଣସି ଦରକାର ନାହିଁ ଜାଣିଥିଲା ଭାସ୍କର, ତଥାପି ସ୍ୱାତୀର ଆସିବା ଦିନର ପ୍ରସ୍ତୁତିରେ ଟ୍ରେନ୍‌ର ଠିକ୍ ସମୟ ଜାଣିବାରେ ଯେପରି ଏକ ନିଜସ୍ୱ ଆନନ୍ଦ ଥିଲା ।

ଘର ଚାରିଆଡ଼କୁ ଆଖି ବୁଲାଇ ସେ ମନେ ମନେ ସନ୍ତୁଷ୍ଟ ହେଲା ଯେ ସବୁ ଠିକ୍‌ଠାକ୍ ଥିଲା । ତେବେ ସେଦିନ ସକାଳେ ସେ ପୁଣି ଥରେ ସବୁ ଜିନିଷକୁ ତନ୍ନତନ୍ନ କରି ଦେଖିନେବ । ଏତେଦିନ ଧରି ପ୍ରତ୍ୟେକ କଥାର ଟିକିନିଖି କରି ବ୍ୟବସ୍ଥା କରିବା ପରେ ବର୍ତ୍ତମାନ ତାକୁ ସବୁ ଜିନିଷ ଅତୀନ୍ଦ୍ରିୟ ଜଣାପଡୁଥିଲା । ଯେପରିକି ସ୍ୱାତୀର

ଚିଠି ଏବଂ ତା'ର ଆସିବା ।

ଯେତେବେଳେ ତା ପାଖ ସିଟ୍‌ରେ ବସି ସ୍ୱାତୀ ତାକୁ ନିଜ କଥା କହିଥିଲା, ସେଦିନଟି ଭାସ୍କରର ମନେ ହୋଇଥିଲା ସେ ଯେପରି କୌଣସି ଏକ ଅବାସ୍ତବ ପୃଥିବୀରେ ଅଛି । ଦିନ ଦିପହରେ ଲୋକଭର୍ତ୍ତି ଟ୍ରେନ୍‌ରେ ବସି ତାକୁ ଜଣାପଡୁଥିଲା ସେ ଯେପରି ଏକା ଏକା କେଉଁ ଅଶରୀରୀ ସ୍ୱରର ରୂପକଥା ଉପରେ ଚଢ଼ି କେଉଁ ଅଜ୍ଞାତ ଲୋକ ଆଡ଼କୁ ଚାଲିଯାଉଛି । ଟ୍ରେନ୍‌ରୁ ଓହ୍ଲାଇ ସ୍ୱାତୀକୁ ବିଦାୟ ଦେଲାବେଳେ ସେ ପଚାରିଥିଲା, ତମର ମୋର ଏମିତି ଅକସ୍ମାତ୍ ଦେଖାହେଲା ଆମର କିଛି ବି ସମ୍ପର୍କ ନଥିଲା ଆଗରୁ । କାହିଁକି ତମେ ମତେ ଏତେ କଥାସବୁ କହିଲ ? ସ୍ୱାତୀ ଗମ୍ଭୀର ହୋଇ କହିଥିଲା, ସମସ୍ତେ ନିଜର ଗୋପନୀୟ କଥାସବୁ କାହାକୁ ନା କାହାକୁ କହିବାକୁ ଚାହିଁଥା'ନ୍ତି । ନଜାଣିବା ଲୋକକୁ ହିଁ ଏସବୁ କଥା କହିବା ସହଜ ଓ ନିରାପଦ, କାରଣ ସେ ଲୋକ ପାଖରୁ କୌଣସି ସମସ୍ୟା ଉପୁଜିବାର ଆଶଙ୍କା ନ ଥାଏ । ତମେ ହେଲ ମୋ ପାଇଁ ଉଭୟ ଅଜ୍ଞାତ ଓ ପରିଚିତ ଲୋକ । ସେଇଥିପାଇଁ ତମକୁ ସବୁ କଥା କହିଲି ।

ଅତି ଯୁକ୍ତିସମ୍ପନ୍ନ ଥିଲା କଥାଟି । ଭାସ୍କର ଯେପରି ଥିଲା ସ୍ୱାତୀର ଗୋପନତମ କଥା ସବୁର ଶ୍ରୋତା ଭାବରେ ଉପଲକ୍ଷ୍ୟ ମାତ୍ର ଏବଂ ଏଇ ରେଳଯାତ୍ରାରେ ହିଁ ଆରମ୍ଭ ଓ ଶେଷ ହେଉଥିଲା ସେମାନଙ୍କର ପରିଚୟ ଓ ସମ୍ପର୍କ ।

ସ୍ୱାତୀ ଆସିବ ତିନିଦିନ ପରେ ।

ତାକୁ ରାତିରେ ନିଦ ହେଉ ନଥିଲା କିଛିଦିନ ହେଲା ଏବଂ ସାରାରାତି କଟୁଥିଲା ବିଭିନ୍ନ ଚିନ୍ତାରେ । କାଲି ରାତିରେ ସେଥିପାଇଁ ଔଷଧ ଖାଇ ସେ ଭଙ୍ଗା ଭଙ୍ଗା ନିଦ ଶୋଇଥିଲା । ରାତିସାରା ସେ ଭାବୁଥିଲା ସ୍ୱାତୀକୁ କ'ଣ କହିବ ; ସ୍ୱାତୀ ସାଙ୍ଗରେ କ'ଣ କରିବ । ଏ ଚିନ୍ତା ପ୍ରଥମେ ଆନନ୍ଦରୁ ଆରମ୍ଭ ହୋଇ କ୍ରମେ ଆଶଙ୍କାରେ ପରିଣତ ହେଉଥିଲା । ଏଇ ଭୟରୁ ରକ୍ଷା ପାଇବାକୁ ଭାସ୍କର ନିଜକୁ ଆଶ୍ୱାସନା ଦେଉଥିଲା ଯେ ଶେଷ ମୁହୂର୍ତ୍ତରେ ସ୍ୱାତୀ ଆସିବ ନାହିଁ ।

ଷ୍ଟେସନରୁ ବିଦାୟ ନେବା ପରେ ଭାସ୍କର ଭାବି ନଥିଲା ଯେ ସ୍ୱାତୀ ପୁଣି ତା ସହିତ ଯୋଗାଯୋଗ କରିବ । ହଠାତ କିନ୍ତୁ ଅପ୍ରତ୍ୟାଶିତ ଭାବରେ ତା'ର ଫୋନ ଆସିଥିଲା । ସେଇ ଆଗଥର ଭଳି ଆତ୍ମୀୟ ଓ ଘନିଷ୍ଠ ଥିଲା ସ୍ୱାତୀର ସ୍ୱର । ସେ ତାକୁ ଭଲମନ୍ଦ ପଚାରିଲା, ନିଜର କଲେଜ କଥା, ପିଲାଙ୍କ କଥା, ଘର କଥା କହିଲା ଏବଂ ଆଶ୍ୱାସନା ଦେଲା ଯେ ସେ ପୁଣି ତାକୁ ଏଇଭଳି କେବେ କେବେ ଫୋନ କରିବ । ମୁଁ ହିଁ ତମକୁ ଫୋନ କରିବି, ସ୍ୱାତୀ ଫୋନ ରଖିବାବେଳେ କହିଥିଲା ।

ଏବଂ ତାକୁ ଆଉ ତିନି ଚାରିଥର ଫୋନ କରିଥିଲା । ଭାସ୍କର ଭାବିଥିଲା ଯେ

ସ୍ୱାତୀ ବୋଧହୁଏ ଜଣେ ସହୃଦୟ ବନ୍ଧୁ ଚାହେଁ, ଯେଉଁଥିପାଇଁ ତାକୁ ଏମିତି ମଝିରେ ମଝିରେ ଖୁସି ହେଲେ ଫୋନ କରେ । ସେ ସ୍ୱାତୀକୁ ନେଇ କୌଣସି କଳ୍ପନା ଜଳ୍ପନା କରୁନଥିଲା ସେଥିପାଇଁ । କିନ୍ତୁ ତା'ର ଚିଠିଟି ହିଁ ସବୁ କିଛି ବଦଳାଇଦେଲା ।

ସ୍ୱାତୀ ଆସିବ ଚବିଶ ଘଣ୍ଟା ପରେ ।

ସକାଳ ଚାରିଟାରେ ନିଦ ଭାଙ୍ଗିଗଲା ଭାସ୍କରର । କାଲି ରାତିରେ ଜାଣିଶୁଣି ସେ ଔଷଧ ଖାଇନଥିଲା । ରାତିରେ ନିଦ ନ ହେବାରେ ଅନେକ ଦୁଶ୍ଚିନ୍ତା ମନ ଭିତରକୁ ଆସିଥିଲା । ନିଜକୁ ଖୁବ୍ ଦୁର୍ବଳ ଅସହାୟ ମନେ କରିଥିଲା ସେ । ସେ ଅନୁଭବ କରୁଥିଲା ଯେପରି ସେ କେଉଁ ଏକ ଅଜ୍ଞାତ ସମୁଦ୍ର ଭିତରକୁ ଝାସ ଦେଉଚି ପହଁରିବାର ସାମାନ୍ୟ ବି ଅଭିଜ୍ଞତା ନଥାଇ । ରାତିର ଅଧା ପହରରେ ସ୍ୱାତୀ, ସ୍ୱାତୀର ଚିଠି, ସ୍ୱାତୀର ଆସିବା ସବୁକିଛି ଅସମ୍ଭବ ଅଲୌକିକ ମନେ ହୋଇଥିଲା ତାକୁ । ସକାଳ ପହରରେ ସେ କ'ଣ ଗୋଟିଏ ଅପ୍ରୀତିକର ସ୍ୱପ୍ନ ଦେଖିଲା ।

ସ୍ୱପ୍ନଟି ଆଉ ତା'ର ମନେ ନଥିଲା, କିନ୍ତୁ ତା'ର ବିସ୍ୱାଦ ଏ ପର୍ଯ୍ୟନ୍ତ ତାକୁ ଉଦାସ କରି ରଖିଥିଲା ।

କିଛିଦିନ ହେଲା ସେ ଆଉ ଚିଠିଟିକୁ ପଢୁ ନଥିଲା । ତା'ର ଏକମାତ୍ର ଚିନ୍ତା ଥିଲା ସ୍ୱାତୀ ଆସି ପହଞ୍ଚିଲେ ସେ କିପରି ତା'ର ସାମନା କରିବ । ପୁଣି ଭାବୁଥିଲା, ସ୍ୱାତୀ ନୁହେଁ ସ୍ୱାତୀର ଚିଠି ଆସି ପହଞ୍ଚିବ ସେ ଆସୁନାହିଁ ବୋଲି । ସେ ଯେପରି ଏଭଳି ଗୋଟିଏ ଚିଠି ପାଇବାର ଆଶାରେ ଅପେକ୍ଷା କରୁଥିଲା ବର୍ତ୍ତମାନ ।

ସେ ଭାବିଥିଲା ସ୍ୱାତୀ ଆସିବାର ପୂର୍ବଦିନ ବି ଛୁଟି ନେଇଯିବ । କିନ୍ତୁ ଏକା ଘରଟିରେ ବସି ରହି ସ୍ୱାତୀର ଆସିବାର ସତ୍ୟକୁ ଅପେକ୍ଷା କରିବାକୁ ତା'ର ସାହସ ହେଉନଥିଲା ।

ସ୍ୱାତୀ ଆସିବ ବାରଘଣ୍ଟା ପରେ ।

ଘଣ୍ଟାରେ ଆଲାର୍ମ ବାଜିଲା, ଯଦିଓ ତା'ର ନିଦ କାହିଁ କେତେ ଆଗରୁ ଭାଙ୍ଗିଯାଇଥିଲା । ଯେଉଁଦିନଟି ପାଇଁ ସେ ଏତେଦିନ ଧରି ପ୍ରସ୍ତୁତି କରୁଥିଲା, ଶେଷରେ ସେଇ ଦିନଟି ପହଞ୍ଚିଗଲା ।

ବିଛଣାରୁ ଉଠି ସେ ପ୍ରଥମେ ଚାଦରଟିକୁ ବାହାର କଲା । ଏଇଟିକୁ ବଦଳାଇବାକୁ ହେବ । ଘରସାରା ତାକୁ ଅନେକ ଛୋଟ ଛୋଟ କାମ କରିବାକୁ ଅଛି, ଯଦି ସ୍ୱାତୀର ଚିଠି ବା ଟେଲିଗ୍ରାମ ନ ଆସେ, ତା'ର ନ ଆସିବାର ଖବର ଆଣି । କିମ୍ବା ଟେଲିଫୋନ । କ୍ଷୀଣ ଆଶାର ସହିତ ଟେଲିଫୋନ ଆଡ଼କୁ ଅନାଇଲା ଭାସ୍କର । ସତେ

ଯେପରି ତା'ର ଦୃଷ୍ଟିପାତରେ ଯନ୍ତ୍ରଟି ହଠାତ ସଜୀବ ହୋଇ ଘଣ୍ଟିଧ୍ୱନି କରିବ ଏବଂ ସେ ତାକୁ ଉଠାଇଲେ ଆର ପାଖରୁ ସ୍ୱାତୀର ସ୍ୱର କହିବ ଯେ ସେ ଆସିପାରୁ ନାହିଁ ।

ତାକୁ ଅତି ଅଳସ ଲାଗୁଥିଲା । ତଥାପି ସେ ମୁହଁହାତ ଧୋଇ ଦିନଟି ପାଇଁ ପ୍ରସ୍ତୁତ ହେଲା । ବିରକ୍ତିର ସହିତ ଔଷଧ ବଟିକାଟି ଖାଇଲା ଏବଂ ଘରସାରା ବୁଲି ତା'ର ଏତେ ଦିନର ପ୍ରସ୍ତୁତିକୁ ସର୍ବେକ୍ଷଣ କଲା ।

ସ୍ୱାତୀ ଆସିବ ଦୁଇଘଣ୍ଟା ପରେ ।

ଟେଲିଫୋନ କରି ଭାସ୍କର ବୁଝିଥିଲା ଯେ, ଟ୍ରେନ୍ ଠିକ୍ ସମୟରେ ଆସି ପହଞ୍ଚୁଛି । ସେ ଚାକରକୁ ଛୁଟି ଦେଇ ଦେଇଥିଲା । ଘରେ ସବୁ ଜିନିଷ ସୁସଜ୍ଜିତ ଥିଲା । ବିଛଣା ଉପରେ ସଫା ଚାଦର । ରୋଷେଇ ଘରେ ଚା' ସରଞ୍ଜାମ । ସବୁକିଛି ଯେ ଯାହା ଜାଗାରେ । କେବଳ ଯେପରି ପ୍ରସ୍ତୁତ ନଥିଲା ନିଜେ ଭାସ୍କର ହିଁ ।

ଶେଷଥର ପାଇଁ ଚିଠିଟିକୁ ହାତରେ ନେଇ ସେ ଟେବୁଲ ପାଖରେ ବସିଲା । ଚିଠିଟି ଅତି ସିଧାସଳଖ ଓ ନିର୍ଦ୍ଦିଷ୍ଟ ଥିଲା । ସ୍ୱାତୀ ଷ୍ଟେସନରୁ ସିଧା ଆସିବ ତା ଘରକୁ ଦି'ଘଣ୍ଟା ପାଇଁ । ଦେଖାହେଲେ ସବୁ ।

ଏଥରକ କାଗଜ କଲମ ନେଇ ଭାସ୍କର ଗୋଟିଏ ଛୋଟ ଚିଠା ଲେଖିଲା : ମୁଁ ଦୁଃଖିତ ଯେ ମତେ ଜରୁରୀ କାମରେ ବାହାରକୁ ଯିବାକୁ ପଡୁଛି । ସେଥିପାଇଁ ମତେ କ୍ଷମା କରିବ । ସୁବିଧା ହେଲେ ଫୋନ କରିବ ।

କାଗଜଟିକୁ ଆଣି ସେ ବାହାର କବାଟରେ ଲଗାଇଲା ଏବଂ ତାଲା ପକାଇ ଚଞ୍ଚଳ ପାଦରେ ରାସ୍ତା ଉପରକୁ ଓହ୍ଲାଇଗଲା ।

# ମନ୍ତ୍ର

ସନ୍ଧ୍ୟାବେଳେ ଘରକୁ ଫେରିଲେ ପ୍ରଭାକର ସାଧାରଣତଃ ଅଫିସ କଥା କହିଥାଏ, କିନ୍ତୁ ସେଦିନ ଆସି କହିଲା, ବୁଝିଲ ସ୍ୱାମୀଜୀ ଶେଷକୁ ଆସି ଆମ ଚିଫ୍ ଇଞ୍ଜିନିୟରଙ୍କ ଘରେ ରହିଲେ । ସୁହାସିନୀ ସକାଳର ଖବରକାଗଜରେ 'ରାଜଧାନୀରେ ସ୍ୱାମୀଜୀଙ୍କ ପଦାର୍ପଣ' ଶୀର୍ଷକ ସମ୍ବାଦଟି ପଢ଼ିଥିଲା, କିନ୍ତୁ ପଚାରିଲା, କୋଉ ସ୍ୱାମୀଜୀ ? ପ୍ରଭାକର କହିଲା, ତମେ ଘରେ ବସି ବସି ବାହାରର କୌଣସି ଖବର ରଖୁ ନାହଁ । ଅନେକ ବର୍ଷ ପରେ ସ୍ୱାମୀଜୀ ଓଡ଼ିଶା ଫେରିଛନ୍ତି ତାଙ୍କ ହିମାଳୟ ଆଶ୍ରମରୁ । ଖୋଦ ମୁଖ୍ୟମନ୍ତ୍ରୀ ଯାଇଥିଲେ ତାଙ୍କୁ ଏୟାରପୋର୍ଟରୁ ଆଣିବା ପାଇଁ । ଏ ବିଷୟରେ ଅଧିକ ଜାଣିବା ପାଇଁ ସୁହାସିନୀର କୌତୂହଳ ଥିଲା, ତେବେ ତା'ର ଘରେ ବସି ରହୁଥିବା ଉପରେ ଉପରେ ପ୍ରଭାକର ମନ୍ତବ୍ୟ କରିଥିବା ତାକୁ ଭଲ ଲାଗିଲା ନାହିଁ ଏବଂ ସେ ଆଉ କିଛି ନ ପଚାରି ଖାଲି କହିଲା, ଓ ! ପ୍ରଭାକର କିନ୍ତୁ ଚୁପ୍ ରହିଲା ନାହିଁ । କହିଲା, ଚିଫ୍ ଇଞ୍ଜିନିୟରଙ୍କର ସବୁ ସମସ୍ୟା ଏଥର ସମାଧାନ ହୋଇଯିବ । ସେ କ'ଣ କମ୍ ଚେଷ୍ଟା କରିଛନ୍ତି ସ୍ୱାମୀଜୀଙ୍କୁ ହାତ କରିବାକୁ ?

ସୁହାସିନୀର ସବୁ ଆଗ୍ରହ ଥଣ୍ଡା ପଡ଼ିଗଲା । ପୁଣି ସେଇ ଅଫିସ କଥା । କିଏ କାହାର ପ୍ରିୟ ଅପ୍ରିୟ ; କିଏ ଚୋର, କିଏ ସଚ୍ଚୋଟ ଏବଂ କାହାକୁ ଧରି କିଏ କି ଭାବରେ ଲାଗିଛି ନିଜର ଉନ୍ନତି ବା ଅନ୍ୟ କାହାର କ୍ଷତି କରିବା ପାଇଁ । ଖାଇସାରି ଶୋଇବାକୁ ଗଲାବେଳେ ବି ପ୍ରଭାକର ନିଜ କଥାର ସୂତ୍ର ଧରି କହିଲା, ଚିଫ୍ ଇଞ୍ଜିନିୟରଙ୍କର ଯଦି ବଦଳି ହୋଇଯିବ, ଜଣାଯିବ ଯେ ସତରେ ସ୍ୱାମୀଜୀଙ୍କର କରାମତି ଅଛି । ସୁହାସିନୀ ମନେ ମନେ ବିରକ୍ତ ହେଲା ଏବଂ ପ୍ରଭାକରକୁ ଅସ୍ୱସ୍ତି ପହଞ୍ଚାଇବା ପାଇଁ ପୁରୁଣା କଥା ଉଠାଇ କହିଲା, ତମର କ'ଣ ଭିଜିଲାନ୍ସ କେସ୍ ଏତେ ବର୍ଷ ହେଲା ପଡ଼ିରହିଛି, ତମେ ଯାଇ ସ୍ୱାମୀଜୀଙ୍କୁ ଧରୁନା ? ଯଦିଓ ପିଲାଦୁହେଁ ଅନ୍ୟ ଘରେ ଶୋଇଯାଇଥିଲେ ଏବଂ ସେମାନେ ଏକା ଥିଲେ, ପ୍ରଭାକର କହିଲା, ଏସବୁ କଥା ବଡ଼ପାଟିରେ କହିବ ନାହିଁ । ନିଜେ ସ୍ୱରକୁ ଆହୁରି ଧୀର କରି କହିଲା, ଶଳା କିଏ କେତେ ଟଙ୍କା ଖାଇ ମଜା କରି ବୁଲୁଛନ୍ତି ; ମୋରି ବେଳକୁ ୟାଙ୍କର କେସ୍ କରିବାକୁ

ଥିଲା । କେସ୍ ତ କୋଉକାଳୁ ଛିଣ୍ଡି ଯାଆନ୍ତାଣି, କିନ୍ତୁ ତାକୁ ଧରି ରଖିଛନ୍ତି ଖାଲି ମଝିରେ ମଝିରେ ମତେ ଦେଖାଇ ମୋ ପାଖରୁ ଟଙ୍କା ଆଦାୟ କରିବାକୁ । କେସ୍ ବୋଲି କ'ଣ ନା ଷ୍ଟୋରରେ ଜିନିଷ ନଥିଲା । ସାତଦିନ ଭିତରେ ତ... ।

ଅଫିସ କାଗଜପତ୍ରରେ ପ୍ରଭାକର ଯାହାସବୁ କୈଫିୟତ ଦେଇଥିଲା, ବାରମ୍ବାର ସ୍ତ୍ରୀ ଆଗରେ ତା'ର ପୁନରାବୃତ୍ତି କରି ସେ ସୁହାସିନୀକୁ ଏବଂ ବିଶେଷରେ ନିଜକୁ ସାନ୍ତ୍ୱନା ଦେଉଥିଲା ଯେ ତା'ର କିଛି ବି ଭୁଲ୍ ନାହିଁ ଏବଂ ଅନ୍ୟାନ୍ୟ ଦୁର୍ନୀତିଗ୍ରସ୍ତ ଅଫିସରଙ୍କ ଭଳି ସେ ମଧ ଖସିଯିବ ଏ କେସ୍‌ରୁ । ତା'ର ଦୁଃଖ ଥିଲା ଯେ ତା'ର ଅସତ କାମମାନଙ୍କରେ ତା'ର ସହକର୍ମୀଙ୍କ ସ୍ତ୍ରୀମାନଙ୍କ ଭଳି ସୁହାସିନୀ ସହଯୋଗ କରୁନଥିଲା । ତା'ର ଦୁର୍ଦ୍ଦଶାରେ ଭାଗୀ ହେବା ତ ଦୂରର କଥା, ବର୍ତ୍ତମାନ ସେ ତା'ର କେସ୍‌ର ଯେଉଁ ଦୀର୍ଘ ବିବରଣୀ ଦେଉଥିଲା, ସୁହାସିନୀ ସେଥିରେ ଆଦୌ ଆଗ୍ରହୀ ଜଣାପଡୁନଥିଲା । କଥା ବନ୍ଦକରି ପ୍ରଭାକର ପଚାରିଲା, କ'ଣ ଶୋଇଗଲଣି ନା କ'ଣ ? ଅନ୍ୟ ପାଖକୁ ମୁହଁ ବୁଲାଇ ନେଇ ସୁହାସିନୀ କହିଲା, ହଁ ।

ସୁହାସିନୀକୁ କିନ୍ତୁ ନିଦ ଲାଗୁନଥିଲା । ପ୍ରଭାକର ତାକୁ ସହଜରେ କହିଦେଲା ଯେ ସେ ବାହାରର କିଛି ଖବର ରଖୁ ନାହିଁ । ତା ପୁଣି କି ଖବର ନା କୋଉ ଭଣ୍ଡ ସାଧୁ ଆସି କୋଉ ଭ୍ରଷ୍ଟ ଚିଫ୍ ଇଞ୍ଜିନିୟରଙ୍କ ଘରେ ଡେରା ପକାଇବେ । ପାଠ ପଢ଼ିବାବେଳେ ସୁହାସିନୀ କେବଳ ରାଜନୀତି ବିଜ୍ଞାନର ବହି ପଢୁ ନଥିଲା, ଦେଶ ବିଦେଶର ଖବର ରଖିବାରେ ବି ଅଗ୍ରଣୀ ଥିଲା । ମେଧାବିନୀ ଛାତ୍ରୀ ଓ ନେତ୍ରୀ ଭାବରେ କଲେଜରେ ତା'ର ସମ୍ମାନ ଥିଲା । ସ୍ପୋର୍ଟସ୍‌ରୁ ଆରମ୍ଭ କରି କଲେଜର ନାଟକ ପର୍ଯ୍ୟନ୍ତ ସବୁଥିରେ ଭାଗ ନେଉଥିଲା ସୁହାସିନୀ । କଲେଜବେଳର ଅନେକ ଛୋଟ ଛୋଟ ଘଟଣା ମନକୁ ଆସୁଥିଲା ବର୍ତ୍ତମାନ : ସାଙ୍ଗମାନେ ଏକାଠି ହୋଇ ସିଗାରେଟ୍ ପିଇ ଧରା ପଡ଼ିଥିବା, କ୍ଲାସ୍‌ରେ ନୂଆ ଲେକଚରରଙ୍କୁ ହଇରାଣ କରିବା, ରାତିରେ ସିନେମାରୁ ଫେରି ଫାଟକ ଡେଇଁ ହଷ୍ଟେଲ ଭିତରକୁ ପଶିବା । ଅନେକ ଦିନ ଧରି ସେ ପୁରୁଣା ଦିନ ବିଷୟରେ ଭାବିବା ଛାଡ଼ି ଦେଇଥିଲା, କିନ୍ତୁ ଆଜି ଅନାୟାସ ତା'ର ମନେପଡୁଥିଲେ ଅତି ଅକିଞ୍ଚିତ୍‌କର କଥା ଓ ଦୃଶ୍ୟସବୁ ; ଡିବେଟ୍‌ରେ ପ୍ରାଇଜ୍ ନେଇ ଫେରିବାବେଳେ ସେମାନେ ଟ୍ରେନ୍‌ରେ ଗାଇଥିବା ଗୀତ, ତାକୁ ଭଲ ଲାଗିଥିବା ପିଲାଟି ପାଇଁ ସେ ଲେଖିଥିବା ଦୁଇଧାଡ଼ି କବିତାର ଶବ୍ଦମାନ, ସିନେମା ହଲର ଅନ୍ଧାର ଭିତରେ କାହାର ହାତ ଆସି ତା'ର ଛାତିକୁ ଛୁଇଁ ଦେଇଥିବାର ପୁଲକ ଏବଂ ଅସ୍ୱସ୍ତି । ନା, ଏସବୁ ମନେ ପକାଇ କିଛି ଲାଭ ନାହିଁ ଆଉ । କେତେ କ'ଣ ଆଶା ଆକାଂକ୍ଷା ଥିଲା ତା'ର, କିନ୍ତୁ ପିଏଚ୍.ଡି. କରୁଥିବାବେଳେ ବାହାଘର ହୋଇଗଲା । ତା'ଠାରୁ ଅଳ୍ପ ଯୋଗ୍ୟ ତା'ର ସାଙ୍ଗମାନେ ଚାକିରିର ପାହାଚରୁ ପାହାଚ ଉପରକୁ ଉଠୁଥିବାବେଳେ ସେ ତା'ର ସ୍ୱାମୀ ସହିତ

ଗୋଟିଏ ମଫସଲରୁ ଆଉ ଗୋଟିଏ ମଫସଲକୁ ଘର ସଂସାର ବଦଳାଇବାରେ ବ୍ୟସ୍ତ ରହିଲା । ତା'ର ସ୍ୱାମୀ ଜୁନିୟର ଆସିଷ୍ଟାଣ୍ଟରୁ ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର ହେବା ଭିତରେ ତା'ର ଉନ୍ନତି ହେଲା ଦିଓଟି ସନ୍ତାନ, ଘରେ ଆଉ କିଛି ଜିନିଷପତ୍ର ଓ ଅଧିକା ଚାକର ବାକର । ପ୍ରଥମେ ପ୍ରଥମେ ମନ ଭିତରେ ଅପ୍ରାପ୍ତିର ଯେଉଁ କ୍ଷୋଭ ଉପୁଜୁଥିଲା, ତାକୁ ସେ ଚେଷ୍ଟା କରି ଦୂର କରିଦେଲା ଏଇ କଥା ଭାବି ଯେ ତା'ର ପ୍ରଥମ କର୍ତ୍ତବ୍ୟ ହେଉଛି ପିଲା ଦୁହିଁଙ୍କୁ ମଣିଷ କରିବା । ଏଇଥିରେ କଟିଗଲା ତା'ର ଜୀବନର କୋଡ଼ିଏଟି ବର୍ଷ ।

ପ୍ରଭାକର ସହିତ କେବେବି ତା'ର ଗୁରୁତର ଅପଡ଼ ହୋଇ ନଥିଲା, କିନ୍ତୁ କେବେବି ତା ସହିତ ଭଲରେ ମନ ମିଳିନଥିଲା ସୁହାସିନୀର । ପ୍ରଭାକର ବିଷୟସର୍ବସ୍ୱ ଥିଲା ଏବଂ ସବୁବେଳେ ଲାଗିଥିଲା କିପରି ଆହୁରି ସଂପତ୍ତି ଏକାଠି କରିବ । କର୍ମଠ ଅଫିସର ଭାବରେ ତା'ର ନାଁ ଥିଲା ଏବଂ ସେ ତା'ର ସହକର୍ମୀମାନଙ୍କ ଅପେକ୍ଷା ଅଧିକ ଦୁର୍ନୀତିଗ୍ରସ୍ତ ନଥିଲା । ନିଜର ସବୁ ସମୟ ସେ କାମରେ ଲଗାଉଥିଲା ଏବଂ ଘରକୁ ଫେରିଲେ ଯୋଜନା କରୁଥିଲା କୋଉଠି ନୂଆ ଘର କରିବ, କ'ଣ ନୂଆ ଜିନିଷ କିଣିବ ଏବଂ ଚୋରା ଟଙ୍କାକୁ କିଭଳି ବିନିଯୋଗ କରିବ । ଏସବୁ ବିଷୟରେ କିନ୍ତୁ ସୁହାସିନୀର ଟିକିଏ ବି ଆଗ୍ରହ ନଥିଲା ଏବଂ ପ୍ରଭାକର ଯେତେବେଳେ ଘର ତିଆରି କରିବାର ନକସା ଆଣି ଦେଖାଉଥିଲା ଏବଂ ତାକୁ ଆହୁରି ସମ୍ଭବ କରିବାର ପ୍ରସ୍ତାବ ଦେଉଥିଲା, ସୁହାସିନୀ ସେଥିରେ ମୁଣ୍ଡ ନ ଖେଳାଇ ତା କଥାରେ ହଁ ଭରୁଥିଲା । ପ୍ରଭାକରର ଦୁଃଖ ଥିଲା ଯେ ସେ ଯେତେବେଳେ ସୁହାସିନୀର ହାତକୁ ଅଳଙ୍କାରର ପୁଡ଼ିଆ କିମ୍ୱା ଟଙ୍କା ବିନିଯୋଗର କାଗଜପତ୍ର ଦେଉଥିଲା, ସୁହାସିନୀ କୃତଜ୍ଞତା ଓ ଆନନ୍ଦରେ ଗଦଗଦ ନହୋଇ ତାକୁ ନିର୍ବିକାରରେ ନେଇ ଆଲମାରିରେ ରଖିଦେଉଥିଲା । ପ୍ରଭାକରର ଏତିକି ସାନ୍ତ୍ୱନା ଥିଲା ଯେ ସ୍ତ୍ରୀର ବିମୁଖତା ସତ୍ତ୍ୱେ ତା'ର ସଂସାର ଓ ସଂପତ୍ତିର ଉତ୍ତୋରତ୍ତୋର ଉନ୍ନତି ହେଉଥିଲା ।

ସେ ଭାବିଥିଲା ଯେ ରାଜଧାନୀକୁ ଆସିବା ପରେ ସୁହାସିନୀର ମନ ବଦଳିଯିବ ଏବଂ ସେ ତା'ର ଚାକିରି ଓ ଘରବାଡ଼ିର ଯୋଜନାରେ କିଛି ରୁଚି ରଖିବ, କିନ୍ତୁ ଏପରି କିଛି ହେଲା ନାହିଁ । ଝିଅ ବର୍ତ୍ତମାନ କଲେଜରେ ପଢୁଥିଲା ଏବଂ ପୁଅ ସ୍କୁଲର ଶେଷ କ୍ଲାସ୍‌ରେ । ସେମାନଙ୍କ ପାଇଁ ସୁହାସିନୀର ଆଉ ବେଶି କିଛି ଦାୟିତ୍ୱ ନଥିଲା । ସେ କିନ୍ତୁ ତା'ର ପୂରା ସମୟ କଟାଉଥିଲା ତା'ର କିଛି ପୁରୁଣା ସାଙ୍ଗକୁ ଭେଟି, ପିଲାଙ୍କ ପଢ଼ାପଢ଼ି କଥା ବୁଝି ଏବଂ ତାଙ୍କର ଛୋଟ ବଗିଚାର ଯତ୍ନ ନେବାରେ । ପ୍ରଭାକର ବୁଝିପାରୁ ନଥିଲା ସେ ଅନେକ ପଇସାପତ୍ର କରି ପରିବାରକୁ ଏତେ ସୁଖସ୍ୱାଚ୍ଛନ୍ଦ୍ୟରେ ରଖି ସେମାନଙ୍କର ଭବିଷ୍ୟତ ପାଇଁ ସମ୍ପତ୍ତି ଖଞ୍ଜି ଦେଇଥିବା କଥା କାହିଁକି ସୁହାସିନୀକୁ

ପ୍ରଭାବିତ କରିପାରୁ ନଥିଲା ଏବଂ କିପରି ସେ ଏ ବିଷୟରେ ନିଃସ୍ପୃହ ରହୁଥିଲା । ତଥାପି ସେ ନିୟମିତ ଭାବରେ ନିଜର ସବୁକଥା ଆସି ଟିକିନିଖି କରି କହୁଥିଲା, ସୁହାସିନୀ ତା'ର କଥାକୁ ଅଶୁଣା କରି ଦେଉଥିବା ସତ୍ତ୍ୱେ ।

ଦି'ଦିନ ପରେ ରାତିରେ ଡେରିରେ ଘରକୁ ଫେରି ତାକୁ କହିଲା, ଆଜି ଅଫିସରୁ ସିଧା ଚାଲିଗଲି ସ୍ୱାମୀଜୀଙ୍କ ପାଖକୁ । କି ସୁନ୍ଦର ପ୍ରବଚନ ଦେଲେ ସତେ ! ଆଜି ଗୀତାର ଗୋଟାଏ ଅଧ୍ୟାୟ ବୁଝାଇଲେ ସ୍ୱାମୀଜୀ । ସେ କୁଆଡ଼େ ଗୀତା ଉପରେ ଗୋଟାଏ ଭାଷ୍ୟ ଲେଖୁଛନ୍ତି । ସୁହାସିନୀ କହିଲା, ଗୀତା ଉପରେ ହଜାର ବହି ଲେଖା ହୋଇଛି । ତଥାପି ସବୁ ସ୍ୱାମୀଜୀ ତା ଉପରେ ନିଶ୍ଚେ ଆଉ ଗୋଟିଏ ଟୀକା ଲେଖିବେ ।

ତାଙ୍କର ବହିରେ କ'ଣ ଥିବ କେଜାଣି, କିନ୍ତୁ ତାଙ୍କ କଥା ଯେମିତି ଅମୃତ । ଥରେ ଶୁଣିଲେ ଉଠି ଆସିବାକୁ ଇଚ୍ଛା ହେବନି । ସ୍ୱାମୀଜୀ କୁଆଡ଼େ ଖାଲି ଗୀତା ଭାଗବତ ନୁହେଁ, ବାଇବେଲ, କୋରାନ ଉପରେ ବି ଏମିତି ପ୍ରବଚନ ଦେଉଛନ୍ତି । ମୁଁ ଭାବୁଛି ପ୍ରତିଦିନ ଅଫିସ ଫେରନ୍ତା ସେଇବାଟ ଦେଇ ଆସିବି ।

ସ୍ୱାମୀଜୀ କୁଆଡ଼େ ପରା ଅସମ୍ଭବକୁ ସମ୍ଭବ କରି ଦେଖାଉଛନ୍ତି ? ସୁବିଧା ଦେଖି ତମ ଭିଜିଲାନ୍ସ କେସ୍ କଥା କହିଲ ନାହିଁ ?

ତାଙ୍କୁ ଏକୁଟିଆ ପାଇ ଏସବୁ କଥା କହିବା କ'ଣ ଏତେ ସହଜ ? ତମେ ତାଙ୍କ ସଭାକୁ ଗଲେ ଦେଖନ୍ତ କେତେ ଲୋକ ଆସି ଜମା ହେଉଛନ୍ତି । ଯାହା ଉପରେ ତାଙ୍କର କୃପା ହେଉଛି, ତାକୁ ଡାକୁଛନ୍ତି ମନ୍ତ୍ର ଦେବା ପାଇଁ ।

କି ମନ୍ତ୍ର ?

କିଏ ଜାଣିବ କି ମନ୍ତ୍ର ? ଆଜି ସେ ପ୍ରବଚନ ପରେ ଡାକିଲେ ରାଓବାବୁଙ୍କୁ । ଏତେ ଲୋକ ବସିଥିଲେ, ଏମିତି ବି ଆଜି ସେଠି ଜଣେ ମନ୍ତ୍ରୀ ବି ଥିଲେ, କିନ୍ତୁ ସ୍ୱାମୀଜୀଙ୍କ ଆଖିରେ ପଡ଼ିଲେ ଏଇ କଣ୍ଟ୍ରାକ୍ଟର ।

ତମ ପାଳି ପୁଣି କେବେ ପଡ଼ିବ ବୋଲି ଭାବୁଛ ? ସୁହାସିନୀ ପଚାରିଲା । ଏବେ ଲୋକଙ୍କ ମେଳା । ତାଙ୍କ ଡ୍ରଇଂରୁମ୍ କ'ଣ ଆଉ ବୈଠକଖାନା ହୋଇ ଅଛି ? ସ୍ୱାମୀଜୀ ସାରାଦିନ ସେଇଠି କଟାଉଛନ୍ତି । କେତେବେଳେ ପ୍ରବଚନ ଦେଉଛନ୍ତି ତ କେତେବେଳେ ପ୍ରଶ୍ନର ଉତ୍ତର ଦେଉଛନ୍ତି । ପୁଣି କେତେବେଳେ କାହାକୁ ଭିତରକୁ ଡାକି ନଉଛନ୍ତି ମନ୍ତ୍ର ଦବାପାଇଁ ।

ଯାହାହଉ, ସହରର ଲୋକଙ୍କ ପାଇଁ ଭଲ କାମ ମିଳିଗଲା । ଏଠି ତ ଅଫିସ ଛଡ଼ା ଆଉ କାହାରି କିଛି କାମ ନଥାଏ, ଏବେ ମନୋରଞ୍ଜନ ପାଇଁ ଅନ୍ତତଃ ସ୍ୱାମୀଜୀଙ୍କ ମୁହଁ ଦେଖିବାକୁ ମିଳିବ ।

କ'ଣ ଏମିତି କଥା ସବୁ କହୁଚ, ପ୍ରଭାକର କହିଲା ; ତମେ ନିଜେ ଥରେ ଗଲେ ଜାଣିବ ସ୍ୱାମୀଜୀ କି ଜ୍ଞାନୀ ଲୋକ ।

ଏଥରକ ପ୍ରତିଦିନ ସନ୍ଧ୍ୟାରେ ପ୍ରଭାକର ସ୍ୱାମୀଜୀଙ୍କ ପାଖକୁ ଯିବାରେ ଲାଗିଲା ଏବଂ ସୁହାସିନୀକୁ ରାତିରେ ଶୁଣିବାକୁ ହେଲା ତାର ଧାରା ବିବରଣୀ । ସ୍ୱାମୀଜୀଙ୍କ ପାଖକୁ ଆଜିକାଲି ବେଶି ବେଶି ଲୋକ ଆସିବାରେ ଲାଗିଥିଲେ ଏବଂ ସେ ଚିଫ୍ ଇଞ୍ଜିନିୟରଙ୍କ ଘରୁ ଯାଇ ଗୋଟିଏ ବଡ଼ ଭଡ଼ାଘରେ ରହୁଥିଲେ । ତାଙ୍କର କାଳେ ରାଜଧାନୀକୁ ଆସିବାର ବିଶେଷ ଉଦ୍ଦେଶ୍ୟ ଥିଲା ଯେ ଆଶ୍ରମରେ ଯୋଉ ଡାକ୍ତରଖାନା କରୁଥିଲେ, ତା ପାଇଁ ଟଙ୍କା ସଂଗ୍ରହ କରିବା । ଏ ଭିତରେ ସହରର ଅଫିସର, ବ୍ୟବସାୟୀ, ନେତାମାନେ ତାଙ୍କୁ ଏଥିପାଇଁ ଲକ୍ଷ ଲକ୍ଷ ଟଙ୍କା ଦେଇସାରିଥିଲେ । ସ୍ୱାମୀଜୀ କହୁଥିଲେ, ଡାକ୍ତରଖାନା ପାଇଁ ପୂରା ଟଙ୍କା ହୋଇଗଲେ ସେ ପୁଣି ନିଜ ଆଶ୍ରମକୁ ଫେରିଯିବେ ।

ଦିନେ ପ୍ରଭାକର ଆସି ଘରେ ପଶୁ ପଶୁ ଉତ୍ତେଜିତ ସ୍ୱରରେ କହିଲା, ବୁଝିଲ, ଚିଫ୍ ଇଞ୍ଜିନିୟରଙ୍କର ବଦଳି ବନ୍ଦ ହୋଇଗଲା । ସୁହାସିନୀ କିଛି ନ କହିବାରୁ ପ୍ରଭାକର ପୁଣି କହିଲା, କେହି ବି ଭାବି ନଥିଲେ ଏ ଅସାଧ କାମ ସାଧ ହେବ ବୋଲି । ନିରୁତ୍ତାପ ସ୍ୱରରେ ସୁହାସିନୀ କହିଲା, ସ୍ୱାମୀଜୀଙ୍କର କରାମତି ଅଛି ତାହେଲେ । ପ୍ରଭାକର ଯେ ଭାବିଥିଲା ଏ ବିଷୟରେ ସୁହାସିନୀ ଆହୁରି ଟିକିନିଖି ଜାଣିବାକୁ ଚାହିଁବ, ଏପରି କିଛି ହେଲା ନାହିଁ । ତେବେ ଦି'ଦିନ ପରେ ପ୍ରଭାକର ଯେତେବେଳେ ଆସି କହିଲା, ସ୍ୱାମୀଜୀ ମତେ ଆଜି ମନ୍ତ୍ର ଦେବାପାଇଁ ଡାକିଲେ, ସୁହାସିନୀ ଚୁପ୍ ରହିପାରିଲା ନାହିଁ । ପଚାରିଲା, କେମିତି କ'ଣ ମନ୍ତ୍ର ଦେଲେ ? ଏତେଦିନ ଧରି ସୁହାସିନୀ ତା'ର କଥାରେ କୌଣସି ଆଗ୍ରହ ଦେଖାଇ ନଥିବାରୁ ପ୍ରଭାକର କ୍ଷୁବ୍ଧ ଥିଲା । କହିଲା, ପରେ କହିବି ।

ରାତିରେ ଶୋଇବାବେଳେ ବି ଯେତେବେଳେ ପ୍ରଭାକର ନିଜଆଡୁ ସେ କଥା ଉଠାଇଲା ନାହିଁ, ସୁହାସିନୀ ଭାବିଲା ସେ ଏ ବିଷୟରେ ତାକୁ ପଚାରିବ ନାହିଁ । ଶେଷରେ କିନ୍ତୁ ସେ ତା'ର କୌତୂହଳ ଚାପି ରଖି ପାରିଲା ନାହିଁ ; କହିଲା, କ'ଣ କହୁଥିଲ ପରା ସ୍ୱାମୀଜୀ ତମକୁ ଆଜି ମନ୍ତ୍ର ଦେଲେ ବୋଲି ; କି ମନ୍ତ୍ର ? ଏଥରକ ପ୍ରଭାକର ସେଦିନ ସନ୍ଧ୍ୟାର ଏକ ବିଶଦ ବିବରଣୀ ଦେଲା । ସ୍ୱାମୀଜୀ କଠୋପନିଷଦର ବ୍ୟାଖ୍ୟା କରିସାରିବା ପରେ ସେ ବିଷୟରେ ଦି'ଚାରିଟି ପ୍ରଶ୍ନର ଉତ୍ତର ଦେଲେ । ତା'ପରେ ସେ ସଭାରେ ବସିଥିବା ଲୋକମାନଙ୍କୁ ଅନାଇ ଯେତେବେଳେ ତାଙ୍କର ଆଖି ପ୍ରଭାକର ଉପରେ ପଡ଼ିଲା, ଉଠି ଠିଆହେଲେ ; ଆଉ ତାକୁ ତାଙ୍କ ସାଙ୍ଗରେ ଭିତରକୁ ଯିବାକୁ ଡାକିଲେ । ଭିତରେ ଗୋଟିଏ କୋଠରିର ପୂଜାଘରେ ତାକୁ ବସାଇ କହିଲେ, ତମର ଯୋଉ ସମସ୍ୟା ଅଛି, ଏଇ ଅଳ୍ପଦିନ ଭିତରେ ଠିକ୍ ହୋଇଯିବ ।

ସୁହାସିନୀ କ'ଣ କହିବାକୁ ଯାଉଥିଲା, ପ୍ରଭାକର କହିଲା, ତମେ ଭାବୁଥିବ

ଏ କ'ଣ ବଡ଼ କଥା ! ଏଭଳି କଥା ତ ସମସ୍ତଙ୍କୁ କୁହାଯାଇପାରେ, କାରଣ ସମସ୍ତଙ୍କର କିଛି ନା କିଛି ସମସ୍ୟା ନିଶ୍ଚେ ଥିବ । କିନ୍ତୁ ତା'ପରେ ମତେ ସେ କେସ୍ ବିଷୟରେ ଏମିତି କେତେ କଥା ପଚାରିଲେ, ଯୋଉଥିରୁ ମୁଁ ଜାଣିଲି ଯେ ତାଙ୍କୁ ସବୁ ଜଣା ।

ତମ ବିଷୟରେ ସେ କେମିତି କ'ଣ ଜାଣିବେ ? ତାଙ୍କୁ ଭେଟିବାକୁ ଯେତେ ଲୋକ ଯାଉଛନ୍ତି, ସେ କ'ଣ ସମସ୍ତଙ୍କ ବିଷୟରେ ସବୁ କଥା ଜାଣିଥିବେ ? ଯଦି ତମ ବିଷୟରେ ସେ ଆଗରୁ କୋଉଠି ଖବର ସଂଗ୍ରହ କରିଥିବେ, ସେ ଅଲଗା କଥା ।

ଅବଶ୍ୟ ତାଙ୍କ ପାଖରେ ଚିଫ୍ ଇଞ୍ଜିନିୟରଙ୍କ ସ୍ତ୍ରୀ-ପିଲାମାନେ ଏବେବି ଚଳପ୍ରଚଳ ହଉଛନ୍ତି, କିନ୍ତୁ ସେମାନେ କାହିଁକି ମୋ ବିଷୟରେ ଏତେ ଖବର ଦେବେ ତାଙ୍କୁ ? ସେ ଯାହାହେଉ, ସ୍ୱାମୀଜୀ ମୋର ସମସ୍ୟା କଥା ବୁଝିବେ ବୋଲି କହିଲେ ।

ତମକୁ ମନ୍ତ୍ର କେତେବେଳେ ଦେଲେ ?

ନା, ମତେ ପୂରା ମନ୍ତ୍ର ଦେଇଛନ୍ତି କୋଉଠି ? ମତେ ଗୋଟିଏ କାଗଜ ଦେଇଛନ୍ତି, ସେଥିରେ ଏବେ କିଛି ଲେଖା ହୋଇନାହିଁ । କହିଛନ୍ତି ଆଉ ଥରେ ମତେ ଡକାଇ ସେଥିରେ ମୋ ପାଇଁ ମନ୍ତ୍ର ଲେଖିଦେବେ ।

ଓଃ, ଏତିକି କଥା । ସୁହାସିନୀ ନିରାଶ ହୋଇଥିବା ଭଳି ଜଣାପଡ଼ିଲା । ପ୍ରଭାକର କହିଲା, ମୋଠୁ ଏମିତି ଶୁଣିଲେ ତମେ କ'ଣ ବୁଝିବ ସ୍ୱାମୀଜୀ କିଭଳି ଲୋକ । ତମେ ଯଦି ତାଙ୍କ ପ୍ରବଚନକୁ ଯାଆନ୍ତ, ଜାଣିପାରନ୍ତ ତାଙ୍କର କେତେ ଜ୍ଞାନ ।

ମୋର ଏଭଳି ବାବାଜିଙ୍କ ପାଖକୁ ଯିବା ଦରକାର ନାହିଁ । ଯଦି ମୋର ଧର୍ମ ବିଷୟରେ ଜାଣିବାକୁ ଇଚ୍ଛା ହେବ, ମୁଁ ବହି ପଢ଼ିବି ନାହିଁ କାହିଁକି ? ସୁହାସିନୀ ଏକଥା କହିଲା ସିନା, ଟିକିଏ ପରେ ପଚାରିଲା, ସେଠିକି କ'ଣ ସ୍ତ୍ରୀଲୋକମାନେ ଯାଉଛନ୍ତି ?

ତାଙ୍କୁ ଭେଟିବାକୁ ଯାଉଥିବା ଅଧାରୁ ବେଶି ତ ସ୍ତ୍ରୀଲୋକ । ଆଉ ଅଫିସ ସମୟରେ ସେ ଯେତେବେଳେ ଦର୍ଶନ ଦଉଛନ୍ତି, ସେତେବେଳେ କୁଆଡ଼େ ଖାଲି ସ୍ତ୍ରୀଲୋକ ସେଠାରେ । ଥରେ ଯାଇକରି ତ ଦେଖ ।

ନା, ମୋର ଯିବା ଦରକାର ନାହିଁ । ସୁହାସିନୀ ଏକଥା କହିଲା, କିନ୍ତୁ ପ୍ରଭାକର ଅଧା ମନ୍ତ୍ର ପାଇବା କଥା ଶୁଣିବା ପରେ ତା'ର ମଧ୍ୟ କୌତୂହଳ ହୋଇଥିଲା ଯାଇ ଦେଖିବ ଏତେ ଲୋକ କାହିଁକି କୋଉ ସାଧୁ ପାଖରେ ପ୍ରତି ସନ୍ଧ୍ୟାରେ ଯାଇ ଅଧିଆ ପଡୁଛନ୍ତି । କିଛିଦିନ ପରେ ଦିନେ ସନ୍ଧ୍ୟାବେଳେ ପିଲା ଦୁହେଁ କାହାଘରକୁ ଚାଲିଯିବାରୁ ସୁହାସିନୀ ପ୍ରଭାକର ସାଙ୍ଗରେ ବାହାରିଲା ସ୍ୱାମୀଜୀଙ୍କ ପାଖକୁ ।

ନିଜର ସମସ୍ତ ପ୍ରତିକୂଳ ମନୋଭାବ ସତ୍ତ୍ୱେ ପ୍ରଥମ ଦର୍ଶନରେ ହିଁ ସୁହାସିନୀକୁ ମାନିବାକୁ ପଡ଼ିଲା ଯେ ସ୍ୱାମୀଜୀ ପ୍ରକୃତରେ ଜଣେ ପ୍ରଭାବ ପକାଇବା ଭଳି ବ୍ୟକ୍ତିତ୍ୱ । କୋଠରିଟି ଭର୍ତ୍ତି ହୋଇ ଲୋକ ବସିଥିଲେ ; ସାମନାରେ ସାମାନ୍ୟ ଉଚ୍ଚ ଆସନରେ

ବସିଥିଲେ ସ୍ୱାମୀଜୀ । ତା'ରି ବୟସର, କି ତା'ଠାରୁ ଟିକିଏ କମ୍ ବୟସର ହେବେ, ଭଦ୍ରବ୍ୟକ୍ତି ନିଜକୁ ପୂରାପୂରି ସଜାଇଥିଲେ ଏଇ ଚରିତ୍ର ପାଇଁ । ଏଇ ଫାଇଭ ଷ୍ଟାର ସ୍ୱାମୀଜୀଙ୍କର ବାଳ, ତାଙ୍କର ଦାଢ଼ି, ତାଙ୍କର ଗେରୁଆ ପୋଷାକ ସବୁ ଯେମିତି ଡିଜାଇନରର ତିଆରି ଥିଲା ଏବଂ ସେ ଦିଶୁଥିଲେ କୌଣସି ସୌମ୍ୟଦର୍ଶନ ଚିତ୍ରତାରକା ଜଣେ ସ୍ୱାମୀଜୀଙ୍କ ଭୂମିକାରେ ଅବତୀର୍ଣ୍ଣ ହେବା ପାଇଁ ବେଶଭୂଷା ହେବାଭଳି । ତାଙ୍କର ମୁହଁର ସବୁଠାରୁ ଦର୍ଶନୀୟ ବସ୍ତୁ ଥିଲା ତାଙ୍କର ଆଖି ଦୁଇଟି, ଯାହା ଥର ଥର କରି ସମସ୍ତଙ୍କ ଆଖିରେ ଯାଇ ମିଶୁଥିଲା ; ଅନ୍ୟ କାହାରି ହୋଇଥିଲେ ହୁଏତ ତାକୁ ଲୋଲୁପ ବା ଲମ୍ପଟ କୁହାଯାଇଥା'ନ୍ତା, କିନ୍ତୁ ଜଣେ ସ୍ୱାମୀଜୀଙ୍କର ମୁହଁରେ ଥିବାରୁ ତାକୁ ମର୍ମଭେଦୀ ଓ ସମ୍ମୋହକ ବୋଲି ମାନିବାକୁ ହେଉଥିଲା ।

ସୁହାସିନୀ ଆହୁରି ପ୍ରଭାବିତ ହେଲା ସ୍ୱାମୀଜୀ ଯେତେବେଳେ ତାଙ୍କର ବକ୍ତବ୍ୟ ଦେଲେ । ଆଜି ସେ କହୁଥିଲେ ରାମକୃଷ୍ଣ ପରମହଂସଙ୍କ ବିଷୟରେ । ମଫସଲରୁ ଆସିଥିବା ଅଶିକ୍ଷିତ ଯୁବକଟି କିପରି କଲିକତାର ମଧ୍ୟବିତ୍ତ ସମାଜରେ ଚହଳ ପକାଇ ଦେଇଥିଲା, ସେ ବିଷୟରେ କହିଲେ ସ୍ୱାମୀଜୀ । ଅନେକ ପ୍ରକାରର ବ୍ୟକ୍ତିଗତ ବିବରଣୀ, କାହାଣୀ ଓ ଦେଶୀ ବିଦେଶୀ ଲେଖକଙ୍କର ଉଦାହରଣ ଦେଇ ସେ ଯେତେବେଳେ ପରମହଂସଙ୍କର ଜୀବନଦର୍ଶନର ବ୍ୟାଖ୍ୟାନ ଶେଷ କଲେ, ସୁହାସିନୀ ମାନିଲା ଯେ ଲୋକଟିର ଭଲ ବିଦ୍ୟାବୁଦ୍ଧି ଅଛି । ସେଦିନ ମନ୍ତ୍ର ଦେବାପାଇଁ ସ୍ୱାମୀଜୀ ଯାହାକୁ ବାଛିଲେ, ସେ ଥିଲେ ଜଣେ ବରିଷ୍ଠ ଅଫିସରଙ୍କର ସହଧର୍ମିଣୀ । ଘରକୁ ଫେରିବାବେଳେ ପ୍ରଭାକର କହିଲା, କ'ଣ ଏଥର ମୋ କଥାରେ ବିଶ୍ୱାସ ହେଲା ତ ? ମୁଁ କହୁ ନଥିଲି ସ୍ୱାମୀଜୀଙ୍କର କିଛି ଗୋଟାଏ ଶକ୍ତି ଅଛି ବୋଲି ? ସୁହାସିନୀ କହିଲା, ଭଲ ବକ୍ତୃତା ଦେଲେ ସ୍ୱାମୀଜୀ । ସେ ଆଗରୁ ଯୋଉସବୁ ବକ୍ତୃତା ଦେଇଥିଲେ ତା'ର ଟେପ ଯଦି କିଏ ରଖିଥିବ ବୁଝିବ ତ ।

ସେହିଦିନଠାରୁ ଯେତେବେଳେ ସୁବିଧା ପାଇଲା ସୁହାସିନୀ ଯାଇ ସ୍ୱାମୀଜୀଙ୍କ ସଭାରେ ଯୋଗ ଦେଲା । ପ୍ରତି ବୈଠକରେ ସେ ଗୋଟିଏ ଅତି ଅପ୍ରତ୍ୟାଶିତ ନୂଆ ବିଷୟ ଉପରେ କହୁଥିଲେ, କିନ୍ତୁ ତାଙ୍କର ପ୍ରତିଟି ବକ୍ତୃତା ଥିଲା ସାରଗର୍ଭକ ଓ ସ୍ମରଣୀୟ । ଦିନବେଳେ ସ୍ୱାମୀଜୀ ଯେଉଁ ସମୟତକ ଆସି ବସୁଥିଲେ, ସେତେବେଳେ ପୁରୁଷମାନେ ପ୍ରାୟ ନିଜ ନିଜ କାମରେ ବ୍ୟସ୍ତ ଥିବାରୁ ଦର୍ଶନାର୍ଥୀ ଥିଲେ କେବଳ ସ୍ତ୍ରୀଲୋକ । ସୁହାସିନୀ ଏଇ ସଭାମାନଙ୍କୁ ମଧ୍ୟ ଯିବାରେ ଲାଗିଲା । ତାକୁ ବକ୍ତୃତା ସବୁ ଅତି ଚମତ୍କାର ଲାଗୁଥିଲା, କିନ୍ତୁ ସ୍ୱାମୀଜୀ ଜଣେ ସ୍ତ୍ରୀଲୋକକୁ ଭିତରକୁ ଡାକିନେଇ ମନ୍ତ୍ର ଦେବା କଥା ତାକୁ କିପରି ଅଶ୍ଳୀଳ ବୋଧ ହେଉଥିଲା । ବୋଧହୁଏ ଅନ୍ୟମାନେ ମଧ୍ୟ ଠିକ୍ ସେପରି ଭାବୁଥିଲେ, କାରଣ ସ୍ୱାମୀଜୀ ଚାଲିଯାଇଥିବା ସମୟତକ

ଦର୍ଶନାର୍ଥୀମାନଙ୍କ ଭିତରେ ଏକ ମୃଦୁ ଗୁଞ୍ଜରଣ ଏବଂ ଚାପାହସ ସୃଷ୍ଟି ହେଉଥିଲା । ଏତିକି ଆଶ୍ୱାସନା ଥିଲା ଯେ, ସେ ଘର ଭିତରେ ଚିଫ୍ ଇଞ୍ଜିନିୟରଙ୍କ ସଂପର୍କୀୟମାନେ ପ୍ରାୟ ସବୁ ସମୟରେ ଦେଖାଯାଉଥିଲେ ଏବଂ ଚାରିଆଡ଼େ ଏକ ଖୋଲା ଖୋଲା ଭାବ ଥିଲା ।

ଏଇଭଳି କିଛିଦିନ ସେଠାକୁ ଯିବାପରେ ସୁହାସିନୀ ହଠାତ ନିଜକୁ ପ୍ରଶ୍ନ କଲା, ସ୍ୱାମୀଜୀ ତାକୁ କାହିଁକି ମନ୍ତ୍ର ଦେବାକୁ ଡାକୁ ନାହାନ୍ତି ! ସେ ନିଜେ ଏଇ ମନ୍ତ୍ରଦାନ ପଦ୍ଧତିକୁ ଅତି ଅଶିଷ୍ଟ ଓ ଅଶୋଭନ ବୋଲି ଭାବୁଥିଲା ଏବଂ ତା'ର ମନେ ହେଉଥିଲା ଏଥିରେ ଯେପରି କେଉଁଠି କିପରି ଏକ ପ୍ରଚ୍ଛନ୍ନ ଯୌନଭାବ ରହିଛି । ତେବେ ସ୍ୱାମୀଜୀ ଯେ କେବଳ ସୁନ୍ଦରୀ ଓ ତରୁଣୀମାନଙ୍କୁ ମନ୍ତ୍ର ଦେବାପାଇଁ ଡାକୁଥିଲେ, ତା ନୁହେଁ । ହୁଏତ ସ୍ୱାମୀଜୀ ଏଭଳି ଖରାପ ଚିନ୍ତାରୁ ଉର୍ଦ୍ଧ୍ୱରେ ଥିଲେ । ତଥାପି ସୁହାସିନୀ ନିଜ ମନ ଭିତରର ସଂଶୟକୁ ଦୂର କରିପାରୁ ନଥିଲା ।

ତା'ର ଏଥରକ ଇଚ୍ଛା ହେଲା କିପରି ନିଜେ ଯାଇ ଦେଖିବ ସ୍ୱାମୀଜୀ କିଭଳି ମନ୍ତ୍ର ଦେଉଛନ୍ତି । ପ୍ରଭାକର ଅବଶ୍ୟ ତାକୁ ତା'ର ଅଭିଜ୍ଞତା କଥା ବିଶଦ ଭାବରେ ଶୁଣାଇଥିଲା । ଏ ଭିତରେ ସେ ପୁଣି ଥରେ ସ୍ୱାମୀଜୀଙ୍କ ପାଖକୁ ଯାଇ ତାଙ୍କ ପାଖରୁ ମନ୍ତ୍ର ଆଣିଥିଲା । ସ୍ୱାମୀଜୀ ତାକୁ ଯେଉଁ କାଗଜଟି ଦେଇଥିଲେ ସେଇଟିକୁ ଚଉତି ତାଙ୍କ ପାଖରେ ଥିବା ଖାଲି ମୁଣି ଭିତରେ ପକାଇବାକୁ କହିଥିଲେ । ସେଇଟିକୁ ବାହାର କରି ପ୍ରଭାକର ଘରେ ପହଞ୍ଚିଲା ବେଳକୁ କାଗଜରେ ମନ୍ତ୍ରଟି ଲେଖା ହୋଇ ରହିଥିଲା । ମନ୍ତ୍ରଟିକୁ କାହାରିକି ନ କହିବାକୁ ସ୍ୱାମୀଜୀ ବାରଣ କରିଥିଲେ ଏବଂ ସେଥିପାଇଁ ସୁହାସିନୀର ଆଗ୍ରହ ସତ୍ତ୍ୱେ ପ୍ରଭାକର ତାକୁ କହିନଥିଲା ମନ୍ତ୍ରଟି କ'ଣ ଥିଲା ।

ଯୋଉଦିନ ତା ପାଖରେ ବସିଥିବା ବୟସ୍କା ପୃଥୁଳା ଭଦ୍ରମହିଳାଙ୍କର ମନ୍ତ୍ର ନେବାର ପାଳି ପଡ଼ିଲା, ସୁହାସିନୀ ନିଶ୍ଚୟ କଲା ଯେ ତାକୁ ଏ ବିଷୟରେ କିଛି କରିବାକୁ ପଡ଼ିବ । ସେ ନିଜକଥା ଭାବିଲା । ବୟସ ବଢ଼ିଚାଲିଥିଲେ ବି ସେ ଏ ପର୍ଯ୍ୟନ୍ତ ନିଜର ଚେହେରା ବିଷୟରେ ସଚେତନ ରହି ଦେହର ଯତ୍ନ ନେଉଥିଲା ଏବଂ ଭାବୁଥିଲା ଯେ ଲୋକେ ତାକୁ ସୁନ୍ଦରୀ ହିଁ କହୁଥିବେ । ପରଦିନ ଯେତେବେଳେ ସ୍ୱାମୀଜୀଙ୍କ ପାଖକୁ ଯିବାକୁ ବାହାରିଲା, ସୁହାସିନୀ ନିଜକୁ ଆଉ ଟିକିଏ ସଜାଇଲା ଏବଂ ଆଖିକୁ ଆକର୍ଷଣ କରିବା ଭଳି ଶାଢ଼ିଟିଏ ପିନ୍ଧିଲା । ତଥାପି ସ୍ୱାମୀଜୀଙ୍କର ଆଖି ସେଦିନ ତା ଉପରେ ନ ଅଟକିବାରୁ ସେ ମନେ ମନେ ଗାଳିଦେଲା ଏବଂ ଭାବିଲା ଯେ ଭଲ ହୋଇଛି, ମନ୍ତ୍ର ନେବାର ଏଭଳି ଅଶ୍ଳୀଳ ବିଧି ତା'ର ଦରକାର ନାହିଁ । ନିଜକୁ ଏକଥା କହିବା ସତ୍ତ୍ୱେ ପରଦିନମାନଙ୍କରେ ସେ ଆହୁରି ଭଲ ଭାବରେ ନିଜକୁ ସଜାଇ ଯାଇ ସାମନା ଧାଡ଼ିରେ ବସିଲା । ସ୍ୱାମୀଜୀଙ୍କର ଆଖିକୁ ନିଜ ଉପରେ ଅଟକାଇବା ବର୍ତ୍ତମାନ

ଯେପରି ଏକ ସର୍ବାର ବିଷୟ ହୋଇଯାଇଥିଲା ତା ପାଇଁ ? ସେ ମନକୁ ମନ ସ୍ୱାମୀଜୀଙ୍କୁ ସମ୍ବୋଧନ କରି କହୁଥିଲା, ଦେଖିବା କେତେଦିନ ଏଡ଼ାଇ ଯାଇପାରିବ ମୋର ଆଖିକୁ ।

ଶେଷକୁ ଯେପରି ସ୍ୱାମୀଜୀ ହାର ମାନିଲେ ଏବଂ ଦିନେ ଖରାବେଳେ ମନ୍ତ୍ର ଦେବାପାଇଁ ସୁହାସିନୀକୁ ଡାକ ମିଳିଲା । ସଭାରୁ ଉଠି ସ୍ୱାମୀଜୀଙ୍କ ପଛେ ପଛେ ଯିବାବେଳକୁ ସେ ଯେତିକି ଖୁସି ଥିଲା, ସେତିକି ଚିନ୍ତିତ ଥିଲା ତା ପଛରେ ଯେଉଁ ମଧୁର ଗୁଞ୍ଜନ ହେବ ସେଥିପାଇଁ । ତେବେ ସେ ମନ ସ୍ଥିର କରିନେଇଥିଲା ସ୍ୱାମୀଜୀଙ୍କ ସହିତ ଏକାଠି ଭେଟ ହେଲାବେଳେ କ'ଣ କରିବ । ବସିବା ଘରୁ ଯାଇ ସ୍ୱାମୀଜୀ ପଛ ପାଖର ଯେଉଁ ଅନ୍ଧାରୁଆ କୋଠରିରେ ପଶିଲେ, ତା ଭିତରକୁ ଯାଇ ସୁହାସିନୀ ଦେଖିଲା ଯେ ସେଇଟି ପ୍ରଭାକର ବର୍ଣ୍ଣନା କରିଥିବାର ଅନୁରୂପ ଥିଲା । ତା'ର ଗୋଟିଏ ପାଖରେ ଠାକୁରମାନଙ୍କର ମୂର୍ତ୍ତିମାନ ରଖା ହୋଇ ପୂଜା ବ୍ୟବସ୍ଥା ଥିଲା ଏବଂ ଅନ୍ୟ ପାଖରେ ହରିଣ ଛାଲ ପଡ଼ିଥିବା ଗୋଟିଏ ଦିବାନ ଥିଲା । ସେମାନେ ଭିତରକୁ ଗଲାବେଳେ ଝିଅଟିଏ ସେଠାରେ ପୂଜାର ଜିନିଷକୁ ଠିକ୍‌ଠାକ୍ କରୁଥିଲା । ସୁହାସିନୀ ତାକୁ ଚିହ୍ନିଲା ଚିଫ୍ ଇଞ୍ଜିନିୟରଙ୍କ ଶାଳୀ ବୋଲି । ଟିକିଏ ସମୟ ପରେ ପୂଜା ଜାଗାକୁ ସଜାଡ଼ି ସାରି ସେ ବାହାରକୁ ଯାଇ କବାଟକୁ ଆଉଜାଇ ଦେବାପରେ ସ୍ୱାମୀଜୀ ହରିଣ ଛାଲ ଉପରେ ବସିଲେ ଏବଂ ନିଜ ପାଦ ପାଖରେ ସୁହାସିନୀକୁ ବସାଇବାର ଜାଗା ଦେଖାଇଦେଲେ ।

ବୈଠକଖାନାରେ ସ୍ୱାମୀଜୀ ଉଚ୍ଚ ଆସନରେ ବସିଥିବାବେଳେ ଲୋକଙ୍କ ଗହଳିରେ ତାଙ୍କ ସାମନାରେ ତଳେ ବସିବା ଅଲଗା କଥା ଥିଲା । କିନ୍ତୁ ଗୋଟିଏ କୋଠରିରେ କେବଳ ଦୁଇଜଣ ଲୋକ ଥିବାବେଳେ ଜଣେ ଆଉ ଜଣକ ପାଦ ତଳେ ବସିବା ଅତ୍ୟନ୍ତ ଅପମାନଜନକ ମନେହେଲା ସୁହାସିନୀକୁ । ସେ କହିଲା, ଆପଣ ଉପରେ ବସିଥିବାବେଳେ ମୁଁ ତଳେ ବସିପାରିବି ନାହିଁ । ତା ଆଡ଼କୁ ଅନାଇ ସ୍ୱାମୀଜୀ ହସିଲେ । କହିଲେ, ମତେ ଏ କଥା ଆଜିଯାଏଁ କେହି କହି ନଥିଲେ । ଏପରିକି ମୁଖ୍ୟମନ୍ତ୍ରୀ ଆସିଲେ ମଧ୍ୟ ମୋ ପାଦ ତଳେ ବସନ୍ତି । ଏତିକି କହି ନିଜ ବସିବା ଜାଗାରୁ ଟିକିଏ ଘୁଞ୍ଚିଯାଇ ସେ ସୁହାସିନୀ ପାଇଁ ଜାଗା କରିଦେଲେ । ସେଠାରେ ବସି ସୁହାସିନୀ ଜାଣିଲା ଯେ ଏଇ ଛୋଟ ଆସନଟି ଉପରେ ସ୍ୱାମୀଜୀଙ୍କର ଏତେ ପାଖରେ ଲାଗିହୋଇ ବସିବା ତଳେ ବସିବାଠାରୁ ବିଶେଷ ସୁଖଦ ନଥିଲା ।

ଏଥରକ ତା ମୁହଁକୁ ସପ୍ରଶଂସ ଦୃଷ୍ଟିରେ ଅନାଇ ସ୍ୱାମୀଜୀ କହିଲେ, ତୋର ନାଁ କ'ଣ ମା' ? ନା, ସେ ତାକୁ ଅସମ୍ମାନଜନକ ଭାବରେ ଡାକିଥିବାର କହି ଆପତ୍ତି କରିହେବ ନାହିଁ, ସୁହାସିନୀ ଠିକ୍ କଲା । ସ୍ୱାମୀଜୀମାନଙ୍କର ଏପରି ଏକ ଅଧିକାର ଥାଏ । ତା ଛଡ଼ା ମା'ମାନଙ୍କୁ ତୁ କହିବାର ପ୍ରଚଳନ ଅଛି । ସେଥିପାଇଁ ସେ ଆଉ

କୌଣସି ପ୍ରତିବାଦ ନକରି ନିଜର ନାଁ କହିଲା । ସ୍ୱାମୀଜୀ କହିଲେ, ସୁନ୍ଦର ନାଁ । ମୁଁ କିନ୍ତୁ ତତେ ଗୋଟିଏ ନୂଆ ନାଁ ଦେବି । ତୁ ହେଉଛୁ ସ୍ୱାହା । ସ୍ୱାହା ହେଉଛନ୍ତି ଅଗ୍ନି ଦେବତାଙ୍କର ପତ୍ନୀ ଏବଂ ଷୋଡ଼ଶ ମାତୃକାରୁ ଜଣେ । ସୁହାସିନୀ ଭାବିଲା, ଠିକ୍ କଥା । ମୁଁ ତତେ ଜାଳିପୋଡ଼ି ଦେବି ।

ମୁଁ ତୋ ମୁହଁକୁ ଦେଖି ତୋ ବିଷୟରେ ସବୁ ଜାଣିପାରୁଛି, ସ୍ୱାମୀଜୀ କହିଲେ, ତୁ ବିବାହିତ ଜୀବନରେ ଏତେ ଅସୁଖୀ କାହିଁକି ମା' ?

ଜୀବନରେ କିଏ ଅସୁଖୀ ନୁହେଁ ? ଯାହାର ମୁହଁକୁ ଦେଖିଲେ ବି ଏକଥା କହିହବ ।

କିନ୍ତୁ ଖାଲି କାହାର ମୁହଁକୁ ଦେଖିଲେ କ'ଣ କହିହେବ ତା'ର ସ୍ୱାମୀର ନାଁ ପ୍ରଭାକର ବୋଲି ?

ହାର ମାନିଲା ସୁହାସିନୀ । ସ୍ୱାମୀଜୀଙ୍କୁ ଯେତିକି ଚାଲାକ ଚତୁର ଲୋକ ବୋଲି ଭାବିଥିଲା ସୁହାସିନୀ, ତା'ଠାରୁ ଆହୁରି ଗଭୀର ଥିଲେ ସେ । ନିଶ୍ଚୟ ସେ ଜାଣନ୍ତି ତା ବିଷୟରେ ବେଶ୍ କିଛି । ଏଥର ତାକୁ କଥାବାର୍ତ୍ତାରେ ସତର୍କ ହେବାକୁ ପଡ଼ିବ । ସେ ସ୍ୱାମୀଜୀଙ୍କ ମୁହଁକୁ ଚାହିଁ ଦେଖିଲା ଯେ ସେ ସେଇଭଳି ପରମ ଆତ୍ମବିଶ୍ୱାସର ସହିତ ତା ଆଡ଼କୁ ଅନାଇଥିଲେ ଏବଂ ତାଙ୍କ ଆଖିରେ ସାମାନ୍ୟ ବ୍ୟଙ୍ଗର ବି ଆଭାସ ଥିଲା ବର୍ତ୍ତମାନ । ସ୍ୱାମୀଜୀ ତା'ର ମୁଣ୍ଡ ଉପରେ ହାତ ରଖିଲେ, କହିଲେ ମୁଁ ତୋର ଦୁଃଖକୁ ଦୂର କରିଦେବି । ନିଜର ଆଙ୍ଗୁଳିରେ ସେ ସୁହାସିନୀର ଆଖିପତାକୁ ବନ୍ଦ କରିଦେଲେ ।

ଅଳ୍ପ ଆଲୁଅ ଓ ଧୂପ ଚନ୍ଦନର ବାସନାରେ କୋଠରି ଭିତରେ ଏକ ଭାରହୀନ ମୃଦୁ ବାତାବରଣ ଥିଲା । ବର୍ତ୍ତମାନ ଆଖି ବନ୍ଦ କରିନେବା ପରେ ନିଜକୁ ଆହୁରି ସ୍ୱଚ୍ଛନ୍ଦ ଅନୁଭବ କଲା ସୁହାସିନୀ । ତା'ର ବାଳ ଉପରେ ସ୍ୱାମୀଜୀଙ୍କର ହାତର ଚାପ ପ୍ରୀତିକର ଥିଲା । ତାଙ୍କ ହାତର ଆଙ୍ଗୁଳି ତା'ର ବାଳ ଉପରେ ଖେଳି ବୁଲୁଥିଲେ । ଯେତେବେଳେ ଦୁଇ ପାପୁଲିରେ ସେ ତା'ର ଗାଲକୁ ଛୁଇଁଲେ, ସୁହାସିନୀ ଆଖି ଖୋଲି ତାଙ୍କ ଆଡ଼କୁ ଚାହିଁଲା । ସ୍ୱାମୀଜୀ କିନ୍ତୁ ତା'ର ମୁହଁରୁ ହାତ ବାହାର କରିଲେ ନାହିଁ । ନିଜ ବୟସ୍କ ଜୀବନରେ ପ୍ରଭାକର ବ୍ୟତୀତ ଆଉ କେହି ତାକୁ ଏତେ ଘନିଷ୍ଠ ଭାବରେ ଛୁଇଁଥିବାର ସୁହାସିନୀକୁ ମନେପଡ଼ିଲା ନାହିଁ । ତାକୁ ହୁଏତ କେହି ଲୁଚାଛପାରେ, ଅନ୍ୟମନସ୍କ ଭଳି ବା ଆକସ୍ମିକତାର ଛଳନା କରି ଛୁଇଁଥିଲେ କେବେ କେବେ, କିନ୍ତୁ ସ୍ୱାମୀଜୀ ତା'ର ମୁହଁକୁ ହାତରେ ଧରିଥିଲେ ସଂପୂର୍ଣ୍ଣ ସତ୍‌ସାହସ ଓ ଆତ୍ମପ୍ରତ୍ୟୟର ସହିତ । ପରିସ୍ଥିତି କିପରି ନିଜର ନିୟନ୍ତ୍ରଣରୁ ବାହାରି ଯାଉଥିବା ଦେଖି ସୁହାସିନୀ କହିଲା, ଆପଣ ମତେ ମନ୍ତ୍ର ଦେବେ । ସ୍ୱାମୀଜୀ ତାକୁ ଛାଡ଼ି ଉଠିଲେ ଓ ପୂଜା ଜାଗାରୁ କାଗଜଟିଏ ଆଣି ନିଜ ସ୍ଥାନରେ ବସିଲେ । କାଗଜଟିକୁ ସେ ସୁହାସିନୀର ହାତ ଉପରେ ରଖିଲେ, କିନ୍ତୁ ସୁହାସିନୀର

ହାତ ଉପରୁ ନିଜର ହାତ ଉଠାଇ ନେଲେ ନାହିଁ । ଏଥରକ ସୁହାସିନୀ ନିଜର ଅନ୍ୟ ହାତଟିକୁ ଆଣି ତାଙ୍କ ହାତରେ ରଖିଲା ।

ମୁଁ ତତେ ଗୋଟିଏ ବିଶେଷ ମନ୍ତ୍ର ଦେବି, ସ୍ୱାମୀଜୀ କହିଲେ, ତା ପୂର୍ବରୁ କିନ୍ତୁ ପୂଜା କରିବାକୁ ହେବ । ସେ ପୂଜା ଜାଗାକୁ ଉଠିଗଲେ ଏବଂ ସୁହାସିନୀ ତାଙ୍କ ପଛେ ପଛେ ଯାଇ ତାଙ୍କ ପାଖରେ ବସିଲା । ସ୍ୱାମୀଜୀ କହିଲେ, ପୂଜା ଆଗରୁ ସବୁ ଆଭରଣ ଖୋଲି ରଖିଦେବାକୁ ହେବ । ସୁହାସିନୀ ଆଙ୍ଗୁଳିରୁ ମୁଦି ଖୋଲିଲା, ହାତରୁ ଚୁଡ଼ି ଓହ୍ଲାଇଲା, କାନରୁ କାନଫୁଲ ବାହାର କଲା । ତା'ର ଦେହ ମୁହଁ ବର୍ତ୍ତମାନ ଯେପରି ନିଆଁର ଉତ୍ତାପରେ ଜଳୁଥିଲା । ସେ ସ୍ୱାମୀଜୀଙ୍କ ଆଡ଼କୁ ଅନାଇଲା ଏବଂ ସେଥିରେ ମଧ ତା'ର ଧାସ ଦେଖିବାକୁ ପାଇଲା । ଗମ୍ଭୀର ହୋଇ ସ୍ୱାମୀଜୀ କହିଲେ, ସବୁ ଆଭରଣ । ସୁହାସିନୀ ଭାବିଲା ସେ ଉଠିପଡ଼ି ଘର ଭିତରୁ ବାହାରିଯିବ, କିନ୍ତୁ ସେକଥା ନକରି ସେ ଅସହାୟ ଆଖିରେ ଆଉଜା ହୋଇଥିବା କବାଟ ଆଡ଼କୁ ଅନାଇଲା । ସ୍ୱାମୀଜୀ ଉଠିଯାଇ କବାଟଟିକୁ ବନ୍ଦ କରିଦେଲେ ।

ସୁହାସିନୀ ଲକ୍ଷ୍ୟ କରି ନଥିଲା ଯେ କେତେବେଳୁ ସ୍ୱାମୀଜୀ ଆବୃତ୍ତି କରିଥିବା ଶ୍ଳୋକର ଟେପ୍ ବାଜୁଥିଲା । ସେ ଆଗଭଳି ଦିବାନ ଉପରେ ବସିଥିଲା ଓ ସ୍ୱାମୀଜୀ ତା ପାଖରେ ବସିଥିଲେ । ଦେହରୁ ସବୁ ଉତ୍ତାପ ଓହ୍ଲାଇ ଯାଇଥିଲା ଏବଂ ଚାରିଆଡ଼ ଶାନ୍ତ ଓ ସମନ୍ୱିତ ଜଣା ପଡୁଥିଲା । ତା ହାତରେ ଏପର୍ଯ୍ୟନ୍ତ କାଗଜର ଟୁକୁଡ଼ାଟି ଥିଲା । ତାକୁ ସ୍ୱାମୀଜୀଙ୍କୁ ଦେଖାଇ ସୁହାସିନୀ କହିଲା, ଆପଣ କ'ଣ ସମସ୍ତଙ୍କୁ ଏଭଳି ବିଶେଷ ମନ୍ତ୍ର ଦିଅନ୍ତି ? ସ୍ୱାମୀଜୀ ହସିଲେ ; କହିଲେ, ଯେଉଁମାନେ ମତେ ଭଲ ଲାଗନ୍ତି, କେବଳ ସେଇମାନଙ୍କୁ । ସୁହାସିନୀ କହିଲା, ତମେ ଜଣେ ଠକ । ସ୍ୱାମୀଜୀ କହିଲେ, ତୁ ଆଜି ଦୁଇଟା ଜିନିଷ କରି ଦେଖାଇଲୁ, ଯାହା ଏ ପର୍ଯ୍ୟନ୍ତ କେହି କରି ନଥିଲେ । କେହି ଆଜିଯାଏଁ ମୋ ପାଦ ପାଖରେ ବସିବାକୁ ମନା କରି ନଥିଲା ଏବଂ କେହି ମତେ ତମେ ବୋଲି କହିବାର ସାହସ କରି ନଥିଲା ।

ମୁଁ ଭୁଲ୍ କହିଥିଲି, ସୁହାସିନୀ କହିଲା ଏବଂ ସ୍ୱାମୀଜୀଙ୍କର ଆହୁରି ପାଖକୁ ଘୁଞ୍ଚିବସିଲା । ହାତରେ ତାଙ୍କ ଗାଲରେ ମୃଦୁ ଆଘାତ କରି କହିଲା, ମୋର କହିବା ଉଚିତ ଥିଲା, ତୁ ଗୋଟିଏ ଅସଲ ଠକ, ବୁଝିଲୁ ?

ଠିକ୍ କହିଲୁ । ପୁଣି କେତେବେଳେ ଠକ ପାଖକୁ ଠକିଯିବାକୁ ଆସିବୁ ?

ଆଉ ନ ଆସି ବି ପାରେ । ତେବେ ତୋ ସଭାକୁ ନିଶ୍ଚେ ଆସିବି । ତୁ ଆଉ ଯାହା ହୋଇଥା ପଛେ, ଭାଷଣ ଭଲ ଦଉଚୁ, ମନେରଖିବା ଭଳି ।

ତାହେଲେ ମୁଁ ତୋ ପାଇଁ ଗୋଟାଏ କାମ ବି ଠିକ୍ କରିଦଉଛି । ମୋର ଭାଷଣର ଟେପ୍‌କୁ କାଗଜରେ ଲେଖି ତାକୁ ବହି ଛପାଇବାକୁ କହୁଛନ୍ତି । ତୁ ଯଦି ଏ

କାମଟା କରିଦିଅନ୍ତୁ, ଭଲ ହୁଅନ୍ତା । ଏଇ ଆଜ୍ଞରେ ଦେଖା କରିବାକୁ ବି ଅସୁବିଧା ହୁଅନ୍ତା ନାହିଁ ।

ତୁ ସତରେ ଗୋଟିଏ ଠକ ; ଠକ ଆଉ ଲମ୍ପଟ । ସୁହାସିନୀ ଉଠି ଠିଆ ହେଲା, ପର୍ସରେ କାଗଜଟିକୁ ରଖିଲା ଏବଂ ଯିବାକୁ ବାହାରିଲା । ସ୍ୱାମୀଜୀ ତାକୁ ଜଡ଼ାଇ ଧରି କହିଲେ, ପୁଣି ଶୀଘ୍ର ଆସିବୁ । ସୁହାସିନୀ କହିଲା, ଦେଖିବା ।

ବାହାରକୁ ବାହାରି ତା'ର ଭେଟ ହେଲା ଚିଫ୍ ଇଞ୍ଜିନିୟରଙ୍କ ଶାଳୀ ସହିତ । ମନକୁ କିପରି ସଂକୋଚ ଓ ଲଜ୍ଜା ଆସିଲା ତା'ର । କିନ୍ତୁ ସେ ସହଜରେ ମନରୁ ସେସବୁ କଥା ଦୂର କରିଦେଲା ଏବଂ ଠିକ୍ କଲା ଯେ ଘରେ ପହଞ୍ଚି ଦିନଟି କଥା ଭାବିବ ।

ଘରେ ପହଞ୍ଚି କିନ୍ତୁ ପିଲାଙ୍କ କଥା ବୁଝିବାରେ, ଅତିଥି ସତ୍କାର କରିବାରେ ଏବଂ ଅନ୍ୟ ଛୋଟ ଛୋଟ କଥାରେ ସେ ପୂରାପୂରି ବ୍ୟସ୍ତ ରହିଲା । ସନ୍ଧ୍ୟା ନ ହେଉଣୁ ପ୍ରଭାକର ଆସି ଘରେ ପହଞ୍ଚିଲା ; କହିଲା, ଆଜି ମୋ ଫାଇଲରେ ଅର୍ଡ଼ର ହୋଇଗଲା । ମୋ ନାଁରେ ଯାହାସବୁ ଅଭିଯୋଗ ଥିଲା, ସବୁ ବାତିଲ । ସୁହାସିନୀ ପଚାରିଲା, କେମିତି ହେଲା ଏ କାମଟା ? ପ୍ରଭାକର କହିଲା, ସ୍ୱାମୀଜୀ ନିଶ୍ଚୟ କିଛି କରିଥିବେ । ନହେଲେ ଏତେ ବର୍ଷ ଧରି ପଡ଼ିଥିବା ଫାଇଲ ମୁକୁଳିଲା କେମିତି ? ମୁଁ ଯାଉଛି ସ୍ୱାମୀଜୀଙ୍କୁ କିଛି ଟଙ୍କା ଦେଇଆସିବି । ତମେ ଚାଲ ମୋ ସାଙ୍ଗରେ ।

ତା'ର ଯିବାକୁ ମନ ହେଉଥିଲା, କିନ୍ତୁ କହିଲା, ମୁଁ ଖରାବେଳେ ଯାଇଥିଲି । ଆଉ ଇଚ୍ଛା ହେଉ ନାହିଁ ଯିବାପାଇଁ ।

ସାଧୁସନ୍ଥଙ୍କ ପାଖକୁ କଣ ଦିନରେ ଦି'ଥର ଯିବା ମନା ? ତମର ତ ଆଜିଯାଏଁ ବି ସ୍ୱାମୀଜୀଙ୍କ ଉପରେ ବିଶ୍ୱାସ ଆସିଲା ନାହିଁ । ତମକୁ ଯଦି କିଛି ଚମତ୍କାର କରି ଦେଖାନ୍ତି, ତାହେଲେ ହୁଏତ ତମେ ମାନିବ । ପାରିବାର ଲୋକ କିନ୍ତୁ ସ୍ୱାମୀଜୀ । ଦେଖୁନାହଁ କେମିତି ଅସାଧ କାମ କରି ଦେଖାଉଛନ୍ତି ?

ସୁହାସିନୀ ପ୍ରଭାକରକୁ ଜଣାଇଲା କିପରି ସେ ମଧ୍ୟ ସ୍ୱାମୀଜୀଙ୍କ ପାଖରୁ ଅଧାମନ୍ତ୍ର ପାଇଛି ଏବଂ ପୂରା ମନ୍ତ୍ରଟି ପାଇଁ ତାକୁ ପୁଣି ଯିବାକୁ ହେବ । ସ୍ୱାମୀଜୀଙ୍କ ଭାଷଣକୁ ଟେପରୁ ଲେଖିବା କଥା ମଧ୍ୟ ସେ ତାକୁ ଜଣାଇଲା । ପ୍ରଭାକର ଖୁସି ହେଲା ଏସବୁ ଶୁଣି । ଯାହାହଉ, ସ୍ୱାମୀଜୀଙ୍କ ପାଖରେ ଟିକିଏ ତ ମନ ଲାଗୁଛି ସୁହାସିନୀର । ସୁହାସିନୀ କିନ୍ତୁ ସେଦିନ ସନ୍ଧ୍ୟାରେ ଆଉ ପ୍ରଭାକର ସହିତ ଗଲା ନାହିଁ । ତା ଆରଦିନ ଖରାବେଳେ ସ୍ୱାମୀଜୀଙ୍କ ପାଖକୁ ଯିବ କି ନାହିଁ ଭାବୁଛି, ତା ପାଖରେ ସ୍ୱାମୀଜୀ ପଠାଇଥିବା ଟେପ୍ ସବୁ ଆସି ପହଞ୍ଚିଲା । ସୁହାସିନୀ ଘରେ ବସି ସେ ଟେପ୍ ସବୁକୁ ଶୁଣିଲା ଏବଂ କାଗଜ ଆଣି ତା ଦେହରୁ ଲେଖିବାକୁ ଚେଷ୍ଟା କଲା ।

ଏଥରକ ସେ ଆଉ ସ୍ୱାମୀଜୀଙ୍କ ସଭାକୁ ନ ଯାଇ ଟେପ୍‌ରୁ ଯାହା ସବୁ ଲେଖୁଥିଲା

ତାକୁ ସାଙ୍ଗରେ ନେଇ ଅଲଗାରେ ସ୍ୱାମୀଜୀଙ୍କ ସହିତ ଆଲୋଚନା କରୁଥିଲା । ସ୍ୱାମୀଜୀ ମଧ୍ୟ ତାଙ୍କ ଭାଷଣର ନିର୍ଘଣ୍ଟ ବଦଳାଇ ବେଶ୍ ସମୟ ଦେଉଥିଲେ ବହିଟି ପାଇଁ । ସ୍ୱାମୀଜୀଙ୍କ ସହିତ ନିରୋଳାରେ ବସି କଥାବାର୍ତ୍ତା କରିବାରେ ତା'ର କୌଣସି ସମସ୍ୟା ନଥିଲା ବର୍ତ୍ତମାନ । ପ୍ରଭାକର ମଧ୍ୟ ଖୁସି ହେଉଥିଲା ସୁହାସିନୀ ସ୍ୱାମୀଜୀଙ୍କର ଏଭଳି ଭକ୍ତ ହୋଇଯାଇଥିବାରୁ । ଆଜିକାଲି ଏକା ଥିଲାବେଳେ ସ୍ୱାମୀଜୀ ନିଜ କଥା ଶୁଣାଉଥିଲେ ସୁହାସିନୀକୁ । ଦିନେ ସୁହାସିନୀ ପର୍ସରୁ ମନ୍ତ୍ର କାଗଜଟି ଖୋଲି ସ୍ୱାମୀଜୀଙ୍କୁ ଦେଇ କହିଲା, ତୁ ପରା କହୁଥିଲୁ ଏଥିରୁ ଲେଖା ବାହାର କରିବୁ ? ଏଥର ତୋର ଚମତ୍କାର ଦେଖା । ସ୍ୱାମୀଜୀ ଉଠିଯାଇ ପୂଜା ଜାଗା ପାଖରୁ ଥଳିଟିଏ ଆଣି ସୁହାସିନୀର ହାତକୁ ନେଇ ତା ଭିତରେ ପୂରାଇଲେ । ଥଳି ଭିତରେ ଆଉ ଗୋଟିଏ ଗୁପ୍ତ ପକେଟ ଥିଲା ଏବଂ ସେଥିରେ ଏକାଭଳି ଆଉ ଗୋଟିଏ କାଗଜ ଥିଲା । ତାକୁ ଆଣି ସୁହାସିନୀ ପଢ଼ିଲା, ଏଥିରେ ଖାଲି ଓଁ ଶ୍ରୀ ଲେଖା ହୋଇଥିଲା । ସୁହାସିନୀ କହିଲା, ଏମିତି କେତେଦିନ ଆଉ ଲୋକଙ୍କୁ ଠକିବୁ ? ଦିନେ ନା ଦିନେ ଧରାପଡ଼ିବୁ ।

ସ୍ୱାମୀଜୀ କହିଲେ, କାଗଜରେ ଯେ ମନକୁ ମନ କିଛି ଲେଖାହେବା ଅସମ୍ଭବ, ଏକଥା କିଏ ନଜାଣେ ? କିନ୍ତୁ ସେମାନେ ବିଶ୍ୱାସ କରିବାକୁ ଚାହାଁନ୍ତି ଚମତ୍କାରରେ । ଯଦି ଏଭଳି ଠକାମିରେ କିଛି ଲୋକ ଉପକୃତ ହେଉଛନ୍ତି, କ୍ଷତି କ'ଣ ? ଡାକ୍ତରମାନେ ରୋଗୀଙ୍କ ମନ ବୁଝାଇବାକୁ ମିଛ ଔଷଧ ଦେଇ ରୋଗ ଭଲ କରିଦେବାର ଉଦାହରଣ ଅଛି ।

କିନ୍ତୁ ତୁ ଲୋକଙ୍କର କାମ ବି ତ କରାଇ ଦେଉଛୁ ! ଚିଫ୍ ଇଞ୍ଜିନିୟରଙ୍କ ବଦଳି ବନ୍ଦ କରାଇଦେଲୁ ; ମୋର ସ୍ୱାମୀଙ୍କର ଫାଇଲ ବାହାର କରି ଆଣିଲୁ ।

ଏ ତ ଆହୁରି ସହଜ କଥା । ଏତେ ବଡ଼ ବଡ଼ ଲୋକ ଯେତେବେଳେ ମୋ ପାଖକୁ ଭକ୍ତ ହୋଇ ଆସୁଛନ୍ତି, ତାଙ୍କ ପାଖରେ ଏଇ ଛୋଟ ଛୋଟ କାମ କରାଇ ହେବନି ?

ଆଉ ଡାକ୍ତରଖାନା ନାଁରେ ଏଇ ଯୋଉ ଟଙ୍କା ପଇସା ସଂଗ୍ରହ କରୁଚୁ ?

ତୁ ବିଶ୍ୱାସ କର, ମୋର ଜୀବନରେ ବୋଧହୁଏ ଏଇଟା ହିଁ ସବୁଠାରୁ ବେଶି ନିଷ୍କପଟ କାମ । ସବୁ ଟଙ୍କା ସତରେ ଯିବ ହସ୍‌ପିଟାଲ ପାଇଁ । ମୋର ତ ନିଜ ପାଇଁ କିଛି ଅସୁବିଧା ନାହିଁ ଭକ୍ତଙ୍କ ଦୟାରୁ । ଭାବିଲି ଅନ୍ତତଃ କିଛି ଭଲ କାମ କରିଯାଏ ।

ସ୍ୱାମୀଜୀ ଉଠିଯାଇ ଗୋଟିଏ ବାକ୍ସ ଆଣି ଦେଖାଇଲେ । ସେଥିରେ ଟଙ୍କା ଓ ଅଳଙ୍କାର ଭର୍ତ୍ତି ହୋଇଥିଲା । ସୁହାସିନୀ ନିଜ ହାତରୁ ପଟେ ଚୁଡ଼ି ଖୋଲି ସେଥିରେ ପକାଇଲା । କହିଲା, ହେଲା, ମୁଁ ତୋ କଥା ବିଶ୍ୱାସ କଲି । ଏଇଟା ହେଲା ତୋ ହସ୍‌ପିଟାଲ ପାଇଁ ମୋର ଦାନ । କ'ଣ ହସ୍‌ପିଟାଲ ଖୋଲିଲେ ମତେ ଡାକିବୁ କି ନାହିଁ ?

ସ୍ୱାମୀଜୀ ଗମ୍ଭୀର ହୋଇଗଲେ । କହିଲେ, ସବୁ ଠିକ୍ ଚାଲିଥିଲା ; କିନ୍ତୁ ଏବେ ମୁଁ ଗୋଟାଏ ସମସ୍ୟା ଭିତରେ ପଡ଼ିଯାଇଛି । ଜାଣେନା କ'ଣ ହେବ । ପୁଣି କେବେ ସୁବିଧା ହେଲେ ତତେ କହିବି ।

ଏହାପରେ କିନ୍ତୁ ସ୍ୱାମୀଜୀ ତାକୁ ଦେଖା କରିବା ପାଇଁ ଆଉ ବିଶେଷ ସମୟ ଦେଲେ ନାହିଁ ଏବଂ ଯେତେବେଳେ ତାଙ୍କ ସାଙ୍ଗରେ ଦେଖା ହେଉଥିଲା, ସେଠାରେ ବହିର ପ୍ରକାଶକ ନ ହେଲେ ଆଉ କେହି ରହୁଥିଲେ । ପ୍ରଥମେ କିଛିଦିନ ସୁହାସିନୀ ଅସ୍ଥିର ହେଲା, ସ୍ୱାମୀଜୀଙ୍କୁ ମନେ ମନେ ଗାଳିଦେଲା, କିନ୍ତୁ ପୁଣି ଭାବିଲା ଯେ ନିଶ୍ଚୟ କିଛି ସମସ୍ୟା ଉପୁଜିଛି । ଏଇଭଳି କେତେଦିନ ପରେ ଦିନେ ଅଫିସରୁ ଫେରି ପ୍ରଭାକର ସମ୍ବାଦ ଦେଲା ଯେ କାହାକୁ କିଛି ନ କହି ସ୍ୱାମୀଜୀ ସହର ଛାଡ଼ି ଚାଲିଯାଇଛନ୍ତି ।

ମୁଁ ଜାଣିଥିଲି ଏମିତି ଗୋଟାଏ କିଛି ନିଶ୍ଚୟ ହେବ ବୋଲି, ପ୍ରଭାକର ମନ୍ତବ୍ୟ କଲା ।

ସୁହାସିନୀ ଏକଥା ଶୁଣି ବିରକ୍ତ ହୋଇ କହିଲା, କାହିଁ ଆଗରୁ ତ କିଛି କହୁ ନଥିଲ ଏମିତି ହବ ବୋଲି ?

ଏ ସାଧୁ ସନ୍ୟାସୀମାନେ ସମସ୍ତେ ଏମିତି । ଉପରେ ଯେତେ ଯାହା ଭଲ କଥା କହନ୍ତୁ ପଛେ, ଭିତରେ ଟଙ୍କାପଇସା, ସ୍ତ୍ରୀ କାରବାର ।

ପ୍ରଭାକର ଭାବିଥିଲା ଏ କଥା ଉପରେ ସୁହାସିନୀ ସ୍ୱାମୀଜୀଙ୍କ ପକ୍ଷ ନେଇ ଯୁକ୍ତି କରିବ । ତାକୁ ଚୁପ୍ ରହିବା ଦେଖି କହିଲା, କାହିଁକି, ତମେ ତ ପ୍ରଥମେ ପ୍ରଥମେ ଯିବାକୁ ଅମଙ୍ଗ ହେଉଥିଲ ତାଙ୍କୁ ଠକ ବୋଲି କହି । ପରେ କେମିତି ତାଙ୍କ ଆଡ଼କୁ ଢଳିଲ ?

ପ୍ରଭାକର ତାକୁ ବାଦବିସମ୍ବାଦ ଭିତରକୁ ଟାଣିବାକୁ ଚେଷ୍ଟା କରୁଥିଲା, କିନ୍ତୁ ସୁହାସିନୀ ଚାହୁଁ ନଥିଲା ବର୍ତ୍ତମାନ ତା ଭିତରେ ପଶିବା ପାଇଁ । ସେ କହିଲା, ମୁଁ ତାଙ୍କର ପ୍ରବଚନ ଶୁଣି ଜାଣିଲି ଯେ ତାଙ୍କର ଅନେକ ଜ୍ଞାନ ଅଛି । ତାଙ୍କ ସାଙ୍ଗରେ ଯେତେବେଳେ କଥାବାର୍ତ୍ତା କଲି, ବୁଝିଲି ଯେ ସେ ସଚ୍ଚୋଟ ଲୋକ ।

ପ୍ରଭାକର ଯେତେବେଳେ କହିଲା ସ୍ୱାମୀଜୀ ସ୍ତ୍ରୀଲୋକମାନଙ୍କୁ ମନ୍ତ୍ର ଦେବା ବିଷୟରେ ଲୋକେ ନାନା କଥା କହୁଛନ୍ତି, ସୁହାସିନୀ ସେଠାରୁ ଉଠି ଚାଲିଗଲା ।

ପରଦିନ ସକାଳର ଖବରକାଗଜରେ ଏ ବିଷୟରେ ପ୍ରଥମ ପୃଷ୍ଠାରେ ସମ୍ବାଦ ବାହାରିଲା 'ଟଙ୍କା ସୁନା ନେଇ ବାବାଜି ଚମ୍ପଟ' ଶିରୋନାମାରେ । ଏଥିରେ ସ୍ୱାମୀଜୀଙ୍କ କ୍ରିୟାକଳାପରେ କଟୁ ସମାଲୋଚନା କରାହୋଇଥିଲା ଏବଂ ସେ ରାଜନୀତିକ ନେତାମାନଙ୍କର ବାହୁଚ୍ଛାୟା ତଳେ ରହି ଲୋକମାନଙ୍କୁ ଠକିଥିବାର ବିବରଣୀ ଥିଲା । ଏକ କାଳ୍ପନିକ ଡାକ୍ତରଖାନା ତିଆରି କରିବା ପାଇଁ ବ୍ୟବସାୟୀମାନେ ସ୍ୱାମୀଜୀଙ୍କୁ ଟଙ୍କା ଦେଇଥିଲେ ଏବଂ ଅନେକ ସ୍ତ୍ରୀଲୋକ ମଧ୍ୟ ଏଥିପାଇଁ ନିଜର ଅଳଙ୍କାର ଦେଇଥିଲେ ;

ପୋଲିସ କୁଆଡ଼େ ତା'ର ବିଶଦ ବିବରଣ ସଂଗ୍ରହ କରୁଥିଲେ । ଶେଷରେ ଏ କଥା ଲେଖା ଥିଲା ଯେ ସ୍ୱାମୀଜୀଙ୍କ ଫେରାର ହୋଇଯିବା ସଙ୍ଗେ ସଙ୍ଗେ ସହରର ଗୋଟିଏ ସମ୍ଭ୍ରାନ୍ତ ପରିବାରର ଜଣେ ମହିଳା ମଧ୍ୟ ନିଖୋଜ ହୋଇଯାଇଛନ୍ତି ।

ସେଦିନ ଅଫିସରୁ ଫୋନ କରି ପ୍ରଭାକର ସୁହାସିନୀକୁ ପଚାରିଲା, ତମକୁ ଯଦି ପୋଲିସ ଆସି ପଚାରନ୍ତି, ତମେ କହିଦବ କିଛି ଜାଣ ନାହିଁ ବୋଲି । ସୁହାସିନୀ କହିଲା, କୋଉ ବିଷୟରେ ? ପ୍ରଭାକର ବିରକ୍ତ ହୋଇ ଜବାବ ଦେଲା, ସେଇ ବାବାଜି କଥା, ଆଉ କୋଉ ବିଷୟରେ ? ମୁଁ ସଞ୍ଜବେଳେ ଆସି ସବୁ କଥା କହିବି । ପୋଲିସ ଅବଶ୍ୟ ତା ଘରକୁ ଆସିଲେ ନାହିଁ, କିନ୍ତୁ ସେଦିନ ଅଫିସରୁ ଫେରି ଚା' ପିଉ ପିଉ ପ୍ରଭାକର ଅନେକ ତଥ୍ୟ ଦେଲା । ଡାକ୍ତରଖାନା ପାଇଁ ସଂଗ୍ରହ କରିଥିବା ଟଙ୍କାପଇସା, ଅଳଙ୍କାର ସହିତ ଚିଫ୍ ଇଞ୍ଜିନିୟରଙ୍କ ଶାଳୀକୁ ନେଇ ସ୍ୱାମୀଜୀ ପଳାଇ ଯାଇଛନ୍ତି । ଅଫିସର ଓ ବ୍ୟବସାୟୀମାନେ ନିଜର କଳାଧନ ଦେଇଥିବାରୁ ପୋଲିସରେ ସେକଥା କହିପାରୁ ନାହାଁନ୍ତି, କିନ୍ତୁ କେତେ ସ୍ତ୍ରୀଲୋକ କୁଆଡ଼େ ବୟାନ ଦେଲେଣି ଯେ ସ୍ୱାମୀଜୀ ମନ୍ତ୍ର କରି ତାଙ୍କ ଦେହରୁ ଅଳଙ୍କାର ବାହାର କରି ନେଇଛନ୍ତି । ଏତିକି କହି ପ୍ରଭାକର ସୁହାସିନୀ କାନରେ ଓ ହାତରେ ଲଗାଇଥିବା ଅଳଙ୍କାର ଆଡ଼କୁ ଚାହିଁଲା । ପଚାରିଲା, ତମ ପାଖରୁ ସେ କିଛି ନେଇଯାଇ ନାହିଁ ତ ? ସୁହାସିନୀ କହିଲା, ମୁଁ ତାଙ୍କୁ ପଟେ ସୁନାଚୁଡ଼ି ଦେଇଥିଲି । ପ୍ରଭାକର ଆଉ କ'ଣ କହିବାକୁ ଯାଉଥିଲା, ଏହି ସମୟରେ ପିଲାମାନେ ପହଞ୍ଚିଯିବାରୁ କଥାବାର୍ତ୍ତା ବନ୍ଦ ରହିଲା । କିନ୍ତୁ ଶୋଇଲାବେଳେ ପୁଣି ସେ କଥା ଉଠାଇ ପ୍ରଭାକର ପଚାରିଲା, ଲୋକଟା କ'ଣ ମନ୍ତ୍ର କରି ଚୁଡ଼ି ନେଇଗଲା ? ସୁହାସିନୀ କହିଲା, ନା, ମୁଁ ନିଜ ଇଚ୍ଛାରେ ତାଙ୍କୁ ସେଇଟି ଦେଇଥିଲି । ବିରକ୍ତ ହୋଇ ପ୍ରଭାକର କହିଲା, ତମ ଭଳି ବୋକା କେହି ନାହାଁନ୍ତି । ଅନ୍ୟମାନେ ସିନା ମନ୍ତ୍ରଯୋଗୁଁ ବାଧ୍ୟ ହୋଇ ଟଙ୍କା ସୁନା ଦେଲେ, ତମେ କ'ଣ ନା ନିଜେ ତା ହାତକୁ ଅଳଙ୍କାରଟା ବଢ଼ାଇଦେଲ । ସୁହାସିନୀ କହିଲା, ସେ ଚୁଡ଼ି ମୁଁ ବାପଘରୁ ଆଣିଥିଲି ।

ସ୍ୱାମୀଜୀଙ୍କ ବିଷୟରେ ପ୍ରଭାକର ପ୍ରତିଦିନ ନୂଆ ନୂଆ ଖବର ଆଣୁଥିଲା । ତା'ର କିଏ ପୋଲିସ ଅଫିସର ସାଙ୍ଗ ତାକୁ ଏ ଭିତରେ ସ୍ୱାମୀଜୀଙ୍କର କୋଉ କୋଉ ସ୍ତ୍ରୀଲୋକଙ୍କ ସହିତ ସଂପର୍କ ଥିଲା ତା'ର ତାଲିକା ଦେଇଥିଲା । ପ୍ରଭାକର ଖୁସି ହୋଇଥିଲା ଯେ ଏଥିରେ ସୁହାସିନୀର ନାଁ ନଥିଲା, ଯଦିଓ ସମସ୍ତେ ଜାଣିଥିଲେ ସେ ସ୍ୱାମୀଜୀଙ୍କ ସହିତ ମିଶି ତାଙ୍କର ବହିର କାମ କରୁଥିଲା । ତା'ର ଅବଶ୍ୟ ସନ୍ଦେହ ହେଉଥିଲା ଯେ ପୋଲିସ ଅଫିସର ହୁଏତ ସଂକୋଚବଶତଃ ବନ୍ଧୁପତ୍ନୀର ନାଁଟି ତାକୁ କହିନାହିଁ । ତେବେ ସୁହାସିନୀ ଉପରେ ପ୍ରଭାକରର ସଂପୂର୍ଣ୍ଣ ଆସ୍ଥା ଥିଲା, ଯଦିଓ ବାବାଜିଙ୍କୁ ଚୁଡ଼ିପଟେ ଦେଇଥିବା କଥାକୁ ସେ କ୍ଷମା କରିପାରୁ ନଥିଲା ।

ଶେଷରେ ଦିନେ ପୋଲିସ ସ୍ୱାମୀଜୀଙ୍କୁ ଧରି ଆଣିଲେ, ଟଙ୍କାସୁନା ଜବତ ହେଲା ଏବଂ ଚିଫ୍ ଇଞ୍ଜିନିୟରଙ୍କ ଶାଳୀ ଘରକୁ ଫେରିଆସିଲା । ଶାଳୀ ପୋଲିସକୁ ବୟାନ ଦେଲା ଯେ ମନ୍ତୁରା ଔଷଧ ଖୁଆଇ ସ୍ୱାମୀଜୀ ତାକୁ ବଶୀଭୂତ କରି ନେଇଯାଇଥିଲେ । ଏପର୍ଯ୍ୟନ୍ତ ଯେଉଁ ସ୍ତ୍ରୀଲୋକମାନେ ଲୋକନିନ୍ଦା ଭୟରେ ଚୁପ୍ ରହିଥିଲେ, ସେମାନେ ମଧ୍ୟ ନିଜ ନିଜର ଅଳଙ୍କାର ଫେରିପାଇବାକୁ ଥାନାରେ ଯାଇ ପହଞ୍ଚିଲେ ଏବଂ ସ୍ୱାମୀଜୀ ସେମାନଙ୍କୁ ମନ୍ତ୍ର କରିଥିବାର ଦ୍ୱାହି ଦେଲେ । ପ୍ରଭାକର ଯେତେବେଳେ ସୁହାସିନୀକୁ ଚୁଡ଼ି ଫେରାଇ ଆଣିବା କଥା କହିଲା, ସୁହାସିନୀ କହିଲା, ମୁଁ ଦାନ କରିଥିବା ଜିନିଷ ଫେରାଇନେବି କାହିଁକି ? ପ୍ରଭାକର କିନ୍ତୁ ସୁନାଚୁଡ଼ିର ଲୋଭ ଛାଡ଼ି ପାରିଲା ନାହିଁ ଏବଂ ତା'ର ପୋଲିସ ସାଙ୍ଗକୁ ପଚାରିଲା କୋଉ ଅଳଙ୍କାର ସନାକ୍ତ ନ ହୋଇ ପଡ଼ିରହିଚି ବୋଲି । ସେ କିନ୍ତୁ ଆସି ଖବର ଦେଲା ଯେ ସବୁ ଅଳଙ୍କାରର ମାଲିକାଣୀ ମିଳି ସାରିଲେଣି ।

ପୋଲିସ ତଦାରଖ ସହିତ କିଛିଦିନ ପର୍ଯ୍ୟନ୍ତ ସହରରେ ସ୍ୱାମୀଜୀଙ୍କର ଅପକୀର୍ତ୍ତି ଓ ବିଶେଷରେ ଯୌନ ବ୍ୟଭିଚାରର ଚର୍ଚ୍ଚା ଚାଲିଲା । ହୁଏତ ଜିନିଷଟି ଆପେ ଆପେ ଥଣ୍ଡା ପଡ଼ିଯାଇଥା'ନ୍ତା, କିନ୍ତୁ ଏଇ ସମୟରେ ପ୍ରକାଶକ ସ୍ୱାମୀଜୀଙ୍କ ପ୍ରବଚନ ବହିଟି ବାହାର କରିଦେଲେ । ଏଥିରେ ମୁଖବନ୍ଧରେ ସ୍ୱାମୀଜୀ ସୁହାସିନୀକୁ ଧନ୍ୟବାଦ ଦେଇଥିଲେ ତାଙ୍କୁ ସାହାଯ୍ୟ କରିଥିବା ପାଇଁ । ପ୍ରଭାକର ଯୋଉଦିନ ଜଣେ ସାଙ୍ଗ ପାଖରେ ଏ ବହିଟି ଦେଖିଲା, ତା'ର ମୁହଁ ଲାଲ ପଡ଼ିଗଲା । ଲୋକେ ଭିତରେ ଭିତରେ ସ୍ୱାମୀଜୀଙ୍କ ସାଙ୍ଗରେ କୋଉ ସ୍ତ୍ରୀର କ'ଣ ସଂପର୍କ ସେ ବିଷୟରେ ଚୁପଚାପ କଥା ହେଉଥିବା ଅଲଗା କଥା ଥିଲା । ଏବେ କିନ୍ତୁ ଛପା ବହିରେ ସ୍ୱାମୀଜୀଙ୍କ ନାଁ ସାଙ୍ଗରେ ତା'ର ସ୍ତ୍ରୀର ନାଁ ଯୋଡ଼ା ହୋଇ କଥା ବଜାରରେ ।

ସେଦିନ ଘରକୁ ଫେରି ସୁହାସିନୀ ଆଡ଼କୁ ବହିଟି ଫିଙ୍ଗିଦେଇ ପ୍ରଭାକର କହିଲା, ଆମ ନାଁ ଏବେ ଦାଣ୍ଡରେ ପଡ଼ି ହାଟରେ ଗଡ଼ିବ ।

ସୁହାସିନୀ ବହିଟିକୁ ଓଲଟାଇ ଦେଖିଲା । କହିଲା, ସୁନ୍ଦର ହୋଇଛି ବହିଟି ।

ତମ ନାଁ ସେଥିରେ ଲେଖାହୋଇଚି, ଦେଖିଲ ତ ?

ହଁ, ମତେ ଏ ମୁଖବନ୍ଧ ବି ସ୍ୱାମୀଜୀ ଦେଖାଇଥିଲେ ପ୍ରେସ୍‌କୁ ପଠାଇବା ପୂର୍ବରୁ । ଠିକ୍ ଲେଖାହୋଇଚି ଏଥିରେ । ମୁଁ ତ ସାହାଯ୍ୟ କରିଥିଲି ଏ ପ୍ରବଚନ ସବୁକୁ ଟେପ୍‌ରୁ ଉତାରିବାରେ । ତମେ ତ ସେତେବେଳେ କହୁଥିଲ ଏ ଗୋଟିଏ ଭଲକାମ କରୁଚି ବୋଲି ।

ସେତେବେଳେ ଆଉ ଏତେବେଳେ ଅଲଗା । ସେତେବେଳେ କିଏ ଜାଣିଥିଲା ବାବାଜି ବେଶଭୂଷା ଭିତରେ ଏମିତି ଗୋଟିଏ ବଦମାସ ଲୋକ ଅଛି ବୋଲି ? ଏବେ ସମସ୍ତେ ବୁଝିଗଲେଣି ସ୍ୱାମୀଜୀ ପ୍ରକୃତରେ କ'ଣ ।

ତା ବୋଲି କ'ଣ ଏଇ ପ୍ରବଚନ ସବୁ ଭୁଲ ହୋଇଯିବ ? ଅନେକ ଭଲକଥା ଅଛି ଏଥିରେ । ମୁଁ ଭାବୁଛି ସମସ୍ତେ ଏ ବହିଟିକୁ ପଢ଼ିବା ଉଚିତ ।

ତମେ ଆଜିକାଲି କଥା କଥାରେ ସ୍ୱାମୀଜୀଙ୍କ ପକ୍ଷ ନେଉଛ । ଅନ୍ୟ ମାଇକିନାଙ୍କ ଭଳି ତମର ବି କ'ଣ ତା ସାଙ୍ଗରେ ସଂପର୍କ ଥିଲା ନା କ'ଣ ?

ହଁ, ସହଜ ଭାବରେ ଉତ୍ତର ଦେଲା ସୁହାସିନୀ ।

ତମେ ମତେ ଏ କଥା ଆଗରୁ କହି ନଥିଲ, ସାମାନ୍ୟ ଚଢ଼ା ଗଳାରେ କହିଲା ପ୍ରଭାକର ।

ତମେ କେବେ ଏ କଥା ପଚାରି ନଥିଲ, ସେଥିପାଇଁ ।

ସେ ବାବାଜି ତମକୁ ନିଶ୍ଚୟ ମନ୍ତ୍ର କରି ଦେଇଥିଲା ।

ନା, ମତେ କେହି ମନ୍ତ୍ର କରି ନଥିଲେ । ମୁଁ ଯାହା କଲି ଭାବିଚିନ୍ତି ସ୍ୱଇଚ୍ଛାରେ କଲି । ସୁହାସିନୀ ବେଶ୍ ଜୋରରେ କହିଲା ଏଇ କେଇପଦ ।

ପ୍ରଭାକର ହଠାତ ସେଠାରୁ ଉଠି ଚାଲିଗଲା ଏବଂ ସେଦିନ ଅଫିସରୁ ଫେରିଲା ଅନେକ ଡେରିରେ । ତା'ପର ଗୋଟିଏ ପୂରା ଦିନ ସେ ସୁହାସିନୀ ସହିତ କଥାବାର୍ତ୍ତା ବନ୍ଦ କରିଦେଲା । ତା ଆରଦିନ ଯେତେବେଳେ ପ୍ରଭାକର ଅଫିସରୁ ଫେରିଲା, ପିଲାମାନେ ଘରେ ନଥିଲେ । ସୁହାସିନୀ ହାତରୁ ଚା'କପ ନେଇ ପିଉ ପିଉ ପ୍ରଭାକର କହିଲା, ତମେ ସିନା ଜାଣିପାରୁ ନାହଁ, ତମକୁ ନିଶ୍ଚୟ ବାବାଜି କ'ଣ ମନ୍ତ୍ର କରି ଦେଇଥିଲା । ଏତେ ସ୍ତ୍ରୀଲୋକଙ୍କୁ ଯେତେବେଳେ ମନ୍ତ୍ର କଲା, ତମକୁ କ'ଣ ଛାଡ଼ି ଦେଇଥିବ ? ସୁହାସିନୀ କିଛି ଜବାବ ନ ଦେଇ ଚୁପ୍ ରହିଲା ।

ପ୍ରଭାକର କହିଲା, ଶଳା ବାବାଜିକୁ ତନ୍ତ୍ରମନ୍ତ୍ର ଗୁଣିଗାରେଡ଼ି ସବୁ ଭଲଭାବେ ଜଣା । ହଁ ମନେପଡ଼ିଲା । ତମେ ତ ନିଜେ କହୁଥିଲ ତମକୁ ସେ କ'ଣ ମନ୍ତ୍ର ଲେଖି ଦେଇଥିଲା ବୋଲି । ଶଳା ମତେ ବି ଖଣ୍ଡେ କାଗଜରେ ମନ୍ତ୍ର ବୋଲି କ'ଣ ଲେଖି ଦେଇଥିଲା । କହିଥିଲା କ'ଣ ନା ମନ୍ତ୍ରକୁ ଗୁପ୍ତ ରଖିବ ; କାହାକୁ କହିଲେ କ୍ଷତି ହେବ । ପ୍ରଭାକର ଉଠିଯାଇ ଆଲମାରି ଭିତରୁ ଛୋଟ କାଗଜଟିକୁ ଆଣି ସୁହାସିନୀ ଆଗରେ ଖୋଲି ଧରିଲା । କହିଲା, ମୁଁ ସମସ୍ତଙ୍କୁ ଏଇ କାଗଜ ନେଇ ଦେଖାଇବି । ଦେଖିବି ଶଳା ମୋର କ'ଣ କ୍ଷତି ହେବ । ସୁହାସିନୀ କିଛି ନକହି ଚୁପ ରହିଲା ।

ପ୍ରଭାକର କହିଲା କାଇଁ, ତମକୁ କ'ଣ ମନ୍ତ୍ର ଲେଖି ଦେଇଥିଲା ପରା, ଦେଖି । ତମକୁ ବି କହିଥିବ କାହାକୁ ନ ଦେଖାଇବାକୁ । କିଛି ମାନିବା ଦରକାର ନାହିଁ ତା କଥାକୁ । ଆଣ ଦେଖିବା ସେ କାଗଜ । ଚୁପ୍‌ଚାପ୍ ଉଠିଯାଇ ସୁହାସିନୀ ସେଇ କିଛି ବି ଲେଖା ନଥିବା ସାଦା କାଗଜ ଟୁକୁଡ଼ାଟିକୁ ଆଣି ପ୍ରଭାକର ହାତକୁ ବଢ଼ାଇଦେଲା ।

# କୁଶୀଲବ

ଥାନାର ଅପ୍ରୀତିକର ଚଉକି ଉପରେ ବସି ବଳଭଦ୍ର ଟୋକା ଅଫିସରକୁ ସଂପୂର୍ଣ୍ଣ ଅବଜ୍ଞା ଓ ସାମାନ୍ୟ ଦୟାର ସହିତ ଅନାଇଲା । ନିଜେ ଜଣେ ଜଣାଶୁଣା ଲେଖକ ହେବାର ଅଭିମାନ ନେଇ ସେ ଦେଖୁଥିଲା ପୋଲିସ ଚାକିରିରେ ଏପର୍ଯ୍ୟନ୍ତ ବର୍ବର ହୋଇଯାଇ ନଥିବା ଦାରୋଗାକୁ । ଦାରୋଗା ମଧ୍ୟ ତା ସହିତ ସଂଭ୍ରମର ସହିତ ବ୍ୟବହାର କରୁଥିଲା ଏବଂ ତାକୁ ବସିବାକୁ କହି ଫାଇଲ ପଢୁଥିଲା । ଫାଇଲ ବନ୍ଦ କରି ସେ ବଳଭଦ୍ରକୁ କହିଲା, ଆପଣଙ୍କୁ ଅସମୟରେ ଏଠାକୁ ଡାକି ଆଣିଥିବାରୁ ମୁଁ ଦୁଃଖିତ ; ତେବେ ଗୋଟିଏ କେସ୍‌ରେ ଆମେ ଆପଣଙ୍କ ସାହାଯ୍ୟ ଚାହୁଁଥିବାରୁ ଆପଣଙ୍କୁ କଷ୍ଟ ଦେଲୁ । ଦାରୋଗା ଯଦିଓ ଭଦ୍ର ଓ ନରମ ଭାବରେ ଏକଥା କହିଲା, ବଳଭଦ୍ର ସାମାନ୍ୟ ବିରକ୍ତିର ସହିତ ରୁକ୍ଷ ସ୍ୱରରେ କହିଲା, କ'ଣ ପଚାରିବାର ଅଛି, ପଚାରନ୍ତୁ ।

ଫାଇଲ ଖୋଲି ଦାରୋଗା କାଗଜରୁ କ'ଣ ଦେଖି ତାକୁ ପ୍ରଶ୍ନ କଲା, ଆପଣ ଜନକରାଜ ହରଣଚାଳ ବାବଦରେ କିଛି ଜାଣନ୍ତି ? ପ୍ରାୟ ଚାରିମାସ ତଳେ ରାଉରକେଲାରେ ହୋଇଥିବା ଏଇ ହରଣଚାଳ ବିଷୟରେ କିଛିଦିନ ଧରି ଖବରକାଗଜରେ କ୍ରମାଗତ ବାହାରୁଥିଲା ଏବଂ ଅନ୍ୟମାନଙ୍କ ଭଳି ବଳଭଦ୍ର ମଧ୍ୟ ସାଧାରଣ ଆଗ୍ରହର ସହିତ ତା ପଢ଼ିଥିଲା । ତେବେ ଏଭଳି ଶସ୍ତା ସନସନୀ ଖବରରେ ରୁଚି ରଖିବା ଜଣେ ଗମ୍ଭୀର ଲେଖକୋଚିତ ହେବ ନାହିଁ ଭାବି ସେ ରୋକଠୋକ କହିଲା, ନା । ଦାରୋଗା କହିଲା, ଖବରକାଗଜରେ ଏ ବିଷୟରେ ବାହାରିଥିଲା ; ହୁଏତ ଆପଣଙ୍କ ଆଖିରେ ପଡ଼ିଥାଇପାରେ । ବଳଭଦ୍ର କହିଲା, ମୁଁ ଖବରକାଗଜରେ ଏଭଳି ଖବର ସବୁ ଅଦେଖା କରିଦିଏ । ଯଦିଓ ସେ ଏ ପର୍ଯ୍ୟନ୍ତ ବୁଝିପାରୁ ନଥିଲା ତାକୁ କାହିଁକି ଏ ହରଣଚାଳ ବିଷୟରେ ପ୍ରଶ୍ନ କରାହେଉଛି, ସେ ଭାବଭଙ୍ଗୀ କଲା ଯେପରିକି ସେ ଏ ବିଷୟରେ କିଛି ଜାଣି ନଥିବାରୁ ଥାନାରେ ତା'ର କାମ ସରିଯାଇଛି ଏବଂ ତାକୁ ଏଥରକ ଉଠିବାର ଅନୁମତି ଦିଆଯାଉ ।

ବଳଭଦ୍ର ହାବଭାବକୁ ସଂପୂର୍ଣ୍ଣ ଅବଜ୍ଞା କରି ଦାରୋଗା ପୁଣି ଫାଇଲରେ ମନ ଦେଲା ଏବଂ କିଛି ସମୟ ପରେ ମୁହଁ ଉଠାଇ କହିଲା, ଆପଣଙ୍କ ପାଇଁ ତା'

ମଗାଇବି ? ବଳଭଦ୍ର ନା କରିବାରୁ ଦାରୋଗା ଫାଇଲରୁ ଗୋଟିଏ କାଗଜ ବାହାର କରି ତା ଆଡ଼କୁ ବଢ଼ାଇଦେଲା । ଏଇଟି ଗୋଟିଏ ଖବରକାଗଜର ଅଂଶ ଥିଲା ଯେଉଁଥିରେ 'ଅଭିନବ ଉପାୟରେ ବ୍ୟବସାୟୀ ହରଣଚାଳ' ଶୀର୍ଷକର ସମ୍ବାଦଟି ଥିଲା । ବଳଭଦ୍ର କିଛି କହିବାକୁ ଯାଉଛି, ଦାରୋଗା କହିଲା, ଏଇଟିକୁ ପ୍ରଥମେ ଟିକିଏ ଭଲଭାବେ ଦେଖି ନିଅନ୍ତୁ ; ଏ ସଂପର୍କରେ ଆପଣଙ୍କୁ କିଛି ପ୍ରଶ୍ନ କରିବାର ଅଛି ।

ବଳଭଦ୍ର ବୁଝିଲା ଯେ ଏ ସବୁରେ କିଛି ଗୋଟାଏ ରହସ୍ୟ ଅଛି ଯାହା ତା'ର ବୁଝିବାର ବାହାରେ । ତେଣୁ ସେ ସାମାନ୍ୟ ସତର୍କ ହେଲା ଏବଂ ଆଗରୁ ପଢ଼ିଥିବା ଖବରଟିକୁ ଆଉଥରେ ପଢ଼ିଲା । ଦିନ ଦିପହରେ କିପରି ଦୁଇଜଣ ଭଦ୍ରବ୍ୟକ୍ତି ଜଣେ ସ୍ତ୍ରୀଲୋକ ବ୍ୟବସାୟୀର ଅଫିସକୁ ଆସି ସବୁ ଲୋକଙ୍କ ଆଗରେ ତାକୁ ସାଙ୍ଗରେ ନେଇ ନିଜର ଧଳା ମାରୁତି ଭ୍ୟାନରେ ଉଭାନ ହୋଇଗଲେ, ତା'ର ବିସ୍ତୃତ ବର୍ଣ୍ଣନା ଥିଲା ଖବରକାଗଜରେ । ସେଥିରେ ଯଦିଓ ନୂଆ କିଛି ଜାଣିବାର ନଥିଲା, ବଳଭଦ୍ର ତାକୁ ସାବଧାନତାର ସହିତ ପଢ଼ିଲା ହୁଏତ ସେଥିରେ କୌଣସି ନିହିତ ତାତ୍ପର୍ଯ୍ୟ ଥାଇପାରେ । ତେବେ ତାକୁ ଆଦୌ ଜଣାଗଲା ନାହିଁ କ'ଣ ଥାଇପାରେ ଏଇ ସମ୍ବାଦ ସହିତ ତା'ର ସଂପର୍କ ।

ଯାଦୁକର ଖେଳ ଦେଖାଇବା ଭଙ୍ଗୀରେ ଦାରୋଗା ତା ହାତରୁ ଖବରକାଗଜଟି ନେଇ ଯତ୍ନରେ ଫାଇଲରେ ରଖିଲା ଏବଂ ଫାଇଲରୁ ଗୋଟିଏ ବହି ବାହାର କରି ବଳଭଦ୍ର ହାତକୁ ବଢ଼ାଇ ଦେଲା । ଏଇଟି ବଳଭଦ୍ରର ସଦ୍ୟ ପ୍ରକାଶିତ ଗଳ୍ପ-ସଂକଳନ ଥିଲା । ଏଇଟିକୁ ଦେଖି ବଳଭଦ୍ର ହଠାତ ବୁଝିପାରିଲା କାହିଁକି ରାଉରକେଲାରେ ଜନକରାଜ ହରଣଚାଳ ଘଟଣା ପାଇଁ ତାକୁ ଥାନାକୁ ଡକାଯାଇଛି ।

ଦାରୋଗା ତାକୁ ପଚାରିଲା କୀର୍ତ୍ତିମୁଖର ଅର୍ଥ କ'ଣ ? ସାହିତ୍ୟିକ ଜୀବନରେ ବଳଭଦ୍ର ଗୋଟିଏ ଛଦ୍ମନାମ ମଧ୍ୟ ରଖିଥିଲା । ନିଜର ଅସଲ ନାଁରେ ସେ ଗମ୍ଭୀର ଅଭିଜାତ ବୌଦ୍ଧିକ ଗଳ୍ପ ଉପନ୍ୟାସ ଲେଖୁଥିଲା, ଯେଉଁଥିରୁ ସେ ଆଦୌ ପଇସା ପାଉ ନଥିଲା । ଭଲ ବିକ୍ରି ହେବା ବହି ଯଥା ଡିଟେକ୍‌ଟିଭ ଗଳ୍ପ, ହାଲୁକା ଅଶ୍ଳୀଳ ଉପନ୍ୟାସ, ଶସ୍ତା ରାଜନୈତିକ କାହାଣୀ ଓ ରୋମାଞ୍ଚକାରୀ ଥ୍ରିଲର ସେ ଲେଖୁଥିଲା କୀର୍ତ୍ତିମୁଖ ନାଁରେ । ଦାରୋଗାକୁ ପ୍ରଭାବିତ କରିବା ପାଇଁ ସେ କହିଲା, ଓଡ଼ିଶାର ଶିଳ୍ପଶାସ୍ତ୍ର ଅନୁସାରେ କୀର୍ତ୍ତିମୁଖ ହେଉଛି ବକ୍ରମସ୍ତକର କେନ୍ଦ୍ରବୃତ୍ତରେ ଥିବା ମନୁଷ୍ୟ ମୁଖାକୃତି । ଏହି ସଂଜ୍ଞାଟିକୁ ସେ ଅନେକ ଦିନ ତଳେ ମୁଖସ୍ଥ କରି ରଖିଥିଲା କେତେବେଳେ ଦରକାରରେ ଆସିବ ବୋଲି ; ତେବେ ତାକୁ ଯଦି କେହି ବକ୍ରମସ୍ତକ କ'ଣ ବୋଲି ପଚାରିଥା'ନ୍ତା, ତା ପାଖରେ ସେ କଥାର ଉତ୍ତର ନଥିଲା । ଦାରୋଗା କିନ୍ତୁ ତା କଥାକୁ ଏଡ଼ାଇ ଦେଲା ଏବଂ କହିଲା, ଆପଣ କୀର୍ତ୍ତିମୁଖ ନାଁରେ ବି ଲେଖନ୍ତି ?

ମୁହୂର୍ତ୍ତେ ପାଇଁ ବଳଭଦ୍ର ଭାବିଥିଲା କହିବ ନା, କିନ୍ତୁ ସେ ବର୍ତ୍ତମାନ ଦେଖୁଥିଲା ଯେ ଜିନିଷଟିକୁ ସେ ଯେତେ ସହଜ ବୋଲି ଭାବିଥିଲା ତା ନୁହେଁ । ସେ କୌଣସି ଗୋଟିଏ ବୃହତ୍ତର ରହସ୍ୟ ଜାଲରେ ଜଡ଼ିତ ଯାହା ଏ ପର୍ଯ୍ୟନ୍ତ ତା'ର ଅଜଣା । ତାକୁ ସେଥିପାଇଁ ସତର୍କ ହେବାକୁ ହେବ । ତେଣୁ ସେ ମୁହଁ ନୁଆଇଁ ହଁ ଭରିଲା ।

ଦାରୋଗା କିଛି ସମୟ ତା ମୁହଁକୁ ଅନାଇ ରହିଲା ଏବଂ ଫାଇଲରୁ ଦେଖି ତାକୁ ପଚାରିଲା, ଏ ସବୁ ଗଳ୍ପ ଆପଣ କେବେ ଲେଖିଥିଲେ ? ବଳଭଦ୍ର ବୁଝିପାରିଲା ସମସ୍ୟାଟି କ'ଣ । ଏଇ ସଂକଳନରେ ଗୋଟିଏ ଗପ ଥିଲା ହରଣଚାଳ ବିଷୟରେ । ସେଥିରେ ମଧ୍ୟ ଜଣେ ବ୍ୟବସାୟୀ ହରଣଚାଳ ହୋଇଯାଇଥିଲେ ଏକ ଅଭିନବ ଉପାୟରେ ଏବଂ ବଳଭଦ୍ରର ଯେତେଦୂର ମନେପଡୁଥିଲା, ରାଉରକେଲା ଘଟଣା ସହିତ ତା ଗପର ଅନେକ ସାମଞ୍ଜସ୍ୟ ଥିଲା । ସେ ବୁଝୁଥିଲା ଯେ ସେ ବର୍ତ୍ତମାନ ଏକ ଗୋହତ୍ୟା ବ୍ରହ୍ମହତ୍ୟା ପରିସ୍ଥିତିରେ ଅଛି । ଯଦି ସେ ଗପଟିକୁ ରାଉରକେଲା ଘଟଣା ପୂର୍ବରୁ ଲେଖିଥିଲା, ଏକଥା କୁହାଯାଇ ପାରିବ ଯେ ଅପହରଣକାରୀମାନେ ସେଥିରୁ ପ୍ରେରଣା ପାଇଥିଲେ । ଯଦି ସେ ଘଟଣା ପରେ ଗପଟି ଲେଖିଚି, ତେବେ ସେ ଅପହରଣକାରୀଙ୍କ ବିଷୟରେ ଜାଣିଥିବାର ନିର୍ଣ୍ଣୟ କରାଯାଇ ପାରିବ । ବିଷମ ସମସ୍ୟାରେ ପଡ଼ିଲା ବଳଭଦ୍ର । ବହିଟିକୁ ଓଲଟପାଲଟ କରି ସେ ବିବାଦାସ୍ପଦ ଗଳ୍ପଟିର କିଛି ଅଂଶ ପୁଣି ଥରେ ପଢ଼ିଲା । ତା ଗପରେ ମଧ୍ୟ ଦୁଇଜଣ ପୁରୁଷ ଓ ଜଣେ ସୁନ୍ଦରୀ ନାରୀ ବ୍ୟବସାୟୀଙ୍କ ଅଫିସକୁ ଯାଇଥିବାର ବର୍ଣ୍ଣନା ଥିଲା । ବାସ୍ତବ ଯେ କଳ୍ପନାର ଏତେ ନିକଟତର ପହଞ୍ଚିପାରେ ତା'ର ଧାରଣା ନ ଥିଲା । ଏଇ ସଦ୍ୟ ପଢ଼ିଥିବା ଖବରକାଗଜ ରିପୋର୍ଟ ପରେ ତା'ର ନିଜ ଗପର ଅନୁଚ୍ଛେଦ ତା'ପାଇଁ ରୋମାଞ୍ଚ ଆଣିଦେଲା । ବହିଟିକୁ ବନ୍ଦ କରି ସେ ଦାରୋଗାକୁ ଫେରାଇଦେଲା ଏବଂ କହିଲା, ନା, ମୋର ମନେ ନାହିଁ ଏ ଗପ ମୁଁ କେବେ ଲେଖିଥିଲି । ଦାରୋଗା ଯତ୍ନରେ ନେଇ ବହିଟିକୁ ଫାଇଲ ଭିତରେ ରଖିଲା, ଉଠି ଠିଆ ହୋଇ ତା ହାତରେ ହାତ ମିଳାଇ କହିଲା, ମୁଁ ଦୁଃଖିତ ଯେ ଆମେ ଆପଣଙ୍କୁ କଷ୍ଟ ଦେଲୁ । ଆପଣ ଘରକୁ ଯାଇ ମନେ ପକାଇବାକୁ ଚେଷ୍ଟା କରିବେ ଗଳ୍ପଟି କେବେ ଲେଖିଥିଲେ । ଆମର ଅନୁସନ୍ଧାନ ଜାରି ରହିଛି । ଆମେ ପୁଣି ଆପଣଙ୍କ ସହିତ ଯୋଗାଯୋଗ କରିବୁ ।

ଘରକୁ ଫେରିବା ବେଳେ ବଳଭଦ୍ର ମନେପକାଇବାକୁ ଚେଷ୍ଟା କଲା ସେ କେବେ ଲେଖିଥିଲା ଗପଟି । କଦାପି ନୁହେଁ ରାଉରକେଲା ଘଟଣା ପରେ । ଏଇଟି ତା'ର ଅନେକ ଦିନ ତଳର ଲେଖା । ଟେଲିଭିଜନରେ ସେ କୋଉ ଆମେରିକାନ ଫିଲ୍ମ ଦେଖି ଉଦ୍‌ବୁଦ୍ଧ ହୋଇଥିଲା ଗପଟି ଲେଖିବା ପାଇଁ । ଦିନେ ସଂଧ୍ୟାବେଳେ ଟିଭି ଖୋଲୁ ଖୋଲୁ ସେ ଅଧାରୁ ଦେଖିଥିଲା ଫିଲ୍ମଟିକୁ । ସେ ଫିଲ୍ମର ନାଁ ବି କ'ଣ ତାକୁ ଜଣା

ନଥିଲା । ତେବେ କାହାଣୀ ଚିତ୍ତାକର୍ଷକ ଥିଲା ଏବଂ ଚିତ୍ରଟି ଦେଖୁ ଦେଖୁ ବଳଭଦ୍ର ଠିକ୍ କରି ନେଇଥିଲା ଯେ ଏହାକୁ ଆଧାର କରି ସେ ଗୋଟିଏ ଲୋମହର୍ଷକ କାହାଣୀ ଲେଖିବ । ଏଇ ବିଦେଶୀ ଫିଲ୍ମଟି ହିଁ ଥିଲା ତା'ର ଗପର ଉତ୍ସ । ତେବେ ସେ ଏତେ କଥା କହିବାକୁ ଚାହୁଁ ନଥିଲା ପୋଲିସକୁ । କ'ଣ ତାଙ୍କର ଜାଣିବା ଦରକାର ସେ କେବେ ଲେଖିଥିଲା ଗପଟିକୁ ଏବଂ କାହାର ପ୍ରେରଣାରେ ? ବିଶେଷରେ, ଜଣେ ଲେଖକ ଭାବରେ ସେ ଜଣାଇବାକୁ ଚାହୁଁ ନଥିଲା ଯେ ତା'ର ଗପଟି କେଉଁ ବିଦେଶୀ ଚଳଚ୍ଚିତ୍ରର ଅନୁକୃତି ମାତ୍ର ।

ଏଭଳି ଏକ ଛାୟାରେ ଲେଖା ଗପ ଯେ ତାକୁ କେବେ ବିପଦରେ ପକାଇପାରେ ତା ବଳଭଦ୍ରର କଳ୍ପନାର ବାହାରେ ଥିଲା । ଏ କଥାରୁ ତା'ର ମନକୁ ଆସିଲା ଗପର ଚରିତ୍ର ଓ ବାସ୍ତବ ଚରିତ୍ର ଭିତରେ ଥିବା ସାଦୃଶ୍ୟ କଥା । ତା'ର ଗପରେ ଥିବା କାଳ୍ପନିକ ଚରିତ୍ର ସହିତ ଯଦି ବାସ୍ତବ ଜଗତର କୌଣସି ଚରିତ୍ର ମିଶିଗଲା, ଲେଖକ ସେଥିରେ କ'ଣ କରିବ ? ତା ଗପର ଘଟଣାବଳୀ ଯଦି କେଉଁଠାରେ ସତକୁ ସତ ପୁନରାବୃତ୍ତ ହେଲା, ସେଥିପାଇଁ ଲେଖକ ବିଚରା କାହିଁକି ଦାୟୀ ହେବ ?

ସେଦିନ ହଠାତ ତା ଘରକୁ ଆସି ମିତା ତାକୁ ପଚାରିଲା, ମାମୁ, ତମେ କୁଆଡ଼େ ମୋ ନାଁରେ ଗପ ଲେଖିଥିଲ ? ଏଭଳି ପ୍ରଶ୍ନରେ ଆଶ୍ଚର୍ଯ୍ୟ ହେଲା ବଳଭଦ୍ର ଏବଂ ବିବ୍ରତ ବି । ସେ କ'ଣ ଏମିତି କିଛି କୋଉ ଝିଅ ନାଁରେ ଖରାପ କରି ଲେଖି ଦେଇଛି ଯାହାର ଜବାବ ମାଗୁଛି ମିତା ? ସେ କହିଲା, କି ଗପ ? ମୁଁ କାହିଁକି ତୋ ନାଁରେ ଗପ ଲେଖିବି ? ମିତା କହିଲା, ମୁଁ ସବୁବେଳେ ଚାକରଙ୍କ ସହିତ ଝକଝକ କରେ ବୋଲି ମତେ ମା' ଖୁଣୁଥାଏ ; ସେଇ କହୁଥିଲା ତମେ କୁଆଡ଼େ ଏଇକଥା ନେଇ ଗପ ଲେଖିଚ । ବଳଭଦ୍ରର ମନେପଡ଼ିଲା ଯେ ସେ ଏଭଳି ଏକ ଗପ ଲେଖିଥିଲା ; ତେବେ ଏ ଗପ ଲେଖିଲାବେଳେ ସେ ମିତା କଥା ସ୍ୱପ୍ନରେ ବି ଭାବି ନଥିଲା । ସେ ଖୋଜାଖୋଜି କରି ତା'ର ଗୋଟିଏ ପୁରୁଣା ବହି ବାହାର କଲା ଏବଂ ସେଥିରୁ ଗପଟିକୁ ଖୋଲି ମିତା ହାତରେ ଦେଲା । କହିଲା, ମୁଁ ଜଣେ ମାଲିକାଣୀ ଆଉ ତାଙ୍କ ଚାକରଙ୍କ କଥା ଲେଖିଥିଲି, କିନ୍ତୁ ତା ତୋର କଥା ହେବ କାହିଁକି ? ତୁ ନିଜେ ପଢ଼ି ଦେଖ । ସେ ଭାବିଥିଲା ମିତା ଏତିକିରେ ସନ୍ତୁଷ୍ଟ ହୋଇଯିବ, କିନ୍ତୁ ମିତା ସତକୁ ସତ ତା ହାତରୁ ବହିଟି ନେଇ ଚଉକିରେ ବସି ତାକୁ ପଢ଼ିବାରେ ଲାଗିଲା । ଏବଂ ବଳଭଦ୍ର ଖୁସି ହେଲା ଯେ ଅନ୍ତତଃ ଜଣେ କେହି ତା'ର ପୁରୁଣା ଗପକୁ ଆଗ୍ରହର ସହିତ ପଢ଼ୁଛି ।

କିନ୍ତୁ ଗପଟିକୁ ପଢ଼ିସାରି ମିତା ରାଗିମାଗି ତା ଆଗରେ ଠିଆ ହେଲା, କହିଲା, ଏଇଟା ତ ମୋରି ନାଁରେ ଲେଖାହୋଇଛି । ବଳଭଦ୍ର ତା ହାତରୁ ବହିଟି ନେଇ ଗପ ଉପରେ ଆଖି ବୁଲାଇ କହିଲା, ଏ ତ ସବୁ ମଧ୍ୟବିତ୍ତ ଘରଣୀଙ୍କ କଥା । କୋଉ ଘରେ

ମାଲିକାଣୀ ଚାକର ସହିତ ଲାଗିନଥା'ନ୍ତି ? ମିତା କହିଲା, ଆଉ ତମେ ଯୋଉ ଆଦିବାସୀ ଚାକର କଥା ଲେଖିଚ ? ବଳଭଦ୍ର କହିଲା, ଅଧା ଘରେ ଖୋଜିଲେ ଆଦିବାସୀ ଚାକର ମିଳିବେ । ଏଇ ଆମ ପଡ଼ୋଶୀଙ୍କୁ ଦେଖୁନୁ ? ତାଙ୍କର ଆଦିବାସୀ ଚାକର ଅଛି କି ନାହିଁ ? ମିତା ତଥାପି ସନ୍ତୁଷ୍ଟ ହେଲା ନାହିଁ ; କହିଲା, କେତେଜଣଙ୍କ ଘରେ ବୁଲା ବୋଲି ଚାକର ଅଛନ୍ତି ? ବଳଭଦ୍ର ଜବାବ ଦବାକୁ ଯାଉଥିଲା ଯେ ଚରିତ୍ରର ନାଁ ଦେଲାବେଳକୁ ଉପଯୁକ୍ତ ନାଁଟିଏ ଖୋଜିବାକୁ ପଡ଼େ ; ଚାକର ନାଁ ପାଇଁ ସେ ଯଦି ବୁଲା ନ ଲେଖିଥା'ନ୍ତା, ତେବେ ହୁଏତ ନଟ ଲେଖିଥା'ନ୍ତା । ଏକଥା କହିବାକୁ ଗଲାବେଳେ ତା'ର ହଠାତ ମନେପଡ଼ିଲା ଯେ ମିତା ପାଖରେ ସତକୁ ସତ ନଟ ବୋଲି ଚାକର ପିଲାଟିଏ ବି ଥିଲା । ସେ ଏକଥା ନ କହି ବହିର ପ୍ରକାଶନ ସମୟ ଦେଖିଲା ଓ ଖୁସି ହୋଇ ମିତାକୁ କହିଲା, ପ୍ରମାଣ ମିଳିଗଲା । ଏ ଗପ ସେ ବିଷୟରେ ହୋଇନପାରେ କାରଣ ଏ ଗପ ଲେଖା ହେଲାବେଳକୁ ତୁ ବାହା ବି ହୋଇ ନ ଥିଲୁ, ଘରଣୀ ହେବା ତ ଦୂରର କଥା ।

ତା ହାତରୁ ବହିଟି ନେଇ ମିତା ଏପାଖ ସେପାଖ ଦେଖିଲା । କହିଲା, ତମେ କ'ଣ ସର୍ବଜ୍ଞ ଯେ ଆଗରୁ ଜାଣିଦେଲ ମୁଁ ବାହା ହୋଇ ଘର ସଂସାର କଲେ ଚାକରଙ୍କ ସାଙ୍ଗେ ଝକଝକ କରିବି, ମୋର ଗୋଟେ ଆଦିବାସୀ ଚାକର ଥିବ, ଆଉ ତା'ର ଚାକରର ନାଁ ଥିବ ବୁଲା ? ବଳଭଦ୍ର ତାକୁ ଦେଖାଇଲା ଯେ ବହିର ପ୍ରଥମ ସଂସ୍କରଣ ଛପା ହୋଇଥିଲା ତା ବାହାହେବା ପୂର୍ବରୁ । ମିତା କହିଲା, ବହିରେ ତାରିଖ ଭୁଲ ଛପା ହୋଇଯାଇଥିବ । ନହେଲେ ବହିର ଦ୍ୱିତୀୟ ସଂସ୍କରଣରେ ତମେ ଏଇ ଗପଟା ମିଶାଇ ଦେଇଥିବ । ସେଦିନ ଖବର ବାହାରିଥିଲା ଯେ ଗୋଟିଏ ଗପକୁ ଦି'ଟା ବହିରେ ଛପାଇ ଥିବାରୁ କିଏ ଜଣେ ପାଠକ ଲେଖକ ନାଁରେ କେସ୍ କରିଥିଲା ।

ଯାହାହେଉ, ଭାଣିଜୀ ମିତାକୁ ବୁଝାଇ ପାରି ନଥିଲା ବଳଭଦ୍ର । ତାହେଲେ ସେ ପୋଲିସ ଅଫିସରକୁ କିଭଳି ବୁଝାଇବ ଯେ ତା'ର ହରଣଚାଳ ଗପଟି ଅନେକ ଦିନ ତଳେ ଲେଖା ହୋଇଥିଲା ? ରାତିରେ ଶୋଇଲାବେଳେ ବି ଏ ଚିନ୍ତା ତା'ର ମନ ଭିତରୁ ଗଲା ନାହିଁ । ଲୋକେ ଭାବନ୍ତି ଯେ ଲେଖକ ଯାହାସବୁ ଲେଖୁଛି ନିଶ୍ଚୟ କୌଣସି ସତ ଚରିତ୍ର ବା ସତ ଘଟଣା ଉପରେ ଆଧାରିତ । ସେମାନେ ଜାଣନ୍ତି ନାହିଁ ଯେ ତା'ର ଗୋଟିଏ କ୍ଷୟହୀନ ସମ୍ବଳ ଅଛି ଯାହା ହେଉଛି ତା'ର କଳ୍ପନା ।

ମିତା ଭଳି ଆହୁରି ଅନେକ ଲୋକ ବିଭିନ୍ନ ସମୟରେ ଆସି ତା'ର ସାମନା କରିଛନ୍ତି । ତା'ର ଗପରେ ଭଲ ଚରିତ୍ର ଅଛନ୍ତି, ଖରାପ ଚରିତ୍ର ବି ଅଛନ୍ତି । କେବେ କିନ୍ତୁ କେହି ତାକୁ ଆସି କହିନାହାଁନ୍ତି, ଆପଣ ଯେଉଁ ପରୋପକାରୀ ଆଦର୍ଶ ଚରିତ୍ର କଥା ଲେଖିଛନ୍ତି, ସେଇଟି ଆପଣ ନିଶ୍ଚେ ମତେ ଆଖି ଆଗରେ ରଖି ଲେଖିଛନ୍ତି ମୁଁ ସେଥିପାଇଁ

ଆପଣଙ୍କ ପାଖରେ କୃତଜ୍ଞ । କିନ୍ତୁ ସେ କୌଣସି ଲାଞ୍ଚଖୋର ଇଞ୍ଜିନିୟରଙ୍କ ବିଷୟରେ ଲେଖିଲା ମାତ୍ରେ ତା'ର ଅଧାଡଜନ ଇଞ୍ଜିନିୟର ବନ୍ଧୁ ତା'ର ଶତ୍ରୁ ହୋଇଯା'ନ୍ତି, ଯେପରିକି ସେ ସେଇ ବନ୍ଧୁ ବିଶେଷଙ୍କ ବିଷୟରେ ହିଁ ଗପଟି ଲେଖିଛି । ବିକାଶ ତା'ର ପିଲାଦିନ ସ୍କୁଲର ସାଙ୍ଗ ସେ ବି ଶେଷରେ ତାକୁ ଭୁଲ ବୁଝିଲା । କୋଉ ପତ୍ରିକାରେ ତା'ର ଗପ ପଢ଼ି ଆସି ତାକୁ କହିଲା, ମୁଁ ତୋ ପାଖରୁ ଏକଥା ଆଶା କରି ନଥିଲି । ବଳଭଦ୍ର କହିଲା, ଭାଇ, ସରି । ତୁ ଯୋଉ ତମ ଡିପାର୍ଟମେଣ୍ଟର ଭ୍ରଷ୍ଟାଚାର କଥା କହୁଥିଲୁ, ସେ ବିଷୟରେ ଲେଖିବା ପୂର୍ବରୁ ତତେ ଟିକିଏ ପଚାରି ନେଇଥିଲେ ଭଲ ହୋଇଥା'ନ୍ତା । ବିକାଶ ବିରକ୍ତ ହୋଇ କହିଲା, କ'ଣ ଭଲ ହୋଇଥା'ନ୍ତା ? ମୁଁ ତ ତୋ ଯୋଗୁଁ ସର୍ବସାଧାରଣରେ ବଦନାମ ହୋଇଗଲି ।

ବଦନାମ ତ ସେଇମାନେ ହେବେ ଯେଉଁମାନେ ଭ୍ରଷ୍ଟାଚାର କରୁଛନ୍ତି । ତୁ ବି ତ କହୁଥିଲୁ କେମିତି ଖୋଲାଖୋଲି ଚୋରି ଚାଲିଛି ତମ ବିଭାଗରେ ।

ହେଲା ଯେ, ତୁ ଯେମିତି ଲେଖିଚୁ, ଲୋକେ ତ ମତେ ହିଁ ବୁଝିବେ । ଆକାଶ କ'ଣ କାହାର ନାଁ ହେଲାଣି ନା କ'ଣ ? ସମସ୍ତେ ଭାବିବେ ସେ ଲୋକ ହଉଚି ଇଞ୍ଜିନିୟର ବିକାଶ ।

ବଳଭଦ୍ର ତାକୁ କହିବାକୁ ଯାଇଥିଲା ଯେ ସେ ଅନ୍ତତଃ ତିନିଜଣ ଆକାଶଙ୍କୁ ଜାଣେ, କିନ୍ତୁ ସେଥିରୁ ନିବୃତ୍ତ ରହିଲା । ବିକାଶକୁ ଖୁସି କରିବାକୁ ସେ ମିଛର ଆଶ୍ରୟ ନେଇ କହିଲା, ମୁଁ ଯେତେବେଳେ ଭ୍ରଷ୍ଟ ଇଞ୍ଜିନିୟର ବିଷୟରେ ଲେଖିଲି, ଆଖି ଆଗରେ ରଖିଲି ତୁ ଯୋଉ ସୁପରିଟେଣ୍ଡିଂ ଇଞ୍ଜିନିୟର ବିନୟ କଥା କହୁଥିଲୁ, ତାକୁ ।

ତାହେଲେ ତୁ ସେ ଲୋକର ନାଁ ବିନୟ ନରଖି ଆକାଶ ରଖିଲୁ କାହିଁକି ? ପୁଣି ତୁ ବ୍ୟାରେଜ ବିଷୟରେ ଲେଖିଚୁ, ସେଇଟା ତ ମୋର ସିଧାସଳଖ ଦାୟିତ୍ୱ ।

ଏପରି ଭାବରେ ଅସନ୍ତୁଷ୍ଟ ହୋଇ ସେଦିନ ବିକାଶ ତା ପାଖରୁ ବିଦାୟ ନେଲା ଏବଂ ସେମାନଙ୍କର ଚାଳିଶ ବର୍ଷର ବନ୍ଧୁତ୍ୱ ଆସ୍ତେ ଆସ୍ତେ ଭାଙ୍ଗିଗଲା, ତା'ର ସେଇ ଗୋଟିଏ ଗପଯୋଗୁଁ ।

ଥାନାରୁ ଯଦିଓ ତା ପାଖକୁ ଆଉ ଫୋନ ଆସିଲା ନାହିଁ, ସେ ମନ ଭିତରେ ବିଚଳିତ ରହିଲା । ତା'ର ଆଗ୍ରହ ହେଲା ଜାଣିବା ପାଇଁ ହରଣଚାନ୍ଦର ଏଯାବତ୍ ପରିସ୍ଥିତି କ'ଣ, କିନ୍ତୁ ଆଜିକାଲି ଆଉ ଖବରକାଗଜରେ ସେଇ ପୁରୁଣା ଘଟଣା ବିଷୟରେ କିଛି ବାହାରୁ ନଥିଲା, ଯଦିଓ ଜନକରାଜଙ୍କର ଏ ପର୍ଯ୍ୟନ୍ତ କୌଣସି ସନ୍ଧାନ ମିଳି ନଥିଲା । ସେ ଯେଉଁ ଜଣେ ଦୁଇଜଣଙ୍କୁ ପଚାରିଲା, ସେମାନେ ଏ ବିଷୟରେ କିଛି ଜାଣି ନଥିଲେ ତଥା ଆଗ୍ରହୀ ନଥିଲେ । ଶେଷକୁ ଅସ୍ଥିର ହୋଇ ବଳଭଦ୍ର ନିଜେ ଥାନାବାବୁଙ୍କୁ ଫୋନ କଲା ।

ସେଇ ଦାରୋଗାଙ୍କୁ ପାଇବା ପରେ ବଳଭଦ୍ର କହିଲା, ଆପଣ ମତେ କହିଥିଲେ ସେ ଗପଟି କେବେ ଲେଖିଛି ମନେ ପଡ଼ିଲେ... । ତାକୁ ଆଉ କହିବାକୁ ନ ଦେଇ ଦାରୋଗା କହିଲା, ମୁଁ ବି ଆପଣଙ୍କୁ ଫୋନ କରିବାକୁ ଯାଉଥିଲି । ଯଦି ଅସୁବିଧା ନହୁଏ ଆପଣଙ୍କୁ ପୁଣି ଟିକିଏ ଥାନାକୁ ଆସିବାକୁ ହେବ । ବଳଭଦ୍ର ପଚାରିଲା, କେତେବେଳେ ? ଦାରୋଗା କହିଲା, ବର୍ତ୍ତମାନ ଚାଲିଆସନ୍ତୁ । ବଳଭଦ୍ର ଭାବିଲା, କହିବ ବର୍ତ୍ତମାନ ତାକୁ ସୁବିଧା ହେବ ନାହିଁ ପରେ ସୁବିଧା ଦେଖି ଆସିବ, କିନ୍ତୁ ପୁଣି ଭାବି କହିଲା, ଆଚ୍ଛା ହଉ ।

ସେ ବର୍ତ୍ତମାନ ସେଇ ପୂର୍ବର ଚଉକି ଉପରେ ବସିଥିଲା ଏବଂ ଦାରୋଗା ପୂର୍ବପରି ସାମନାରେ ଫାଇଲକୁ ରଖି ତା ଭିତରୁ ଗୋଟାଏ କାଗଜ ପଢୁଥିଲା । ବଳଭଦ୍ର ସାମାନ୍ୟ ଭାଙ୍ଗିଯାଇଥିଲା ଏବଂ ଏଥରକ ଆଉ ପ୍ରତ୍ୟୟର ସହିତ ନିଜର ପରିସ୍ଥିତିକୁ ଦେଖୁ ନଥିଲା । ଦାରୋଗା ଯେତେବେଳେ ତାକୁ ଚା' କଥା ପଚାରିଲା, ବଳଭଦ୍ର ହଁ ଭରି ତାକୁ ଧନ୍ୟବାଦ ଦେଲା ।

ଦାରୋଗା ଫାଇଲରୁ ବହିଟି ବାହାର କରି ସେଥିରୁ ନିର୍ଦ୍ଦିଷ୍ଟ ଗପଟି ଥିବା ପୃଷ୍ଠା ଖୋଲିଲା ଓ ପଚାରିଲା, ଏ ଗପଟି ଆପଣ କେବେ ଲେଖିଥିଲେ କହୁଥିଲେ ? ବଳଭଦ୍ର କହିଲା, ମୋର ଠିକ୍ ମନେ ନାହିଁ, ତେବେ ନିଶ୍ଚୟ ଏଇଟି ଲେଖିଥିଲି କିଛିବର୍ଷ ତଳେ । ଏଇ ସମୟରେ ଚା' ଆସିଲା । ଦାରୋଗା କହିଲା, ନିଅନ୍ତୁ, ଚା' ପିଅନ୍ତୁ ଏବଂ ଟିକିଏ କଷ୍ଟ କରି ଭାବିବାକୁ ଚେଷ୍ଟା କରନ୍ତୁ । ବହିଟି ଏଇମାତ୍ର ପ୍ରକାଶ ପାଇଥିବାରୁ ଯେ କେହି ଭାବିବ ଯେ ଗଳ୍ପଟି ଏବେର ଲେଖା । ଏକଥାର ସିଧାସଳଖ ଜବାବ ନଦେଇ ବଳଭଦ୍ର ଚା' ପିଇଲା ଓ ଭାବିବାର ଛଳନା କଲା । ଚା' ପିଇସାରି କପ୍‌କୁ ଆଡ଼େଇ ରଖି ସେ କହିବାକୁ ଯାଉଛି ଦାରୋଗା କହିଲା, ଆପଣ ସମାଜର ଜଣେ ସମ୍ମାନିତ ଲୋକ । ଆପଣଙ୍କୁ ମୁଁ ଆମର ସନ୍ଦେହ କଥାଟା କହିଦିଏ । ଆପଣଙ୍କ ଗଳ୍ପରେ ଏପରି ଅନେକ ବିସ୍ତାରିତ ବିବରଣୀ ଅଛି ଯାହା ଅପରାଧୀ ଓ ପୋଲିସ ବ୍ୟତୀତ ଆଉ ସମସ୍ତଙ୍କୁ ଅଜଣା । ଏ ବିବରଣୀ ସର୍ବସାଧାରଣରେ ପ୍ରକାଶ କରାଯାଇ ନାହିଁ, ଅନୁସଂଧାନରେ ବ୍ୟାଘାତ ହେବ ବୋଲି । ଆପଣଙ୍କ ଗଳ୍ପରେ ଅପରାଧୀମାନେ ଧଳା ମାରୁତି ଭ୍ୟାନ୍ ବ୍ୟବହାର କରିଥିବା କଥା ଅଛି ଏବଂ ରାଉରକେଲାରେ ସେମାନେ ସତକୁ ସତ ଏଭଳି ଗାଡ଼ି ବ୍ୟବହାର କରିଥିଲେ । ଏକଥା କିପରି ହେଲା ?

ବଳଭଦ୍ର କହିଲା, ଏହାର ଉତ୍ତର ଅତି ସହଜ । ଖବରକାଗଜରେ ଅପରାଧ ବିବରଣ ପଢ଼ିଲେ ଜଣାଯିବ ଯେ ଅଧିକାଂଶ ଅପରାଧରେ ଗୋଟିଏ ଧଳା ମାରୁତି ଭ୍ୟାନ୍‌ର ଉପସ୍ଥିତି ଥାଏ । ଦାରୋଗା କହିଲା, ଆପଣଙ୍କ କଥା ବି ଠିକ୍ । ଏଥରକ ଆପଣଙ୍କ ଗଳ୍ପର ଆଉ ଗୋଟିଏ ବିବରଣକୁ ଆସନ୍ତୁ । ହରଣଚାଲ ପରେ ଜନକରାଜ

ଟେବୁଲ ଉପରୁ ଆଉ ଗୋଟିଏ ବନ୍ଦ ଲଫାପା ମିଳିଥିଲା ଯାହା ଭିତରେ କେବଳ ଗୋଟିଏ ସାଦା କାଗଜ ଥିଲା । ଏ ବିଷୟଟି ପୋଲିସ ଓ ଆପଣଙ୍କ ବ୍ୟତୀତ ଆଉ କାହାରିକି ଜଣା ନାହିଁ । ଆମର ପ୍ରଶ୍ନ ହେଉଛି, ଆପଣ ଏ କଥାଟି ଜାଣିଲେ କିପରି ?

ବଳଭଦ୍ର ଏକଥାର ହଠାତ ଜବାବ ଦେଇପାରିଲା ନାହିଁ । ଟିକିଏ ସମୟ ପରେ କହିଲା, ମତେ ଜଣା ନଥିଲା ଯେ ରାଉରକେଲା କେସ୍‌ରେ ଏଭଳି ଏକ ଲଫାପା ମିଳିଥିଲା ବୋଲି । ମୁଁ ଏକଥା ମନରୁ କଳ୍ପନା କରି ଲେଖିଥିଲି । ତା ବ୍ୟତୀତ, ମୁଁ ଆପଣଙ୍କୁ ଆଗରୁ କହିଛି ଯେ ମୋର ଗପଟି ଲେଖା ହୋଇଥିଲା ରାଉରକେଲା ଘଟଣାର ଅନେକ ପୂର୍ବରୁ ।

ତାହେଲେ କ'ଣ ଏକଥା ସମ୍ଭବ ଯେ, ଦାରୋଗା ପଚାରିଲା, ଏଇ ଗପଟି ଦ୍ୱାରା ଅନୁପ୍ରାଣିତ ହୋଇ ରାଉରକେଲା ହରଣଚାଳ ହେଲା ? ବଳଭଦ୍ର ଏଇ ପ୍ରଶ୍ନଟି ପାଇଁ ପ୍ରସ୍ତୁତ ଥିଲା । ସେ କହିଲା, ଅନେକ ସମୟରେ କୌଣସି କାହାଣୀର କାଳ୍ପନିକ ବିବରଣୀ ଭବିଷ୍ୟତରେ ଠିକ୍ ସେହିପରି ଭାବରେ ଘଟିଥାଏ । ତେବେ ସଂପୂର୍ଣ୍ଣ ଆକସ୍ମିକତା ବ୍ୟତୀତ ତା'ର ଆଉ କୌଣସି ବ୍ୟାଖ୍ୟା ନାହିଁ । ଟାଇଟାନିକ ଜାହାଜ ବୁଡ଼ିବାର କିଛି ବର୍ଷ ପୂର୍ବରୁ ଗୋଟିଏ ବହି ପ୍ରକାଶିତ ହୋଇଥିଲା, ଯେଉଁଥିରେ ଏପରି ଗୋଟିଏ ବଡ଼ ଜାହାଜ ତା'ର ପ୍ରଥମ ଯାତ୍ରାରେ ହିଁ ବୁଡ଼ିଯିବାର ବର୍ଣ୍ଣନା ଥିଲା । ଏପରିକି ଜାହାଜର ଆକାର, ଯାତ୍ରୀ ସଂଖ୍ୟା ଓ ଆହୁରି ଅନେକ ଛୋଟ ଛୋଟ ଘଟଣା ବହିରେ ଲେଖାଥିବା ଭଳି ଘଟିଥିଲା ଟାଇଟାନିକ ବୁଡ଼ିଯିବାବେଳେ ।

ଦାରୋଗା କହିଲା, ହଁ, ମୁଁ ଏ ବିଷୟରେ କୋଉଠି ପଢ଼ିଥିଲି । ଲୋକେ କହନ୍ତି ନସ୍ତ୍ରାଡାମସଙ୍କ ଲେଖା ବା ଅଚ୍ୟୁତାନନ୍ଦ ମାଳିକାର ଭବିଷ୍ୟତ ବାଣୀ ଏବେ ବି ଘଟୁଛି । ତେବେ ମୁଁ ସେକଥା ବା ଟାଇଟାନିକ ଘଟିବା ପୂର୍ବର ଉପନ୍ୟାସ କଥା କହୁ ନଥିଲି । ମୁଁ କହୁଥିଲି ଏଭଳି ଲେଖା କଥା ଯାହା କାହାରିକୁ ଅପରାଧ କରିବା ପାଇଁ ପ୍ରବର୍ତ୍ତାଏ । ଆମ ପୋଲିସ ରେକର୍ଡ଼ରେ ଏଭଳି ଅନେକ ଦୃଷ୍ଟାନ୍ତ ଅଛି ଯେଉଁଥିରେ ଅପରାଧୀ ଗୋଟିଏ ବହି ପଢ଼ି ବା ଫିଲ୍ମ ଦେଖି ଠିକ୍ ସେଇ ଧରଣର ଅପରାଧ କରିଛି ।

ବଳଭଦ୍ର କହିଲା, କିନ୍ତୁ ବିହାରର ଗୁଣ୍ଡାଦଳ ମୋର ଗପ ପଢ଼ିବାକୁ ଯିବେ କାହିଁକି ? ତା କଥା ଶୁଣି ଦାରୋଗା ହଠାତ ସତର୍କ ହୋଇଗଲା । ସେ ସିଧା ହୋଇ ବସିଲା ଏବଂ ବଳଭଦ୍ରକୁ ପଚାରିଲା, ଆପଣ କିପରି ଜାଣିଲେ ଯେ ରାଉରକେଲା ହରଣଚାଳ ବିହାରର ଗୁଣ୍ଡା କରିଥିଲେ ବୋଲି ? ବଳଭଦ୍ର କହିଲା, ସେଦିନ ଆପଣ ମତେ ଯେଉଁ ଖବରକାଗଜ ଦେଇଥିଲେ, ମୁଁ ସେଇଥିରେ ପଢ଼ିଥିଲି ।

ଦାରୋଗା ତା'ର ଫାଇଲ ଭିତରୁ ସେଇ ପୁରୁଣା କାଗଜଟି ବାହାର କରି ବଳଭଦ୍ର ହାତକୁ ଦେଲା । କହିଲା, ଏଇଟିକୁ ଆଉଥରେ ପଢ଼ି ଦେଖନ୍ତୁ । ଏଥିରେ

କୌଣସି ସୂଚନା ନାହିଁ ଅପରାଧୀମାନେ କେଉଁଠାର । ଖବରକାଗଜର ରିପୋର୍ଟକୁ ତନ୍ନତନ୍ନ କରି ପଢ଼ିଲା ବଳଭଦ୍ର । ପ୍ରକୃତରେ ସେଥିରେ ବିହାରୀ ଗୁଣ୍ଡାଙ୍କର କୌଣସି ଉଲ୍ଲେଖ ନ ଥିଲା । ତା ମୁଣ୍ଡକୁ କାହିଁକି ଏ କଥା ଆସିଲା କେଜାଣି ? ଯଦିଓ ପୂର୍ବଥର ସେ କହିଥିଲା ଯେ ସେ ରାଉରକେଲା ହରଣଚାଲ ବିଷୟରେ କିଛି ଜାଣି ନଥିଲା, ବର୍ତ୍ତମାନ ନିଜର ଭୁଲ୍‌କୁ ସୁଧାରିବାକୁ କହିଲା, ତାହେଲେ ମୁଁ ଅନ୍ୟ କେଉଁ ଖବରକାଗଜରେ ପଢ଼ିଥିବି । ଦାରୋଗା କହିଲା, ଆମ ପାଖରେ ସବୁ ଖବରକାଗଜର ଫାଇଲ ଅଛି ସେଥିରୁ କୌଣସିଟିରେ ବି କେହି ଲେଖିନାହାଁନ୍ତି ଅପହରଣକାରୀ ବିହାରରୁ ଆସିଥିଲେ ବୋଲି । ତେବେ ଆପଣ ଯଦି ଏପରି କୌଣସି କାଗଜ ଆମକୁ ଦେଖାଇ ପାରନ୍ତି, ଆମ କାମରେ ଆସିବ ।

ଏଥରକ ଠିଆହୋଇ ଦାରୋଗା ବଳଭଦ୍ରକୁ ବିଦାୟ ଦେଲା । ଗଲାବେଳେ କହିଲା, ଆମ ଅନୁସନ୍ଧାନ ଜାରି ରହିଛି । ଯଦି ସେଥିରୁ ଜଣାପଡ଼େ ଯେ ଅପହରଣକାରୀ ପ୍ରକୃତରେ ବିହାରର, ଆମର ପୂର୍ବ ସନ୍ଦେହ ନିଶ୍ଚୟ ଦୃଢ଼ତର ହେବ ।

ପ୍ରଥମ ଥର ପାଇଁ ଏ ଘଟଣାରେ ବଳଭଦ୍ର ମନରେ ଭୟ ପଶିଲା । ତା ଲେଖକ ଜୀବନରେ ସେ ସବୁଠାରୁ ଅସୁବିଧାରେ ପଡ଼ିଥିଲା ଜଣେ ନେତାଙ୍କ ବିଷୟରେ ଗପ ଲେଖି । ତା'ର ଗପର ଚରିତ୍ରଟି ଛୋଟା ଥିଲା ଏବଂ ଥିଲା ଅତି ଖଳ, ଦୁଶ୍ଚରିତ୍ର ଓ ଭ୍ରଷ୍ଟାଚାରୀ । ଯଦିଓ ସେ ଚରିତ୍ରଟିର କୌଣସି ନାଁ ଦେଇ ନଥିଲା ଏବଂ ତାକୁ କେବଳ ଛୋଟା ବୋଲି କହିଥିଲା, ତା'ର ଦୁର୍ଭାଗ୍ୟକୁ ସେତେବେଳର ସରକାରରେ ଜଣେ ଛୋଟା ମନ୍ତ୍ରୀ ଥିଲେ ଏବଂ ତାଙ୍କର ଦୁର୍ନାମ ଥିଲା ଅତି ଲାଞ୍ଚଖୋର ହୋଇଥିବାର । ବଳଭଦ୍ରର ଗପଟି ଗୋଟିଏ ପତ୍ରିକାରେ ବାହାରିବା ପରେ ସମସ୍ତେ ଠିକ୍ କରିନେଲେ ଯେ ଏଇଟି ସେଇ ମନ୍ତ୍ରୀଙ୍କ ବିଷୟରେ ଲେଖା ଏବଂ ଅନେକ ଦିନ ଧରି ଏକଥା ସର୍ବସାଧାରଣରେ ଆମୋଦର କାରଣ ହେଲା । ସାହିତ୍ୟରେ କୌଣସି ଆଗ୍ରହ ରଖୁ ନଥିଲେ ବି ଶେଷକୁ ଛୋଟା ଏ ଖବର ପାଇଲା ଏବଂ ତା'ର ଗୁଣ୍ଡା ଆସି ବଳଭଦ୍ର ଘରେ ପହଞ୍ଚିଲେ । ସେ ସେମାନଙ୍କୁ ଯେତେ ବୁଝାଇଲା ଯେ ଏଇଟି ଗୋଟିଏ ସଂଯୋଗ ମାତ୍ର, ସେମାନେ ମାନିବାକୁ ପ୍ରସ୍ତୁତ ନଥିଲେ । ବଳଭଦ୍ର ଖବରକାଗଜରେ କ୍ଷମାପତ୍ର ଲେଖିବାକୁ ରାଜି ହେଲା ଏବଂ ବହି ଛପା ହେବାବେଳେ ଏ ଗପଟିକୁ ସେଥିରୁ ବାଦ ଦେଇଦେବ ବୋଲି କହିଲା, କିନ୍ତୁ ସେମାନେ ମାନିଲେ ନାହିଁ ଏବଂ ତାକୁ ଧମକାଇଲେ ଯେ ସେମାନେ ବଳଭଦ୍ରର ଗୋଡ଼ ଭାଙ୍ଗି ତାକୁ ଛୋଟା କରିଦେବେ । ବଳଭଦ୍ରର ଭାଗ୍ୟକୁ ଏଇ ସମୟରେ ଛୋଟାର ଦଳରେ କ'ଣ ସମସ୍ୟା ହେଲା ଏବଂ ତା'ର ଗୁଣ୍ଡାମାନେ ବଳଭଦ୍ରକୁ ଛାଡ଼ିଦେଇ ଛୋଟାର ବିପକ୍ଷ ଲୋକଙ୍କ ଗୋଡ଼ ଭାଙ୍ଗିବାକୁ ଚାଲିଗଲେ ।

ଏଇ ସମୟରେ ତା'ର ସାଙ୍ଗମାନେ ତାକୁ ପଚାରୁଥିଲେ ସେ କ'ଣ ମନ୍ତ୍ରୀକୁ

ଆଖିରେ ରଖି ଏଇ ଛୋଟା ଚରିତ୍ରଟି ତିଆରି କରିଥିଲା, ନା ତା'ର କଳ୍ପନାର ଚରିତ୍ରଟି ଦୈବକ୍ରମେ ଏକ ବାସ୍ତବ ଚରିତ୍ର ସାଙ୍ଗରେ ମେଳ ଖାଉଥିଲା । ବଳଭଦ୍ର ଏ କଥାର ଠିକ୍ ଜବାବ ଦେଇପାରୁ ନଥିଲା କାରଣ ସେ ନିଶ୍ଚିତ ଏଇ ନେତାଟି ବିଷୟରେ ଜାଣିଥିଲା ଓ ଶୁଣିଥିଲା, ତେବେ ଲେଖିଲାବେଳେ ଏ ଲୋକଟିକୁ ନମୁନା ରଖିଥିଲା କି ନା ସେ ବିଷୟରେ ସେ ନିଜେ ମଧ୍ୟ ନିଃସନ୍ଦେହ ନଥିଲା ।

ଏକଥା ନୁହେଁ ଯେ କାହାରିକି ଆଖି ଆଗରେ ରଖି ତା ବିଷୟରେ ଲେଖୁ ନଥିଲା । ତେବେ ଧରା ପଡ଼ିବା ଭୟରେ ସେ ଚରିତ୍ରର ନାଁକୁ ବଦଳାଇ, ଦୁଇ ତିନୋଟି ଲୋକଙ୍କର ଚାଲିଚଳଣ ଭାବଭଙ୍ଗୀ ସ୍ୱଭାବ ଚରିତ୍ରକୁ ଏକାଠି କରି, ଘଟଣାକୁ ଭାଙ୍ଗିମୋଡ଼ି ଅତିରଂଜିତ କରି ଲେଖୁଥିଲା । କେବଳ ଗୋଟିଏ ଗପରେ ସ୍ୱାମୀ ସ୍ତ୍ରୀଙ୍କ ସମ୍ପର୍କକୁ ସେ ସିଧାସଳଖ ରୋକଠୋକ ଓ ସଚ୍ଚୋଟ ଭାବେ ଲେଖିଥିଲା ; ଏକଥା ସମ୍ଭବ ହୋଇଥିଲା କାରଣ ସେ ଗପଟିକୁ ଲେଖିଥିଲା ; ସରସୀ ମରିଯିବା ପରେ । ଅବଶ୍ୟ ଅନେକ ସମୟରେ ତା'ର ମନେ ହୋଇଥିଲା ଯେ ଗପଟି ଏକପାକ୍ଷିକ ଥିଲା, କାରଣ ଏଥିରେ ତା'ର ସ୍ତ୍ରୀର ଦୃଷ୍ଟିବିନ୍ଦୁ ନଥିଲା । ଯଦି ତାକୁ ସୁଯୋଗ ଦିଆଯାଇଥାନ୍ତା, ସରସୀ ହୁଏତ ଗପଟିରେ ତା ପ୍ରତି କରାଯାଉଥିବା କେତେକ ଆକ୍ଷେପର ଯୁକ୍ତିସଂଗତ ଜବାବ ଦେଇପାରିଥା'ନ୍ତା ।

ଏ ତ ଗଲା ଜଣେ ସତ ଚରିତ୍ର କଥା । ତା'ର ଅନେକ କାଳ୍ପନିକ ଚରିତ୍ରଙ୍କର ମେ ତା ପ୍ରତି ଆପତ୍ତି ଅଭିଯୋଗ ନଥିବ ତା ନୁହେଁ । ତା'ର ଗୋଟିଏ ଗପରେ ଯୌତୁକ ସମସ୍ୟାରେ ପଡ଼ିଥିବା ସ୍ତ୍ରୀଲୋକଟିର ସେ ଯେଉଁ ଚିତ୍ର ଦେଇଥିଲା, ସେଥିରେ କେହିବି ଟିକିଏ ହେଲେ ସହାନୁଭୂତିଶୀଳ ନ ଥିଲେ ତା ପାଇଁ ତା'ର ପୂର୍ବ ପ୍ରେମିକ, ତା'ର ସ୍ୱାମୀ, ତା'ର ବାପା ମା', ତା'ର ଶାଶୁ ଶ୍ୱଶୁର ନଣନ୍ଦ, ତା'ର ସାଇର ଲୋକ, ଏପରିକି ସେ ଯେଉଁ ରିକ୍‌ସାରେ ବସିଥିଲା ତା'ର ଚାଳକ ବି । ବଳଭଦ୍ର ଶେଷରେ ଏଇ ସ୍ତ୍ରୀ ଲୋକଟିକୁ ନିଆଁରେ ପୋଡ଼ି ମାରି ଦେଇଥିଲା । ସେ କ'ଣ ନ୍ୟାୟ କରିଥିଲା ଏକ କାଳ୍ପନିକ ସ୍ତ୍ରୀଟି ପାଇଁ ? ସେ ଯଦି ଆସି ତା ଆଗରେ ଠିଆହୋଇ ତାକୁ ପ୍ରଶ୍ନ କରିବ, କ'ଣ ଜବାବ ଦେବ ସେ ?

ଏପରି ସବୁ ଅପ୍ରୀତିକର ଚିନ୍ତାରୁ ନିଜର ମନକୁ ଫେରାଇ ଆଣିବାକୁ ଚେଷ୍ଟା କଲା ବଳଭଦ୍ର । ତା'ର ବର୍ତ୍ତମାନ ସମସ୍ୟା ହେଉଛି ରାଉରକେଲାର ହରଣଚାଳ । ତା ପାଖରେ କୌଣସି ପ୍ରମାଣ ନାହିଁ ଯେ ସେ ଏଇ ଗପଟିକୁ ସତ ଘଟଣା ପୂର୍ବରୁ ଲେଖିଥିଲା, ପରେ ନୁହେଁ । ସେ ଠିକ୍ କଲା ଯେ ପ୍ରକାଶକଙ୍କୁ ଏ ବିଷୟରେ ନିଜର ଦଳଭୁକ୍ତ କରିବ । ତେବେ ପ୍ରକାଶକଙ୍କ ସହିତ ତା'ର ଏତେ ବେଶି ଭଲ ସଂପର୍କ ନଥିଲା ଏବଂ ସେ ଯେ ଏଇ ପୋଲିସ ମାମଲାରେ ହାତ ପୂରାଇବେ ତା'ର ବିଶ୍ୱାସ ନ ଥିଲା ।

ତଥାପି ସେ ଘରକୁ ଫେରି ତାଙ୍କୁ ଫୋନ କଲା ; ତାଙ୍କ ଅଫିସରୁ ଜବାବ ମିଳିଲା ଯେ ସେ ଦି'ଦିନ ତଳେ ରାଉରକେଲା ବାହାରି ଯାଇଛନ୍ତି ।

ତା ମୁଣ୍ଡରେ ବହିର ପାଣ୍ଡୁଲିପି କଥା ପଶିବାରୁ ସେ ଭାବିଲା ଯେ ସେ ପ୍ରକାଶକଙ୍କ ଜରିଆରେ ପ୍ରମାଣ କରିପାରିବ ଯେ ତା'ର ଗପଟି ଯଦିଓ ବହିରେ ଏଇମାତ୍ର ବାହାରିଛି, ଏଇଟି ହାତଲେଖାରେ ପ୍ରେସ୍‌କୁ ଯାଇଥିଲା ଅନେକ ଆଗରୁ । ଏବଂ ସିଧାସଳଖ ପ୍ରକାଶକଙ୍କୁ ଏ ବିଷୟରେ ଅନୁରୋଧ ନ କରି ପାରିଲେ ବି ପୋଲିସ ନିଶ୍ଚୟ ତାଙ୍କ ପାଖରୁ ଏ କଥାର ସତ୍ୟାସତ୍ୟ ବାହାର କରିପାରିବ । ଏଇ ଆଶାରେ ସେ ଥାନାବାବୁଙ୍କୁ ଫୋନ କଲା । ଦାରୋଗା ଲାଇନକୁ ଆସିବାରୁ ତାଙ୍କୁ କହିଲା, ମୋର ମନେ ପଡ଼ିଲା ଯେ ମୋ ବହିର ପାଣ୍ଡୁଲିପି ରାଉରକେଲା ଘଟଣା ପୂର୍ବରୁ ପ୍ରେସ୍‌କୁ ଯାଇଥିଲା । ସେଥିରୁ ପ୍ରମାଣିତ ହୋଇପାରିବ ଯେ ଗପଟି ପୂର୍ବେ ଲେଖା, ପରେ ନୁହେଁ । ଏ ବିଷୟରେ ଆପଣ ପ୍ରକାଶକଙ୍କୁ ବି ପଚାରି ପାରିବେ । ତା କଥା ଶୁଣି ଦାରୋଗା କହିଲା, ଆପଣଙ୍କ ପ୍ରକାଶକ କିଏ କହନ୍ତୁ ତ । ସେ ସୁରସେନର ନାଁ କହିବା ପରେ ଅନେକ ସମୟ ଚୁପ୍ ରହି ଦାରୋଗା କହିଲା, ଦ୍ୟାଟ୍‌ସ୍ ଇଣ୍ଟରେଷ୍ଟିଂ, ଏବଂ ଫୋନ ରଖିଦେଲା ।

ତା'ପରେ କିଛିଦିନ ପୋଲିସ ପାଖରୁ କୌଣସି ଖବର ଆସିଲା ନାହିଁ, କିନ୍ତୁ ବଳଭଦ୍ର ଏ ଚିନ୍ତାରୁ ନିଜକୁ ମୁକୁଳାଇ ପାରିଲା ନାହିଁ । ସେ ଭାବିବାକୁ ଲାଗିଲା ଗପରେ କିଭଳି ଚରିତ୍ର ତିଆରି କଲେ ତାକୁ ଆଉ ବିପଦରେ ପଡ଼ିବାକୁ ହେବ ନାହିଁ । ପାଠକ ଆଶା କରନ୍ତି ଚରିତ୍ରଟି ବାସ୍ତବଧର୍ମୀ ହେଉ, କିନ୍ତୁ ତାହା ହିଁ ହୋଇଯାଏ ସଂକଟର କାରଣ । ଥରେ ସେ ଗୋଟିଏ ଗପରେ ଲେଖିଥିଲା ଜଣେ ବିବାହିତା ମହିଳାଙ୍କର ପରକୀୟା ପ୍ରେମକଥା ଏବଂ ଗପଟି ସାଧାରଣରେ ଆଦୃତ ହୋଇଥିଲା, କିନ୍ତୁ ଏତିକିରେ ସନ୍ତୁଷ୍ଟ ନହୋଇ ସମସ୍ତେ ଚାହିଁଲେ ଖୋଜି ବାହାର କରିବାକୁ ଏଇ ଚରିତ୍ରର ମୂଳ ଉପାଦାନ କିଏ । ଏଥିରେ ସହରର ଅନେକ ସ୍ୱାଧୀନଚେତା ସ୍ତ୍ରୀଙ୍କ ନାଁ ଉଠିଲା, କ୍ଲବରେ ସ୍ତ୍ରୀଲୋକମାନେ ଏ ବିଷୟରେ ଚୁପ୍‌ଚୁପ୍ କଥା ହେଲେ ଏବଂ କିଏ କିଏ ପରସ୍ପର ଆଡ଼କୁ ଆଙ୍ଗୁଠି ଦେଖାଇଲେ । ଶେଷରେ ବଳଭଦ୍ର ଦୋଷୀ ହେଲା ଭଦ୍ରଘରର ଝିଅବୋହୂଙ୍କୁ ଆଣି ରାସ୍ତାରେ ଠିଆ କରାଇଥିବାରୁ । ଦିନେ ଜଣେ ବନ୍ଧୁ ଫୋନ କରି ତାକୁ କହିଲା, ଆମ ଭିତରେ ବାଜି ଲାଗିଛି ରାଧା ପ୍ରକୃତରେ କିଏ ବୋଲି । ମୁଁ କହୁଛି ସୀମା ଶର୍ମା, କିନ୍ତୁ ମୋ ସାଙ୍ଗ କହୁଛି ସୋନାଲୀ ଦାସ । ସତରେ କିଏ ରାଧା ? ତାକୁ ଗାଳିଦେଇ ବଳଭଦ୍ର ଫୋନ ରଖିଦେଲା, କିନ୍ତୁ କିଛିଦିନ ପରେ ଦେଖିଲା ଯେ ମିଷ୍ଟର ଶର୍ମା ଆଉ ତା ସହିତ କଥା କହୁନାହାଁନ୍ତି ।

ସେ ଦୃଷ୍ଟିରୁ ଦେଖିବାକୁ ଗଲେ ତା'ର କୀର୍ତ୍ତିମୁଖ ନାଁରେ ଲେଖା ବହିର

ଚରିତ୍ରମାନେ ସମସ୍ୟାରହିତ । ହୁଏତ ସେ ତା'ର ବାସ୍ତବଧର୍ମୀ ଚରିତ୍ରମାନଙ୍କର ଅଦଉତିରୁ ରକ୍ଷା ପାଇବା ପାଇଁ ଏଇ କାଗଜପଟାର ପାତ୍ରପାତ୍ରୀ ତିଆରି କରିଥିଲା । ସେମାନେ ସମସ୍ତେ ଥିଲେ ଦୁଇ ବିସ୍ତାରର ନିର୍ଜୀବ ଖେଳନା, ଯାହାଙ୍କୁ ସେ ନିଜର ସାହିତ୍ୟିକ ସୃଷ୍ଟିରେ ମର୍ଯ୍ୟାଦା ଦେବାକୁ ଚାହୁଁ ନଥିଲା । ଏଇ ଫିଲ୍ମି ଗୁଣ୍ଡା, ବଦମାସ ପୋଲିସ, ଶସ୍ତା ପ୍ରେମିକମାନେ ଥିଲେ ତା'ର ଧୂସର ସୃଜନଶୀଳ ପୃଥିବୀର ଅଧୋଲୋକର ବାସିନ୍ଦା, ଏମାନଙ୍କୁ କେହିବି କେବେ ଭେଟିବ ନାହିଁ ନିଜର ସାଧାରଣ ଚଳପ୍ରଚଳ କରୁଥିବା ରାସ୍ତାଘାଟ ବଜାରରେ । ସେମାନେ ବାସ୍ତବରୁ ଏତେ ଦୂରରେ ଥିଲେ ଯେ ଏପର୍ଯ୍ୟନ୍ତ କେହି ନିଜକୁ ତା'ର କୀର୍ତ୍ତିମୁଖ ବହିର ଚରିତ୍ର ସହିତ ତୁଳନା କରି ନଥିଲା ଅଥବା ତାକୁ ପଚାରି ନଥିଲା ସେଇଟି କାହା ଉପରେ ଆଧାରିତ । କିନ୍ତୁ ଅନେକ ସମୟରେ ବାସ୍ତବ ବି କଳ୍ପନାକୁ ଅନୁସରଣ କରେ । ସେଇଥିପାଇଁ ହୁଏତ ରାଉରକେଲା ହରଣଚାଳ ଘଟଣା ତା ପାଇଁ ବିଭ୍ରାଟ ସୃଷ୍ଟି କରିଥିଲା । ସତେ ଯେପରି ତା'ର ଅନାଦରର କାଗଜ ଚରିତ୍ରମାନେ ପ୍ରତିଶୋଧ ନେବାକୁ ଚାହୁଁଥିଲେ ତା ଉପରେ ।

ଏଭଳି ସମୟରେ ପୁଣି ଥାନାରୁ ଫୋନ ଆସିଲା ତା' ପାଇଁ । ବଳଭଦ୍ର ସାମାନ୍ୟ ଖୁସି ହେଲା ଯେ ଏ ଡାକରା ପାଇ କାରଣ ସେ ଜାଣିବାକୁ ଚାହୁଁଥିଲା ଅନୁସନ୍ଧାନର ପ୍ରଗତି କେତେଦୂର ଏବଂ ସେଥିରେ ତା'ର ନିଜର ସ୍ଥିତି କ'ଣ । ପୂର୍ବଘଟିତ କୌଣସି ପ୍ରସଙ୍ଗ ପୁଣି ଥରେ ଅଭିନୀତ ହେଉଥିବା ଭଳି ବର୍ତ୍ତମାନ ବଳଭଦ୍ର ସାମନାରେ ଦାରୋଗା ତା'ର ଫାଇଲ ଖୋଲି ସେଥିରୁ କ'ଣ ପଢୁଥିଲା । ତା ପାଇଁ ଚା' ମଗାଇବା ପରେ ଫାଇଲ ଉପରୁ ଆଖି ଉଠାଇ ଦାରୋଗା ତା ଆଡ଼କୁ ଅନାଇଲା, କହିଲା, ଅନୁସନ୍ଧାନ ସରିବାଯାଏଁ ଆମେ ଆପଣଙ୍କୁ ଏମିତି କେତେବେଳେ କେତେବେଳେ କଷ୍ଟ ଦେଉଥିବୁ । ବନ୍ଧୁତାର ହାତ ବଢ଼ାଇ ବଳଭଦ୍ର କହିଲା, ମୁଁ ଆପଣଙ୍କୁ ସବୁମତେ ସାହାଯ୍ୟ କରିବାକୁ ପ୍ରସ୍ତୁତ ।

ବର୍ତ୍ତମାନ ଆମେ ଜାଣିପାରୁଛୁ ଯେ, ଦାରୋଗା କହିଲା, ବିହାରର ଗୋଟିଏ ଦଳର ହାତ ଅଛି ଏଇ ହରଣଚାଳରେ । ଆପଣ ମନେ ପକାଇ ପାରିଲେ କି ଆପଣ ବିହାରୀ ଗୁଣ୍ଡାଙ୍କ ବିଷୟ କୋଉ କାଗଜରେ ପଢ଼ିଥିଲେ ? ଏ ବିଷୟରେ କୌଣସି ଦୀର୍ଘ କୈଫିୟତ ଦେବାର ସାହସ ହେଲା ନାହିଁ ବଳଭଦ୍ରର ; ସେ ଖାଲି ନା ବୋଲି କହିଲା ।

ଆପଣ ବିଭାସ ଦାସ ବିଷୟରେ ଜାଣିଲେ କେମିତି ?

ବିଭାସ ଦାସ ? ଏଭଳି କୌଣସି ଲୋକକୁ ଜାଣିବାର ମୋର ମନେ ନାହିଁ ।

ଆପଣଙ୍କ ଗପରେ ଅପରାଧୀଙ୍କ ଭିତରୁ ବିଭାସ ଦାସ ଜଣେ । ଆପଣଙ୍କୁ ବହିଟା ଦେବି, ଦେଖିବେ ?

ନା, ମୋର ମନେ ପଡ଼ିଲା । ମୁଁ ଏଇ ନାଁଟା ବ୍ୟବହାର କରିଛି ସେ

ଗପରେ । ଆମେ ଲେଖକମାନେ ମନରୁ ଭାବି ଚରିତ୍ରମାନଙ୍କର ନାଁ ଦେଇଥାଉ । ଗପର ଘଟଣାମାନ ଯେପରି କାଳ୍ପନିକ, ଚରିତ୍ରଙ୍କର ନାଁ ବି ।

ଦାରୋଗା କହିଲା, ଏପରି ବି ହୁଏ ଯେ ସତ ଘଟଣାକୁ ଆଧାର କରି ଗପ ଲେଖାଯାଇଥାଏ । ଯଦି ଆପଣ ଗୋଟିଏ ସତ ଘଟଣା ଉପରେ ଗପ ଲେଖିଥା'ନ୍ତେ, ତେବେ ଚରିତ୍ରର ନିଜ ନାଁ ରଖିଥା'ନ୍ତେ ଗପରେ ନା ଆଉ କିଛି ?

ବଳଭଦ୍ର ଜାଣିଲା ଯେ ସେ ଯାହା ବି ଜବାବ ଦେବ, ଅସୁବିଧାରେ ପଡ଼ିଯିବ । ତା'ର ମନେପଡ଼ିଲା ଆକାଶ ବିକାଶ, ବିଜୟ ବିନୟଙ୍କ କଥା । କିନ୍ତୁ ପୋଲିସକୁ ଏତେ କଥା କହି କିଛି ଲାଭ ନାହିଁ । ସିଧାସଳଖ ତା'ର ଉତ୍ତର ନ ଦେଇ କହିଲା, ଲେଖକମାନେ ପ୍ରାୟତଃ କାଳ୍ପନିକ ନାଁ ବ୍ୟବହାର କରିଥାନ୍ତି । ଦାରୋଗା ସେଦିନର ଜବାବସୁଆଲ ଏତିକିରେ ବନ୍ଦ ରଖି କହିଲା, ଯଦି ବିଭାସ ଦାସ ବିଷୟରେ ମନେପଡ଼େ ମତେ ଜଣାଇବେ ।

ବଳଭଦ୍ର ବୁଝିପାରିଲା ନାହିଁ ଦାରୋଗା ବିଭାସ ଦାସ ବିଷୟରେ ଜାଣିବାକୁ ଏତେ ବ୍ୟସ୍ତ କାହିଁକି । ସେ ତ ତା ଗପରେ ଅନ୍ୟ କେତେକଙ୍କ ନାଁ ବି ଲେଖିଥିଲା । ସେ ସତକୁ ସତ ମନେ ପକାଇବାକୁ ଚେଷ୍ଟା କଲା କୋଉ ବିଭାସ ଦାସକୁ ସେ ଜାଣେ କି ବୋଲି, କିନ୍ତୁ ଏପରି କେହି ତା'ର ମନେପଡ଼ିଲେ ନାହିଁ । କିଛିଦିନ ପର୍ଯ୍ୟନ୍ତ ଏଇ ବିଭାସ ଦାସର ଚିନ୍ତା ତାକୁ ଘାରି ରହିଲା ।

ସେ ତା'ର ପୋଲିସ ସମସ୍ୟା ବିଷୟରେ ଏପର୍ଯ୍ୟନ୍ତ କାହାରିକି କହି ନ ଥିଲା । ଭାବିଲା, ସୁରସେନକୁ ସବୁକଥା କହି ତା'ର ପରାମର୍ଶ ନେବ । କିନ୍ତୁ ଫୋନ କରି ସେ କେବେ ଫେରିବ ପଚାରିବାରେ ତା ଅଫିସବାଲା କହିଲେ ଯେ ସେ ରାଉରକେଲା କି ଆଉ କୁଆଡ଼େ ଯାଇଛନ୍ତି ସେକଥା ସେମାନେ କହିପାରିବେ ନାହିଁ ଏବଂ ସେ କେବେ ଫେରିବେ ସେ କଥା ମଧ୍ୟ ତାଙ୍କର ଅଜଣା ।

ପରଦିନ ତାକୁ ବିଭାସ ଦାସ ରହସ୍ୟର ଉତ୍ତର ମିଳିଗଲା । ସେଦିନର ସକାଳ କାଗଜରେ ହରଣଚାଲ ସଂପର୍କରେ ଛୋଟ ଖବରଟିଏ ବାହାରିଥିଲା । ଯଦିଓ ଏପର୍ଯ୍ୟନ୍ତ ଜନକରାଜର ସନ୍ଧାନ ମିଳି ନଥିଲା, ସନ୍ଦେହରେ ପୋଲିସ ବିହାରର ଗୋଟିଏ ଡକାୟତ ଦଳକୁ ଧରିଥିଲେ । ଏଇ ଦଳର ଜଣେ ଲୋକର ନାଁ ଥିଲା ପ୍ରଭାସ ଦାସ ।

ହଠାତ ବଳଭଦ୍ର ମନକୁ ଭୟ ଆସିଲା ଏବଂ ସେ ନିଜକୁ ଜେଲ ଭିତରେ ଦେଖିବାକୁ ପାଇଲା । ଯଦିଓ କେବେହେଲେ ଜେଲ ଭିତର ଦେଖିବାର ସୌଭାଗ୍ୟ ତା'ର ହୋଇ ନଥିଲା, ସେ ଗୋଟିଏ ଗପରେ କଳ୍ପନା କରି ଜେଲ କଥା ଲେଖିଥିଲା । ଏ ଗପରୁ ତା'ର ମନେପଡ଼ିଲା ଜେଲର୍ ଗୁଣନିଧି ଓ ତା'ର ହାତବାରିସି ଭିକାରୀ ନାୟକ କଥା । ତା ଗପରେ ଗୁଣନିଧି ଗୋଟିଏ ପାଜି ଥିଲା ଏବଂ କଇଦୀମାନଙ୍କୁ କିପରି

ହଇରାଣ କରି ନୟାନ୍ତ କରାଯାଇପାରେ ସେ ବିଷୟରେ ବିଶେଷଜ୍ଞ ଥିଲା । ବଳଭଦ୍ରର ଆଶଙ୍କା ହେଲା ଯେ ସେ ଏଇ ଜେଲର୍ ହାବୁଡ଼ରେ ପଡ଼ିବ ଏବଂ ତା ଆଗରେ ଠିଆହୋଇ ଗୁଣନିଧି ତାକୁ କହିବ, ମୋ ନାଁରେ ସତମିଛ ଯୋଡ଼ି ଗପ ଲେଖିଥିଲୁ ପରା ? ଦେଖ, ମୁଁ କେମିତି ତତେ ଜେଲ୍‌ର ମଜା ଚଖାଉଛି । ଏହାପରେ ସେ ଭିକାରୀକୁ ଲଗାଇ ଦେବ ତା ପଛରେ ତାକୁ ହଇରାଣ କରିବା ପାଇଁ । ଗପରେ ଭିକାରୀ ପାଇଁ ସେ ଯେତେ ଦହଗଂଜ କରିବାର ପଦ୍ଧତି ବ୍ୟବହାର କରିଥିଲା ସବୁ ତା'ର ମନେପଡ଼ିଲା ଏବଂ ଭିକାରୀ ତା ଉପରେ ସବୁର ପ୍ରୟୋଗ କରୁଥିବାର କଳ୍ପନା କଲା ବଳଭଦ୍ର । ଏହା ଅତି ଭୟପ୍ରଦ ଥିଲା ।

ଖବରକାଗଜର ସଂକ୍ଷିପ୍ତ ସମ୍ବାଦ, କୌଣସି ଅନିର୍ଦ୍ଦିଷ୍ଟ ସ୍ଥାନକୁ ଯାଇଥିବାରୁ ସୁରସେନର ଅନୁପସ୍ଥିତି, ହରଣଚାଳ କେସ୍‌ରେ ବିଭାସ ବନାମ ପ୍ରଭାସ ଦାସ ଧରାପଡ଼ିବା, ଥାନାରୁ ଆଉ ଡକରା ନ ଆସିବା ସବୁ ମିଶି ବଳଭଦ୍ରକୁ ବ୍ୟତିବ୍ୟସ୍ତ କରିଦେଲେ । ଏଇ କେସ୍ ବ୍ୟତୀତ ତା'ର ଆଉ କୌଣସି କାମରେ ମନ ଲାଗିଲା ନାହିଁ । ସେ ଗପ ସହିତ ପ୍ରକୃତ ଘଟଣାର ସାମଞ୍ଜସ୍ୟ ଯେଉଁ କାରଣରୁ ହୋଇଥାଉ ନା କାହିଁକି, ସେ ନିଶ୍ଚିନ୍ତ ହେବ ଯେତେବେଳେ ଜନକରାଜର ସନ୍ଧାନ ମିଳିବ ଓ ଅପରାଧୀମାନେ ଧରା ହେବେ । ତାହେଲେ ହିଁ ପ୍ରମାଣିତ ହେବ ଯେ ତା ଲେଖା ସହିତ ବାସ୍ତବ ବ୍ୟାପାରର କୌଣସି ସଂପର୍କ ନଥିଲା ଏବଂ ଏଇଟି ଥିଲା ନିଛକ ଆକସ୍ମିକ ମାତ୍ର । ସେ ଟେଲିଫୋନକୁ ଅନାଇ ବସି ରହିଲା ।

ଏଇଭଳି ଭାବେ ତା'ର ଧୈର୍ଯ୍ୟଚ୍ୟୁତି ହେବାବେଳକୁ ଥାନାରୁ ଖବର ଆସିଲା ଯେ ସେ ଯାଇ ଦାରୋଗାକୁ ଦେଖାକରୁ । ଏତେ ଦିନରେ ଉତ୍କଣ୍ଠାର ଉପଶମରେ ସେ ଶାନ୍ତିରେ ନିଃଶ୍ୱାସ ନେଲା, ଯଦିଓ ସେ ଜାଣିଥିଲା ଯେ ବାରମ୍ବାର ଥାନାକୁ ଯିବାରେ ସେ ଅପରାଧମଣ୍ଡଳ ଭିତରେ ଆହୁରି ଆହୁରି ଜଡ଼ିତ ହୋଇଯାଉଛି । ଥାନା ଚଉକିରେ ବସି ଦାରୋଗାକୁ ଅନାଇବାବେଳେ ତା'ର ମନେପଡ଼ିଲା କାଫ୍‌କାଙ୍କ ପୃଥିବୀ, ଯାହାର ଚିତ୍ର ତା ପାଇଁ ଯେତିକି ହାସ୍ୟକର ଥିଲା, ଥିଲା ସେତିକି ଭୟଙ୍କର । ଏଥରକ ଦାରୋଗାର କଥାବାର୍ତ୍ତା ସଂପୂର୍ଣ୍ଣ ବ୍ୟାବହାରିକ ଥିଲା ଏବଂ ସେ ତାକୁ ହରଣଚାଳ ବିଷୟରେ ପ୍ରଶ୍ନ ନକରି ପ୍ରଶ୍ନ କରୁଥିଲା ସୁରସେନ ବିଷୟରେ । ବଳଭଦ୍ର ତାକୁ ଜଣାଇଲା ଯେ ସେ ସୁରସେନକୁ ଅନେକ ବର୍ଷ ଧରି ଜାଣେ ଏବଂ ସେମାନଙ୍କର ସଂପର୍କ ବ୍ୟବସାୟ ବାହାରେ ମଧ୍ୟ ସୌହାର୍ଦ୍ଦ୍ୟପୂର୍ଣ୍ଣ । ସେ ସୁରସେନର ଅଫିସରୁ ଜାଣିଥିଲା ଯେ ସେ ରାଉରକେଲା ଯାଇଛି, କିନ୍ତୁ କି କାମରେ ସେ ସେଠାକୁ ଯାଇଥିଲା ବଳଭଦ୍ର ଜାଣେ ନାହିଁ । ନା, ତା'ର ଲେଖାରେ ସୁରସେନର କୌଣସି ହାତ ନାହିଁ ଏବଂ ଗପ ଲେଖିବା ପୂର୍ବରୁ ସେ ସୁରସେନ ସହିତ ସେ ବିଷୟରେ ଆଲୋଚନା କରିନଥାଏ । କେଉଁ ପ୍ରକାର ଗପର ଭଲ

କାଟତି ସେ ବିଷୟରେ ସେମାନଙ୍କ ଭିତରେ କେବେ କେବେ ଚର୍ଚ୍ଚା ହୋଇଛି, କିନ୍ତୁ ତା'ର ହରଣଚାଲ ଗପରେ ସୁରସେନର କୌଣସି ସହଯୋଗ ନାହିଁ । ବିଭିନ୍ନ ଲୋକଙ୍କ ପାଖରୁ ଶୁଣିଥିବା କଥା ସେ ଗପରେ ଉପଯୋଗ କରିଥାଏ, କିନ୍ତୁ ସୁରସେନ ତାକୁ କହିଥିବା କୌଣସି ଘଟଣାକୁ ଭିତ୍ତି କରି ସେ ହରଣଚାଲ ଗପ ଅଥବା ଅନ୍ୟ କେଉଁ ଗପ ଲେଖିଥିବାର ତା'ର ମନେ ନାହିଁ । ସୁରସେନର ପ୍ରକାଶନ ବ୍ୟବସାୟରେ ତା'ର କୌଣସି ଭାଗ ବା ସଂପର୍କ ନାହିଁ ଏବଂ ସୁରସେନର ଆର୍ଥିକ ଅବସ୍ଥା ବିଷୟରେ ତା'ର କୌଣସି ଧାରଣା ନାହିଁ । ସୁରସେନ ପ୍ରକୃତରେ ରାଉରକେଲା ଯାଇଛି କି ନା ଏବଂ କେବେ ଫେରିବ ତାକୁ ଜଣା ନାହିଁ । ତାକୁ ଯେତେଦୂର ମନେପଡୁଛି ସୁରସେନ କେବେହେଲେ ଏତେଦିନ ଧରି ସହର ଛାଡ଼ି ବାହାରେ ରହି ନଥିଲା ।

ତା ପାଖରୁ ଏତେ ଖବର ବାହାର କରିସାରିବା ପରେ ଦାରୋଗା କହିଲା, ଅନୁସନ୍ଧାନରେ ସାହାଯ୍ୟ କରିବାକୁ ଆପଣଙ୍କୁ ରାଉରକେଲା ଯିବାକୁ ହେବ । ଏ କଥାରେ ବଳଭଦ୍ର ଆଶ୍ଚର୍ଯ୍ୟ ହେଲା ନାହିଁ କାରଣ ସେ ମାନି ନେଇଥିଲା ଯେ ଯେଉଁ କାରଣରୁ ହେଉ ପଛକେ ସେ ବର୍ତ୍ତମାନ ଏଇ ଅନୁସନ୍ଧାନର ଏକ ବିଶେଷ ଅଂଶ ଏବଂ ତାକୁ ଏଥିରେ ସକ୍ରିୟ ଭାଗ ନେବାକୁ ପଡ଼ିବ ।

ଚଳନ୍ତା ଟ୍ରେନ୍‌ରେ କନେଷ୍ଟବଳ ପାଖରେ ବସି ନିଜ ଆଖପାଖକୁ ଅନାଇଲା ବଳଭଦ୍ର । ତା ସାମନାରେ ବସିଥିବା ବୟସ୍କ ଭଦ୍ରବ୍ୟକ୍ତି ଓ ଯୁବକ ପତିପତ୍ନୀ ଯୋଡ଼ି ତାକୁ ପରିଚିତ ମନେହେଲେ । ନିଜର ସମସ୍ୟାକୁ ପାସୋରି ସେ ତାଙ୍କର ଗତିବିଧିରେ ମନ ଦେଲା । ଭଦ୍ରବ୍ୟକ୍ତି ପାଖରେ ବସିଥିବା ଯୁବକ ଆଡ଼କୁ ଟାଇମ୍‌ଟେବୁଲ ବଢ଼ାଇ ଦେଇ କହିଲେ, ମୁଁ ଚଷମାଟା ଖୋଜି ପାଉନାହିଁ ; ଟିକିଏ ଏଥିରୁ ଦେଖିବେ ଟ୍ରେନ୍ କେତେବେଳେ ଜଙ୍କସନରେ ପହଞ୍ଚିବ । ଯୁବକ ପୃଷ୍ଠା ଓଲଟାଇଲା । ଭଦ୍ରବ୍ୟକ୍ତି କହିଲେ, ଦଶ ନହେଲେ ଏଗାର ନମ୍ବର ଟେବୁଲରେ ଥିବ । ଯୁବକ ତାଙ୍କୁ ସମୟ କହିଲା ଏବଂ ଭଦ୍ରବ୍ୟକ୍ତି ହାତଘଡ଼ି ଦେଖି କହିଲେ, ଟ୍ରେନ୍ ତିନିଘଣ୍ଟା ଲେଟ୍ ଚାଲୁଛି । ଏଥରକ ବଳଭଦ୍ରକୁ ଯୁବକର ନାଁ ମନେ ପଡ଼ିଲା, ମଧୁବନ ; ତା'ର ସ୍ତ୍ରୀର ନାଁ ସୁରମା । ଏମାନଙ୍କୁ ନେଇ ସେ ଅନେକ ଦିନ ତଳେ ଗୋଟିଏ ଗପ ଲେଖିଥିଲା ।

ରାଉରକେଲାର ଦାରୋଗା ପ୍ରୌଢ଼, ପୃଥୁଳ ଓ ହିଂସ୍ର ପ୍ରକୃତିର ଥିଲା । ଥାନାର କୋଠରିଟି ଥିଲା ଅନୁଜ୍ଜ୍ୱଳ, ଉଦାସ ଓ ଭୟୋତ୍ପାଦକ । ବଳଭଦ୍ର ଚଉକିରେ ବସିବା ମାତ୍ରେ ଦାରୋଗା ତାକୁ କହିଲା, ଆପଣ ଜାଣି ଖୁସି ହେବେ ଯେ ଆମର ଅନୁସନ୍ଧାନ ସରିଗଲାଣି । ଆପଣ ନିଶ୍ଚୟ ସୁରସେନ ଓ ଜନକରାଜଙ୍କ ବ୍ୟବସାୟ ସଂପର୍କ ବିଷୟରେ ଜାଣିଥିବେ । ଏବଂ ଜାଣିଥିବେ ଯେ ସୁରସେନ ଉପରେ ଜନକରାଜଙ୍କର ଅନେକ ଟଙ୍କା ବାକି ଥିଲା । ସୁରସେନକୁ ଜବତ କରି ଆମେ ହାଜତରେ ରଖିଛୁ ।

ଆମର ସନ୍ଦେହ ଏଇ କେସ୍‌ରେ ଆପଣ ସୁରସେନର ସହଯୋଗୀ ଏବଂ ସେଥିପାଇଁ ଆମେ ଆପଣଙ୍କୁ ମଧ୍ୟ ଗିରଫ କରିବୁ । ଏହାପରେ ଦାରୋଗା ଚଉକିରୁ ଉଠି ଠିଆହେଲା ଏବଂ ତା ଆଡ଼କୁ ଆଙ୍ଗୁଠି ଦେଖାଇ ନାଟକୀୟ ଭଙ୍ଗୀରେ ବଡ଼ପାଟିରେ କହିଲା, ୟୁ ଆର୍ ଅଣ୍ଡର ଆରେଷ୍ଟ !

ବଳଭଦ୍ର ଏଥିରେ ଆଦୌ ହତଚକିତ ହେଲା ନାହିଁ ଯେପରିକି ଏକଥା ସଂପୂର୍ଣ୍ଣ ପ୍ରତ୍ୟାଶିତ ଥିଲା । ସେ ନିଜର ଚାରିଆଡ଼କୁ ଆଖି ପକାଇଲା । ହାଜତ ଘରଟି ଥିଲା ଥାନାବାବୁଙ୍କ ବାଁ ପାଖରେ । ହାଜତର ଦରଜା ପାଖରେ ଗୁଣନିଧି ଜେଲର୍ ଇଉନିଫର୍ମ ପିନ୍ଧି ଠିଆ ହୋଇଥିଲା ଓ ତା ଆଡ଼କୁ ଆଙ୍ଗୁଠି ଦେଖାଇ ପାଖରେ ଅର୍ଦ୍ଧଛିଣ୍ଡା ପୋଷାକରେ ଥିବା ଭିକାରୀକୁ କ'ଣ ନିର୍ଦ୍ଦେଶ ଦେଉଥିଲା । ହାଜତର ଲୁହାଛଡ଼ ଦେଇ ସେ ଭିତରେ ଠିଆ ହୋଇଥିବା ସବୁ ଲୋକଙ୍କୁ ଦେଖି ପାରୁଥିଲା । ଗୋଟିଏ ଫାଙ୍କରେ ମୁହଁ ଦେଇ ସୁରସେନ ତା ଆଡ଼କୁ କଟମଟ କରି ଅନାଇଥିଲା, ଯେପରି କହୁଥିଲା, ତୋ ଯୋଗୁଁ ମୁଁ ଏମିତି ଅବସ୍ଥାରେ ପଡ଼ିଲି । ତା ପାଖକୁ ଲାଗି ସୀମା ଶର୍ମା ଓ ସୋନାଲି ଦାସ ଛିଡ଼ା ହୋଇଥିଲେ ଏବଂ ଦୁହେଁ ଏକାଭଳି ମୁରୁକି ମୁରୁକି ହସୁଥିଲେ । ତାଙ୍କ ପାଖକୁ ଲାଗି ଯେଉଁ ସ୍ତ୍ରୀଲୋକଟି ଛିଡ଼ା ହୋଇଥିଲା, ତା'ର ମୁହଁଟି ସଂପୂର୍ଣ୍ଣ ଛଳି ଭୟଙ୍କର ହୋଇଯାଇଥିଲା, କିନ୍ତୁ ସେ ତା'ର ଅନ୍ଧଆଖିରେ ବଳଭଦ୍ର ଆଡ଼କୁ ନିଷ୍ପଲକ ଅନାଇ ଥିଲା । ମିତା ତା'ର ଛୁଆକୁ କାଖେଇ ତାକୁ ଗେଲ କରୁଥିଲା, କିନ୍ତୁ ବଳଭଦ୍ରକୁ ଅନାଉ ନଥିଲା । ବିକାଶ ଓ ବିନୟ ନିଜ ଭିତରେ କଥାବାର୍ତ୍ତାରେ ବ୍ୟସ୍ତ ଥିଲେ ଏବଂ କୌଣସି କଥାରେ ହସୁଥିଲେ । ସରସୀ ନିବିଷ୍ଟ ଚିତ୍ତରେ ପାନ ଖାଉଥିଲା ଏବଂ ବଳଭଦ୍ର ଆଖିରେ ଆଖି ପଡ଼ିବାରୁ ତା ଆଡ଼କୁ ପାନପିକ ପକାଇଲା । ଛୋଟା ଆଶାବାଡ଼ିରେ ତା ଆଡ଼କୁ ଦେଖାଉଥିଲା ଏବଂ ତା'ର ଗୁଣ୍ଡା ନିଶରେ ତାଉ ଦେଉଥିଲା । ସୁରମା ମଧୁବନର କାନ୍ଧ ଉପରେ ମୁଣ୍ଡ ରଖି ଶୋଇଯାଇଥିଲା ।

ଏମାନଙ୍କ ପଛରେ ଧାଡ଼ିହୋଇ ବିଭାସ ଦାସ ସମେତ କୀର୍ତ୍ତିମୁଖମାନେ ହାଜତ କୋଠରିରେ ଭିଡ଼ ଜମାଇଥିଲେ । କ୍ଲାନ୍ତ ଓ ବିରକ୍ତ ହୋଇ ବଳଭଦ୍ର ଏମାନଙ୍କ ଆଡୁ ନିଜର ମୁହଁ ଫେରାଇ ନେଲା ।

# ଭାବମୂର୍ତ୍ତି

ଉଦୟ ପ୍ରକାଶ ଯେତେବେଳେ ହସ୍‌ପିଟାଲ ଛାଡ଼ିଲା, ତାକୁ ଔଷଧର ବ୍ୟବସ୍ଥାପତ୍ର ଓ ଖାଇବା ପିଇବା ଚଳିବାର ବିଧିନିର୍ଦ୍ଦେଶ ଦେଇସାରି ଡାକ୍ତର କହିଲା, ମନେ ରଖିବେ, ଏଇଟି ଥିଲା ଆପଣଙ୍କ ପାଇଁ ଯମର ପ୍ରଥମ ଭିଜିଟିଂ କାର୍ଡ଼ । ନା, ମୁଁ ଏକଥା ଆପଣଙ୍କୁ ଭୟ ଦେଖାଇବା ପାଇଁ କହୁନାହିଁ କିମ୍ୱା ଏଥିରେ ବିଚଳିତ ହେବାର ବି କିଛି ନାହିଁ । ଆପଣ ଯଦି ଜଗିରଖି ଚଳିବେ, ଖାଇବା ପିଇବାରେ ନିୟନ୍ତ୍ରଣ ରଖିବେ ଏବଂ ଦିନକୁ ଅଧା ମାଇଲ ଚାଲିବେ, ଆଉ କୌଣସି ସମସ୍ୟା ହେବାର ଆଶଙ୍କା ନାହିଁ । ଆପଣଙ୍କ ଜୀବନ ପୁଣି ଆଗଭଳି ହୋଇଯିବ । ଡାକ୍ତର ଉଠି ଛିଡ଼ାହେଲା, ତାକୁ ବିଦାୟ ଦେବା ପାଇଁ ତା ସହିତ ହାତ ମିଳାଇ କହିଲା, ବେଷ୍ଟ ଲକ୍ !

ମାସକ ପରେ ଘରକୁ ଫେରି ଉଦୟ ପ୍ରକାଶ ପ୍ରଥମେ ଯାଇ ନିଜ ବିଛଣା ଉପରେ ଶୋଇଲା । ଏଥିରେ ଯେପରି ଏକ ସ୍ୱତନ୍ତ୍ର ପୁଲକ ଥିଲା । ଆରୋଗ୍ୟ ହୋଇଥିବା ଅପେକ୍ଷା ଘରକୁ ଫେରିବାର ଆନନ୍ଦକୁ ସେ ବେଶି ଉପଭୋଗ କରୁଥିଲା ବର୍ତ୍ତମାନ । ସେ ଯେପରି ତା'ର ଆତ୍ମବିଶ୍ୱାସ ଫେରି ପାଇଥିଲା । ଏଥରକ ଗାଧୁଆ ଘରକୁ ଯାଇ ସେ ଦର୍ପଣରେ ନିଜକୁ ଦେଖିଲା । ଏବଂ ମାନିନେଲା ଯେ ସେ ଆଉ ପୂର୍ବଭଳି ନାହିଁ । ଏଇ ମାସକ ଭିତରେ ତା'ର ଚେହେରାରେ ଅନେକ ପରିବର୍ତ୍ତନ ହୋଇଯାଇଥିଲା । ସେ ଜାଣିଥିଲା ଯେ ତା'ର ଓଜନ ଅନେକ କମିଯାଇଛି, କିନ୍ତୁ ମୁହଁ ଉପରେ ଯେ ତା'ର ଏତେ ପ୍ରଭାବ ପଡ଼ିବ, ଭାବିପାରି ନଥିଲା । ତା'ର ଆଖି ଭିତରକୁ ପଶିଯାଇଥିଲା, ଗାଲର ହାଡ଼ ଦେଖାଯାଉଥିଲା ଏବଂ ତା'ର ବୟସ ଯେପରି ହଠାତ ବଢ଼ିଯାଇଥିଲା ଅନେକ । ସେ ନିଜକୁ ଆଶ୍ୱାସନା ଦେଲା ଯେ ଡାକ୍ତରର କଥା ମାନି ଚଳିଲେ ପୁଣି କିଛିଦିନରେ ସବୁ ପୂର୍ବଭଳି ହୋଇଯିବ ।

କିନ୍ତୁ ସତରେ ହୋଇଯିବ କି ? ନିଜକୁ ପ୍ରଶ୍ନ କଲା ଉଦୟ ପ୍ରକାଶ । ସେ ଆଗରୁ କେବେହେଲେ ଏପରି ମୃତ୍ୟୁ କଥା ଭାବି ନଥିଲା । ଅବଶ୍ୟ ସେ ମୃତ୍ୟୁ ବିଷୟରେ ଅନେକ କବିତା ଲେଖିଥିଲା, କିନ୍ତୁ କବିତାର ମୃତ୍ୟୁ ଏବଂ ଡାକ୍ତର କହିଥିବା ମୃତ୍ୟୁ ଭିତରେ ଅନେକ ପ୍ରଭେଦ ଥିଲା । କବିତାର ମୃତ୍ୟୁ ଆସୁଥିଲା ଏକ କୋମଳ ଶୀତଳ

ଘନିଷ୍ଠ ଦାର୍ଶନିକ ଆଧ୍ୟାତ୍ମିକ ପରିବେଶରେ, ଦୁଃଖାନ୍ତ ସଂଗୀତର ଲହରୀରେ ଭାସି, କିନ୍ତୁ ଅନ୍ୟ ମୃତ୍ୟୁଟି ଡାକ୍ତରଖାନାର ନିର୍ବୈକ୍ତିକ କୀଟାଣୁରହିତ ରୋକଠୋକ କୋଠରିକୁ ଧସି ପଶି ଆସୁଥିଲା ହାତରେ ପରୁଆନା ଧରି । ଝଲକାଏ ଥଣ୍ଡା ପବନ ଆସି ତା ଛାତିକୁ ଧକ୍କା ଦେଲା । ଗାଧୁଆ ଘରୁ ବାହାରି ସେ ପୁଣି ବିଛଣାରେ ଶୋଇଗଲା ।

ନା, ଏଥରକ ତା'ର ଜୀବନର ଦୈନନ୍ଦିନତାକୁ ବଦଳାଇବାକୁ ପଡ଼ିବ । ଆଉ ଠିକ୍ ନୁହେଁ ତା ପାଇଁ ସମୟକୁ ଫାଙ୍କିଦେଇ ଅଦରକାରୀ କାମରେ ନିଜକୁ ବ୍ୟସ୍ତ ରଖିବା । ଆଗେ ସେ କବିତା ଲେଖିବାକୁ ବସିଛି, ତା'ର ହଠାତ ମନେ ପଡ଼ିଯାଉଥିଲା ଯେ ତା'ର ବିଜୁଳିର ବିଲ୍ ଦିଆହୋଇନାହିଁ । ବା, ମୁନିସିପାଲିଟିରୁ ଯେଉଁ ଚିଠି ଆସିଥିଲା ତା'ର ଜବାବ ଦେବାକୁ ହେବ । କବିତାର ଖାତାକୁ ଆଡ଼େଇ ଦେଇ ସେ ସାଙ୍ଗେ ସାଙ୍ଗେ ବସିଯାଉଥିଲା ଚେକ୍ ବହି ଧରି, ମୁନିସିପାଲିଟି କାଗଜର ଫାଇଲ ଖୋଲି । କବିତା ଲେଖିବା ଦୁରୂହ କାମ ନିଶ୍ଚୟ ଏବଂ ତା ସହିତ ପ୍ରତିଯୋଗିତା କରିବା ପାଇଁ ସବୁବେଳେ ଥିଲେ ନାନା ଅକିଞ୍ଚିତକର ଘରୋଇ କାମ ଯାହାକୁ ସେ ବାଛି ନେଉଥିଲା । ମନେ ମନେ ଯୁକ୍ତି କରୁଥିଲା, କବିତା ତ କାଲି ଲେଖିହେବ, କିନ୍ତୁ ଆଜି ବିଲ୍ ନଦେଲେ ବିଜୁଳି କଟିଯିବ । ଏଇଭଳି ଭାବରେ ତାକୁ ନ ଲେଖିବାର ଅନେକ ବାହାନା ମିଳିଯାଉଥିଲା । ବିଲ୍ ଦେବାକୁ ନଥିଲେ ତା'ର ମନେ ପଡ଼ିଯାଉଥିଲା ଯେ ତା'ର ବେମାର ପଡ଼ିଥିବା ବନ୍ଧୁଙ୍କୁ ଦେଖିବାକୁ ଯିବାକୁ ହେବ, ଯଦିଓ ସେ ବେମାର ପଡ଼ିଥିବାବେଳେ ବନ୍ଧୁ ତାକୁ ଦେଖିବାକୁ ଆସି ନଥିଲେ । ଉଦୟ ପ୍ରକାଶ ମନକୁ ବୁଝାଉଥିଲା ଯେ ସେ ନିଶ୍ଚୟ ତା'ର ବନ୍ଧୁଙ୍କଠାରୁ ବେଶି ଉଦାର ଏବଂ କବିତା କଦାପି ବନ୍ଧୁତ୍ୱଠାରୁ ମହତ୍ତ୍ୱପୂର୍ଣ୍ଣ ହୋଇନପାରେ । ତେବେ ସେ ଜାଣିଥିଲା ଯେ ଯଦି ତା ଉପରେ କବିତା ଲେଖିବାର ଭାର ନଥା'ନ୍ତା, ସେ କିଛି ନ କରି ଘରେ ବସି ରହିଥା'ନ୍ତା, କିନ୍ତୁ ବେମାର ବନ୍ଧୁଙ୍କୁ ଦେଖିବାକୁ ଯାଇ ନଥାନ୍ତା ।

ତା'ର ଜଣେ ସାଙ୍ଗ ଅନେକ ବର୍ଷ ଧରି ଗବେଷଣା କରୁଥିଲା, କିନ୍ତୁ ତା'ର ବହିଟି ଲେଖୁ ନଥିଲା । ପଚାରିଲେ କହୁଥିଲା, ମୁଁ ଯେ ପର୍ଯ୍ୟନ୍ତ ଜାଣି ନାହିଁ ମୋର ମୃତ୍ୟୁ କେବେ ହେବ, ବର୍ତ୍ତମାନ କାହିଁକି ବହିଟି ଲେଖିବି ? ଉଦୟ ପ୍ରକାଶ କଥାଟିର ତାତ୍ପର୍ଯ୍ୟ ଠିକ୍ ବୁଝିପାରୁ ନଥିଲେ ବି ଜାଣୁଥିଲା ଯେ ସେଥିରେ ଗୋଟିଏ ନିଚ୍ଛକ ସତ୍ୟ କେଉଁଠି କିପରି ନିହିତ ଅଛି । ତା ପାଖରେ ବର୍ତ୍ତମାନ ଏଭଳି ବାହାନା ନ ଥିଲା । ଡାକ୍ତର ତାକୁ ମୃତ୍ୟୁର ଦିନ ଲେଖିଦେଇ ନଥିଲେ ମଧ୍ୟ ତାକୁ ମୃତ୍ୟୁ ବିଷୟରେ ସଚେତନ କରି ଦେଇଥିଲେ । ଭିଜିଟିଂ କାର୍ଡ଼ ପଠାଇବା ଏବଂ ଆଗନ୍ତୁକ ସ୍ୱୟଂ ସଶରୀର ଉପସ୍ଥିତ ହେବା ଭିତରେ ସମୟର ବ୍ୟବଧାନ ଅସୀମିତ ନୁହେଁ, ଗଣିହେବା ଭଳି ମୁହୂର୍ତ୍ତ ମାତ୍ର । ତା'ର ବାପା ଯେ ଅଳ୍ପ ବୟସରେ ହୃଦରୋଗରେ ମରିଯାଇଥିଲେ, ସେ ତଥ୍ୟଟି ମଧ୍ୟ

ବାରମ୍ବାର ତା ମନକୁ ଆସୁଥିଲା ।

କିଛି ଗୋଟିଏ ବିଶେଷ ମାନସିକ ବା ଶାରୀରିକ ବିପତ୍ତି ପଡ଼ିବା ପର୍ଯ୍ୟନ୍ତ ସମସ୍ତେ ଧରି ନିଅନ୍ତି ଜୀବନ ଯେପରି ଏକ ଅସରନ୍ତି ଯାତ୍ରା, ଯେଉଁଥିରେ ମନ୍ଦଫଳର ଆଶଂକା ଥାଇ ମଧ୍ୟ ନିର୍ଣ୍ଣୟ ନିଆଯାଇପାରେ, କାରଣ ସବୁବେଳେ ଭୁଲକୁ ସୁଧାରିବାର ସମ୍ଭାବନା ଥାଏ । କିନ୍ତୁ ଏଭଳି ଦୁର୍ଗତି ଆସିବା ମାତ୍ରେ ଜୀବନ ପ୍ରତି ମଣିଷର ଦୃଷ୍ଟିକୋଣ ହଠାତ ବଦଳିଯାଏ ; ସମୟ ସୀମିତ ହୋଇଯାଏ ଓ ସମାପ୍ତିରେଖା ଦୃଷ୍ଟିର ଅବଧି ଭିତରକୁ ଆସିଯାଏ । ଉଦୟ ପ୍ରକାଶ ଆଉ ଭାବୁ ନଥିଲା ନୂଆ କ'ଣ ହାତକୁ ନେବ ; ସେ ବର୍ତ୍ତମାନ ଭାବୁଥିଲା ଅଧା ରହିଯାଇଥିବା କାମସବୁକୁ ଶେଷ କରିବ କିପରି ?

ସୁବ୍ୟବସ୍ଥିତ ପ୍ରକୃତିର ହୋଇଥିବାରୁ ଅନେକଦିନୁ ହିଁ ନିଜର ଜୀବନକୁ ସଂଗଠିତ କରିନେଇଥିଲା ଉଦୟ ପ୍ରକାଶ । ବର୍ତ୍ତମାନ ବାସ୍ତରି ବର୍ଷ ବୟସରେ ପଛକୁ ଅନାଇବାବେଳେ, କିନ୍ତୁ ତା'ର ମନେହେଲା ସେ କେଉଁଠି ଯେପରି ପୂର୍ଣ୍ଣତା ଦେଖିପାରୁ ନଥିଲା । କାହିଁକି ଏଭଳି ମନେ ହେଉଥିଲା ? ଅନେକ ଦିନ ଆଗରୁ ପ୍ରଥମ ପ୍ରଥମ ଇନ୍‌ସ୍ୟୁରାନ୍ସ କାମ ଆରମ୍ଭ କଲାବେଳୁ ସେ ଠିକ୍ କରିନେଇଥିଲା ଯେ ସେ କବି ହିଁ ହେବ । କିଛିବର୍ଷ ଧରି ତାକୁ କେହି କବିର ମାନ୍ୟତା ଦେବାକୁ ପ୍ରସ୍ତୁତ ହେଲେ ନାହିଁ, ତା'ର କାରଣ ତା'ର କବିତାର ଦୋଷ ଦୁର୍ବଳତା ନଥିଲା, ଥିଲା ତା'ର ପେସା । କୌଣସି ଅଲିଖିତ ନିୟମ ଅନୁସାରେ କବିତା ଲେଖିବାର ସ୍ୱତ୍ୱ ଓ ଅଧିକାରକୁ ହାତ କରି ନେଇଥିଲେ ଅମଲା ଓ ଶିକ୍ଷକମାନେ ଏବଂ ସେମାନେ ତାଙ୍କର ମୋହିନୀ ବୃତ୍ତ ଭିତରକୁ ଇନସ୍ୟୁରାନ୍ସ ଏଜେଣ୍ଟ ଭଳି ଇତର ଲୋକଙ୍କର ଅନୁପ୍ରବେଶ ଚାହୁଁ ନଥିଲେ । ଶେଷରେ କିନ୍ତୁ ଅଧ୍ୟବସାୟର ଜୟ ହେଲା ଏବଂ କବି ଭାବରେ ସ୍ୱୀକୃତି ମିଳିଲା ଉଦୟ ପ୍ରକାଶକୁ ।

ନିଜର ଘରସଂସାରକୁ ଗୋଛଗାଛ ଓ ପିଲାମାନଙ୍କର ଥଇଥାନ କରିସାରିବା ପରେ ସେ ତା'ର କାମ ବି ଛାଡ଼ିଦେଲା ଏବଂ ହୋଇଗଲା ପୂରାମାତ୍ରାରେ କବି । ପିଲାମାନେ ବର୍ତ୍ତମାନ ବାହାରେ ଥିଲେ ଏବଂ ସ୍ତ୍ରୀ ସହିତ ସଂପର୍କକୁ ସେ ଅନେକ ଦିନରୁ ସଜାଡ଼ି ସଂପୂର୍ଣ୍ଣ ଔପଚାରିକ କରିଦେଇଥିଲା । ନିଜର ଆୟବ୍ୟୟ ତା'ର ନିୟନ୍ତ୍ରଣରେ ଥିଲା, ସଂସାରର ଆଉ କୌଣସି ଭାର ନଥିଲା ତା ଉପରେ ଏବଂ ସେ ନିଜକୁ କବି ବିନା ଆଉ କୌଣସି ଭାବେ ଦେଖୁ ନଥିଲା । ଏବଂ ଏହା ହିଁ ଥିଲା ତା'ର ଜୀବନର ସବୁଠାରୁ ବଡ଼ ସମସ୍ୟା ।

ଉପନ୍ୟାସ ଲେଖକ ନିଜ ପାଇଁ ନିୟମ କରିଦେଇପାରେ ଯେ ସେ ପ୍ରତିଦିନ ପଚାଶ ପୃଷ୍ଠା ଲେଖିବ ହିଁ ଲେଖିବ । ନାଟ୍ୟକାର ଗୋଟିଏ ଦୃଶ୍ୟ ଲେଖୁଥିବା ସହିତ ଅଭିନେତା ଅଭିନେତ୍ରୀ ନିର୍ଦ୍ଦେଶକଙ୍କ ସହିତ ସମୟ କଟାଇପାରେ । କିନ୍ତୁ କବି ବସି

ବସି ସାରାଦିନ କବିତା ଲେଖିବା ତ ସମ୍ଭବ ନୁହେଁ ! କବିତା ଲେଖିବାର ଅନୁଷଙ୍ଗ ଯଥା ବହି ପଢ଼ିବା, କବିତା ବିଷୟରେ ଆଲୋଚନା ଇତ୍ୟାଦି କରିବା ପାଇଁ ସୁବିଧା ନଥିଲା ତା ସହରରେ । ସାହିତ୍ୟିକ ବନ୍ଧୁମାନଙ୍କ ମେଳରେ ବସିଲେ ତାକୁ ବିଭିନ୍ନ ଲେଖକ ଲେଖିକାଙ୍କର ବ୍ୟକ୍ତିଗତ ଜୀବନ, ଚରିତ୍ର ଓ ଅପକୀର୍ତ୍ତି ବିଷୟରେ ଅନେକ ରୋଚକ ଖବର ମିଳୁଥିଲା, କିନ୍ତୁ ଏଗୁଡ଼ିକର କୌଣସି ବି ସାହିତ୍ୟିକ ମହତ୍ତ୍ୱ ନ ଥିଲା । ସେ ନିଜେ ଏକ ଶୁଷ୍କ ଓ ଅସାମାଜିକ ଜୀବନଯାପନ କରୁଥିବାରୁ ଆସ୍ତେ ଆସ୍ତେ ଏଭଳି ବନ୍ଧୁମାନଙ୍କ ପାଖରୁ ଦୂରରେ ରହିବାରେ ଲାଗିଲା ଓ ଜଣେ ସଂଗବିମୁଖ ସ୍ୱାଭିମୁଖୀ ଲୋକରେ ଗଣା ହେଲା ।

ସେ ସାହିତ୍ୟ ସମାଜକୁ ଛାଡ଼ି ଦେଇଥିଲେ ବି ସେମାନେ ତାକୁ ଛାଡୁ ନଥିଲେ । ମଝିରେ ମଝିରେ ସଭାସମିତିରୁ ତାକୁ ଡାକରା ଆସୁଥିଲା ଏବଂ କେବେ କେବେ ତା'ର ସାକ୍ଷାତ୍‌କାର ନେବାପାଇଁ କେହି ପହଞ୍ଚି ଯାଉଥିଲେ । ସାକ୍ଷାତ୍‌କାରର ପର୍ବମାନ ସେଇ ଏକା ପ୍ରକାରର ଥିଲା : ତା'ର କୌଣସି ବି ଲେଖା ପଢ଼ି ନଥିବା ଯୁବକ ପତ୍ରକାର ଏବଂ ଧରାବନ୍ଧା ପ୍ରଶ୍ନମାନଙ୍କର ନିର୍ଦ୍ଦିଷ୍ଟ କ୍ରମ । ଆପଣଙ୍କର ଜନ୍ମ ତାରିଖ କ'ଣ ? ଆପଣ କେତୋଟି ବହି ଲେଖିଛନ୍ତି ? ଆପଣଙ୍କ ପ୍ରଥମ କବିତା କେଉଁଠାରେ ପ୍ରକାଶିତ ହୋଇଥିଲା ? ଆପଣ କି କି ପୁରସ୍କାର ପାଇଛନ୍ତି ? ଇତ୍ୟାଦି । ସାହସୀ ପତ୍ରକାର ହେଲେ ତାକୁ ପ୍ରେମ ସଂପର୍କରେ ପ୍ରଶ୍ନ ପଚରା ହେଉଥିଲା : ଆପଣଙ୍କ ପ୍ରେମ କବିତାର ପ୍ରେରଣା କିଏ ? ସେ ବିବାହିତା ନା ଅବିବାହିତା ? ଏକଥା ଅବଶ୍ୟ ମାନିବାକୁ ପଡ଼ିବ ଯେ ଏପର୍ଯ୍ୟନ୍ତ କେହି ତାକୁ ତା'ର ପ୍ରେରଣାର ନାଁ, ଠିକଣା ବା ଟେଲିଫୋନ ନମ୍ବର ଇତ୍ୟାଦି ପଚାରି ନଥିଲା । ଆଉ ଗୋଟିଏ ଅବଶ୍ୟ ପ୍ରଶ୍ନ ଥିଲା, ଆପଣ ଲେଖନ୍ତି କାହିଁକି ? ଉଦୟ ପ୍ରକାଶ ଏ ପ୍ରଶ୍ନର ସଂଗତି ଆଦୌ ବୁଝିପାରୁ ନଥିଲା କାରଣ ନାଟକ କରୁଥିବା, ଚିତ୍ର ଆଙ୍କୁଥିବା ବା ନାଚୁଥିବା କଳାକାରମାନଙ୍କୁ କେହି କେବେ ପ୍ରଶ୍ନ କରେ ନାହିଁ ଆପଣ କାହିଁକି ଅଭିନୟ କରନ୍ତି, ଆଙ୍କନ୍ତି ବା ନାଚନ୍ତି । ସେଇପରି ତାକୁ ପ୍ରଶ୍ନ ହେଉଥିଲା, ଆପଣଙ୍କ ପେସା ସହିତ ଆପଣଙ୍କ ଲେଖାର ସଂପର୍କ କ'ଣ, ଯାହା ଉଦୟ ପ୍ରକାଶ ମତରେ ସଂପୂର୍ଣ୍ଣ ନିରର୍ଥକ ଥିଲା । ଅମଲାତନ୍ତ୍ରୀ କବିଙ୍କ ଲେଖା ପଢ଼ିବାବେଳେ କ'ଣ ଜାଣିବା ଦରକାର କବିତାଟି ଲେଖିବାବେଳେ ସେ କୃଷି ବିଭାଗରେ ଥିଲେ ନା ପଶୁପାଳନ ବିଭାଗରେ ?

ସାକ୍ଷାତ୍‌କାରରେ ଏଭଳି ଅପ୍ରାସଙ୍ଗିକ ପ୍ରଶ୍ନବେଳେ ସେ ପ୍ରଥମେ ପ୍ରଥମେ ବିରକ୍ତ ହେଉଥିଲା । ତା'ପରେ ସେ ଏସବୁ ପ୍ରଶ୍ନକୁ ଯଥାସମ୍ଭବ ଏଡ଼ାଇ ଅସ୍ପଷ୍ଟ ଉତ୍ତର ଦେବାକୁ ଶିଖିଲା । ଯେତେବେଳେ ପତ୍ରକାରମାନେ ଏଥିରେ ଅସନ୍ତୁଷ୍ଟ ହେଲେ ଏବଂ ସେ ସେମାନଙ୍କ ସହିତ ସହଯୋଗ କରୁନାହିଁ ବୋଲି ଅଭିଯୋଗ କଲେ, ସେ ସାକ୍ଷାତ୍‌କାର

ଦେବା ପୂରାପୂରି ବନ୍ଦ କରିଦେଲା ।

ଏଇଭଳି ଅପ୍ରୀତିକର ଅଭିଜ୍ଞତା ଥିଲା ସାହିତ୍ୟ ସଭାର । ତାକୁ କେହି କିଛି କହିବା ପାଇଁ ନିମନ୍ତ୍ରଣ କଲେ ସେ ସମୟ ଦେଇ ପଢ଼ାପଢ଼ି କରି ଗୋଟିଏ ଲେଖା ତିଆରି କରୁଥିଲା, କିନ୍ତୁ ତା'ର ଏତେସବୁ ପରିଶ୍ରମ ବୃଥା ଯାଉଥିଲା ସାହିତ୍ୟ ସଭାର ଅଦ୍ଭୁତ ସଂଚାଳନରେ । ନିୟମାନୁବର୍ତ୍ତୀ ହୋଇଥିବାରୁ ସେ ଠିକ୍ ସମୟରେ ପହଞ୍ଚି ଯାଉଥିଲା, କିନ୍ତୁ ସେତେବେଳେ ସଭାରେ ଗୋଟିଏ ବି ଲୋକ ନଥା'ନ୍ତି । ତା'ର ଜୀବନକାଳରେ ସେ କୌଣସି ସଭାକୁ ଠିକ୍ ସମୟରେ ଆରମ୍ଭ ହେବାର ଦେଖି ନଥିଲା । ସଭାର ପ୍ରସ୍ତୁତିପର୍ବ ଯଥା ସଂଗୀତ, ସ୍ୱାଗତ ଭାଷଣ, ବକ୍ତାଙ୍କର ପରିଚୟ ଇତ୍ୟାଦିରେ ଏତେ ସମୟ ଚାଲିଯାଉଥିଲା ଯେ ମୂଳ ସାହିତ୍ୟଚର୍ଚ୍ଚା ବେଳକୁ ଆଉ କାହାରି ଆଗ୍ରହ ରହୁନଥିଲା କିମ୍ବା ବକ୍ତାଙ୍କୁ ଯଦି ଶେଷବେଳକୁ ଡକରା ମିଳୁଥିଲା, ସେତେବେଳେ ସଭା ଘରେ ଆଉ ଶ୍ରୋତା ରହୁନଥିଲେ । ଅନେକ ସମୟରେ ଶ୍ରୋତାମାନଙ୍କ ଆଡ଼କୁ ଅନାଇ ସେମାନଙ୍କର ଅନାଗ୍ରହ ଦେଖି ଉଦୟ ପ୍ରକାଶ ନିଜର ସଂକ୍ଷିପ୍ତ ଭାଷଣକୁ ଆହୁରି ସଂକ୍ଷେପ କରି ଦେଉଥିଲା । ଏଭଳି ବାରମ୍ବାର ବିରୂପ ଅନୁଭବ ପରେ ସେ କ୍ରମେ କ୍ରମେ ନିଜକୁ ସଭାସମିତିରୁ ମଧ୍ୟ ଅଲଗା ରଖିଲା ।

ଏତେବେଳକୁ ସେ ଜଣେ ପ୍ରତିଷ୍ଠିତ କବି ଭାବରେ ସ୍ୱୀକୃତି ପାଇସାରିଥିଲା ଏବଂ ସଚେତନ ଥିଲା ଯେ ସେ ପାଠକ ଓ ସର୍ବସାଧାରଣଙ୍କ ପାଇଁ ନିଜର ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିତ୍ୱ ତିଆରି କରିବ । ସେ ଚାହୁଁଥିଲା ତା'ର ଭାବମୂର୍ତ୍ତି ହେବ କବି, କବି ଏବଂ କବି ହିଁ । ତେବେ ଲୋକଙ୍କର ଏ ବିଷୟରେ ଭିନ୍ନ ପ୍ରକାରର ପ୍ରତ୍ୟାଶା ଥାଏ ; କବି କହିଲେ ସେମାନେ ବୁଝନ୍ତି, ଏକ ପୂରାପୂରି ଅସଂସାରୀ, ଅନିୟନ୍ତ୍ରିତ, ସ୍ୱେଚ୍ଛାଚାରୀ, ମଦ୍ୟପ ଜୀବ, ଯାହାକୁ ସହ୍ୟ କରାଯାଇପାରେ କେବଳ ତା'ର କବିତା ପାଇଁ । ନିଜେ ଏଭଳି ଜୀବନଚର୍ଯ୍ୟାରୁ ଦୂରରେ ଥିବାରୁ ଉଦୟ ପ୍ରକାଶକୁ ଏକ ବିକଳ୍ପ ଭାବମୂର୍ତ୍ତି ତିଆରି କରି ତାକୁ ପହଞ୍ଚାଇବାର ଥିଲା ସମସ୍ତଙ୍କ ପାଖରେ ଏବଂ ଏ କାମଟି ଅତ୍ୟନ୍ତ ଦୁରୂହ ଥିଲା । ସାହିତ୍ୟିକ ଗୋଷ୍ଠୀ ଓ ବନ୍ଧୁ-ମିଳନରେ ସେ ଯେତେବେଳେ ପାନୀୟ ନେବାକୁ ମନା କରୁଥିଲା, କେହିବି ବିଶ୍ୱାସ କରୁ ନଥିଲେ କି ସେ ପ୍ରକୃତରେ ପିଏ ନାହିଁ । ବରଂ ଏଭଳି ଏକ ଧାରଣା ସୃଷ୍ଟି ହେଉଥିଲା କି ସେ କପଟୀ ଏବଂ ଘରେ ପ୍ରତିଦିନ ମଦ ପିଉଥିବାବେଳେ ବାହାରେ ଦେଖାଇବାକୁ ଚାହେଁ ଯେ ସେ ଜଣେ ସାଧୁସନ୍ଥ ପୁରୁଷ । ତା'ର ପୋଷାକପତ୍ର ମଧ୍ୟ ଆଦୌ କବିସୁଲଭ ନଥିଲା । ଭାରତ ବୋଧହୁଏ ଏକମାତ୍ର ଦେଶ ଯେଉଁଠାରେ ବିଭିନ୍ନ ବୃତ୍ତିର ଲୋକଙ୍କ ପାଇଁ ବିଭିନ୍ନ ପୋଷାକର ଲୋକାଚାର ଅଛି, ଯେପରିକି ଗାନ୍ଧିଟୋପି ଦେଖିଲେ ଜାଣିହେବ ଲୋକଟି ରାଜନୈତିକ ନେତା, ବାବୁଲିବାଳରୁ ନର୍ତ୍ତକ ଓ ଅଯତ୍ନ ପୋଷାକ ଓ ଝୋଲାରୁ ବୁଦ୍ଧିଜୀବୀ ବୋଲି । କବି ପାଇଁ କୌଣସି ନିର୍ଦ୍ଧାରିତ

ପୋଷାକ ନଥିଲେ ମଧ ଦାଢ଼ି ଏକ ସହାୟକ ଭୂଷଣ ଭାବେ ଗଣ୍ୟ ହୋଇଥାଏ । ଦୁର୍ଭାଗ୍ୟକୁ ଉଦୟ ପ୍ରକାଶ ନିଶ ମଧ ରଖିନଥିଲେ । ଚରିତ୍ର ଦୃଷ୍ଟିରୁ ସେ ରକ୍ଷଣଶୀଳ ଏକପତ୍ନୀବ୍ରତା ଥିଲା ଏବଂ ନିଜ ବିଷୟରେ କୌଣସି ନାରୀ-ଜନିତ ଅପବାଦ ସୃଷ୍ଟି ହେବାକୁ ଦେଇ ନଥିଲା । ଲୋକେ ତା ବିଷୟରେ ଯାହା ଭୁଲ ଧାରଣା ରଖିଥା'ନ୍ତୁ ପଛକେ, ସେ ସ୍ଥିର କରିଥିଲା ଯେ ତା'ର ସାହିତ୍ୟିକ ପରିଚୟ ହେବ ତା'ର ଚରିତ୍ର ଦେଇ ନୁହେଁ, ବେଶ ପୋଷାକ ଦେଇ ନୁହେଁ, କେବଳ ତା'ର କବିତା, କବିତା ଏବଂ କବିତାର ହିଁ ମାଧ୍ୟମରେ ।

ଭାବମୂର୍ତ୍ତି ତିଆରି କରିବାର ଆଉ ଗୋଟିଏ ସମସ୍ୟା ଥିଲା କବିତାର ବ୍ୟାଖ୍ୟା ନେଇ । କବିତାରେ ସେ କ'ଣ କହିବାକୁ ଚାହେଁ ? କାହାରି କାହାରିକୁ ପ୍ରେମିକ କବି, ବିଦ୍ରୋହୀ କବି ବା ମୃତ୍ୟୁର କବି ଆଖ୍ୟା ଦିଆଯାଇଥିବାବେଳେ ତା ପ୍ରତି କେହି ଏପରି କୌଣସି ବିଶେଷଣ ପ୍ରୟୋଗ କରିନଥିଲେ । ସେ ବିଭିନ୍ନ ବିଷୟ ନେଇ କବିତା ଲେଖୁଥିଲା ଏବଂ ମନେ କରୁଥିଲା ତାହା ହିଁ ତା'ର ବିଶେଷତ୍ୱ । ତେବେ ସମାଲୋଚକମାନେ ସହଜରେ ଛାଡ଼ିବାର ଲୋକ ନଥିଲେ ; ସେମାନେ ଟାଣିଓଟାରି ତାକୁ ଗୋଟିଏ ଛାଞ୍ଚରେ ପକାଇବାକୁ ଚେଷ୍ଟା କରୁଥିଲେ । ଥରେ କୌଣସି ଆଲୋଚକ ତା'ର ଗୋଟିଏ କବିତାର ସମୀକ୍ଷା କରିବାକୁ ଯାଇ ଏକ ବିକୃତ ଅର୍ଥ ବାହାର କରିଥିଲେ ଯାହା କେବେବି କହିବାକୁ ଚାହିଁ ନଥିଲା ଉଦୟ ପ୍ରକାଶ । ଏଇ ପ୍ରବନ୍ଧଟି ପ୍ରକାଶ ପାଇବା ପରେ ଉଦୟ ପ୍ରକାଶ ସଂପାଦକକୁ ପତ୍ର ଲେଖି ଏକ ଦୀର୍ଘ ସ୍ପଷ୍ଟୀକରଣ ଦେଲା ସେ କାହିଁକି ଏ କବିତା ଲେଖିଥିଲା, ସେ ଏଥିରେ କ'ଣ ସଂପ୍ରେଷଣ କରିବାକୁ ଚାହେଁ, ଇତ୍ୟାଦି । ସେ ଜାଣି ନଥିଲା ଯେ ସାହିତ୍ୟ ଯୁଦ୍ଧରେ ସମାଲୋଚକମାନେ ସବୁବେଳେ ଭୟଙ୍କର ତଥା ଅଜେୟ ଓ ଅମର । ତା'ର ଚିଠିଟି ପ୍ରକାଶ ପାଇବା ପରେ ସମାଲୋଚକ ଆହୁରି ଏକ ଦୀର୍ଘ ପତ୍ର ଲେଖି ଯେଉଁ ସତ୍ୟ ସବୁ ପ୍ରତିପାଦିତ କଲେ ତା ଏପରି : କବି କାହିଁକି କବିତାଟି ଲେଖିଥିଲା, ଲେଖାର ମୂଲ୍ୟାୟନ କଲାବେଳେ ସେ ତଥ୍ୟଟି ସଂପୂର୍ଣ୍ଣ ଅପ୍ରାସଂଗିକ ; କବିତାଟି ହିଁ ସମାଲୋଚକ ପାଇଁ ସବୁକିଛି । ଲେଖା ଛପା ହୋଇସାରିବା ପରେ ସେଇଟି ସର୍ବସାଧାରଣଙ୍କ ସଂପତ୍ତି, ତା ଉପରେ ଲେଖକର କୌଣସି ଏକଚାଟିଆ ସ୍ୱତ୍ୱାଧିକାର ନାହିଁ । ଶେଷରେ ସମାଲୋଚକ ଶ୍ଳେଷ କରି ଲେଖିଥିଲେ, କବି ଆମକୁ ଗୋଟିଏ ସୁନ୍ଦର କବିତା ଦେଇଛନ୍ତି ସତ, କିନ୍ତୁ ନିଜେ ଆଦୌ ଜାଣନ୍ତି ନାହିଁ ସେ କ'ଣ ଲେଖିଛନ୍ତି !

ଏ ଘଟଣାଟି ପରେ ସେ ସମାଲୋଚକମାନଙ୍କ ସହିତ ବାକ୍ୟ ବିନିମୟ ବନ୍ଦ କରିଦେଲା ଏବଂ ଠିକ୍ କଲା ଯେ ସେ ପ୍ରତିଟି କବିତା ପାଇଁ ଗୋଟିଏ ପ୍ରାକ୍ ଭାଷ ତିଆରି କରିବ ଯେଉଁଥିରେ ସେ ଜଣାଇବ ସେ କାହିଁକି କବିତାଟି ଲେଖିଥିଲା ଏବଂ

ସେ କବିତାଟିରେ କ'ଣ କହିବାକୁ ଚାହେଁ । ଏ କାମ ଆରମ୍ଭ କରି ଦେଖିଲା ଯେ ଏଥିରେ ଅନେକ ସମସ୍ୟା । କେତେବେଳେ ତା'ର ଯଦି ମନେ ପଡୁ ନଥିଲା ସେ କାହିଁକି ଏଇଟି ଲେଖିଥିଲା ତ କେତେବେଳେ ସମାଲୋଚକ କହିଥିବା ଭଳି ସେ ନିଜେ ଜାଣି ପାରୁନଥିଲା କବିତାରେ ସେ କ'ଣ କହିବାକୁ ଚାହେଁ । ତଥାପି ସେ କାମଟି ଜାରି ରଖିଲା ଯଦିଓ ସେ ଜାଣିଥିଲା ଯେ ସେ ଯାହା କରୁଛି ତା ସର୍ବତୋଭାବେ ନ୍ୟାୟସଂଗତ ଓ ସତ୍ୟାଶ୍ରୟୀ ନୁହେଁ ।

ଏଇଭଳି ଭାବରେ ତା'ର ପରିପକ୍ୱ ସାହିତ୍ୟିକ ଜୀବନରେ ଯେଉଁ ସଂକଟମାନ ଉପୁଜୁଥିଲା ତାକୁ ସମାଧାନ କରୁଥିବାବେଳେ ସେ ବେମାର ପଡ଼ି ହସ୍‌ପିଟାଲରେ ଭର୍ତ୍ତି ହେଲା । ବର୍ତ୍ତମାନ ହସ୍‌ପିଟାଲରୁ ବାହାରି ଡାକ୍ତର ମିଆଦ ଟାଣି ଦେଇଥିବା ବଳକା ସମୟ ଆଡ଼କୁ ଅନାଇ ଉଦୟ ପ୍ରକାଶ ଉପଲବ୍ଧି କଲା ଯେ ତା'ର ଜୀବନର ଅଭିମୁଖସବୁ ବଦଳି ଯାଇଛି । ସେ ନିଜ ବିଷୟରେ, ସାହିତ୍ୟ ବିଷୟରେ ଏବଂ ଭବିଷ୍ୟତ ବିଷୟରେ ଯାହା ସବୁ ନୀତିନିୟମ ସ୍ଥିର କରିଥିଲା, ତା'ର ମନେ ହେଲା ସେ ସବୁ ଶେଷକଥା ନଥିଲେ ଏବଂ ସଂଶୋଧନର ଅପେକ୍ଷା ରଖୁଥିଲେ । ତେଣୁ ସେ ଏକ ଭିନ୍ନ ପ୍ରକାରର ଜୀବନ ପ୍ରଣାଳୀରେ ନିଜକୁ ସମର୍ପଣ କରିଦେଲା ।

ଆଗରୁ କେବେହେଲେ ସଭାସମିତି ନ ଯାଉଥିବାବେଳେ ବର୍ତ୍ତମାନ ସେ ଯେ କେବଳ ସବୁ ନିମନ୍ତ୍ରଣକୁ ସ୍ୱୀକାର କଲା ତା ନୁହେଁ, ସେ ଖୋଜି ବୁଲିଲା ଆଉ କେଉଁ ଅନୁଷ୍ଠାନ ତାକୁ ଭାଷଣ ଦେବାକୁ ଡାକିବେ । ଅଳ୍ପଦିନ ଭିତରେ ତାକୁ ରାଜ୍ୟର ବିଭିନ୍ନ ସ୍ଥାନରେ ଆଲୋଚନା ସଭା, ସାହିତ୍ୟିକ ଗୋଷ୍ଠୀ, ପୁସ୍ତକ ଉନ୍ମୋଚନ, ପୁରସ୍କାର ବିତରଣୀ, ବାର୍ଷିକ ଉତ୍ସବ ଇତ୍ୟାଦି କାର୍ଯ୍ୟକ୍ରମରେ ଦେଖିବାକୁ ମିଳିଲା । ଅଭ୍ୟାସ ଯୋଗେ ସେ ବକ୍ତୃତା ଦେବାରେ ଦକ୍ଷ ମଧ୍ୟ ହୋଇଗଲା ଏବଂ ତା'ର ନିଜ କାନକୁ ତା'ର ସ୍ୱର ପ୍ରୀତିକର ଜଣାଗଲା । ଏହା ବ୍ୟତୀତ ସେ ନିଜର ଅଧ୍ୟାପକ ବନ୍ଧୁମାନଙ୍କୁ ଅନୁରୋଧ କରି ତା'ର ଲେଖା ଉପରେ କିପରି ଗବେଷଣା ହେବ ଓ ତା'ର କବିତା ପାଠ୍ୟପୁସ୍ତକରେ ଭର୍ତ୍ତି ହେବ ତା'ର ବ୍ୟବସ୍ଥା କଲା । ଏପରିକି ଅନେକ ଚେଷ୍ଟା କରି ନିଜର କବିତାଭିତ୍ତିକ ଏକ କାର୍ଯ୍ୟକ୍ରମ ଦୂରଦର୍ଶନରେ ମଧ୍ୟ ଦେଖାଇବାରେ ସମର୍ଥ ହେଲା ଉଦୟ ପ୍ରକାଶ ।

ଏହାର ପରିଣାମ ଥିଲା ଖବରକାଗଜରେ ନାଁ ଓ ଫଟୋ ବାହାରିବା । ଏଇ ସୂତ୍ରରେ ଉଦୟ ପ୍ରକାଶ ବିଭିନ୍ନ ପ୍ରକାରର ସାକ୍ଷାତ୍‌କାର ଦେବାକୁ ମଧ୍ୟ ଆରମ୍ଭ କଲା । ଆଗରୁ ସାକ୍ଷାତ୍‌କାର ନେବାକୁ ଆସିଥିବା ଯୁବକଙ୍କୁ ହୀନିମାନ କରୁଥିବାବେଳେ ସେ ବର୍ତ୍ତମାନ ସେମାନଙ୍କୁ ସମ୍ମାନର ସହିତ ଭେଟି ସେମାନଙ୍କର ଯଥାବିଧି ଆପ୍ୟାୟାନ କରୁଥିଲା, ସେମାନେ କାଗଜକୁ ପଠାଇବା ପୂର୍ବରୁ ସେମାନଙ୍କର ଲେଖାରେ ସଂଶୋଧନ କରି ତାକୁ ମାର୍ଜିତ କରିବାର ପରାମର୍ଶ ଦେଉଥିଲା ଏବଂ ବିଷୟବସ୍ତୁ ଉପରେ ନିର୍ଭର

କରି ଖାପଖାଇବା ଭଳି ନିଜର ଫଟୋ ଯୋଗାଇ ଦେଉଥିଲା । କ୍ରମେ ସାକ୍ଷାତ୍‌କାରରେ କେବଳ ସାହିତ୍ୟ ବିଷୟ ନ ରହି ଅନ୍ୟାନ୍ୟ ବିଷୟରେ ତା'ର ମତାମତ ନିଆ ହେଲା । ଏପରିକି ଥରେ ଜଣେ ସାମ୍ବାଦିକ ତା'ର ଖାଇବାର ରୁଚି ବିଷୟରେ ଲେଖା ଲେଖି ତା ସହିତ ଉଦୟ ପ୍ରକାଶ ତିଆରି କରିଥିବା ଗୋଟିଏ ଖାଦ୍ୟର ପ୍ରସ୍ତୁତ ପ୍ରଣାଳୀ ଓ ରୋଷାଇ କରୁଥିବାବେଳେ ତା'ର ଫଟୋ ମଧ୍ୟ ପ୍ରକାଶ କଲେ । ସଭାରେ ନିଜର ସ୍ୱର ଭଳି ଖବରକାଗଜ ପୃଷ୍ଠାରେ ନିଜର ପ୍ରତିକୃତି ମଧ୍ୟ ଉଦୟ ପ୍ରକାଶକୁ ଆନନ୍ଦ ଦେଲା ।

ଏସବୁ କରିବା ସହିତ ନିଜର କବିତା ଲେଖା ମଧ୍ୟ ଅବ୍ୟାହତ ରଖିଲା ଉଦୟ ପ୍ରକାଶ । ଅଳ୍ପ ସମୟ ଭିତରେ ସେ କେତେ ବେଶି ଲେଖିପାରିବ, ଏକଥା ତା ପାଇଁ ଗୋଟିଏ ଅଗ୍ନିପରୀକ୍ଷା ଭଳି ହୋଇଗଲା ଏବଂ ଏପର୍ଯ୍ୟନ୍ତ ଅତି ସତର୍କ ଓ ସୁଚିନ୍ତିତ ଭାବରେ ଲେଖିଥିବା କବି ହୋଇଗଲା ବହୁପ୍ରସୂ ଲେଖକ । କହିବା ବାହୁଲ୍ୟ, ଲେଖାର ମାନ ଉପରେ ଏହାର ପ୍ରଭାବ ପଡ଼ିଲା ଏବଂ କେହି ଆଉ ତା'ର କବିତାକୁ ମହତ୍ତ୍ୱ ଦେଲେ ନାହିଁ । ତେବେ ଜଣେ ପ୍ରତିଷ୍ଠିତ କବି ହୋଇଥିବାରୁ ତା'ର କବିତା ପତ୍ରପତ୍ରିକା ପୃଷ୍ଠାକୁ ଅଳଙ୍କୃତ କରିବାରେ ଲାଗିଲେ ଯଦିଓ ତା'ର କେହି ପାଠକ ରହିଲେ ନାହିଁ ।

ଏପରି ପ୍ରଚଣ୍ଡ ଗତିରେ ଲେଖିବା ସହିତ ସେ ତା'ର ପ୍ରତିଟି ପୁରୁଣା କବିତାର ଆମୁଖ ଲେଖି ଚାଲିଲା ଯେପରିକି ଭବିଷ୍ୟତରେ ତା'ର ଲେଖାର ଉପଯୁକ୍ତ ମୂଲ୍ୟାୟନ ହେବ ଏବଂ କୌଣସି ବ୍ୟାଖ୍ୟାକାର ତା'ର କବିତାରୁ ଟାଣି ଓଟାରି ଭୁଲ ଅର୍ଥ ବାହାର କରିବେ ନାହିଁ । ତା'ର ଦୁଃଖ ଥିଲା ଯେ ତା'ର କବିତାର ଗୁଣକୁ ନେଇ ଏପର୍ଯ୍ୟନ୍ତ ତାକୁ କୌଣସି ଉପନାମ ଦିଆଯାଇ ନଥିଲା । ନିଜର ପୁରୁଣା କବିତାକୁ ପଢ଼ିବାବେଳେ ତା'ର ମନେହେଲା ଯେ ତାକୁ ଅସ୍ତିତ୍ୱବାଦୀ କବି କୁହାଯାଇପାରେ । ସେଥିପାଇଁ ସେ ନିଜର କବିତାମାନଙ୍କର ଭୂମିକା ଲେଖିବାବେଳେ ତାକୁ ଅସ୍ତିତ୍ୱବାଦର ଛାଞ୍ଚରେ ପକାଇବାକୁ ଯତ୍ନ କଲା ଏବଂ ସାକ୍ଷାତ୍‌କାରରେ ପ୍ରଚ୍ଛନ୍ନ ଭାବରେ ଏ କଥାର ଇଙ୍ଗିତ ଦେଲା । ଏକଥା ସହିତ ସେ ଜଣାଇବାକୁ ଚାହୁଁଥିଲା ଯେ ସେ ନିଜେ ନାସ୍ତିକ ଥିବାରୁ ତା'ର କବିତାମାନ ବସ୍ତୁବାଦୀ ଥିଲେ ଏବଂ ସେଥିରେ କୌଣସି ଆଧ୍ୟାତ୍ମିକ ବା ଧାର୍ମିକ ଭାବ ନଥିଲା । ସେ କବିତାର ଭୂମିକାରେ ଏ କଥାର ମଧ୍ୟ ଇଙ୍ଗିତ ଦେଲା ।

ସାହିତ୍ୟିକ କ୍ରିୟାକଳାପ ସହିତ ସେ ନିଜର ସ୍ୱାସ୍ଥ୍ୟର ମଧ୍ୟ ତତ୍ତ୍ୱାବଧାନ କରୁଥିଲା, କିନ୍ତୁ ସେ କାମରେ ସେ ଅପାରଗ ଓ ସଂପୂର୍ଣ୍ଣ ନିସ୍ପୃହ ଥିଲା । ସେ ଦୈନିକ ପ୍ରାତଃଭ୍ରମଣ କରିବାରେ ହେଳା କରୁଥିଲା, ଖାଇବା ପିଇବାରେ ସଂଯମୀ ନ ଥିଲା ଏବଂ ଔଷଧର ନିୟମିତତା ରଖୁ ନଥିଲା । ପ୍ରତିଥର ଡାକ୍ତରଙ୍କୁ ଭେଟିବାବେଳେ ସେ ଏଥିପାଇଁ ତା ଉପରେ ଅପ୍ରସନ୍ନ ହେଉଥିଲେ ଏବଂ ତା'ର ଜୀବନର ମିଆଦକୁ ଆଉ କିଛି କମାଇ ଦେଉଥିଲେ । ଶେଷରେ ଡାକ୍ତରଙ୍କ ଉପରେ ବିରକ୍ତ ହୋଇ ସ୍ଥିର କରିନେଲା

ଯେ ସେ ଆଉ ଅଳ୍ପଦିନ ମାତ୍ର ବଞ୍ଚିବ ଏବଂ ଏକଥା ସ୍ୱୀକାର କରିନେବା ପରେ ଖାଇବା ପିଇବା, ଔଷଧ ଓ ବ୍ୟାୟାମର ସବୁ ନିୟନ୍ତ୍ରଣକୁ ସେ ବେଖାତିର କରିଦେଲା । ଏଥରକ ସେ ନିଜର ସମସ୍ତ ସମୟ ଓ ଶ୍ରମ ବ୍ୟୟ କଲା ନିଜର ମୃତ୍ୟୁ ପାଇଁ ପ୍ରସ୍ତୁତି କରିବାରେ ।

ପ୍ରଥମେ ସେ ତା'ର ସ୍ଥାବରାସ୍ଥାବର ସଂପତ୍ତିର କାଗଜପତ୍ର ଠିକ୍ କରି ସ୍ତ୍ରୀକୁ ବୁଝାଇଲା । ଏସବୁ ହଳଦିଆ ପଡ଼ିଯାଇଥିବା କାଗଜରେ ସ୍ତ୍ରୀର କୌଣସି ଆଗ୍ରହ ନଥିଲା ଏବଂ ପ୍ରତିଟି କାଗଜର ମହତ୍ତ୍ୱ ଓ ଆବଶ୍ୟକତା ବିଷୟରେ ତା'ର ବକ୍ତୃତା ସତ୍ତ୍ୱେ ଶେଷକୁ କେବଳ ହଉ ବୋଲି କହିଲା । କାଗଜସବୁକୁ ଏକାଠି କରି ଆଲମାରି ଥାକରେ ରଖି ଉଦୟ ପ୍ରକାଶ ତା ଉପରେ ଜମି ଓ ଟଙ୍କା ପଇସାର ଜରୁରୀ କାଗଜ ବୋଲି ଗୋଟିଏ ଚିଠା ଲଗାଇଦେଲା ।

କିନ୍ତୁ ସଂପତ୍ତି ଭଳି ତା'ର କବିତାର ହିସାବନିକାଶ କରି କାହାକୁ ବୁଝାଇଦେବା ସହଜ ନଥିଲା । ଆଲମାରିର ଆଉ ଥାକମାନ ଖାଲି କରି ସେଥିରେ ତା'ର ସମସ୍ତ ସାହିତ୍ୟିକ କୃତିକୁ ସୁବ୍ୟବସ୍ଥିତ ଭାବରେ ରଖିବାରେ ମନ ଦେଲା ଉଦୟ ପ୍ରକାଶ । ସେ ଆଉ ନୂଆ କବିତା ଲେଖିବା ବନ୍ଦ କରିଦେଲା, ଏପରିକି ସଭାସମିତିକୁ ଯିବା ମଧ୍ୟ କମାଇ ଦେଲା ଏବଂ ଲାଗିଗଲା କିପରି ଭାବରେ ତା'ର ସମଗ୍ର ସାହିତ୍ୟକୁ ସେ ଭବିଷ୍ୟତରେ ପାଠକଙ୍କ ପାଇଁ ଉପସ୍ଥାପିତ କରିବ ।

ଏଥିପାଇଁ ନିଜର ଏକ ଜୀବନପଞ୍ଜି ତିଆରି କରିବାବେଳେ ତା'ର ମନେ ପଡ଼ିଲା ଯେ ସେ ଅନେକ ସମ୍ମାନ ପାଇଥିବାବେଳେ ଦେଶର ସର୍ବୋଚ୍ଚ ସାହିତ୍ୟ ପୁରସ୍କାରଟି ତାକୁ ଏପର୍ଯ୍ୟନ୍ତ ମିଳି ନଥିଲା । ଥରେ ଏକଥା ମୁଣ୍ଡକୁ ଆସିବା ପରେ ଏହି ପୁରସ୍କାର ତା'ର ଚିନ୍ତାର କେନ୍ଦ୍ରସ୍ଥଳ ହୋଇଗଲା । ତା'ର ମନେହେଲା ଯେ କୌଣସି ଏକ ଗଭୀର ଚକ୍ରାନ୍ତ ବଳରେ ତାକୁ ଏହି ସାରସତ୍ୱ ମର୍ଯ୍ୟାଦାରୁ ବଞ୍ଚିତ କରାଯାଇଛି ଏବଂ ସେଇ ମୁହୂର୍ତ୍ତରୁ ସେ ଲାଗିପଡ଼ିଲା କିପରି ମରିବା ଆଗରୁ ପୁରସ୍କାରଟି ହସ୍ତଗତ କରିବ ।

ଏହାର ପ୍ରଣାଳୀଟି ସୁବିଧାଜନକ ନଥିଲା । ଅନେକ ସ୍ତରରେ ବିଭିନ୍ନ ଲେଖକଙ୍କ ସୁପାରିସ ସବୁ ଉପରୁ ଉପରକୁ ଯାଇ ଶେଷରେ ଏକ ଶୀର୍ଷ ବିଚାରକ ମଣ୍ଡଳୀରେ ଏହାର ନିଷ୍ପତ୍ତି ହେଉଥିଲା । ଉଦୟ ପ୍ରକାଶ ଚେଷ୍ଟା କଲା କିପରି ପ୍ରତି ସ୍ତରରେ ତା ନାଁ ସୁପାରିସ ହେବ । ସେଥିପାଇଁ ଜଣା ଅଜଣା ଅନେକ ଲେଖକଙ୍କୁ ଭେଟି ଖୋସାମତ କରିବାର ଥିଲା । ଉଦୟ ପ୍ରକାଶ ଏ କାମରେ ତା'ର ମନପ୍ରାଣ ଲଗାଇ ଦେଲା । ଲେଖକମାନଙ୍କୁ ସନ୍ତୁଷ୍ଟ କରିବାର ସବୁ ଉପାୟ ବ୍ୟବହାର କଲା ସେ, ଯଥା, ଯୁବକ ଲେଖକଙ୍କ ବହିର ଅତିରଂଜିତ ଓ ଅତିଶୟୋକ୍ତିପୂର୍ଣ୍ଣ ସମୀକ୍ଷା ଲେଖିବା, ପୁସ୍ତକ ଉନ୍ମୋଚନ କରିବା ଓ ସେଠାରେ ଲେଖକର ପ୍ରଶଂସା କରିବା, ଲେଖକମାନଙ୍କର ଜନ୍ମତାରିଖ ଖୋଜି

ସେମାନଙ୍କୁ ଶୁଭକାମନା ପଠାଇବା, ବୟସ୍କ ଲୋକମାନଙ୍କ ଘରକୁ ଯାଇ ସେମାନଙ୍କର ସ୍ତୁତି କରିବା, ନିଜ ବିଷୟରେ ଯେଉଁଠାରେ ଯାହା ପ୍ରଶଂସନୀୟ ଲେଖା ବାହାରିଥିଲା ତା'ର ନକଲ ସମସ୍ତଙ୍କ ପାଖକୁ ପଠାଇବା, ନିଜର ସଦ୍ୟ ପ୍ରକାଶିତ ବହିରେ ଚାଟୁକାରୀ ଉତ୍ସର୍ଗପତ୍ର ଲେଖି ତାକୁ ଉଦାରତାର ସହିତ ବାଣ୍ଟିବା, ଇତ୍ୟାଦି ଇତ୍ୟାଦି ।

ସମସ୍ତ ଚେଷ୍ଟା ସତ୍ତ୍ୱେ ସେ ବର୍ଷ ଯେତେବେଳେ ପୁରସ୍କାରଟି ତାକୁ ଏଡ଼ାଇ ଗଲା, ଉଦୟ ପ୍ରକାଶ କିଛିଦିନ ଉଦାସ ରହିଲା । ତା'ର ଏତେଦିନର ପରିଶ୍ରମ ଯେ କେବଳ ନିରର୍ଥକ ଥିଲା ତା ନୁହେଁ, ସେ ଜାଣିପାରୁଥିଲା ଯେ ସେ ବର୍ତ୍ତମାନ ସମସ୍ତଙ୍କ ଆଗରେ ନିଜକୁ ଶସ୍ତା ଓ ଉପହାସର ପାତ୍ର କରି ଦେଇଥିଲା । ତା'ର ଏତେଦିନର କଷ୍ଟରେ ଉପାର୍ଜିତ ଭାବମୂର୍ତ୍ତି ଆଉ ନଥିଲା । ଦେହ ଖରାପ ଆଗରୁ ତା'ର ଯେଉଁ ନାଁ ଥିଲା ତାକୁ ସେ ନିଜେ ଅନେକାଂଶରେ ଭାଙ୍ଗି ନିଜର ଅନ୍ୟ ଏକ ପରିଚୟ ତିଆରି କରିଦେଇଥିଲା ହସ୍‌ପିଟାଲରୁ ଫେରିବା ପରେ । ସେ ଜାଣୁଥିଲା ଯେ ପୁରସ୍କାର ପଛରେ ଧାଇଁବା ପରେ ତା'ର ଖ୍ୟାତି ବର୍ତ୍ତମାନ ସର୍ବନିମ୍ନ ଥିଲା । ବିରକ୍ତ ହୋଇ ସେ ପୁରସ୍କାର ଦେଉଥିବା ବିଚାରକ ମଣ୍ଡଳୀକୁ ଗାଳି ଦେଲା ଏବଂ ସ୍ଥିର କଲା ଯେ ଆଉ ଏଥିରେ ମନ ଦେବ ନାହିଁ ।

କିନ୍ତୁ ପରବର୍ଷ ଯେତେବେଳେ ପୁରସ୍କାରର ପ୍ରକ୍ରିୟା ଆରମ୍ଭ ହେଲା, ଉଦୟ ପ୍ରକାଶ ପଛକଥା ଭୁଲିଯାଇ ପୁଣି ଥରେ ନିଜକୁ ମନପ୍ରାଣ ଦେଇ ଲଗାଇଦେଲା ତାକୁ ଯେଉଁମାନେ ସହାୟକ ହେବେ ସେମାନଙ୍କ ସେବାରେ । ଛ'ମାସ କାଳ ଏଥିରେ ତା'ର ପୂରା ସମୟ ବିନିଯୋଗ କରି ଉଦୟ ପ୍ରକାଶ ପ୍ରାୟ ନିଶ୍ଚିନ୍ତ ହୋଇଗଲା ଯେ ଏ ବର୍ଷ ପୁରସ୍କାରଟି ତାକୁ ମିଳିବ ହିଁ ମିଳିବ । ଏପରିକି ପୁରସ୍କାର ଗ୍ରହଣ କଲାବେଳେ ସେ କି ଭାଷଣ ଦେବ ତା'ର ଗୋଟିଏ ଚିଠା ମଧ୍ୟ ପ୍ରସ୍ତୁତ କରିନେଲା ମୋଟାମୋଟି ଭାବରେ ।

ଏହିପରି ମନେ ମନେ ପୁରସ୍କାରଟି ପାଇସାରିବା ପରେ ସେ ମୃତ୍ୟୁ ପରବର୍ତ୍ତୀ ନିଜର ସ୍ମୃତିରକ୍ଷା ବିଷୟରେ ମନ ଦେଲା । ତା'ର ପିଲାମାନେ ବାହାରେ ଥିଲେ ତଥା ସାହିତ୍ୟର ଧାର ଧାରୁ ନଥିଲେ । ତା'ର ସ୍ତ୍ରୀର କୌଣସି ରୁଚି ବା ଆଗ୍ରହ ନଥିଲା ତା'ଠାରେ ବା ତା'ର କବିତା ଲେଖାରେ । ସେମାନଙ୍କ ଉପରେ ନିର୍ଭର କରିବା ବୃଥା । ତା'ର ମନେପଡ଼ିଲା ଯେ କେହି ଲେଖକ କାଳେ ଭବିଷ୍ୟତରେ ତାଙ୍କୁ ଲୋକେ ଭୁଲିଯିବେ ସେଥିପାଇଁ ମରିବା ଆଗରୁ ନିଜର ଆବକ୍ଷ ପ୍ରତିମୂର୍ତ୍ତି ତିଆରି କରାଇ ରଖିଯାଇଥିଲେ । ଅନେକ ଭାବିଚିନ୍ତି ସେ ଠିକ୍ କଲା ଯେ ସେ ଗୋଟିଏ ବେନାମୀ ସଂସ୍ଥା ତିଆରି କରିବ ଯାହା ତା'ପରେ ତା'ର ସାହିତ୍ୟ ଓ ସ୍ମୃତିରକ୍ଷାର ବ୍ୟବସ୍ଥା କରିବ । ଅନେକ ଭାବିଚିନ୍ତି ଶେଷକୁ ଏ କାମ ପାଇଁ ସେ ଶୁଭାଶିଷ ବୋଲି ଜଣେ ଶାନ୍ତଶିଷ୍ଟ, ଭୟାଳୁ ଓ ଧର୍ମଭୀରୁ ଯୁବକକୁ ବାଛିଲା ଏବଂ ତାକୁ ନିମିତ୍ତ କରି ଗୋଟିଏ ପ୍ରତିଭା ପୂଜା ପରିଷଦ ଟ୍ରଷ୍ଟ

ତିଆରି କଲା ଯାହାର ପ୍ରଧାନ ଓ ଏକମାତ୍ର କାମ ହେବ ଉଦୟ ପ୍ରକାଶର ମୃତ୍ୟୁ ପରେ ତା'ର କବିତାର ପ୍ରକାଶ, ପ୍ରଚାର ଓ ପ୍ରସାର କରିବା ଏବଂ ତା'ର ବାର୍ଷିକୀ ପାଳିବା ।

ଏପରି ଭାବରେ ନିଜର ଜୀବନକୁ ସବୁମତେ ସୁବ୍ୟବସ୍ଥିତ କରି ଓ ଭବିଷ୍ୟତ ପାଇଁ କାର୍ଯ୍ୟପନ୍ଥା ଓ ଆନୁଷ୍ଠାନିକ ଆୟୋଜନ କରି ଉଦୟ ପ୍ରକାଶ ଶାନ୍ତିର ନିଃଶ୍ୱାସ ନେଲା ଏବଂ ଜାଣିଲା ଯେ ସେ ଗୋଟିଏ ସଫଳ ଜୀବନ ଜୀଇଁବା ସାଙ୍ଗେ ସାଙ୍ଗେ ଭବିଷ୍ୟତରେ ଲୋକମାନେ ତାକୁ କିଭଳି ଭାବେ ଦେଖିବେ ଓ ଜାଣିବେ ତା'ର ମଧ୍ୟ ବ୍ୟବସ୍ଥା କରିଯାଉଛି । ଏଥର କେବଳ ଅପେକ୍ଷା ଥିଲା ସେଇ ସର୍ବୋଚ୍ଚ ପୁରସ୍କାରଟି ହାସଲ କରିବାର । କିନ୍ତୁ ଉଦୟ ପ୍ରକାଶର ଜୀବନରେ ସେଇ ଗୋଟିଏ ଖେଦ ରହିଗଲା । ପୁରସ୍କାରଟି ଘୋଷଣା ହେବା ପୂର୍ବରୁ ହିଁ ଦିନେ ଖରାଦିନ ଦିପହରେ ବିଛଣାରେ ଶୋଇଥିବାବେଳେ ଉଦୟ ପ୍ରକାଶର ଦେହାନ୍ତ ହେଲା ।

ଉଦୟ ପ୍ରକାଶକୁ ସବୁକିଛି ହାଲୁକା ଲାଗୁଥିଲା । ଛାତ ଉପରେ ଭାସୁଥିବା ଅବସ୍ଥାରେ ତଳକୁ ଅନାଇ ସେ ବିଛଣାରେ ଶୋଇଥିବା ନିଜର ଶବକୁ ଦେଖୁଥିଲା, କିନ୍ତୁ ଆଦୌ ଭାରାକ୍ରାନ୍ତ ଅନୁଭବ କରୁନଥିଲା । ସେ ଦେଖି ପାରୁଥିଲା, ଶୁଣି ପାରୁଥିଲା, ମନଇଚ୍ଛା ବିଚରଣ କରି ପାରୁଥିଲା ଏବଂ ତା'ର ସବୁକଥା ଅନୁଭବ ଓ ବିଚାର କରିବାର ଶକ୍ତି ଥିଲା । କିନ୍ତୁ ନିଜ ଆଡ଼କୁ ଅନାଇ ସେ ହୃଦୟଙ୍ଗମ କଲା ଯେ ତା'ର କୌଣସି ଆକାର ନାହିଁ ଏବଂ ସେ ସଂପୂର୍ଣ୍ଣ ଅଦୃଶ୍ୟ । ଏଇଟି ମଧ୍ୟ ଏକ ସୁଖପ୍ରଦ ଅନୁଭୂତି ଥିଲା ।

ଶବର ମୁହଁକୁ ଅନାଇ ସେ କଳ୍ପନା କଲା ; ମୁହଁଟି ଶାନ୍ତ, ଭାବାବିଷ୍ଟ ଏବଂ ସଂପୂର୍ଣ୍ଣ କବିସୁଲଭ ଥିଲା । ଏକଥା ଉଦୟ ପ୍ରକାଶକୁ ସନ୍ତୋଷ ଆଣିଦେଲା । ଏଥରକ ତା ଆଖିରେ ପଡ଼ିଲା ମୁହଁ ଉପରେ ଉଡ଼ି ବୁଲୁଥିବା ମାଛିଟି । ସେ ତଳକୁ ଓହ୍ଲାଇ ଆସି ତାକୁ ଘଉଡ଼ାଇ ଦେବାକୁ ଚେଷ୍ଟା କଲା, କିନ୍ତୁ ମାଛି ତା ଭିତର ଦେଇ ଉଡ଼ିଯାଉଥିଲା ଏବଂ ତା'ର କିଛି ବି ପ୍ରଭାବ ପଡ଼ିଲା ନାହିଁ ମାଛିଟି ଉପରେ ! ବିରକ୍ତ ହୋଇ ସେ ଉପରକୁ ଫେରିଗଲା ଏବଂ ଅନ୍ୟମାନଙ୍କ ଆଡ଼କୁ ଅନାଇଲା ।

ସେ ଭାବିଥିଲା ଯେ ସମସ୍ତେ ଉଚ୍ଚସ୍ୱରରେ କାନ୍ଦୁଥିବେ, କିନ୍ତୁ ଏପରି କିଛି ହେଉ ନଥିଲା । ମୃତ୍ୟୁ ଖବର ପାଇ ଆଖପାଖର ଯେଉଁମାନେ ଆସି ଘର ଭିତରେ ଭିଡ଼ କରୁଥିଲେ, ସେମାନଙ୍କ ମୁହଁରେ ଦୁଃଖ ନୁହେଁ, ଏପରି ଅବେଳାରେ ଗୋଟିଏ ଶବର ଦାୟିତ୍ୱ ନେବାକୁ ପଡୁଥିବାରୁ ବିରକ୍ତି ଦେଖାଯାଉଥିଲା । ତା'ର ସ୍ତ୍ରୀ ଶବକୁ ଛାଡ଼ିଦେଇ ରୋଷେଇ ଘରକୁ ଚାଲିଯାଇଥିଲା ଅତିଥିମାନଙ୍କ ପାଇଁ ଚା'ର ବ୍ୟବସ୍ଥା କରିବାକୁ । ମୋଟ ଉପରେ ଜଣେ ପ୍ରସିଦ୍ଧ ଲୋକର ମୃତ୍ୟୁରେ ଯାହାସବୁ ହେବା କଥା, କିଛି ବି ଆରମ୍ଭ ହୋଇ ନଥିଲା ଏପର୍ଯ୍ୟନ୍ତ । ତା'ର କଳ୍ପନା କରିଥିବା ଫୁଲର ସ୍ତୂପ ଓ ଟେଲିଭିଜନ

କ୍ୟାମେରାର ଦେଖାଦର୍ଶନ ନଥିଲା । ଉଦୟ ପ୍ରକାଶ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କଲା କେତେବେଳେ ଭିଡ଼ ଆରମ୍ଭ ହେବ ।

କିନ୍ତୁ ସମୟ କ୍ରମେ ଯାହାସବୁ ହେଲା ସେଭଳି ଆଦୌ କଳ୍ପନା କରିନଥିଲା ଉଦୟ ପ୍ରକାଶ । ସେ ଭାବିଥିଲା ଯେ ପିଲାମାନଙ୍କ ପାଖକୁ ତା'ର ଯିବ ଏବଂ ସେମାନେ ଆସିବା ପର୍ଯ୍ୟନ୍ତ ବରଫ ଉପରେ ତା'ର ଶବ ଫୁଲରେ ସଜ୍ଜା ହୋଇ ରହିବ ଯେପରିକି ଦୂରଦୂରାନ୍ତରୁ ତା'ର ପ୍ରଶଂସକ ଭକ୍ତ ସ୍ତାବକମାନେ ଆସି ତା'ର ଶେଷଦର୍ଶନ କରିବାର ସୁଯୋଗ ପାଇବେ । ସେ ଗୋଟିଏ କାଗଜରେ ତା'ର ଶବସତ୍କାରର ବିସ୍ତୃତ ନିର୍ଦ୍ଦେଶ ଲେଖି ରଖିଥିଲା ନାସ୍ତିକ ଥିବାରୁ ସେ ଚାହୁଁଥିଲା ଯେ ତା'ର ଶବକୁ ବୈଦ୍ୟୁତିକ ଦାହଗୃହରେ ଜଳାଇ ଦିଆଯିବ କୌଣସି ଧାର୍ମିକ କୃତ୍ୟ ଓ କର୍ମକାଣ୍ଡ ବିନା । ତା'ର ସ୍ତ୍ରୀ କିନ୍ତୁ ପୂଜାପାଠରେ ବିଶ୍ୱାସ ରଖୁଥିଲା ଏବଂ କେହି ଜଣେ ଉଦୟ ପ୍ରକାଶର ଶେଷ ଇଚ୍ଛା ବିଷୟରେ କହିବାରୁ କହିଲା, ତା କେମିତି ହେବ ? ସେ ଆସ୍ତିକ ଥିଲେ କି ନାସ୍ତିକ ଥିଲେ ଅଲଗା କଥା, ହିନ୍ଦୁ ତ ଥିଲେ ! ସେଥିପାଇଁ ସବୁକଥା ବିଧିମତେ ହେବ, ସେ ଯାହା ଲେଖି ଯାଇଥାନ୍ତୁ ପଛେ । ଏକଥା କହିସାରି ସ୍ତ୍ରୀ ଗୋଟିଏ ଟେପ୍‌ରେକର୍ଡ଼ର ଆଣି ସେଥିରେ ଗୀତାର ଆବୃତ୍ତିଟିଏ ଲଗାଇଦେଲା ।

ଶୁଭାଶିଷ ତା'ର ଦଳବଳ ନେଇ ପହଞ୍ଚିବାରେ ଆଶ୍ୱସ୍ତ ହେଲା ଉଦୟ ପ୍ରକାଶ । ସେମାନଙ୍କ ସହିତ ଫଟୋଗ୍ରାଫର ଥିଲେ ଏବଂ ଖବରକାଗଜର ପ୍ରତିନିଧି ଥିଲେ । ସେମାନେ ଟେଲିଭିଜନର ପ୍ରତିନିଧିଙ୍କୁ ଅପେକ୍ଷା କରୁଥିବାବେଳେ ସ୍ତ୍ରୀ ଆସି ଜଣାଇ ଦେଲା ଯେ ଯେତେ ଶୀଘ୍ର ସମ୍ଭବ ଶବକୁ ଘରୁ ବାହାର କରିବାକୁ ହେବ । ଉଦୟ ପ୍ରକାଶ ଚାହିଁଲା ଚିତ୍କାର କରି କହିବ ଏକଥା ତା'ର ଇଚ୍ଛାର ବିରୋଧୀ, କିନ୍ତୁ ଯେତେ ଚେଷ୍ଟା କଲେ ବି ତା'ର ବାର୍ତ୍ତା କାହାରି ପାଖରେ ପହଞ୍ଚି ପାରିଲା ନାହିଁ ଏବଂ ଅତି ଶୀଘ୍ର ତା'ର ସ୍ତ୍ରୀ ପଡ଼ୋଶୀମାନଙ୍କ ସାହାଯ୍ୟରେ ଶବକୁ ନେଇ ହିନ୍ଦୁ ଶ୍ମଶାନରେ ଯଥାବିଧି କ୍ରିୟାକର୍ମାଣି ସହିତ ଦାହ କରିଦେଇ ଆସିଲା । ଏସବୁ ଦେଖି ଉଦୟ ପ୍ରକାଶର ମନ ପୂରାପୂରି ଭାଙ୍ଗିଗଲା ଏବଂ ସେ ସ୍ତ୍ରୀ ପାଖରୁ ଯାଇ ଶୁଭାଶିଷର କାର୍ଯ୍ୟକଳାପରେ ମନ ଦେଲା ।

ସେ ଖୁସି ଥିଲା ଯେ ତା'ର ମୃତ୍ୟୁ ଖବର ରେଡ଼ିଓ ଓ ଟେଲିଭିଜନରେ ପ୍ରସାରିତ ହେଲା ଏବଂ ପରଦିନ ସକାଳର ଖବରକାଗଜରେ ମଧ୍ୟ ଫଟୋ ସହିତ ତା'ର ମୃତ୍ୟୁ ସମ୍ବାଦ ପ୍ରକାଶ ପାଇଲା । ଶୁଭାଶିଷ ସାରାଦିନ ଏକ ଶୋକସଭା ଆୟୋଜନରେ ବ୍ୟସ୍ତ ରହିଲା ଏବଂ ସନ୍ଧ୍ୟାବେଳେ ସଭାକୁ ଦୂରରୁ ଦେଖି ଉଦୟ ପ୍ରକାଶ ସାନ୍ତ୍ୱନା ଲାଭ କଲା ଯେ ଯାହାହେଉ ସେଠାକୁ ଅନେକ ଗଣ୍ୟମାନ୍ୟ ଲୋକ ଆସିଥିଲେ ଏବଂ ଅନେକ ଶୋକବାର୍ତ୍ତା ପଠାଇଥିଲେ । ସଭାରେ ସମସ୍ତେ ତା'ର ଗୁଣଗାନ କଲେ । ଯେଉଁ କେତେକ

ଲେଖକଙ୍କ ସହିତ ତା'ର ଅପଡ଼ ଥିଲା, ଏପରିକି ସେମାନେ ମଧ୍ୟ କିଛି ବିରୋଧୀ କଥା କହିଲେ ନାହିଁ । ସେମାନେ ତା'ର ସାହିତ୍ୟ ବିଷୟରେ ଯାହାସବୁ ମତାମତ ଦେଲେ ତା ଉଦୟ ପ୍ରକାଶର ମନଃପୂତ ନଥିଲା, ତେବେ ସମସ୍ତ ବ୍ୟବସ୍ଥାଟି ସନ୍ତୋଷଜନକ ଥିଲା । ଯଦିଓ ଶୁଭାଶିଷ ମୁଖ୍ୟମନ୍ତ୍ରୀଙ୍କଠାରୁ ଗୋଟିଏ ବାର୍ତ୍ତା ଆଣିବାକୁ ସଫଳ ହୋଇ ନଥିଲା, ଉଦୟ ପ୍ରକାଶ ମନେକଲା ଯେ ଯାହାହେଉ ନିଜର ସ୍ମୃତିରକ୍ଷା ପାଇଁ ସେ ଗୋଟିଏ ଠିକ୍ ଲୋକକୁ ବାଛିଛି ।

ପରଦିନ ଓକିଲ ତା ଘରକୁ ଆସିଲା ସ୍ତ୍ରୀକୁ ଉଦୟ ପ୍ରକାଶର ଇଚ୍ଛାପତ୍ରଟି ଦେଇ ସେ ବିଷୟରେ ଆଲୋଚନା କରିବାକୁ । ଉଦୟ ପ୍ରକାଶ ଭାବିଥିଲା ଯେ ପିଲାମାନେ ମଧ୍ୟ ଖବର ପାଇ ଆସି ଯାଇଥିବେ, କିନ୍ତୁ ସ୍ତ୍ରୀଠାରୁ ଜଣାପଡ଼ିଲା ଯେ ସେ ସେମାନଙ୍କୁ ଆସିବାକୁ ମନା କରିଦେଇଥିଲା ସେମାନେ ସକାଳ ଆଗରୁ ଆସି ପହଞ୍ଚି ପାରି ନଥା'ନ୍ତେ ବୋଲି । ଇଚ୍ଛାପତ୍ର ପଢ଼ି ସ୍ତ୍ରୀ ଯେତେବେଳେ ଜାଣିଲା ଯେ କିଛି ଟଙ୍କାପଇସା ଗୋଟିଏ ଟ୍ରଷ୍ଟକୁ ଦିଆଯାଇଛି, ସେ ଓକିଲ ସହିତ ଭଲରେ କଥାବାର୍ତ୍ତା କଲାନାହିଁ ଏବଂ ତା ପାଇଁ ମଗାଇଥିବା ଚା' ପହଞ୍ଚିବା ଆଗରୁ ହିଁ ଓକିଲକୁ ବିଦାୟ ଦେଇଦେଲା । ଘର କଣରେ ରହି ଉଦୟ ପ୍ରକାଶ ଏ ଦୃଶ୍ୟଟି ମଧ୍ୟ ଦେଖିଲା, ତେବେ ଆଶ୍ଚର୍ଯ୍ୟ ହେଲା ନାହିଁ, କାରଣ ତାକୁ ଭଲଭାବେ ଜଣାଥିଲା ସ୍ତ୍ରୀର ସ୍ୱଭାବ ଚରିତ୍ର କିପରି ।

ଯେଉଁଦିନ ଶୁଭାଶିଷ ତା ଘରକୁ ଗଲା, ସ୍ତ୍ରୀ ମିଜାଜ ପଞ୍ଚମରେ ଥିଲା । ସେ କିଛି କହିବା ଆଗରୁ ସ୍ତ୍ରୀ ଅଭିଯୋଗ କଲା ଯେ ଉଦୟ ପ୍ରକାଶର ଶାରୀରିକ ମାନସିକ ଅସୁସ୍ଥତା ଓ ଦୁର୍ବଳତାର ସୁଯୋଗ ନେଇ ସେମାନେ ତା'ର ସଂପତ୍ତିରୁ ଭାଗ ନେଇ ଯାଇଛନ୍ତି । ଶୁଭାଶିଷ ଯେତେ ବୁଝାଇଲା ଯେ ଏଥିରେ ସେମାନଙ୍କର କିଛି ବି ସ୍ୱାର୍ଥ ନାହିଁ ଏବଂ ସମସ୍ତ ପଇସା ଉଦୟ ପ୍ରକାଶଙ୍କ ସ୍ମୃତି ପାଇଁ ହିଁ ଖର୍ଚ୍ଚ ହେବ, ସ୍ତ୍ରୀ ସନ୍ତୁଷ୍ଟ ହେଲା ନାହିଁ । ଶୁଭାଶିଷ ଯେତେବେଳେ ପ୍ରୟାତ କବିଙ୍କ ଗୁଣଗାନ କରିବାକୁ ଆରମ୍ଭ କଲା, ଉଦୟ ପ୍ରକାଶ ଖୁସି ହେଲା, କିନ୍ତୁ ତା'ର ସ୍ତ୍ରୀ ବିରକ୍ତ ହୋଇ କହିଲା, ଥାଉ ଥାଉ , ଏତେ ଭଲେଇ ହେବା ଦରକାର ନାହିଁ । ତମ ପାଇଁ ସେ ବଡ଼କବି ହୋଇଥିବେ, ତାଙ୍କରି ଟଙ୍କାରେ ତାଙ୍କର ପୂଜା କରୁଥାଅ । ମୁଁ ତାଙ୍କର ସବୁ କାଗଜପତ୍ର ତମକୁ ଦେଇଦଉଛି ; ଯା'ପରେ ଆଉ ଏ ଘରର ହତା ମାଡ଼ିବା ଦରକାର ନାହିଁ । ଏତିକି କହି ଆଲମାରିରେ ଉଦୟ ପ୍ରକାଶ ଅତି ଯତ୍ନରେ ସଜାଇଥିବା ତା'ର ସାହିତ୍ୟିକ ସଂପତ୍ତିକୁ ସ୍ତ୍ରୀ ବିରକ୍ତିର ସହିତ ଓଟାରି ଆଣି ତଳକୁ ଫିଙ୍ଗିଦେଲା ।

ଉଦୟ ପ୍ରକାଶ ଠିକ୍ କଲା ଯେ ତା'ର ସାହିତ୍ୟ ପ୍ରତି ଏଭଳି ସଂପୂର୍ଣ୍ଣ ବିମୁଖ ଓ ଉଦାସୀନ ସ୍ତ୍ରୀ ସହିତ ଆଉ କୌଣସି ସଂପର୍କ ରଖିବ ନାହିଁ । ତେବେ ତିନିଦିନ ପରେ ଯେତେବେଳେ ଟେଲିଭିଜନବାଲା ତା'ର ସ୍ତ୍ରୀର ସାକ୍ଷାତ୍‌କାର ନେବା ପାଇଁ ଆସି

ପହଞ୍ଚିଲେ, ଉଦୟ ପ୍ରକାଶ ସେଠାରେ ଉପସ୍ଥିତ ରହିବାର ଲୋଭକୁ ସମ୍ବରଣ କରିପାରିଲା ନାହିଁ । ଏଇ ଅବସର ପାଇଁ ସ୍ତ୍ରୀ ତା'ର ସବୁଠୁ ଭଲ ପୋଷାକ ପିନ୍ଧି ନିଜକୁ ସଜାଇଥିଲା ଓ ଅତିଥିମାନଙ୍କ ପାଇଁ ଆପ୍ୟାୟନର ବ୍ୟବସ୍ଥା କରିଥିଲା । ବସିବା ଘରର ସବୁଠାରୁ ଆରାମଦାୟକ ସୋଫା ଉପରେ ବସି ତା'ର ସ୍ତ୍ରୀ ବର୍ତ୍ତମାନ ମୁହଁ ଉପରେ ପଡୁଥିବା ତୀବ୍ର ଆଲୁଅ ଆଡ଼କୁ ଅନାଇ ସଂପୂର୍ଣ୍ଣ ଆତ୍ମବିଶ୍ୱାସ ସହିତ ପ୍ରଶ୍ନକର୍ତ୍ତାଙ୍କୁ ଉଦୟ ପ୍ରକାଶ ବିଷୟରେ କହୁଥିଲା । ପ୍ରତିଟି କବିତା ଲେଖିବା ପରେ, ସ୍ତ୍ରୀ କ୍ୟାମେରାକୁ କହିଲା, ସେ ମତେ ସେଇଟି ପଢ଼ିବାକୁ ଦେଉଥିଲେ ଏବଂ ଯେ ପର୍ଯ୍ୟନ୍ତ ମୁଁ ସେଇଟିକୁ ଅନୁମୋଦନ କରୁ ନଥିଲି, କବିତାଟି ଛପା ହେବାକୁ ଯାଉ ନଥିଲା । ମୁଁ ଥିଲି ତାଙ୍କର କବିତାମାନଙ୍କର ପ୍ରଥମ ପାଠକ ଓ ସମାଲୋଚକ । ଏକଥା ଶୁଣି ଉଦୟ ପ୍ରକାଶ ଆଶ୍ଚର୍ଯ୍ୟଚକିତ ହେଲା, କିନ୍ତୁ ପରବର୍ତ୍ତୀ ପ୍ରଶ୍ନମାନଙ୍କର ଯେଉଁ ଉତ୍ତର ଦେଲା ତା ଆହୁରି ବିସ୍ମୟକର ଥିଲା । ସେ ଯେତେସବୁ ପ୍ରେମ କବିତା ଲେଖିଥିଲେ ସବୁ ମୋ ପାଇଁ ଉଦ୍ଦିଷ୍ଟ ଥିଲା, ତା'ର ସ୍ତ୍ରୀ କହିଲା, ଏବଂ ସେ ସବୁବେଳେ ଏକପତ୍ନୀବ୍ରତୀ ଥିଲେ । କେବଳ କିଛିବର୍ଷ କେଉଁ ମାୟାବିନୀର ଜାଲରେ ପଡ଼ି ସେ ମୋ ପାଖରୁ ଦୂରେଇ ଯାଇଥିଲେ, କିନ୍ତୁ ପରେ ନିଜର ଭୁଲ ବୁଝିପାରି ଫେରି ଆସିଥିଲେ ମୋ ପାଖକୁ । ତେବେ ଉଦୟ ପ୍ରକାଶ ସେ ନାରୀଟି ପାଇଁ କୌଣସି କବିତା ଲେଖି ନଥିଲେ । ଅତି ସହଜ ଭାବେ ତା'ର ସ୍ତ୍ରୀ ଏଭଳି ଅମୂଳକ ଓ ସଂପୂର୍ଣ୍ଣ ମନଗଢ଼ା କଥା କହି ଚାଲିଥିଲା ଏବଂ ଉଦୟ ପ୍ରକାଶ ଛଟପଟ ହେଉଥିଲା ଯେ ସେ ଏହାର ପ୍ରତିବାଦ କରିପାରୁ ନାହିଁ । ଯେତେବେଳେ ତା'ର ଧର୍ମବିଶ୍ୱାସ ଉପରେ ପ୍ରଶ୍ନ ହେଲା, ସ୍ତ୍ରୀ ନିର୍ବିକାର ଭାବେ କହିଲା, ସେ ବାହାରକୁ ଦେଖାଇବାକୁ ଚାହୁଁଥିଲେ ଯେ ସେ ଜଣେ ନାସ୍ତିକ, କିନ୍ତୁ ପ୍ରକୃତରେ ଥିଲେ ଜଣେ ସଂପୂର୍ଣ୍ଣ ଧାର୍ମିକ ଲୋକ । ସକାଳେ ପୂଜାପାଠ ନକଲେ ସେ କୌଣସି କାମ ଆରମ୍ଭ କରୁ ନଥିଲେ ।

ଏଭଳି ଅନର୍ଗଳ ମିଛକଥା ଶୁଣି ଉଦୟ ପ୍ରକାଶର ମନ ଭାଙ୍ଗିଗଲା ଏବଂ ସେ ସେଠାରୁ ଉଠିଗଲା ଶୁଭାଶିଷ କ'ଣ କରୁଛି ଦେଖିବାକୁ । ସେଇଦିନ ସକାଳେ ଶୁଭାଶିଷ ଟ୍ରଷ୍ଟ ହିସାବରୁ କିଛି ଟଙ୍କା ବାହାର କରିଥିଲା ଏବଂ ତା'ର ପ୍ରଥମ ଉପଯୋଗ କରିଥିଲା ମଦ କିଣିବାରେ । ଶୁଭାଶିଷ ସମେତ ପାଞ୍ଚଜଣ ଯୁବଲେଖକ ବର୍ତ୍ତମାନ ମଦ ବୋତଲଟିକୁ ଘେରି ବସିଥିଲେ । ଉଦୟ ପ୍ରକାଶ ଘରୁ ସେ ଯେଉଁ କାଗଜପତ୍ର ଆଣିଥିଲା ତା ବିଡ଼ା ବନ୍ଧାହୋଇ ଘରର ଗୋଟାଏ କଣରେ ପଡ଼ିଥିଲା । ଉଦୟ ପ୍ରକାଶକୁ ସଂପୂର୍ଣ୍ଣ ଅଶିଷ୍ଟ ଓ ଅଶୋଭନ ଲାଗିଲା ପରିବେଶଟି । ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲା ଶୁଭାଶିଷ ମଦ ପିଉଥିବ ବୋଲି । ଗିଲାସରେ ମଦ ଢାଳି ସମସ୍ତେ ପ୍ରଥମ ଢୋକ ପିଇବାବେଳେ ତା'ର ନାଁ ନେଲେ, ସାମାନ୍ୟ ଆଶ୍ୱସ୍ତ ହେଲା ଉଦୟ ପ୍ରକାଶ ।

ମଦ ପିଇବା ସହିତ ହାଲୁକା ନିଶାରେ ଉଦୟ ପ୍ରକାଶ ପାଇଁ ଅନେକ ପ୍ରଶଂସାଜନକ କଥା କହିଲେ ଯୁବକମାନେ । କିନ୍ତୁ ଯେତେବେଳେ ବୋତଲଟି ସରିଗଲା, ସେମାନଙ୍କ ଉତ୍ସାହରେ ଯେପରି ଭଟ୍ଟା ପଡ଼ିଗଲା । ଜଣେ କହିଲା, ଶୁଭାଶିଷ ଭାବୁଛି ଏ ଯେମିତି ତା'ର ଝାଳବୁହା ଧନ । ଯାହାର ପଇସା ସେ ଶଳା ତ ମଲାଣି ଗଲାଣି । ତା ପଇସାର ଅନ୍ତତଃ ସଦ୍‌ବ୍ୟବହାର ହେଉ । ଶୁଭାଶିଷ କହିଲା, ପ୍ରଥମେ ମୋର ଦାୟିତ୍ୱ ସଂପୂର୍ଣ୍ଣ କବିତା ବହି ବାହାର କରିବା ; ତା'ପରେ ଯୋଉ କଥା । ସାଙ୍ଗ କହିଲା, ବହି ପାଇଁ ତ କାମ କରିବାକୁ ପଡ଼ିବ ! ସେଥିପାଇଁ ଆମକୁ ରୋଜ୍ ଭେଟିବାକୁ ହେବ, କିନ୍ତୁ ମଦ ବିନା ପୁଣି କି ଭେଟ ? ତୁ ଏମିତି କର, ଡଜନେ ବୋତଲ ଏକା ସାଙ୍ଗେ କିଣିଆଣି ରଖିଦେ । ପାଖରେ ବୋତଲ ବି ଥିବ, ବହି କାମ ବି ଚାଲିଥିବ ।

ଶୁଭାଶିଷ ପାଖରୁ ଟଙ୍କା ନେଇ ଜଣେ ସ୍କୁଟରରେ ଗଲା ମଦ ଓ ଢାବାରୁ ଖାଇବା ଜିନିଷ ଆଣିବା ପାଇଁ । ଏଥରକ ସେମାନେ ବହିଛପା କଥାରେ ମନଦେଲେ । ଉଦୟ ପ୍ରକାଶ ଯେ ପ୍ରତିଟି କବିତା ପାଇଁ କେତେ ଧାଡ଼ି ଆମୁଖ ଲେଖି ରଖିଛି ସେ ବିଷୟରେ ଚର୍ଚ୍ଚା ହେଲା । ଅନେକ ତର୍କବିତର୍କ ପରେ ସ୍ଥିର ହେଲା ଯେ ବହିରେ ସେମାନେ ଏ ଆମୁଖକୁ ବ୍ୟବହାର କରିବେ ନାହିଁ, କାରଣ କବିତା ବହିରେ ଏଭଳି କୌଣସି ପ୍ରଥା ନାହିଁ । ତା'ର ଏତେ ପରିଶ୍ରମର ଫଳକୁ ସେମାନେ ଏତେ ସହଜରେ ନାକଚ କରିଦେବା ଦୁଃଖୀ କରିଦେଲା ଉଦୟ ପ୍ରକାଶକୁ ।

ତାକୁ ଆହୁରି ଧକ୍କା ଲାଗିଲା ଯେତେବେଳେ ଦ୍ୱିତୀୟ ବୋତଲରୁ ମଦ ପିଉପିଉ ସମସ୍ତଙ୍କର ହାବଭାବ ବଦଳିଗଲା ଓ କଥାବାର୍ତ୍ତା ଭିନ୍ନରୂପ ନେଲା । ଶାନ୍ତଶିଷ୍ଟ ଭୀରୁ ପ୍ରକୃତିର ଶୁଭାଶିଷ ବର୍ତ୍ତମାନ ସବୁଠାରୁ ବେଶି ଉଗ୍ର ଜଣାପଡୁଥିଲା ଏବଂ ତା'ର କଥାବାର୍ତ୍ତାରେ ସଂଯମ ନଥିଲା । ସେ ଉଚ୍ଚସ୍ୱରରେ କହୁଥିଲା, ମୋର କ'ଣ ଏସବୁ କାମ ପାଇଁ ସମୟ ଥିଲା ? ଖାଲି ବୁଢ଼ା ମତେ ନେହୁରା ହୋଇ କହିବାରୁ ମୁଁ ମାନିଗଲି । ତା'ଠୁ କେତେ ଭଲ କବି ଅଛନ୍ତି । କ'ଣ ଆଉ କରାଯିବ ? ଦାୟିତ୍ୱ ଯେତେବେଳେ ନେଇଛି ତୁଲାଇବାକୁ ହେବ । ଏହାପରେ ସମସ୍ତେ ତା'ର କବିତା ସମାଲୋଚନା କରିବାରେ ଲାଗିଗଲେ । ମାତ୍ର କିଛି ସମୟ ପୂର୍ବେ ଯେଉଁମାନେ ତା'ର ଲେଖାର ପ୍ରଶଂସା କରୁଥିଲେ, ସେଇମାନେ ତା'ର କବିତାର ଦୁର୍ବଳତା ବାହାର କରି ତାକୁ ନ୍ୟୂନ କରିବାରେ ଲାଗିଲେ । ଉଦୟ ପ୍ରକାଶକୁ ଦୁଃଖ ଲାଗିଲା ଯେ ଏଇ ଆଲୋଚନାରେ ତା'ର ସବୁଠାରୁ ଉତ୍କଟ ସମାଲୋଚକ ଥିଲା ଶୁଭାଶିଷ ନିଜେ ! ବିରକ୍ତ ହୋଇ ସେ ସେଠାରୁ ଉଠିଗଲା ।

ପରଦିନ ସକାଳେ ଶୁଭାଶିଷର ଘରକୁ ଯାଇ ସେ ଦେଖି ଖୁସି ହେଲା ଯେ ଶୁଭାଶିଷ ପୁଣି ପୂର୍ବଭଳି ଶାନ୍ତ ଓ ପ୍ରକୃତିସ୍ଥ ଥିଲା ଏବଂ ଉଦୟ ପ୍ରକାଶର କବିତା ପ୍ରେସ୍‌କୁ ପଠାଇବା ପାଇଁ ପ୍ରସ୍ତୁତ କରୁଥିଲା । ଉଦୟ ପ୍ରକାଶ ତା ପଛରେ ଠିଆହୋଇ

ବହିର ଖୋଲାପୃଷ୍ଠାକୁ ଅନାଇଲା । ଏଇଟି ଗୋଟିଏ ପୁରୁଣା କବିତା ଥିଲା ଯାହାର ଗୋଟିଏ ଧାଡ଼ି ଥିଲା, ହେ ଈଶ୍ୱର, ସେମାନଙ୍କୁ କ୍ଷମା କର । ଏ କବିତାର ଆମୁଖରେ ସେ ଲେଖିଥିଲା ଯେ ଏ ଧାଡ଼ିଟି କେବଳ କଥାର କଥା ମାତ୍ର ଏବଂ ଏହାଦ୍ୱାରା ସେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଆଦୌ ମାନି ନେଉନାହିଁ । ଶୁଭାଶିଷର ପେନସିଲ ଏହି ଧାଡ଼ିଟି ଉପରେ ଅଟକି ଯାଇଥିଲା । ଉଦୟ ପ୍ରକାଶ ତାକୁ ଧାର୍ମିକ ପ୍ରକୃତିର ବୋଲି ଜାଣିଥିଲା, କିନ୍ତୁ ଜାଣି ନଥିଲା ଯେ ସେ ଜଗନ୍ନାଥଙ୍କର ଜଣେ ପରମ ଭକ୍ତ । ଶୁଭାଶିଷ ଧାଡ଼ିଟିକୁ ପେନସିଲରେ କାଟିଲା ଏବଂ ଉଦୟ ପ୍ରକାଶ ତାକୁ ଯେତେ ନାସ୍ତିସୂଚକ ବାର୍ତ୍ତା ପଠାଇବାକୁ ଚେଷ୍ଟା କଲା, ସେ ତା ଜାଗାରେ ଲେଖିଲା, କାଳିଆରେ ଦେ ତୋର ଶରଧା ବାଲିରୁ ଟିକେ ।

ଉଦୟ ପ୍ରକାଶ ଠିକ୍ କଲା ଯେ ସେ ଆଉ ଭବିଷ୍ୟତ ପାଇଁ ଚିନ୍ତା ନକରି ଏଇ ଖଳ ଲୋକମାନଙ୍କୁ ଛାଡ଼ିଦେଇ ଚାଲିଯିବ ସ୍ୱର୍ଗ ବା ନର୍କରେ ନିଜର ଆତ୍ମା ପାଇଁ ଜାଗା ଖୋଜିବାକୁ । କିନ୍ତୁ ତା'ର ଲୋଭ ହେଲା ସେଇ ପୁରସ୍କାରଟିର କ'ଣ ହେଲା ଜାଣିବାକୁ । ଏ ବିଷୟରେ ଠାବ କରି ଠିକ୍ ଦିନ ଚୟନ ପରିଷଦର ସଭାରେ ପହଞ୍ଚିଲା ବେଳକୁ ଆଲୋଚନା ସରଗରମ ପର୍ଯ୍ୟାୟରେ ଥିଲା । ପ୍ରସଙ୍ଗ କିନ୍ତୁ ଦୁଇ ପ୍ରତିଦ୍ୱନ୍ଦ୍ୱୀ ଲେଖକଙ୍କ ସମ୍ପର୍କରେ ନଥିଲା ; ତର୍କବିତର୍କର ବିଷୟ ଥିଲା ଜଣେ ମଲାଲୋକକୁ ପୁରସ୍କାର ଦିଆଯିବ କି ନାହିଁ । ଜଣେ ସଭ୍ୟ ଅନେକ ମରଣୋତ୍ତର ପୁରସ୍କାରର ନଜିର ଦେଖାଇଲେ, କିନ୍ତୁ ଅନ୍ୟ ଜଣକର ମତ ଥିଲା ଯେ ମଲାଲୋକକୁ ପୁରସ୍କାର ଦେଲେ ତା'ର କୌଣସି ଲାଭ ହୁଏ ନାହିଁ, କିନ୍ତୁ ବଞ୍ଚିଥିବା ଲୋକର କ୍ଷତି ହୁଏ । ଏପରି ଭାବରେ ଅନେକ ସମୟ ଧରି ଆଲୋଚନା ଲାଗି ରହିଲା । ଯେଉଁ ଶିଳ୍ପପତି ଏହି ପୁରସ୍କାରଟି ଦେଉଥିଲେ ଏବଂ ବର୍ତ୍ତମାନ ଆଲୋଚନାରେ ସଭାପତିତ୍ୱ କରୁଥିଲେ, ସେ ତାଙ୍କର ପରବର୍ତ୍ତୀ ସଭାକୁ ଯିବା ପାଇଁ ବ୍ୟସ୍ତ ଥିଲେ । ସାହିତ୍ୟିକମାନେ କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରୁ ନଥିବାରୁ ସେ ଆଲୋଚନାରେ ଉପସଂହାର ଟାଣି ନିର୍ଣ୍ଣୟ କଲେ ଯେ ପୁରସ୍କାରଟିକୁ ଭାଗ ବାଣ୍ଟି ଉଭୟଙ୍କୁ ଦିଆଯିବ । ଅଧା ପୁରସ୍କାରର ଅଧା ଆନନ୍ଦ ନେଇ ଉଦୟ ପ୍ରକାଶ ସେଠାରୁ ଫେରିଲା ।

ଇହ ସଂସାରକୁ ଶେଷଥର ପାଇଁ ଛାଡ଼ି ଚାଲିଯିବା ଆଗରୁ ଉଦୟ ପ୍ରକାଶ ଚାହୁଁଥିଲା ତା'ର ସଂପୂର୍ଣ୍ଣ କବିତା ବହିଟିକୁ ଛପା ଆକାରରେ ଦେଖିବ ଏବଂ ତା'ର ପ୍ରଥମ ଶ୍ରାଦ୍ଧବାର୍ଷିକୀରେ ଲୋକମାନେ ତା'ର କିଭଳି ପରିଚୟ ମନେ ରଖିଛନ୍ତି ସେ କଥା ଜାଣିବ । ଶୁଭାଶିଷ ଘରେ ମଦ୍ୟପାନର ଆସରରେ ସେ ଯେଉଁ ବହିଟିକୁ ଦେଖିଲା ତା ଆକାର, କାଗଜ, ପ୍ରଚ୍ଛଦ, ଅକ୍ଷର, ବନ୍ଧାଇ କୌଣସିଟି ତା'ର ମନମୁତାବକ ନଥିଲା । ସେମାନେ ବହିଟି ଖୋଲି ପଢ଼ିବାବେଳେ ଉଦୟ ପ୍ରକାଶ ଦେଖିଲା ଯେ

ଶୁଭାଶିଷ ସେଥିରେ ଅନେକ ଜାଗାରେ ଯଥେଚ୍ଛା କାଟଛାଣ୍ଟ କରିଥିଲା । ସେ ଆଶା କଲା ଯେ ଅନ୍ତତଃ ଭବିଷ୍ୟତରେ କେହି ହୁଏତ ତା'ର ପୁରୁଣା କାଗଜରୁ ତା'ର ମୂଳ କବିତା ଓ ଆମୁଖମାନଙ୍କୁ ଯୋଡ଼ି ତା'ର ଲେଖାର ଏକ ଶୁଦ୍ଧ ସଂସ୍କରଣ ବାହାର କରିବ । କାନ୍ଥ ପାଖରେ ଯେଉଁ ଜାଗାରେ ତା'ର କାଗଜପତ୍ର ରଖାଯାଇଥିଲା ସେଠାକୁ ଅନାଇ ଉଦୟ ପ୍ରକାଶ ଦେଖିଲା ଯେ ଜାଗାଟି ଖାଲି ଥିଲା । ଶୁଭାଶିଷର କଥାବାର୍ତ୍ତାରୁ ଜଣାଗଲା ଯେ ବହିଟି ଛପା ହେବାରୁ ତା'ର କାଗଜ ସବୁକୁ କବାଡ଼ିବାଲାକୁ ରଦ୍ଦି ଦରରେ ବିକ୍ରି କରି ଦିଆଯାଇଛି ।

ବର୍ତ୍ତମାନ କେବଳ ରହିଲା ଶ୍ରାଦ୍ଧସଭା କଥା । ଅତି ନିସ୍ପୃହ ଭାବରେ ମଞ୍ଚ ଉପରକୁ ଅନାଇଲା ଉଦୟ ପ୍ରକାଶ । ସଂସ୍କୃତି ବିଭାଗର ମନ୍ତ୍ରୀଙ୍କ ସହିତ ତା ଉପରେ ବିରାଜମାନ ଥିଲେ ତା'ର ସ୍ତ୍ରୀ, ଶୁଭାଶିଷ ଓ ସେଦିନ ସଭାରେ ଗୀତ ଗାଇବାକୁ ଆସିଥିବା ସଂଗୀତଜ୍ଞ । ସଭାଘରେ ବେଶ୍ ଭିଡ଼ ଥିଲା, ତେବେ ଜଣାଗଲା ଯେ ଅଧିକାଂଶ ଗୀତ ଶୁଣିବା ପାଇଁ ଆସିଥିଲେ, କାରଣ ସେ ପର୍ବଟି ପରେ ସଭାଘର ପ୍ରାୟ ଖାଲି ହୋଇଗଲା । ତା'ପରେ ଯେଉଁ ବକ୍ତୃତାମାନ ହେଲା ସେଥିରେ ଉଦୟ ପ୍ରକାଶର ମନ ଲାଗିଲା ନାହିଁ କାରଣ ତାକୁ ଜଣାଗଲା ସେମାନେ ଯେପରି ଅନ୍ୟ କେଉଁ ଲୋକ ବିଷୟରେ କହୁଥିଲେ । ତା'ର ବ୍ୟକ୍ତିଗତ ସ୍ୱଭାବ ଚରିତ୍ର ବିଷୟରେ ଯାହା ବର୍ଣ୍ଣନା ହେଲା ତା ସହିତ ଉଦୟ ପ୍ରକାଶର କୌଣସି ସାମଞ୍ଜସ୍ୟ ନଥିଲା ଏବଂ ତା'ର ଲେଖାର ଯେଉଁ ବିଶ୍ଳେଷଣ ହେଲା ତା ଆଦୌ ସେପରି ନଥିଲା । ଯେଉଁ ଦୁଇଜଣଙ୍କ ଉପରେ ସେ ସବୁଠାରୁ ଅସନ୍ତୁଷ୍ଟ ଥିଲା - ତା'ର ସ୍ତ୍ରୀ ଓ ଶୁଭାଶିଷ - ସେ ଦୁହେଁ ଏ ସଭାର ମୁଖ୍ୟ ଆକର୍ଷଣ ଥିଲେ ଏବଂ ବକ୍ତାମାନଙ୍କର ଭାଷଣକୁ ଆନନ୍ଦରେ ଗ୍ରହଣ କରୁଥିଲେ । ବିରକ୍ତ ହୋଇ ମଞ୍ଚର ଡାହାଣ ପାଖ ଚଉକି ଉପରେ ଫୁଲମାଳ ସଜା ହୋଇ ରହିଥିବା ନିଜର ତୈଳଚିତ୍ର ଆଡ଼କୁ ଅନାଇଲା ଉଦୟ ପ୍ରକାଶ । ଏଇଟିକୁ ଶସ୍ତାରେ କୌଣସି ଅର୍ବାଚୀନ ଚିତ୍ରକାର ହାତରେ ତିଆରି କରା ହୋଇଥିଲା । ଉଦୟ ପ୍ରକାଶ ଉପଲବ୍ଧି କଲା ଯେ ଏଇ ତଥାକଥିତ ପ୍ରତିକୃତିଟି ମଧ୍ୟ ଆଦୌ ତା ଭଳି ଦେଖା ଯାଉ ନଥିଲା ।

# କବିତାର ଦୀର୍ଘ ଜୀବନ

ଝରକା ଦେଇ ଆସୁଥିବା ଆଲୁଅ ଓ ଶୋର ଶବ୍ଦ ଭିତରେ ଆଖି ଖୋଲିଲା ଦେବନାଥ । ଆଜିକାଲି ଶୋଇବା ଉଠିବା, ବା ଅନ୍ୟ କିଛି କାମ କରିବାର କୌଣସି ଠିକଣା ସମୟ ନାହିଁ ତା'ର । ଭୋକ ଲାଗିଲେ ଖାଏ, ନିଦ ଲାଗିଲେ ଶୁଏ, ଆଖି ଖୋଲିଲେ ଉଠେ । କାଲି ରାତିରେ ଭଲ ନିଦ ହୋଇଥିଲା, ସକାଳକୁ ଭଲ ଲାଗୁଛି ଆଜି । ତଳକୁ ହାତ ବଢ଼ାଇ ଚଟାଣରେ ପଡ଼ିଯାଇଥିବା ତକିଆକୁ ଉଠାଇଲା ଓ ପାଖ ଟେବୁଲରୁ ଚଷମା ଆଣି ଆଖିରେ ଲଗାଇଲା ଦେବନାଥ । ଏଥିରେ ଆଉ ଠିକ୍‌ରେ ଦେଖାଯାଉ ନାହିଁ । ଚଷମା ଓ ନିଜ ଆଖିକୁ କାନିରେ ପୋଛି ଆଉ ଥରେ ଚାରିଆଡ଼କୁ ଅନାଇ ସେ ବୁଝିଲା ଯେ ଏଥରକ ଚଷମାର କାଚ ବଦଳାଇବାକୁ ହେବ । ଏଇ ସୂତ୍ରରୁ ତା'ର ମନେ ପଡ଼ିଲା ଯେ ଆହୁରି ଅନେକ କାମ ବାକି ରହିଯାଇଛି, କିନ୍ତୁ ଇଚ୍ଛାକରି ସେ ତାକୁ ସବୁ ମନରୁ ବାହାର କରିଦେଲା । କିଛି ଲାଭ ନାହିଁ ସେ ସବୁର ହିସାବ ରଖି । ଯାହା କାଲି କରାଯାଇପାରେ, ତା ଆଜି କାହିଁକି ?

ସେ ହାତମୁହଁ ଧୋଇ ଟେବୁଲ ପାଖରେ ବସିଛି, ହରି ମାଷ୍ଟରଙ୍କ ଚାକରପିଲା ତା ଆଗରେ ଗରମ ଚା'ଗ୍ଲାସ୍ ଆଣି ରଖିଦେଇ ଗଲା । ନିଜର ଭାଗ୍ୟକୁ କୃତଜ୍ଞତା ଜଣାଇଲା ଦେବନାଥ ଏପରି ଏକ ବତ୍ସଳ-ପରିବାର ପାଖରେ ପାଇଥିବାରୁ । ସେ ଯେତେବେଳେ ବି ନିଦରୁ ଉଠୁନା କାହିଁକି, ତା ପାଖରେ ଚା' ପହଞ୍ଚି ଯାଉଥିଲା ; ଭୋକ ଲାଗିଲା ବେଳକୁ ଆଗରେ ଆସି ଭାତଥାଳି ରହୁଥିଲା ।

କାଚଥାକରୁ ଡବା ଆଣି ଦେବନାଥ ସେଥିରୁ ଗୋଟିଏ ବିସ୍କୁଟ ବାହାର କରି ଚା'ରେ ବୁଡ଼ାଇଲା ଓ ଉଠୁଥିବା କ୍ଷୀଣ ଧୂଆଁର ଆବର୍ତ୍ତ ଆଡ଼କୁ ଅନାଇ ଠିକ୍ କଲା ଯେ ଆଜି ଖଟ ତଳୁ ଟ୍ରଙ୍କ ବାହାର କରି ତା ଭିତରୁ ଗରମ ଲୁଗା ବାହାର କରିବ । ଅନେକ ଦିନ ହେଲା ସାମାନ୍ୟ ଶୀତ ପଡୁଛି, କିନ୍ତୁ ସେ କରିବ କରିବ ବୋଲି ଏଇ ଛୋଟ କାମଟିକୁ ଏ ପର୍ଯ୍ୟନ୍ତ ଟାଳି ଦେଉଛି । ଗଲାକାଲିର ଖବରକାଗଜ ବି ଏ ପର୍ଯ୍ୟନ୍ତ ପଢ଼ା ହୋଇନାହିଁ ତା'ର । ଟେବୁଲ ଉପରୁ ସେଇଟିକୁ ଉଠାଇ ଆଣି ତା ଉପରେ ଆଖି ବୁଲାଇଲା । ଦେଶ ବିଦେଶରେ ଏତେ ଖବର ଭିତରୁ କୌଣସିଟି ତା ମନ ଭିତରେ

କୌଣସି ପ୍ରତିକ୍ରିୟା ତିଆରି କରି ପାରିଲା ନାହିଁ । ଅନାସକ୍ତ ଭାବରେ ପୃଷ୍ଠା ଓଲଟାଇ ସେ ଫେରିଗଲା ଏଇମାତ୍ର ଦେଖିଥିବା କେଉଁ ଆସବାବ ବିଜ୍ଞାପନରେ ଥିବା ଧାଡ଼ିଟି ଆଡ଼କୁ : ବୈକୁଣ୍ଠ ସମାନ ଆହା ଅଟେ ସେହି ଘର । କିଛିକ୍ଷଣ ଅନୁଧାନ କରି ଏଇ ପରିଚିତ ଯୁଗଳ ପଂକ୍ତିର ଅନ୍ୟ ଧାଡ଼ିଟିକି ମନେ ପକାଇବାକୁ ଚେଷ୍ଟା କଲା । ନା, ମନେ ପଡୁନାହିଁ । ଛନ୍ଦ ମିଳୁଥିଲା, ଯହିଁ ଥାଏ ନିରନ୍ତର ଭଳି ଶବ୍ଦ ଯୋଜନାରେ, କିନ୍ତୁ ତା ଆଗରୁ କ'ଣ ଥିଲା ? କ'ଣ ଯହିଁ ଥାଏ ନିରନ୍ତର ? ସୁନ୍ଦର ସାଜ ସରଞ୍ଜାମ ? ସେ କ'ଣ ଆଉ ଗୋଟିଏ ନୂଆ ଧାଡ଼ି ଲେଖି ଗୋଟିଏ ପଦ ମିଳାଇ ପାରିବ ? ତା ଆଗରୁ ପ୍ରଥମ ଧାଡ଼ିଟିକୁ ସଜାଇ ଲେଖିବ ପୁଣି ଥରେ, ସ୍ୱଚ୍ଛ ବିରତି ଚିହ୍ନ ସମେତ : ବୈକୁଣ୍ଠ ସମାନ, ଆହା, ଅଟେ ସେହି ଘର ! ଆହା ବଦଳରେ ଯଦି ସେ ହାୟ ଲେଖିଦିଏ ? ଶବ୍ଦମାନଙ୍କୁ ଏପାଖ ସେପାଖ କରି ଲେଖେ : ସେହି ଘର ଅଟେ ଆହା ବୈକୁଣ୍ଠ ସମାନ ? କିମ୍ବା, ସେହି ଘର ଅଟେ ଯାହା ବୈକୁଣ୍ଠ ସମାନ ?

ଦିନ ଥିଲା ଯେତେବେଳେ ତା'ର ସବୁ ସମୟ କଟିଯାଉଥିଲା ଶବ୍ଦମାନଙ୍କ ସହିତ ଏଇପରି ଖେଳ କୌତୁକ କରି । ମନ କାମ କରୁଥିଲା ଅବିରତ ଅଭିଧାନ ଓ ସମାର୍ଥ ଶବ୍ଦକୋଷ ଭଳି । ଆନନ୍ଦ ଥିଲା ଗୋଟିଏ ଶବ୍ଦ ବଦଳରେ ଆଉ ଗୋଟିଏ ଶବ୍ଦକୁ ସଂଯୋଜନା କରିବାରେ ; ଚାରି ଓ ଦୁଇ ଅକ୍ଷରର କେଉଁ ଶବ୍ଦ ବିନିମୟରେ ଦୁଇଟି ତିନି ଅକ୍ଷରର ଶବ୍ଦକୁ ସେଇ ଜାଗାରେ ଖଞ୍ଜିବାରେ । ଧାଡ଼ିକୁ ଯୋଡ଼ି ପୁଣି ଭାଙ୍ଗିବାରେ । ବିରାମ ବନ୍ଧନୀ ଓ ବିସ୍ମୟ ଚିହ୍ନକୁ ଏପାଖ ସେପାଖ କରିବାରେ । ସମୟ କଟୁଥିଲା ତତ୍‌ସମ ବଦଳରେ ତଦ୍ଭବ ଖୋଜି ; ଉତ୍ତେଜନା ଥିଲା ପୁରୁଣା ଶବ୍ଦର ନୂଆ ରୂଢ଼ି ପ୍ରୟୋଗ କରି । ପଂକ୍ତି ଭିତରକୁ ଅନାୟାସ ଆସିଯାଉଥିବା ଅନୁପ୍ରାସକୁ ଇଚ୍ଛା କରି ବର୍ଜନ କରିବାରେ ଥିଲା ଏକ ଅନୁଚିତ ସନ୍ତୋଷ ।

ଏବଂ ଶେଷରେ ପୃଷ୍ଠା ବ୍ୟାପୀ ଯେଉଁ ଜୀବନ୍ତ କବିତାଟି ତା ଆଗରେ ସାକାର ହେଉଥିଲା, କ'ଣ ତାକୁ ହିଁ ଚାହୁଁଥିଲା ସେ ? ତା ମନ ଭିତରେ କ'ଣ ଠିକ୍ ସେହି ରୂପଟି ଥିଲା ଯାହା ବର୍ତ୍ତମାନ ଆଖି ଆଗରେ ସାବୟବ ? ସକାଳର ସ୍ମରଣ କେତେ ଧରି ରଖି ପାରିଛି ରାତିର ସ୍ୱପ୍ନକୁ ? ପୂରା କବିତାଟି ପଢ଼ିଲାବେଳେ ସେଇଟି କେବେ ସଂପୂର୍ଣ୍ଣଭାବେ ସଂପନ୍ନ ମନେ ହେଉଥିବାବେଳେ ଆଉଥରେ ପଢ଼ିଲାବେଳେ ମନେ ହେଉଥିଲା କେଉଁଠାରେ କିପରି କିଛି ଅବ୍ୟକ୍ତ ରହିଯାଇଛି । ଯେପରିକି ଅତି ସୁବିନ୍ୟସ୍ତ ଏକ ମୃଣ୍ମୟୀ ମୂର୍ତ୍ତିର ଚକ୍ଷୁଦାନର ଅପେକ୍ଷା ; କୌଣସି ବିଶେଷ ଭାବର ଅଭାବ । ପୁଣି ଥରେ ଆରମ୍ଭ ହେଉଥିଲା ଭାବନା ରାଜ୍ୟର ପରିକ୍ରମା, ଶବ୍ଦକଳ୍ପଦ୍ରୁମର ବରଦାନର ଉନ୍ମୁଖ ପ୍ରତ୍ୟାଶା । ପୁଣି ଥରେ କଲମ ଉଠି ଆସୁଥିଲା କାଗଜ ଉପରକୁ । ଏଥରକ ଆଉ ଶବ୍ଦ ସହିତ ଖେଳ-କୌତୁକ ନୁହେଁ, ଏଥରକ ସେମାନଙ୍କ ସହିତ ଶୀତଳ ଯୁଦ୍ଧର କଳକୌଶଳ ।

ଖବରକାଗଜର ବୈକୁଣ୍ଠରୁ ଆଖି ଫେରାଇ ଦେବନାଥ ନିଜର ଖଟ ଟେବୁଲ ଚଉକିର ରୁକ୍ଷ ନିରନ୍ତରତାକୁ ଅନାଇଲା । ତା ନିଜ ଭଳି ଏସବୁ ଭଙ୍ଗାରୁଜା ଓ ଜରାଜୀର୍ଣ୍ଣ । ହଠାତ ତା'ର ମନେପଡ଼ିଲା ରବୀନ୍ଦ୍ରନାଥଙ୍କ ପ୍ରସିଦ୍ଧ ଆରାମ କେଦାରାଟି କଥା, ଯଦିଓ କିଛି ସାମଞ୍ଜସ୍ୟ ନାହିଁ ସେ ବସିଥିବା ସ୍ଥବିର ଚଉକିଟି ସହିତ ସାତସମୁଦ୍ର ପାରିରୁ ବିଦେଶିନୀଙ୍କ ପ୍ରୀତି ଉପହାର ହୋଇ ଶାନ୍ତି ନିକେତନରେ ପହଞ୍ଚିଥିବା ସୁଖାସନର । ତଥାପି, ଏଭଳି କୌଣସି ସନ୍ଦର୍ଭ ବିନା ଦେବନାଥର ମନେହେଲା ସତେ ଯେପରି ତା'ର ଭଙ୍ଗା ଚଉକିର ଆବେଦନ ବି ଥିଲା ଗୁରୁଦେବଙ୍କ ଚଉକିର ଭାଷା ଭଳି କରୁଣକାତର, ଶୂନ୍ୟତାର ମୂକ ବ୍ୟଥା ବ୍ୟାପ୍ତ କରେ ପ୍ରିୟହୀନ ଘର ।

କବିତାର ଅସଂଲଗ୍ନ ପଂକ୍ତି ସବୁ ତା'ର ମନ ଭିତରକୁ ପଶି ଆସି ଏଇଭଳି ତାକୁ ଅସ୍ତବ୍ୟସ୍ତ କରନ୍ତି କେବେ କେବେ । ହଜିଯାଇଥିବା ପ୍ରେମର ବ୍ୟଥା ଭଳି ମନ ଗହୀରକୁ ଛୁଇଁଯାଏ କେତୋଟି ଶବ୍ଦର ଲଳିତ ମିତ୍ରାକ୍ଷର ମୁହୂର୍ତ୍ତକ ପାଇଁ । ଦେବନାଥ ପୁଣି ସଜାଡ଼ିନିଏ ନିଜକୁ ; ସଜାଗ ହୋଇଯାଏ । ସେ କାହିଁକି ତା'ର ସହଜ ସଂସାରକୁ ଛାଡ଼ି ଆଶ୍ରୟ ଖୋଜିବ କେଉଁ ଅଳୀକ ପରାବାସ୍ତବରେ ? ଆଜି ତା'ର ଦେହ ଭଲ ଲାଗୁଛି । ଝରକା ବାହାରେ ଦେଖାଯାଉଛି ଖରାଟିଆ ପାଗ । ସେ ଆରାମରେ ଚାଲି ଚାଲି ଯାଇପାରିବ ଛକ ପର୍ଯ୍ୟନ୍ତ । ନା, ତା'ର କୌଣସି ଅଭିଯୋଗ ନାହିଁ ଜୀବନ ପ୍ରତି । ଭାଗ୍ୟ ବରଂ ତା ପ୍ରତି ଅତ୍ୟନ୍ତ ପ୍ରସନ୍ନ ବୋଲି କହିବାକୁ ହେବ । ନହେଲେ ତାକୁ କିପରି ମିଳିଥା'ନ୍ତେ ଏଭଳି ଏକ ସୁବିଧା ଜାଗାରେ ପୈତୃକ ଘର, ହରି ମାଷ୍ଟରଙ୍କ ଭଳି ଭଡ଼ାଟିଆ, ଚାଲିଚାଲି ପହଞ୍ଚି ଯାଇ ପାରୁଥିବା ଦୂରତ୍ୱରେ ବଜାର ? ଆହୁରି ସୌଭାଗ୍ୟର କଥା କହିବାକୁ ହେବ ତାଙ୍କ ଗାଁ ପାଖଦେଇ ଇସପାତ କାରଖାନାକୁ ଯାଉଥିବା ଲୁହାପଥର ସରବରାହର ରାସ୍ତା ଏବଂ ଟ୍ରକ ଚଳାଉଥିବା ଲୋକଙ୍କ ପାଇଁ ଛକ ଉପରେ ଡାବା ଓ ମଦ ଦୋକାନ ।

ଲୁଗା ବଦଳାଇ ସେ ବାହାରକୁ ଯିବାକୁ ବସିଛି, ପିଲାଟି ତା ଆଗରେ ଆଣି ଜଳଖିଆ ରଖିଦେଲା । ଛକ ଦୋକାନରେ ତାକୁ ଖାଇବାକୁ ମିଳିଯାଏ, ତେବେ ମାଷ୍ଟରଙ୍କ ଘରୁ ଠିକ୍ ସମୟରେ ଖାଇବା ପହଞ୍ଚିବାରେ କେବେବି ଅବହେଳା ହୁଏ ନାହିଁ । ଭଲ ହେଲା ; କାହିଁକି ସେ ବଜାର ଜିନିଷ ଖାଇଥା'ନ୍ତା ? ଖାଇସାରି ମୁହଁହାତ ଧୋଇ ସେ ଥାଳିକୁ ବାରଣ୍ଡାରେ ରଖିଦେଲା ଓ କବାଟ ଝରକା ବନ୍ଦ କରି, ତାଲା ଦେଇ ବାହାରକୁ ଆସିଲା । ଖଣ୍ଡେବାଟ ଗାଁ ରାସ୍ତା ପାରିହେଲେ ହିଁ ହାଇୱେ ; ଅନ୍ୟ ଏକ ପୃଥିବୀ ।

ରାସ୍ତାରେ ଯାତାୟତ ଆରମ୍ଭ ହୋଇଗଲାଣି । ଗୋଟିଏ ପରେ ଗୋଟିଏ ଲୁହାପଥର ବୋଝେଇ ଟ୍ରକ । ସେ ମନେପକେଇବାକୁ ଚାହୁଁଥିବା ସତ୍ତ୍ୱେ ପୁଣି ଧାଡ଼ିଏ କବିତା ତା ମନ ଭିତରକୁ ଧସି ପଶି ଆସିଲା ପ୍ରାଗୈତିହାସିକ ଲୌହ ପ୍ରସ୍ତରର ଶେଷ

ପରିତ୍ରାଣ । ତା'ପର ଧାଡ଼ିଟି ଠିକ୍ ମନେ ନାହିଁ । ଆଦିମ ସମୟ, ଶାପଗ୍ରସ୍ତ, ଇତ୍ୟାଦି ଛନ୍ଦ ପରେ ଶେଷକୁ ଅଛି ଘାତ ପ୍ରତିଘାତ, ଇସପାତ ଇସପାତ । ସେ କୋଉ ଯୁଗର କଥା ହେଲାଣି । ସେତେବେଳେ ଓଡ଼ିଶାର ଚିନ୍ତା ଚେତନାର କେନ୍ଦ୍ରବିନ୍ଦୁ ହୋଇ ଯାଇଥିଲା ଇସପାତ ; ଇସପାତ କାରଖାନା ଦାବିରେ ସରଗରମ ହୋଇ ରହୁଥିଲା ସାମାଜିକ ରାଜନୈତିକ ବାତାବରଣ । ବନ୍ଦେ ଉତ୍କଳ ଜନନୀ ସାଙ୍ଗରେ ସହଜରେ ମିଶିଯାଉଥିଲା ଇସପାତର ଦାବି । ସେ ସ୍ୱପ୍ନ ବି ସାକାର ହେଲା ସମୟ କ୍ରମେ । କାରଖାନା ଆସିଲା । ତାଳତମାଳ ଶୋଭିତ ତୀର ଘନଘନ ବନଭୂମି ନୂଆ ରୂପ ନେଲା । ରାସ୍ତା ଦି'ପାଖ ସବୁଜ ଉପରେ ବର୍ତ୍ତମାନ ଲୁହାପଥର ଧୂଳିର ଲାଲ ଆସ୍ତରଣ ।

ମଦ ଦୋକାନ ଏ ସମୟରେ ଖୋଲିବା କଥା ନୁହେଁ, ତେବେ ଏଇ ସକାଳୁ ସକାଳୁ ଗ୍ରାହକ ପହଞ୍ଚିଗଲେଣି । ହୁଏତ ଏଠାରେ ମଦ ଦୋକାନର ଅବସ୍ଥିତି ହିଁ ବେଆଇନ । ହୁଏତ ପୂରାପୂରି ବେଆଇନ ଏଇ ଛକର ଗହଳଚହଳଭରା ଉଠା ବଜାରଟି । ଦେବନାଥର ମନେହୁଏ ଏଇଟି ଯେପରି କେଉଁ ବାରବୁଲା ଲୋକଙ୍କର କେତେ ସମୟ ମାତ୍ରର ସାମୟିକ ଛାଉଣି । ହଠାତ ଆଜି ସକାଳେ ହିଁ ଗଢ଼ି ଉଠିଛି ଏକ ଅଢ଼େଇଦିନିଆ ବ୍ୟସ୍ତସମସ୍ତ ଚଞ୍ଚଳ ଡେରା । ପୁଣି କାଲି ସକାଳେ ସେ ଯେତେବେଳେ ଆସିବ, କିଛି ବି ନଥିବ ଏଠାରେ ; ଖାଁ ଖାଁ କରୁଥିବ ଲାଲମାଟିର ଖୋଲା ପଡ଼ିଆ ।

ସେ ପ୍ରତିଦିନ ଆସି ବେଞ୍ଚର ଯେଉଁ ଜାଗାଟିରେ ବସେ ସେଇଟି ଖାଲି ଥିଲା । ଚାଦର କାନିରେ ତାକୁ ପୋଛି ସେ ବସିଲା ଏବଂ ଥଣ୍ଡା ପବନର ଏକ ହଠାତ ଦମକା ଆସିବାରୁ ଦେହକୁ ଆହୁରି ଭଲଭାବେ ଘୋଡ଼ାଇ ନେଲା । ଉପରୁ ହାଲୁକା ଖରା ପଡୁଚି ଖୋଲା ବସିବା ଜାଗାରେ ; ପରେ ଖରା ଟାଣ ହେବ, କିନ୍ତୁ ଦି'ଗ୍ଲାସ୍ ପେଟରେ ପଡ଼ିବା ପରେ ଆଉ କିଛି ଜଣା ପଡ଼ିବ ନାହିଁ । ଦୋକାନ ଚାରିପଟେ ତାଟି ଘେରା ହୋଇଛି, ବାହାର ଲୋକ ଭିତରେ କ'ଣ ହେଉଛି ଦେଖି ନପାରିବା ପାଇଁ । ନୁଆଁଣିଆ ଚାଳି ଭିତରେ ବୋତଲ, ଗ୍ଲାସ୍ ଓ କାଚଢ଼ିବାର ଘେରରେ ବସିଥିବା ଦୋକାନୀକୁ ଦେବନାଥ ଇସାରା ଦେଲା ଓ ସାଙ୍ଗେସାଙ୍ଗେ ତା ପାଖରେ ଗୋଟିଏ ଭରା ବୋତଲ ଓ ଖାଲି ଗ୍ଲାସ୍ ପହଞ୍ଚିଗଲା । ଦ୍ୱିତୀୟ ବୋତଲ ସହିତ ଚଣାଭଜା ଆସିବ । ସେ ପୁରୁଣା ନିତିଦିନିଆ ଗ୍ରାହକ ; ତା'ର ଠିକ୍ କ'ଣ ଦରକାର କେତେବେଳେ, ଦୋକାନୀକୁ ଜଣା । ଗ୍ଲାସ୍‌ଟି ବୋଧହୁଏ ଭଲ ଭାବେ ଧୂଆ ହୋଇନଥିଲା । ତା ଚାରିପାଖେ କେତୋଟି ମାଛି ଉଡ଼ି ବୁଲୁଛନ୍ତି ଗୁଣୁଗୁଣୁ ହୋଇ । ସେମାନଙ୍କ ଗୁଞ୍ଜରଣ ସହିତ ମେଳ ଦେଇ ଗ୍ଲାସ୍ ବୋତଲ କାଚ କୁଞ୍ଚାର ରୁଣଝୁଣ ନିକ୍ୱଣ । ଏମାନେ ପୁଣି ପ୍ରତିଧ୍ୱନିତ କରୁଛନ୍ତି ପିଲାଦିନେ ବର୍ଣ୍ଣବୋଧର ଶବ୍ଦ ଓ ଧ୍ୱନି ସହିତ ପ୍ରଥମ ପରିଚୟ : ଘଣ୍ଟି ବଜାଇ ଠନ୍ ଠନ୍ ; ଘଣ୍ଟା ବାଜଇ ଢଂ ଢଂ ।

ଆଉ କବିତା ନାହିଁ କେବଳ ଶବ୍ଦ । ପିଲାଦିନେ ବର୍ଣ୍ଣବୋଧର ଶବ୍ଦ ହିଁ ଥିଲା କବିତା : କଟକ ନଗର ଧବଳ ଟଗର । କାହାରି କାହା ସହିତ ସଂପର୍କ ନାହିଁ । ଚକା ଚକା ଭଉଁରୀ, ମାମୁ ଘର ଚଉଁରୀ । କିମ୍ୱା ସଂପୂର୍ଣ୍ଣ ଅର୍ଥରହିତ ପଂଝାଏ ଖଂଜ ବସି ବସି, କଥା କହନ୍ତି ହସି ହସି । କିଛି ଛୋଟାଲୋକ ଏକାଠି ବସି କେଉଁ ଖୁସିରେ କଥାବାର୍ତ୍ତା କରୁଥିବେ ତା'ରି କଳ୍ପନା ମନ ଭିତରେ ସୃଷ୍ଟି କରୁଥିଲା କାବ୍ୟିକ ପରିବେଶ । ଏଇ ସମୟରେ ଉପରେ ଦଳେ କାଉ ଉଡ଼ି ଚାଲିଗଲେ । ଆପଣାଛାଏଁ ତା'ର ହାତ ଯାଇ ଗିଲାସକୁ ଢାଙ୍କି ଦେଲା । କାଉ କର୍କଶ ଓ ଅସୁନ୍ଦର, କିନ୍ତୁ ଶୁଭ ଖବର ନେଇ ଆସିଥାଏ । ମେଘ ଭଳି ହଂସକୁ ଦୂତ କରି ବାର୍ତ୍ତା ପଠାଯାଇ ପାରେ । କିନ୍ତୁ କାକ ଦୂତ ? ବାୟସ ଦୂତ ? କାଉ ବିଷୟରେ କଣ କବିତା ଲେଖାଯାଇ ପାରେ ? ଡାମରା କାଉ, ଉଞ୍ଚ ପରବତେ ବୋବାଉ ଥାଉ । ଏଡ଼ଗାର ଆଲାନ ପୋ ? ନୁହେଁ, ଆଉ ନୁହେଁ । ନେଭର ମୋର ! ନେଭର ମୋର !

ଆଉ ଦି'ଚାରିଜଣ ଆସି ଆଖପାଖ ବେଞ୍ଚ ଉପରେ ବସିଲେଣି । ସେମାନେ ତାଙ୍କ ନିଜ ଭିତରେ କଥା ହୁଅନ୍ତି, ତାକୁ କେବେ କିଛି କହନ୍ତି ନାହିଁ । ତାକୁ କ'ଣ ବୋଲି ଭାବନ୍ତି କେଜାଣି ? କେବଳ ଥରେ ଜଣେ ତା ପାଖକୁ ଆସି ପଚାରି ଥିଲା, ବାବୁ, ତମେ କ'ଣ ଗୀତ ଲେଖନା କ'ଣ ପରା ? ପ୍ରଥମ ଥର ଠିକ୍ ଶୁଣିପାରିଲା ନାହିଁ, ବୁଝିପାରିଲା ନାହିଁ ଦେବନାଥ ; ତା ଆଡ଼କୁ ପ୍ରଶ୍ନବାଚୀ ଆଖିରେ ଅନାଇଲା । ଲୋକଟି ଏଥରକ ତା ପାଖକୁ ଆଉ ଟିକିଏ ଘୁଞ୍ଚିଆସି କହିଲା, ଗୀତ । ତମେ କୁଆଡ଼େ ଗୀତ ଲେଖୁଚ ପରା ? ଟିକିଏ ଆଶ୍ଚର୍ଯ୍ୟ ଓ ଖୁସି ହେଲା ଦେବନାଥ ଓ ମୁଣ୍ଡ ହଲାଇ ହଁ କଲା । ଥରେ କବିତା ଲେଖିଚ ତ କବିର ମୋହର ଲାଗି ଯାଇଛି, ତମେ ପଛେ କବିତାର ଧାର ଧାରି ନଥାଅ ବର୍ଷ ବର୍ଷ ଧରି । ତା'ର ନିଜର ବି ମନେ ନାହିଁ ସେ ତା'ର ଶେଷ କବିତା କେବେ ଲେଖିଥିଲା । ମୋର ଦି'ଧାଡ଼ି ଗୀତ ଲୋଡ଼ା, ଟ୍ରକର ଡାଲା ପାଇଁ, ଅତି ସହଜରେ କହିଲା ଲୋକଟି । ତା'ର ମନେପଡ଼ିଲା ସେ ଯେତେବେଳେ କଲେଜରେ ପଢୁଥିଲା, ଏପରି ବ୍ୟକ୍ତିଗତ ବରାଦ ତା ପାଖକୁ ଆସୁଥିଲା ବାହାଘର ଗୀତ ଲେଖିଦେବା ପାଇଁ । ବାହାଘରବେଳେ ବରକନ୍ୟାଙ୍କ ପାଇଁ ସ୍ୱସ୍ତିବାଚକ ଗୀତ ନାଲିନେଳି କାଗଜରେ ଛପା ହୋଇ ଅତିଥିମାନଙ୍କ ଭିତରେ ବାଣ୍ଟିବାର ଏକ ପ୍ରଥା ଥିଲା ସେ ସମୟରେ । ସେ କେବେ କେବେ ଲେଖି ଦେଉଥିଲା କେତେ ଧାଡ଼ି ବିରକ୍ତ ହୋଇ, କିଛି ବି ଆୟାସ ନକରି ; ତେବେ ସେସବୁ ଗୀତ ଆଦୃତ ହେଉଥିଲା ବୋଲି ପରେ କହୁଥିଲେ ତା'ର ସାଙ୍ଗମାନେ । ଟ୍ରକବାଲା କହିଲା, ଗୀତ କିନ୍ତୁ ବଢ଼ିଆ ହୋଇଥିବା ଦରକାର, ଯେମିତି ହିନ୍ଦୀଗୀତ ସାଙ୍ଗରେ ଟକ୍କର ଦେଇ ପାରୁଥିବ ।

କାହିଁ କେତେବର୍ଷ ପରେ ତାକୁ କିଏ କିଛି ଲେଖିବା ପାଇଁ କହିଲା । ଦିନ

ଥିଲା ଯେତେବେଳେ ପତ୍ରକାର ସମ୍ପାଦକଙ୍କ ପାଖରୁ ବାରମ୍ବାର ତାଗିଦା ଆସୁଥିଲା, ଗାୟକମାନେ ତାକୁ ବସାଇ ଉଠାଇ ଦେଉ ନଥିଲେ ଗୀତର ଫରମାଇଶ କରି । ଏ ସବୁ ଯେମିତି ଥିଲା ତା'ର ପୂର୍ବଜନ୍ମର କଥା । ବର୍ତ୍ତମାନ ତା'ଠାରୁ ହଁ ଶୁଣି ଟ୍ରକବାଲା ଦୋକାନ ଭିତରକୁ ଯାଇ ଆଉ ଗୋଟିଏ ବୋତଲ ଆଣି ରଖିଦେଲା । ବରାଦୀ କବିତା ପାଇଁ ଆଗତୁରା ଦକ୍ଷିଣା । ତା ବୋତଲରୁ ନିଜ ଗ୍ଲାସ୍‌ର ଢାଳି ଢୋକେ ପିଇବା ପରେ ଦେବନାଥର ମନେହେଲା ସେ ନିଜ ଉପରକୁ ଏକ ଗୁରୁ ଦାୟିତ୍ୱ ନେଇ ନେଇଛି । ଦୁଇଧାଡ଼ିର ଏକ ଶସ୍ତା ମିତ୍ରାକ୍ଷରୀ ପଦ ଲେଖିବା କାମ ତା ଉପରେ ମାଡ଼ି ପଡ଼ିଲା । ନିଜକୁ ତୁରନ୍ତ ଋଣମୁକ୍ତ କରିବା ପାଇଁ ସେ ମନେ ମନେ ଦି'ଧାଡ଼ିର ଗୁମଝୁମ ଭାବିନେଲା : ଦେଶ ନାହିଁ ବିଦେଶ ନାହିଁ, ଆରମ୍ଭ ନାହିଁ ଶେଷ ନାହିଁ । କିନ୍ତୁ ଏଇଟିର ନା ଭାବ ନା ଭାଷା ନା ଛନ୍ଦ ତା'ର ପସନ୍ଦ ହେଲା । ତା ବ୍ୟତୀତ ପ୍ରତି ଟ୍ରକ ପଛରେ ଏଇଭଳି କଥା ହିଁ ତ ଲେଖାଥାଏ ।

ତା'ପରେ କିଛିଦିନ ସେ ଲାଗିଗଲା ଏଇ ଦୁଇଧାଡ଼ିକୁ ସଜାଡ଼ିବାରେ, କିମ୍ବା ଆଉ ନୂଆ ଦି'ଧାଡ଼ି ଲେଖିବାରେ । ଟେବୁଲ ଉପରେ କାଗଜ କଲମ ବାହାର କରି ରଖିଲା ପରେ ସମୟକ୍ରମେ କାଗଜ ଉପରେ କେବଳ କିଛି ଶବ୍ଦ ଏପାଖ ସେପାଖ ଲେଖା ହୋଇଗଲେ, କିନ୍ତୁ ମେଳ ଖାଉଥିବା ସ୍ତବକ ଆଉ ସାଧ ହେଲା ନାହିଁ । ସେ ମନେ ମନେ ଖୋଜୁଥିଲା ସେ ଟ୍ରକବାଲା ସହିତ ଆଉ କେବେବି ଦେଖା ନ ହୁଅନ୍ତା କି ! ଲୋକଟା କେବେ କ୍ୱଚିତ ଦେବନାଥ ଥିବାବେଳେ ଦୋକାନରେ ପହଞ୍ଚିଯାଉଥିଲା । ଯଦିଓ ସେ ଆଉ କେବେବି ତାକୁ ଗୀତ କଥା ପଚାରି ନଥିଲା, ଦେବନାଥ ଭୁଲିପାରୁ ନଥିଲା ତାକୁ ସେ ଦେଇଥିବା ପ୍ରଣାମୀ କଥା । ଥରେ ଏଇପରି ସାମନାସାମନି ଭେଟ ହୋଇଯିବାରୁ ଦେବନାଥ ପକେଟରୁ ଛୋଟ ନୋଟ୍‌ଖାତା ଓ କଲମ ବାହାର କରି ଟେବୁଲ ଉପରେ ରଖିଲା ତା ଆଗରେ ପ୍ରମାଣ କରିବା ପାଇଁ ଯେ ସେ ତା'ର ବରାଦ କଥା ଭୁଲିଯାଇ ନାହିଁ । ଲୋକଟି ତା ଆଡ଼କୁ ଚାହିଁ ହସିଲା, କିନ୍ତୁ ତା ସହିତ ଯୋଗାଯୋଗ କରିବା ପାଇଁ ଆଉ କୌଣସି ଚେଷ୍ଟା କଲା ନାହିଁ ।

ଦେବନାଥର ଭୟ ହୁଏ ଯେ ହଠାତ ଦିନେ ଟ୍ରକବାଲା ତା'ର ମଦ ବୋତଲର ଅଗ୍ରୀମ ବଦଳରେ ଦି'ଧାଡ଼ି କବିତା ମାଗିବ । ଗୋଟିଏ ପୂରା କବିତା ବଦଳରେ କେତୋଟି ମଦ ବୋତଲ ମିଳିଯାଇପାରେ ମନରେ କଳ୍ପନା କରିବାକୁ ଚେଷ୍ଟା କଲା ଦେବନାଥ । କିନ୍ତୁ ସମୟ କ୍ରମେ ସେ ଲୋକଟି ଆଉ ଦେଖାଗଲା ନାହିଁ । ଯଦିଓ ତା'ର ଲେଖାଟି ହୋଇପାରି ନଥିଲା, ସେ ମନେ ମନେ ଖୋଜୁଥିଲା ଏଇ ଲୋକଟିକୁ, ଯେ ଥିଲା ତା'ର କବି ଥିବାର ଏକ ଜୀବନ୍ତ ସ୍ମାରକ । ଲୋକଟି କିନ୍ତୁ ଆଉ ଆସିଲା ନାହିଁ । କେତେ କ'ଣ ବଦଳି ଯାଉଛି କେତେ ଦିନରେ । ମଦ ଦୋକାନର ଚାଳିଘର ଭାଙ୍ଗି ଇଟା

ଯୋଡ଼ା ହେଲାଣି । ଚଉକି ଟେବୁଲ ଆଉ ଟିକିଏ ସଫାସୁତୁରା ଓ ବେଶି ମୂଲ୍ୟର । ଲୋକଟି ବୋଧହୁଏ ଦେଶ ଛାଡ଼ି କେଉଁ ବିଦେଶକୁ ଚାଲିଗଲାଣି, ଅନ୍ୟ କେଉଁ ଆରମ୍ଭକୁ । ଏକଥା ବି ସମ୍ଭବ ଯେ କେଉଁ ଦୁର୍ଘଟଣାରେ ତା'ର ଜୀବନର ଶେଷ ବି ହୋଇଯାଇଛି ଏ ଭିତରେ ।

ଦେବନାଥର ସରଳ ଜୀବନଯାତ୍ରାର ଏଇ ସାମାନ୍ୟ ବ୍ୟତିକ୍ରମ ବି ଅନେକ ଦିନ ତଳର କଥା ହେଲାଣି, ତା'ର ପିଲାଦିନ ଭଳି । ଗାଁର ଅଳସରତି ଶୈଶବ ଓ କୈଶୋର । ଯାହା ଏବେ ମନେପଡ଼େ ସେସବୁ ଘରର ସୁଖଦୁଃଖ, ଆଖପାଖର ମେଳାମଉଛବ ଦେଇ ଯେତେ ନୁହେଁ, ସେତିକି ସ୍ୱାଧୀନତା ସଂଗ୍ରାମୀମାନେ ହାତରେ ତ୍ରିରଙ୍ଗା ଧରି ଗୀତଗାଇ ଗାଁ ଦାଣ୍ଡରେ ଧାଡ଼ିବାନ୍ଧି ଚାଲିଯାଉଥିବାର ଦୃଶ୍ୟରେ । ଗାନ୍ଧି ନାମେ ଯେବେ ବିଶ୍ୱାସ ଅଛି ପତାକା ତଳକୁ ଆସରେ, ମୁକତି ଗଙ୍ଗାର ଢେଉ ଛୁଟି ଆସେ ବେଗାବେଗି ଦିଅ ଝାସରେ । ଏଥିରେ କାବ୍ୟିକତା ନ ଥାଉ ପଛେ, ଥିଲା ଉତ୍ତେଜନା । ସାଙ୍ଗିତିକତା ନ ଥାଉ ପଛେ, ଥିଲା ମିଳିତ କଣ୍ଠରେ ଗାଇବାରେ ଏକ ଅଦ୍ଭୁତ ଉନ୍ମାଦନା । କବିତା ଯେଉଁଠି ଥିଲା ପତାକାର ପାଦଟୀକା । ପୁଣି ଆସିଲା ଦୁଇ ପଇସାରେ ବିକ୍ରି ହେଉଥିବା ଗୋଟିଏ ପୃଷ୍ଠା କାଗଜରେ ଇନ୍‌କିଲାବ ଜିନ୍ଦାବାଦ ଗୀତ : ବାର ବରଷର ବାଳକ, ଗୁଳି ମୁହେଁ ଦେଖାଇଛି ବେକ ହେ । କବିତା ଥିଲା ଗୀତ, ପଢ଼ିବା ଥିଲା ସ୍ୱର କରି ଗାଇବା, ଅର୍ଥ ପାଖରେ ପହଞ୍ଚିବାର ରାସ୍ତା ଥିଲା ଏକାକୀ ମନନ ନୁହେଁ, ପଟୁଆର । ତା'ପରେ ଆସିଲା ଏକ ନୂଆ ଯୁଗର ଜ୍ୱଳନ୍ତ ସ୍ୱାକ୍ଷର ନେଇ, ନୁହେଁ ବନ୍ଧୁ ନୁହେଁ ଏ ଯେ ଚିତା । ପରବର୍ତ୍ତୀ ଜୀବନରେ ଯେପରି ଡାଫୋଡ଼ିଲ୍‌ର ସୁନେଲି ସମ୍ମୋହନରୁ ତାକୁ ଟାଣି ଆଣି ବାହାର କରିଥିଲା ଆଲଫ୍ରେଡ ପ୍ରୁଫରକ ।

କଲେଜରେ ପ୍ରଥମେ ଏଲିଅଟ ପଢ଼ିବାବେଳେ ଛାତି ଭିତରେ ଯେଉଁ ହୁଲସ୍ଥୁଲ ହୋଇଯାଇଥିଲା ସେ କଥା ଭାବିଲେ ଏବେ ବି ଶିହରଣ ଆସେ । ପାଗଳ ଭଳି ସେ ଖୋଜି ଖୋଜି ବିଦେଶୀ କବିତା ପଢୁଥିଲା । ପ୍ରୁଫରକ କବିତାର ଶୀର୍ଷକ ତଳେ ତିର୍ଯ୍ୟକ ଲେଖାରେ ଦାନ୍ତେଙ୍କର ଯେଉଁ ଛ'ଟି ଧାଡ଼ି ଥିଲା, ତା'ର ଅର୍ଥ ବି ସେ ଖୋଜି ବାହାର କରିଥିଲା ସେତେବେଳେ । କ୍ଲାସ୍ ପରେ ସେ ଯାଇ ଅଧ୍ୟାପକଙ୍କ ସହିତ କବିତା ବିଷୟରେ ଆଲୋଚନା କରୁଥିଲା । ସେ ଜାଣିବାକୁ ଚେଷ୍ଟା କରୁଥିଲା କବିତାରେ ଯେଉଁ ସବୁ ସଂକେତ ଆଭାଷ ଓ ପରୋକ୍ଷ ଉଲ୍ଲେଖ ରହିଛି ତା'ର ଅର୍ଥ ଓ ସଂଗତି କ'ଣ । କବିତାର ପ୍ରତିଟି ଧାଡ଼ି, ପ୍ରତିଟି ଶବ୍ଦ ଯେପରି ତା'ର ବୁଝିବା ଦରକାର । ଅଧ୍ୟାପକ ତାକୁ ବୁଝାନ୍ତି, କୌଣସି ଲେଖା ପଢ଼ିବାବେଳେ ଯେଉଁ ସବୁ ବିଦେଶୀ ସନ୍ଦର୍ଭ, ଦୁର୍ବୋଧ ଶବ୍ଦ ବା ଜଟିଳ ଅଭିବ୍ୟକ୍ତି ଉପରେ ତମେ ଝୁଣ୍ଟି ପଡୁଛ, ସେମାନଙ୍କୁ ଆଡ଼େଇ ରଖି ରଚନାଟିକୁ ପଢ଼ ; ତା କଲେ ହିଁ ତମେ କବିତାର ଆନନ୍ଦ ପାଇବ । ଦେବନାଥର ମନ ବୁଝେ ନାହିଁ ।

କିପରି ସେ ଅଲଗା କରିଦେବ କବିତାରୁ ସେଇ ଅଂଶ କିଛି ? ଏଇ ଝୁଣ୍ଟି ପଡୁଥିବା ଜାଗାଗୁଡ଼ିକ ହିଁ ତ କବିତା ! ସେହି ଅର୍ଥହୀନତାରେ ହିଁ ତ ଅର୍ଥମୟ ହୋଇ ଯାଇଛି କବିତା ସେଠାରେ ।

ସ୍କୁଲ ପରେ କଲେଜରେ ପଢ଼ିବା ପାଇଁ ସେ ଗାଁରୁ ଆସି ସହରରେ ମାମୁ ଘରେ ରହୁଥିଲା । ରହିବା ପାଇଁ ତାକୁ ଘରର ଯେଉଁ ଛୋଟ ଜାଗାଟି ଦିଆଯାଇଥିଲା, ସେଠାରେ ନିଜର କାଗଜପତ୍ର ଜମାକରି ସେ ତିଆରି କରିଦେଇଥିଲା ଏକ ନିଜସ୍ୱ ପୃଥିବୀ । ଅନ୍ୟ ପିଲାଙ୍କ ଭଳି ତା'ର ଖେଳକୁଦ, ସିନେମାରେ ମନ ନଥିଲା ; ବହିଟିଏ ପାଇଲେ ତାକୁ ଧରି ସେ ଘଣ୍ଟା ଘଣ୍ଟା ବସିଯାଉଥିଲା । ସହରର ସବୁ ଲାଇବ୍ରେରୀ ତା'ର ପରିଚିତ ଥିଲେ ଏବଂ ତା'ର ସବୁ ବନ୍ଧୁ ଥିଲେ ସାହିତ୍ୟରେ ରୁଚି ରଖୁଥିବା ଯୁବକ । ଶାନ୍ତ ବିନୟୀ ଓ ଭଦ୍ର ପ୍ରକୃତିର ହୋଇଥିବାରୁ ସେ ଯଦିଓ କାହାରି ସହିତ ବିଶେଷ ସଂପର୍କ ରଖୁ ନଥିଲା, ଘରେ ତାକୁ ସମସ୍ତେ ଆଦର କରୁଥିଲେ ଏବଂ ବହି ସାଙ୍ଗରେ ସବୁ ସମୟ କଟାଇବା ବିଷୟରେ ତାକୁ କିଛି କହୁ ନଥିଲେ ।

ସ୍କୁଲରେ ପଢ଼ିବା ସମୟରେ ସେ ଯେଉଁସବୁ କବିତା ଲେଖିଥିଲା, ସେସବୁ ଗୋଟିଏ ବନ୍ଧାଇ ଖାତାରେ ଏକାଠି ଥିଲା । ସହରକୁ ଆସିବା ପରେ ନୂଆ ନୂଆ ଓ ବିଶେଷରେ ଇଂରେଜୀ କବିଙ୍କୁ ପଢ଼ିବା ପରେ ସେ ଭିନ୍ନ ଭାବରେ ଦେଖିଲା କବିତାକୁ । ପୁରୁଣା ଖାତାରୁ ନିଜର କବିତା ପଢ଼ିବାବେଳେ ସେଗୁଡ଼ିକ ତାକୁ ଅତି ନୀରସ ସାଧାରଣ ଓ ଘଷରା ଜଣାଗଲେ । ବିରକ୍ତ ହୋଇ ସେ ଖାତାଟିକୁ ଚିରି ଫିଙ୍ଗିଦେଲା ଏବଂ ନୂଆ ଖାତାଟିଏ କିଣି ସେଥିରେ ଲେଖିବାକୁ ଲାଗିଲା । ସେ ଦି'ଧାଡ଼ି ଲେଖେ, ତାକୁ କାଟେ, ପୁଣି ଆଉ କିଛି ଲେଖେ । କେତେବେଳେ ଏକାଥରେ ଦଶଧାଡ଼ି ଲେଖିବାକୁ ସମର୍ଥ ହେବାବେଳେ ଆଉ କେତେବେଳେ ଧାଡ଼ିଏ ବି ପଇଟେ ନାହିଁ । ସେ କିନ୍ତୁ ହାର ମାନୁ ନଥିଲା ; ସେ ଲାଗିରହୁଥିଲା କବିତାଟି ସଂପୂର୍ଣ୍ଣ ହେବାଯାଏଁ । ଏଥରକ ସେ ପତ୍ରପତ୍ରିକାକୁ କବିତା ପଠାଇବାକୁ ଆରମ୍ଭ କଲା । ଏବଂ ଦିନେ ତା'ର ଗୋଟିଏ କବିତା ଏକ ଜଣାଶୁଣା ସାହିତ୍ୟ ପତ୍ରିକାରେ ପ୍ରକାଶ ପାଇଲା ।

କବିତା ବାହାରେ ତା'ର ବ୍ୟକ୍ତିଗତ ଜୀବନ ଥିଲା ଅତ୍ୟନ୍ତ ସୀମିତ । ସେ ଜାଣିଥିଲା ଯେ କଲେଜ ପାଠ ସରିଲେ ତାକୁ କୋଉଠି ଚାକିରି ନେଇ ଘର ସଂସାର କରିବାକୁ ପଡ଼ିବ । ଏବଂ ତା ହେଲା ମଧ୍ୟ । ଛୋଟ ସରକାରୀ ଅଫିସରେ ତାକୁ ଛୋଟ ଚାକିରି ମିଳିଲା ; ଛୋଟ ଗଳିରେ ଛୋଟ ଘର ନେଇ ସେ ଆରମ୍ଭ କଲା ତା'ର ଛୋଟ ଜୀବନ । ତା'ର ସ୍ତ୍ରୀ ଶାନ୍ତ ପ୍ରକୃତିର ଥିଲା ଓ ତା'ର କୌଣସି ଉଚ୍ଚାଭିଳାଷ ନଥିଲା । ତା'ର ସ୍ୱଳ୍ପ ବେତନରେ ଚଳିଯାଉଥିଲା ସେମାନଙ୍କର ତିନିଜଣିଆ - ହଁ ଯଥା ସମୟରେ ସେମାନଙ୍କର ଗୋଟିଏ ପୁଅ ବି ଜନ୍ମ ହୋଇଥିଲା - ପରିବାର । ଦେବନାଥ ସନ୍ତୁଷ୍ଟ

ଥିଲା ତା'ର ଏଇ ସ୍ୱଳ୍ପ ପରିମିତିର ଜୀବନକୁ ନେଇ । କାରଣ ଏଇ ସାମାଜିକ ଜୀବିକା ଓ ଜୀବନଯାପନର ସାଂସାରିକତା ବାହାରେ ଥିଲା ତା'ର ଏକ ବୃହତ୍ତର ବିଶ୍ୱଭୁବନ: କବିତାର । କିମ୍ବା ସଠିକ କହିଲେ ଏ ପୃଥିବୀର ବାହାରେ ସେ ଥିଲା ଏକ ଅନନ୍ତ ଅଖିଳ ବ୍ରହ୍ମାଣ୍ଡରେ କାରଣ ଏ ସମୟରେ ସେ ହୋଇ ଯାଇଥିଲା ରବି ଠାକୁରଙ୍କ କବିତାର ଭକ୍ତ ।

ଯେତେ ଯାହାହେଉ ସେଇ ଅପାର ଅନ୍ୟ ସଂସାରରୁ କବିକୁ ପ୍ରତିଦିନ ଫେରିବାକୁ ପଡ଼େ ତା'ର ଦି'ବଖରାର ବସାଘରକୁ । ବୁଝିବାକୁ ପଡ଼େ ବଜାର ସଉଦା କଥା, ପିଲାଙ୍କ ଦେହମନ୍ଦ, ବନ୍ଧୁବାନ୍ଧବ, ପାଖ ପଡ଼ୋଶୀଙ୍କ ସାମାଜିକ ଦାବି । ଏଭଳି ସବୁ କଥା ଯାହା ଆଦୌ ତା'ର ମନର ଅନୁକୂଳ ନୁହଁନ୍ତି । ଏଭଳି କଥା ସବୁ ଯାହାକୁ ଆଧୁନିକ କବିଙ୍କ ଲେଖିବାର ଆଧାର ବୋଲି ଥଟ୍ଟା କରି କହିଥିଲେ ରବୀନ୍ଦ୍ରନାଥ : ପଡ଼ାର ମଦ ଦୋକାନ, ସ୍ୱାମୀ-ସ୍ତ୍ରୀଙ୍କର ଦି'ବେଳାର କଳିତକରାଳ, ଠିପି ବିହୀନ ଖାଲି ତେଲଶିଶି, ଦାନ୍ତଭଙ୍ଗା ପାନିଆ, ସାବୁନର ଶେଷ ପାତଳା ଟୁକୁଡ଼ା ଇତ୍ୟାଦି । ଦେବନାଥ ବି ଜାଣୁଥିଲା ଏସବୁ କବିତାର ଅଯୋଗ୍ୟ । ସେଥିପାଇଁ ସେ ନିଜକୁ ଯଥାସମ୍ଭବ ଘରକରଣାରୁ ଅଲଗା ରଖିଲା । ଭାଗ୍ୟକୁ ତା'ର ସ୍ତ୍ରୀ ସମ୍ଭାଳିନେଲା ସବୁ ଦାୟିତ୍ୱ । ନିଜ ଘରେ ଦେବନାଥ ନିଜେ ହୋଇଗଲା ମୂଲ ଦେଉଥିବା ଅତିଥି । ପହିଲା ତାରିଖରେ ସେ ସ୍ତ୍ରୀ ହାତକୁ ଦରମା ପଇସା ବଢ଼ାଇ ଦେଇ ନିଶ୍ଚିନ୍ତ ହୋଇ ଯାଉଥିଲା ମାସଟି ପାଇଁ ।

ଏହିଠାରୁ ଆରମ୍ଭ କରି ସବୁଦିନ ପାଇଁ ସେଇପରି ରହିଗଲା ପେଇଙ୍ଗ ଗେଷ୍ଟ ହୋଇ । ଗାଁରେ ଆସି ରହିବା ପରେ ପ୍ରଥମେ ସେ ଲୋକ ରଖି ଖାଇବା ପିଇବାର ବ୍ୟବସ୍ଥା କରୁଥିଲା । କିନ୍ତୁ ଯେବେଠାରୁ ହରି ମାଷ୍ଟର ତା ଘରେ ଭଡ଼ାରେ ରହିଲେ, ଦେବନାଥ ତାଙ୍କ ପାଖରୁ ଆଉ କିଛି ପଇସା ନେଲା ନାହିଁ । ସେ ହରି ମାଷ୍ଟରଙ୍କୁ ଆଉ କିଛି ଟଙ୍କା ଯାଚୁଥିଲା, କିନ୍ତୁ ସେ ରୋକଠୋକ ମନା କରିଦେଲେ ।

ବର୍ତ୍ତମାନ ମଦ ଦୋକାନ ସାମନା ଖୋଲାରେ ହାଲୁକା ଖରାରେ ବସି ଗ୍ଲାସ୍‌ରୁ ଟିକିଏ ଟିକିଏ ପିଇବାବେଳେ ସେ କିନ୍ତୁ ତା'ର ସେବେର ସଂସାର କଥା ଭାବୁନଥିଲା । ତାକୁ ଯେତେ ମନେ ପଡୁନଥିଲେ ତା'ର ବ୍ୟକ୍ତିଗତ ଜୀବନର ସ୍ମୃତି, ସେତେ ମନେ ପଡୁଥିଲେ କବିତାର ପଂକ୍ତିସବୁ । ଏଇ ମୁହୂର୍ତ୍ତରେ ଯେପରି ତା'ର ମନକୁ ଆଚ୍ଛନ୍ନ କରି ରଖିଥିଲେ ରବି ଠାକୁର । ସେ ଆକାଶକୁ ଅନାଇ ଖୋଜୁଥିଲା ପ୍ରଥମ ଦିନର ସୂର୍ଯ୍ୟ ଓ ଦିବସର ଶେଷସୂର୍ଯ୍ୟ ମଝିର ଜିଜ୍ଞାସୁ ନକ୍ଷତ୍ର, ଯାହାର ପ୍ରଶ୍ନର କୌଣସି ଉତ୍ତର ନଥିଲା । ଥରେ ଗୁରୁଦେବଙ୍କ କଥା ମନେପଡ଼ିଲେ ମନ ଖୋଲିଯାଏ । ସବୁକିଛି ମନେ ହୁଏ ସାମାନ୍ୟତାରୁ ଊର୍ଦ୍ଧ୍ୱରେ ; ମହାମାନବର ସାଗର, ଅନ୍ତରକୁ ବିକଶିତ କରୁଥିବା ଅନ୍ତରତମ, ଜଗତ ପାରାବାର ତୀରରେ ଖେଳା କରୁଥିବା ମାନବ ଶିଶୁ !

ଦେବନାଥ ନିରାଶ ହୋଇଯାଇଥିଲା ଯେତେବେଳେ ଗୁରୁଦେବ ଶେଷ ବେଳକୁ କବିତାରେ ଲେଖିଲେ ସର୍ବ ଅଙ୍ଗ କ୍ଷତଥିବା କୁକୁର, ମଲାମୂଷା, ଫୁଟନ୍ତା ତେଲ କଡ଼େଇରେ କଉମାଛ, ମଇଳା ମୋଜା ଓ ବୀଭତ୍ସ ମାଛିଦଳ କଥା । ଦିନେ ଯେ ଭାବୁଥିଲେ ବାଷ୍ପଯୋଗେ ରେଳଗାଡ଼ିର ଚାଲିବାରେ କୌଣସି ପରମତା ନାହିଁ ଏବଂ ସେଥିପାଇଁ ଜିନିଷଟି କବିତାର ଅଯୋଗ୍ୟ, ସେଇ ବିଶ୍ୱକବି ପୁଣି ଲେଖିଲେ ; ରାତିର ଗାଡ଼ି ଓ ଷ୍ଟେସନ ଭଳି କବିତା । ଦେବନାଥ କିନ୍ତୁ ଅଟକି ଯାଇଥିଲା ବିଶ୍ୱଦର୍ଶନ ପର୍ଯ୍ୟାୟରେ । ଜୀବନ ଓ କବିତାରୁ ସମସ୍ତ ନୀରସ ଗଦ୍ୟକୁ କାଟିଦେଇ ସେ ମଜ୍ଜି ରହିଲା ପ୍ରେମ ସମୟ ମୃତ୍ୟୁ ଅମରତ୍ୱ ସଂପର୍କ ଭଳି ଅପାର୍ଥିବ ତତ୍ତ୍ୱମାନଙ୍କରେ । କବିତା ଲେଖିବାରେ ସେ ନିଜର ଜୀବନର ସବୁ ସାର ନିଃଶେଷ କରିଦେଲା ।

ସେ ସ୍ୱୀକୃତି ଓ ସମ୍ମାନ ବି ପାଇଥିଲା ସେଥିପାଇଁ । କବି ହୋଇଥିବାର ପ୍ରଭାମଣ୍ଡଳକୁ ସେ ନିଶ୍ଚିତ ଭୋଗ କରିଥିଲା । ଯଦିଓ ସେ ଛୋଟ ଚାକିରିଟିଏ କରିଥିଲା, ତା'ର ସାମାଜିକ ସମ୍ମାନ ଥିଲା ତା'ଠାରୁ କାହିଁ କେତେ ଉଚ୍ଚରେ । ପତ୍ରପତ୍ରିକାର ସଂପାଦକ ତାକୁ ଲୋଡୁଥିଲେ । କବିତା ପାଠ ପାଇଁ ତା ପାଖକୁ ନିମନ୍ତ୍ରଣ ଆସୁଥିଲା । ତା'ର ବନ୍ଧୁମାନେ ଥିଲେ ଲେଖକ ଓ ବିଦଗ୍ଧ ପାଠକ । ସେ ଯେପରି ଆଳଙ୍କାରିକ ଲେଖି ଦେଇଥିବା କବିର ଦୈନନ୍ଦିନ ଜୀବନ ସାରଣି ଅନୁଯାୟୀ ବଞ୍ଚୁଥିଲା : କବି ଛ'ଘଣ୍ଟା ଶୋଇବ, ସକାଳେ ଉଠି ପ୍ରାତଃକୃତ୍ୟ ଓ ଆହ୍ନିକାଦି ସାରି ତିନିଘଣ୍ଟା ପଢ଼ିବ, ତିନି ଘଣ୍ଟା ଲେଖିବ, ତା ପୂର୍ବଦିନର ଲେଖାକୁ ସଂଶୋଧନ କରିବ, ଅପରାହ୍ନରେ ସାହିତ୍ୟିକ ବନ୍ଧୁମାନଙ୍କ ସହଯୋଗରେ ନିଜର ରଚନାର ସମାଲୋଚନାରେ ଭାଗ ନେବ ଓ ତା'ପରେ ତାକୁ ପରିଶୋଧନ କରିବ । ଜୀବନଯାପନର ଏହି ପ୍ରଣାଳୀରେ କିଛି ବର୍ଷରେ ଦେବନାଥର ଦୁଇଟି କବିତା ବହି ପ୍ରକାଶ ପାଇଲା, କବିତା ସଂଚୟିତାରେ ତା'ର କବିତା ସ୍ଥାନିତ ହେଲା ଏବଂ ଅନ୍ୟ ଭାଷାରେ ତା'ର ଅନୁବାଦ ବାହାରିଲା । ଏକ ସମାନ୍ତର ଧାରାରେ ତା'ର ପୁଅର ବୟସ ବଢ଼ିଲା, ତା'ର ସ୍ତ୍ରୀ ଅଧିକ ରୋଗିଣା, ଧାର୍ମିକା ଓ ଖିଟ୍‌ଖିଟ ସ୍ୱଭାବର ହୋଇଗଲା ଓ ପରିବାର ବିଷୟରେ ଆହୁରି ଦାୟିତ୍ୱଶୂନ୍ୟ ହୋଇଗଲା ଦେବନାଥ ।

ଆଉ ଟିକିଏ ଖରା ଉଠିଲେ ସେ ବାରଣ୍ଡା ଉପରକୁ ଚାଲିଯିବ । ଏବେ କିନ୍ତୁ ଏଇଠି ଠିକ୍ ଅଛି । ବେଳା ବଢ଼ିବାରୁ ବର୍ତ୍ତମାନ ବେଶ୍ କିଛି ଗ୍ରାହକ ଆସି ପହଞ୍ଚିଗଲେଣି । ଏଠାରେ ସେ ଗୋଟିଏ ପରିଚିତ ମୁହଁ ; ବୋଧହୁଏ ସମସ୍ତେ ଜାଣନ୍ତି ସେ ପଢ଼ାଲେଖା ଲୋକ । ସେଥିପାଇଁ ସେ ସାମାନ୍ୟ ସମ୍ଭ୍ରମ ପାଏ ଏଠାରେ ; ତା'ର ନିର୍ଦ୍ଦିଷ୍ଟ ଜାଗାରେ ଆଉ କେହି ବସିବାକୁ ଆସନ୍ତି ନାହିଁ । ଗ୍ଲାସ୍ ଉଠାଇ ସେ ଗୋଟିଏ ଛୋଟ ଢୋକ ନେଲା । ଏଠାରେ ଅନେକ ସମୟ ବସି ରହେ ବୋଲି ସେ ଧୀରେ ଧୀରେ ଅଳ୍ପ ଅଳ୍ପ ପିଏ । ତାକୁ ସମସ୍ତେ ଦାୟିତ୍ୱହୀନ ବୋଲି ଭାବନ୍ତି, କିନ୍ତୁ ସେ ପିଇବା ବିଷୟରେ ସଚେତନ । ଥରେ

ବେଶି ପିଇ ଘରକୁ ଫେରୁଥିବାବେଳେ ରାସ୍ତାରେ ପଡ଼ିଯାଇଥିଲା । ଏଭଳି ଅବସ୍ଥାରେ ସେ ରିକ୍ସା ନେଇଯାଏ, କିନ୍ତୁ ସେଦିନ ରିକ୍ସା ମିଳିଲା ନାହିଁ । ସେଥରକ ବେଶ୍ କିଛି ଦିନ ଘରୁ ବାହାରି ପାରି ନଥିଲା ସେ । ହରି ମାଷ୍ଟର ତା ପାଇଁ ହଇରାଣ ହେଲେ । ତାକୁ ଦି'ଥର ପାଖ ସହରର ଡାକ୍ତରଖାନାକୁ ନେଲେ, ତା ପାଇଁ ଔଷଧ ଆଣିଦେଲେ, ଖାଇବା ପାଇଁ ପଥ୍ୟର ବ୍ୟବସ୍ଥା କଲେ ।

ସେଇଦିନୁ ସତର୍କ ହୋଇଗଲା ଦେବନାଥ । ଅନ୍ୟମାନଙ୍କୁ ହଇରାଣ କରିବାର କୌଣସି ଅଧିକାର ନାହିଁ ତା'ର । ନିଜର ମନ ଭିତରର ପୃଥିବୀରେ ଯେତେ ଯାହା ବିଶୃଙ୍ଖଳା ଅବ୍ୟବସ୍ଥା ହୋଇଥାଉ, ବାହାର ପୃଥିବୀରେ ସେ ସାବଧାନ ରହିବ, ଯଥାସମ୍ଭବ ନିଜର ସ୍ୱାସ୍ଥ୍ୟକୁ ଜଗି, ଅନ୍ୟମାନଙ୍କୁ ସମ୍ମାନ ଦେଇ । ଏକଥା ସେ ନିଶ୍ଚୟ କରିପାରିବ ମନ ଯେଉଁଆଡ଼େ ଉଡ଼ି ବୁଲୁଥାଉ ପଛେ । ତେବେ ମନ ଉପରେ ଲଗାମ ନାହିଁ । ଏଇ ମୁହୂର୍ତ୍ତରେ ଯେମିତି ହଠାତ ଦୁଇଧାଡ଼ି ମୁଣ୍ଡ ଭିତରକୁ ଧସି ପଶି ଆସୁଛି : ନକ୍ଷତ୍ରଲୋକରୁ ବାହାର, ଉଜ୍ଜ୍ୱଳ ପ୍ରକାଶ ତାହାର । ଜୀବନର ସୃଜନଶୀଳ ସମୟରେ ସେ ଏଇ ଶବ୍ଦମାନଙ୍କୁ ନେଇ ଗୋଟିଏ ପୂରା କବିତା ଲେଖିପାରିଥା'ନ୍ତା । ଧାଡ଼ି ଦୁଇଟିକୁ ଭିନ୍ନ ଭିନ୍ନ ଭାବରେ ସଜାଇ, ତା'ର ଆଗରେ ପଛରେ ଆହୁରି ଶବ୍ଦ ଖଂଜି ନିଜର ଚିନ୍ତାକୁ ଏକ ନିର୍ଦ୍ଦିଷ୍ଟ ଉପସଂହାର ଆଡ଼କୁ ଟାଣିନେଇ ପାରିଥା'ନ୍ତା ଗୋଟିଏ ସ୍ୱୟଂସଂପୂର୍ଣ୍ଣ ରୂପଅଳଂକୃତ ଶେଷ ପଂକ୍ତିରେ । କାଗଜ ଉପରେ ଗୋଟିଏ ଛମଛମ ସଂବନ୍ଧ କବିତା ଆସି ଉଭା ହୋଇଯାଇଥାନ୍ତା ତା ଆଗରେ, ନିଜର ପର୍ଯ୍ୟାପ୍ତିର ସ୍ପର୍ଦ୍ଧାରେ । ଏବେ କେବଳ ସେଇ ଉର୍ବର ଦିନମାନଙ୍କର ପ୍ରୀତିକର ସୁଖଚାରଣ ।

ଯେପରିକି ଦିନେ ତାକୁ କିଏ ଜଣେ କହିଲା ଜଣେ ଜଣାଶୁଣା ସମାଲୋଚକ ତା'ର କବିତାର ପ୍ରଶଂସା କରି ଲେଖିଛନ୍ତି କେଉଁ ଲେଖାରେ । କିମ୍ବା ଅନ୍ୟ ଜଣେ ଲେଖକ ତାଙ୍କ ଉପନ୍ୟାସରେ ଅଗ୍ରଲେଖ ଭାବରେ ବ୍ୟବହାର କରିଛନ୍ତି ତା'ର କବିତାର ଚାରିଧାଡ଼ି । ଏପରିକି ଥରେ ଆଲୋଚନା ହେଲା ଯେ ଜଣେ ଗାଳ୍ପିକ ଏକ ସଂପୂର୍ଣ୍ଣ ଗଳ୍ପ ଲେଖିଛନ୍ତି ତାକୁ ନେଇ । ଗଳ୍ପଟିକୁ ଆଣି ପଢ଼ିଲା ଦେବନାଥ । ସେଇଟି ଗୋଟିଏ ପାଗଳ କବି ବିଷୟରେ ଥିଲା । ଦେବନାଥକୁ ବୋଧହୁଏ ତା'ର ସାଙ୍ଗମାନେ ପାଗଳ ବୋଲି ଭାବୁଥିଲେ କି କ'ଣ ; ସେଥିପାଇଁ ଏ କାହାଣୀ ସହିତ ତା'ର ଜୀବନର ସମାନତା ଦେଖି ପାରୁଥିଲେ । ଯଦିଓ ଗଳ୍ପର କବିର ନାଁ ସହିତ ନିଜ ନାଁର ସାମଞ୍ଜସ୍ୟ ଥିଲା, ଦେବନାଥ ଆଉ କୌଣସି ସାଦୃଶ୍ୟ ପାଇଲା ନାହିଁ ଲୋକଟି ସହିତ । ତା'ର କବିତା ଥିଲା ଭିନ୍ନ ପ୍ରକାରର, କାଳ୍ପନିକ କବିଟି ଲଗାମଛଡ଼ା ଥିବାବେଳେ ସେ ଥିଲା ସଂସାରୀ ଏବଂ ଦି'ଜଣଙ୍କର କବିତାର ସଂଜ୍ଞା ମଧ୍ୟ ଥିଲା ଭିନ୍ନ । ତେବେ ଏତେ ପ୍ରକାରର ନକାରାତ୍ମକ ଯୁକ୍ତି ସତ୍ତ୍ୱେ କେବେ କେବେ ତା'ର ମନେ ହେଉଥିଲା ଗଳ୍ପ ନାୟକ ଭବନାଥ

ସହିତ ଯେପରି ତା'ର କେଉଁଠି ଏକ ଗଭୀର ଆତ୍ମୀୟତା ଅଛି ।

ତା'ର ମନେ ପଡ଼ିଲା ଯେ ଅନେକ ଖୋଜି କୁସୁମ ହିଁ ତାକୁ ସେଇ ପତ୍ରିକାଟି ଦେଇଥିଲା ଯେଉଁଥିରେ ଗଳ୍ପଟି ବାହାରିଥିଲା । କୁସୁମ କଥା ମନକୁ ଆସିଲେ ତା ଛାତି ଭିତରେ ଆଦର, ସ୍ନେହ ଓ ସୋହାଗର ଫଲ୍‌ଗୁ ଉଚ୍ଛୁଳି ପଡ଼େ । ସ୍ତ୍ରୀ କଥା ଭାବିଲେ ମନ ଭିତରେ ତା'ର ମୁହଁ ପ୍ରତିବିମ୍ବିତ ହୁଏ ନାହିଁ, ତା'ର ନାଁ ଓଠକୁ ଆସେ ନାହିଁ । କିନ୍ତୁ କୁସୁମ ମନେ ପଡ଼ିଲେ ହିଁ ମନ ଭିତରେ ଜପ କରିବା ଭଳି କୁସୁମ କୁସୁମ କୁସୁମ କହିବାକୁ ଇଚ୍ଛା ହୁଏ । ଆଖି ବନ୍ଦ କଲେ ତା'ର ସେଇ ପୁରୁଣା ଦିନର ଚେହେରା ମନକୁ ଆସେ । କୋଉ ଝିଅକୁ ଦେଖିଲେ ତା'ର ଚେହେରା ସହିତ ତୁଳିବାକୁ ଇଚ୍ଛା ହୁଏ । କୁସୁମ ମନେ ପଡ଼ିଲେ କବିତା ମନେପଡ଼େ ।

ସେ ଚାହିଁଥିଲା ଏକ ସହଜ ସାଧାରଣ ଜୀବନ ବଞ୍ଚିବା ପାଇଁ, ଯାହା ସମ୍ଭବ ହେଲା ନାହିଁ । କବି କହିଲେ ଲୋକ ବୁଝନ୍ତି ଉଚ୍ଛୃଙ୍ଖଳା ବୋହେମିଆନ ଜୀବନଯାପନ କରୁଥିବା ଏକ ରୋମାଣ୍ଟିକ ଜୀବକୁ, ଯାହା ପାଖରୁ ସମାଜ ଆଉ କିଛି ଆଶା କରେ ନାହିଁ କେବଳ କେତୋଟି ଧାଡ଼ି ଛନ୍ଦରେ ବନ୍ଧା କଳ୍ପନା ବ୍ୟତୀତ । ଦେବନାଥ ନିଜେ କିନ୍ତୁ ଏ ପ୍ରକାରର ସ୍ୱପ୍ନବିଳାସୀ ନଥିଲା । ସେ ସାଧାରଣ ଲୋକର ଜୀବନ ଜୀଉଁଥିଲା, ଅଫିସ କାମ ଠିକ୍‌ରେ କରୁଥିଲା, ସମୟାନୁବର୍ତ୍ତୀ ଏବଂ ଏକପତ୍ନୀବ୍ରତୀ ଥିଲା । ଯଦି ସେ ସମାଜରେ ଅପାଙ୍‌କ୍ତେୟ ଥିଲା, ତା'ର କାରଣ ଥିଲା ଯେ ସେ ନିଜର ସମସ୍ତ ବଳକା ସମୟ ଲେଖାପଢ଼ାରେ କଟାଉ ଥିଲା, କାହାରି ସହିତ କିଛି ସମ୍ପର୍କ ନରଖି । ସେ ନିଜକୁ ବଞ୍ଚିତ କରି ରଖିଥିଲା ଖେଳ ସିନେମା ମେଳା ସାଙ୍ଗସୁଖ ଅବସର ବିନୋଦନରୁ । କହିବାକୁ ଗଲେ ସେ ହିଁ ନିଜକୁ ସମାଜରୁ ପ୍ରତ୍ୟାହାର କରି ନେଇଥିଲା କବିତା ପାଇଁ । ଶେଷରେ କିନ୍ତୁ ଯୋଉ କବିତା ପାଇଁ ସେ ସବୁକିଛି ଛାଡ଼ିଥିଲା, ସେଇ କବିତା ଦିନେ ତାକୁ ଛାଡ଼ି ଚାଲିଗଲା । ଆଉ ଫେରିଲା ନାହିଁ ।

ଖରା ଟାଣ ହେଇ ଆସୁଥିଲା, ଏତିକିବେଳେ ଗୋଟିଏ ହାଲୁକା ମେଘ ଆକାଶରେ ଭାସିଗଲା ଓ ଖୋଲାରେ ଆଉ ବସିବା କଷ୍ଟକର ହେଲା ନାହିଁ । ସମୟ କେତେ ହୋଇଥିବ ଅନ୍ଦାଜ କରିବାକୁ ଚେଷ୍ଟା କଲା ଦେବନାଥ । ଆଜିକାଲି ଆଉ ସେ ହାତରେ ଘଡ଼ି ବାନ୍ଧେ ନାହିଁ । କ'ଣ ହେବ ତା'ର ସଠିକ୍ ସମୟ ଜାଣି ? ପାଖ ଟେବୁଲ ଉପରେ ଯେତେବେଳେ ଅନ୍ୟମାନେ ଡାବାରୁ ଖାଇବା ଆଣି ବସିଯା'ନ୍ତି, ସେ ଜାଣେ ଯେ ଖାଇବାବେଳ ହୋଇଗଲାଣି । ଘରେ ତା ପାଇଁ ଖାଇବା ରହିଥିବ । ଆଗେ ସେ ଯାଇ ଖାଇବା ସମୟରେ ନ ପହଞ୍ଚିଲେ ସେମାନେ ଟିକେ ବ୍ୟସ୍ତ ହେଉଥିଲେ ; ଏବେ ଜାଣି ଗଲେଣି ଯେ ସେ ଡାବାରେ ଖାଇ ନେଇ ସଂଜବେଳକୁ ଫେରିବ । ଚିହ୍ନା ରିକ୍‌ସାବାଲା ଏଇ ସମୟରେ ଖାଲି ଥିଲେ ଆସି ତାକୁ ଘରକୁ ନେଇଯିବାକୁ ଡାକୁଥିଲା । ଆଜି

ବୋଧହୁଏ କାମରେ ବାହାରି ଯାଇଛି । ମୁଣ୍ଡ ଉପରେ ଆକାଶକୁ ଅନାଇ ଦେବନାଥ ଠିକ୍ କଲା ଯେ ଆଉ ଘରକୁ ନଯାଇ ଏଇଠି ରହିଯିବ । ସକାଳୁ ଗୋଟିଏ ଜାଗାରେ ବସି ରହି ତାକୁ ଚିଟା ଲାଗୁଥିଲା ; ଠିକ୍ କଲା ତାଟିଘେରା ପାଖରେ ଯେଉଁ ଛୋଟ ଅରାଏ ଘାସ ଅଛି, ସେଇଠି ଯାଇ ବସିବ । ହାତରେ ଗ୍ଲାସ୍ ଓ ଚାଦରକୁ ସମ୍ଭାଳି ସେ ସେଠାକୁ ଗଲା ଓ ବସିବ କ'ଣ, ଘାସ ଉପରେ ଆରାମ କରି ଶୋଇଗଲା ।

ଏ ଜାଗାଟି ଠିକ୍ ଲାଗୁଥିଲା ଯେମିତି ସେଇ ପୁରୁଣା ଦିନର ରେଡ଼ିଓ ଷ୍ଟେସନ ପଛ ପାଖ ଗଳିରେ ଥିବା ଚୋରା ମଦଭାଟି କଡ଼ର ଛୋଟ ଘାସ ଟିକକ । ଆଜିର ବଡ଼ ସହର ସେତେବେଳେ ଥିଲା ଛୋଟ ଛୋଟ ଗାଁର ସମଷ୍ଟି ଭଳି ; ଅନେକ ଖୋଲା ଜାଗା, ବୁଦା ଲଟା ଝାଡ଼, ଭଙ୍ଗା କୋଠି ଥିଲା ଗଳିରେ । ଏଇଭଳି ଗୋଟିଏ ଜାଗାରେ ଦେଶୀମଦ ରନ୍ଧା ହେଉଥିଲା ଏବଂ ସେମାନେ ସାଙ୍ଗହୋଇ ସେଠାରେ ପହଞ୍ଚି ଯାଉଥିଲେ କାମ ସରିଗଲେ । ସେତେବେଳେ ସେ ଜାଗାରେ କାଚ ବୋତଲ ଓ ଗ୍ଲାସ୍ ନଥିଲା । ହାଣ୍ଡିରୁ ଆଣି ମଦ ବିକ୍ରି ହେଉଥିଲା ମାଟି ସରାରେ । ସେମାନେ ହାତରେ ଗୋଟିଏ ଗୋଟିଏ ସରା ନେଇ ଘାସ ପଦା ଉପରେ ବସି ଯାଉଥିଲେ ; ଗପସପ ଭିତରେ ମଦାଳସ ଦିନଟି ସରିଯାଉଥିଲା ।

ଦେବନାଥ ସ୍ୱପ୍ନରେ ବି ଭାବି ନଥିଲା ଯେ ସେ କେବେ ମଦ ପିଇବ । ଅଥବା କବିତା ଲେଖା ଛାଡ଼ି ସିନେମା ପାଇଁ ଗୀତ ଲେଖିବ । ମଝିରେ ମଝିରେ ସେ ପୁରୁଣା କଥା ମନେ ପକାଏ, କିନ୍ତୁ ଠିକ୍ କରିପାରେ ନାହିଁ ସେ କ'ଣ ଏଇ ରୂପାନ୍ତରଣକୁ ଟାଳିଦେଇ ପାରିଥା'ନ୍ତା ? ସାହିତ୍ୟରେ ଆଦିପର୍ବରେ ଗୀତ ହିଁ ଥିଲା କବିତା, ଗୀତିକାର ହିଁ ଥିଲେ କବି । ପରେ ଦୁଇଟି ଅଲଗା ଧାରା ହୋଇଗଲା । ଯେଉଁମାନେ କେବଳ ଗୀତ ଲେଖିଲେ ସେମାନେ ଆଉ କବିର ସମ୍ମାନ ପାଇଲେ ନାହିଁ । ତେଣୁ ଯେତେବେଳେ ଜଣେ ରେଡ଼ିଓ ଗାୟକ ଆସି ତାକୁ ଗୀତ ଲେଖିବାର ଅନୁରୋଧ କଲେ, ସେ ସାମାନ୍ୟ ଅପମାନିତ ବୋଧ କରିଥିଲା । ସେ ବୋଧହୁଏ ଏ ବିଷୟରେ ରୋକଠୋକ କିଛି କହିଲା । ଗାୟକ ତାକୁ କହିଲେ, ଆପଣ ପରା ନିଜକୁ ରବୀନ୍ଦ୍ର ଭକ୍ତ ବୋଲି କହନ୍ତି ; ଗୀତାଞ୍ଜଳି କ'ଣ ? ପ୍ରଶ୍ନଟି ଅଡୁଆରେ ପକାଇଲା ଦେବନାଥକୁ । ତଥାପି ସେ ଯୁକ୍ତି ଛଳରେ କହିଲା, ଗୀତାଞ୍ଜଳିର ଅଧିକାଂଶ କବିତାର ଏ ପର୍ଯ୍ୟନ୍ତ ସୁର ଦିଆଯାଇ ନାହିଁ ଏବଂ ସେସବୁ କବିତା ଗୀତିବିତାନରେ ସ୍ଥାନ ପାଇବାର ଉପଯୁକ୍ତ ନୁହଁନ୍ତି ।

ସେଦିନ ସେ ଗାୟକ ଫେରିଗଲେ, କିନ୍ତୁ ତାକୁ ଯେତେବେଳେ ସେ ସମୟର ସବୁଠାରୁ ପ୍ରସିଦ୍ଧ, ସବୁଠାରୁ ସଫଳ ଓ ଲୋକପ୍ରିୟ ଗାୟକ ଆସି ଗୀତ ମାଗିଲେ, ଏବଂ କହିଲେ ଯେ ଗୀତ ଲେଖି ନଦେଲେ ସେ ତା'ର କବିତାକୁ ହିଁ ସୁର ଦେଇ ଗାଇବେ, ସେ ମନା କରିପାରିଲା ନାହିଁ । ତାଙ୍କ ବରାଦ ଅନୁସାରେ, ସେ ଚାହୁଁଥିବା ପଂକ୍ତିମାନଙ୍କର

ଦୈର୍ଘ୍ୟ, ପଦର ମେଳ ଓ ଶବ୍ଦର ଅନୁମାନିକ ସଂଖ୍ୟା ଇତ୍ୟାଦି ଇତ୍ୟାଦି ହିସାବ କରି ଦେବନାଥ ତା'ର ପ୍ରଥମ ଗୀତଟି ଲେଖିଲା । ସେ ଭାବିଥିଲା ଏଇଟି ତା'ର ପ୍ରଥମ ଓ ଶେଷ ବରାଦୀ ଗୀତ ଲେଖିବା ହେବ । କିନ୍ତୁ ତା'ର ଦୁର୍ଭାଗ୍ୟକୁ ସଂଗୀତ ନିର୍ଦ୍ଦେଶକଙ୍କ ସୁର ଓ ଗାୟକଙ୍କ କଣ୍ଠରେ ଏଇଟି ଗୋଟିଏ ଅତି ସୁନ୍ଦର ସଂଗୀତ ହୋଇ ବାହାରିଲା ଏବଂ ଅଳ୍ପ ଦିନରେ ତା'ର ହାଲୁକା ପ୍ରେମର ଗୀତଟି ସର୍ବଜନବିଦିତ ହୋଇ ରାସ୍ତାଘାଟରେ ଶୁଣିବାକୁ ମିଳିଲା ।

ଏହା ଥିଲା ଦେବନାଥ ପାଇଁ ଏକ ବିସ୍ମୟକର ଅଭିଜ୍ଞତା । କବିତା କେତେ ଲୋକ ପଢ଼ନ୍ତି ? ବା ବୁଝିବାକୁ ଚାହାଁନ୍ତି ? ଗୀତ କିନ୍ତୁ ସମସ୍ତଙ୍କ ଓଠରେ । ଶବ୍ଦମାନଙ୍କର ଅର୍ଥ ହଜିଯାଉ ପଛେ, ସୁର ଅନ୍ତତଃ ମନେ ରହିଯାଏ । ଗୀତ ପାଇଁ ଯେତେବେଳେ ଆହୁରି ବରାଦ ଆସିଲା, କବିତା ଛାଡ଼ି ଗୀତ ଲେଖିବାରେ ମନ ଦେଲା ଦେବନାଥ । ଗୀତ ଲେଖିବାର ଏକ ଅନ୍ୟ ପ୍ରକାରର ଉଦ୍ଦୀପନା ଥିଲା । ଶବ୍ଦମାନଙ୍କୁ ମନାଇବାକୁ ପଡୁଥିଲା କବିତାରେ, ଏଠାରେ ସେମାନଙ୍କୁ ବାଧ କରିବାକୁ ପଡୁଥିଲା । କବିତାରେ କହିବାକୁ ଚାହୁଁଥିବା କଥାଟିକୁ ବହୁତ ପ୍ରକାରରେ ଢାଙ୍କି ଦିଆ ଯାଉଥିଲା, ଯେପରିକି ପାଠକ ତାକୁ ଆଉଥରେ ପଢ଼ି ସେଥିରୁ ତା'ର ନିଜର ଅର୍ଥ ବାହାର କରିବ । ଗୀତ ଥିଲା ଶ୍ରୋତା ସହିତ ସିଧାସଳଖ କଥାବାର୍ତ୍ତା ; ପ୍ରଥମ ଉଚ୍ଚାରଣରେ ହିଁ ଯେପରି ଯାଇ ଛୁଇଁବ ତାକୁ । କବିତାର ଅବଲମ୍ବନ ଥିଲା କେବଳ ଶବ୍ଦ ; ଗୀତରେ ଶବ୍ଦକୁ ସହାୟକ ହେଉଥିଲା ସୁର, ଅଥବା ସୁରକୁ ସହାୟକ ଶବ୍ଦ । ଅନେକ ସମୟରେ ସଂଗୀତ ନିର୍ଦ୍ଦେଶକ ତାକୁ ଗୁଣୁ ଗୁଣୁ କରି ଗୋଟିଏ ସୁର ଶୁଣାଉ ଥିଲେ । ଏବଂ ଦେବନାଥର ଦାୟିତ୍ୱ ଥିଲା ସେହି ସ୍ୱରକୁ ମିଳାଇ ଗୋଟିଏ ଗୀତ ଲେଖିବା ।

କବିତା ହେଉଛି ଏକାନ୍ତର କାମ : ନିଃସଙ୍ଗରେ ବସି ନିଜ ସହିତ ନିଜେ କଥାବାର୍ତ୍ତା ବୁଝାମଣା କରି କାଗଜ ଉପରେ ଲେଖାହୁଏ କବିତା । ଗୀତ କିନ୍ତୁ ଏକ ସାମୂହିକ ଜିନିଷ ; ଗୀତିକାର, ଗାୟକ ଓ ସଂଗୀତ ନିର୍ଦ୍ଦେଶକ ମିଳି ସେଇ ଶେଷ ପଦାର୍ଥଟିକୁ ତିଆରି କରନ୍ତି ଯାହା ଶ୍ରୋତା ପାଖରେ ପହଞ୍ଚେ । ସେଥିପାଇଁ ଏତେଦିନ ଧରି ଏକୁଟିଆ ରହିଥିବା ଦେବନାଥକୁ ସଂଗୀତର ଏକ ବୃହତ୍ତର ପରିବାର ଭିତରେ ପଶିବାକୁ ହେଲା । ଏ ବୃତ୍ତଟି ପୁଣି ବଢ଼ି ବଢ଼ି ପହଞ୍ଚିଲା ରେଡ଼ିଓରୁ ରେକର୍ଡ଼ କମ୍ପାନୀ ଓ ଶେଷକୁ ସିନେମାରେ ।

ଏହା ସହିତ ଆହୁରି ଗୋଟିଏ ସମସ୍ୟା ବି ଆସିଲା । ସମୟକୁ ବ୍ୟବସ୍ଥିତ କରିବା । ଆଗରୁ ସେ ସକାଳୁ ବସି ପଢୁଥିଲା, ଲେଖୁଥିଲା, ଅଫିସ ସମୟ ହେଲେ ଖାତାବହି ବନ୍ଦକରି ଘରୁ ବାହାରି ଯାଉଥିଲା । ଗୀତର ଦାବି କିନ୍ତୁ ଥିଲା ଭିନ୍ନ ପ୍ରକାରର ; କେବେ କେବେ ହଠାତ ଦରକାର ହେଉଥିଲା ଓ କେତେବେଳେ ପୁଣି ତାକୁ ଅଦଳ

ବଦଳ କରିବାକୁ ହେଉଥିଲା । ଗୀତ ପାଇଁ ତାକୁ ଅନ୍ୟମାନଙ୍କ ସମୟ ସହିତ ଖାପ ଖୁଆଇବାକୁ ହେଲା । କ୍ରମେ କ୍ରମେ କିନ୍ତୁ ଦେବନାଥକୁ ଏଇ ସଂଗୀତର ଦୁନିଆରେ ଚଳପ୍ରଚଳ ହେବା ମନ୍ଦ ଲାଗିଲା ନାହିଁ । ଏ ଦୁନିଆର ଅଧିକାଂଶ ଲୋକ ବେଶି ରାତି ପର୍ଯ୍ୟନ୍ତ ଚେଇଁ ସକାଳେ ଉଠୁଥିଲେ ଡେରିରେ । ତାଙ୍କ ସହିତ ଅନେକ ସମୟରେ ଦେବନାଥକୁ ଯୋଗ ଦେବାକୁ ହେଉଥିବା ଅଫିସ ବେଳରେ । ଏ ପର୍ଯ୍ୟନ୍ତ ନିଜ କାମରେ କେବେହେଲେ ହେଳା କରି ନଥିବା ଦେବନାଥ ଆଜିକାଲି ଅଫିସ ସମୟରେ ବାହାରକୁ ଚାଲିଯାଉଥିଲା । ଏଥିପାଇଁ ତା ପାଖକୁ ତାଗିଦା ବି ଆସିଲା ଅଫିସରୁ । ଶେଷରେ ତାକୁ କାମରେ ହେଳା କରୁଥିବା ପାଇଁ କୈଫିୟତ ମଗା ହେଲା ।

ଏକଥା ସେ ଯେତେବେଳେ ତା'ର ବନ୍ଧୁମାନଙ୍କୁ କହିଲା, ତାଙ୍କ ଭିତରୁ ଜଣେ କହିଲା, ଆପଣ ଏଥର ସେ ଶସ୍ତା ଚାକିରିଟି ଛାଡ଼ି ଦିଅନ୍ତୁ । ଦେଖିବେ ଗୀତରୁ ଆପଣ ତା'ଠାରୁ ବେଶି ରୋଜଗାର କରିବେ । ପ୍ରକୃତରେ ଗୀତରୁ ଆଜିକାଲି କିଛି କିଛି ପଇସା ବି ଆସୁଥିଲା । ସ୍ୱୀକୃତିପ୍ରାପ୍ତ ଗୀତିକାର ଭାବରେ ତା'ର ଯେତେ ଗୀତ ପ୍ରସାରିତ ହେଉଥିଲା ସେଥିପାଇଁ ସେ ପ୍ରାପ୍ୟ ପାଉଥିଲା । ରେକର୍ଡ଼ କମ୍ପାନୀ ମନ୍ଦ ପଇସା ଦେଉ ନଥିଲେ । ତା'ର ଅଫିସ ସମସ୍ୟା କଥା ଶୁଣି ତା'ର ଆଉଜଣେ ବନ୍ଧୁ କହିଲେ, ଆପଣ କାହିଁକି ଚାକିରି ଛାଡ଼ିବେ ? ସରକାରୀ ଚାକିରି, ଆପଣ କାମ କରନ୍ତୁ ନ କରନ୍ତୁ ଆପଣଙ୍କର କିଛି ହେବ ନାହିଁ । ସେମାନେ ଆପଣଙ୍କୁ ଚିଠି ଲେଖୁଥିବେ । ଏମିତି ଦେଖୁ ଦେଖୁ ଆପଣଙ୍କର ଅବସର ନେବା ସମୟ ଆସିଯିବ । ଆପଣ ପେନ୍‌ସନ୍ କାହିଁକି ହରାଇବେ ?

ଦେବନାଥକୁ ଉପଦେଶଟି ଠିକ୍ ମନେହେଲା । ସେ ଅଫିସରେ ଅନ୍ୟମାନଙ୍କୁ ଦେଖୁଥିଲା ଯେ କି ଚାକିରି ଆରମ୍ଭରୁ ତିଳେ ବି କାମ ନ କରି ମାସକୁ ମାସ ଦରମା ଟଙ୍କା ଟାଣି ନେଉଥିଲେ । ଅନ୍ତତଃ ସେ କେବେହେଲେ କାମରେ ଅବହେଳା କରି ନଥିଲା । ଅଫିସ ସମୟରେ ଥରେ ଥରେ ବାହାରକୁ ଚାଲି ଯାଉଥିଲେ ବି ସେ ନିଜର କାମ ପୂରା କରି ଦେଉଥିଲା । ଅବଶ୍ୟ ତା'ବି ବେଶିଦିନ ସମ୍ଭବ ହେଲା ନାହିଁ । ଏହାର ଏକ ମୂଳ କାରଣ ଥିଲା ତା'ର ମଦ ଅଭ୍ୟାସ ।

କଳାକାର ଏକ ଉଚ୍ଛୃଙ୍ଖଳ ନିରଂକୁଶ ଜୀବନ ବଞ୍ଚିବ, ଏ ନିୟମ ଯେପରି ବିଶେଷ ଭାବରେ ଥିଲା ସଂଗୀତ ସାଧକଙ୍କ ପାଇଁ । କେବଳ ପୋଷାକପତ୍ରରେ ନୁହେଁ, ଆଚାର ବ୍ୟବହାରରେ ମଧ୍ୟ ସେମାନଙ୍କୁ ଏହି ସ୍ୱାତନ୍ତ୍ର୍ୟ ଦେଖାଇବାକୁ ପଡୁଥିଲା, ଏବଂ ଏହାର ଗୋଟିଏ ଅଙ୍ଗ ଥିଲା ମଦ୍ୟପାନ । ଗୀତିକାର ଭାବରେ ଦେବନାଥକୁ ଅବଶ୍ୟ ସବୁବେଳେ ହାଜିର ହେବାକୁ ପଡୁନଥିଲା ଏଭଳି ଗୋଷ୍ଠୀରେ, ତେବେ ହଠାତ କେତେବେଳେ ଦରକାର ପଡ଼ିବ ଏଇ ବାହାନାରେ ସେ ନିଜକୁ ଏହି ଦଳଟି ସହିତ

ସାମିଲ କରିନେଲା । ରେଡ଼ିଓ ଷ୍ଟେସନର ଗୋଟିଏ ପରିତ୍ୟକ୍ତ ଅଂଶରେ ହାରମୋନିଅମ ବାଜାବାରଣା ଭିତରେ ସାରାଦିନ ଏମାନଙ୍କର ଆତଯାତ ଲାଗି ରହୁଥିଲା ଏବଂ ଫୁରୁସତ ପାଇଲେ ଏମାନେ ଚାଲିଯାଉଥିଲେ ପାଖ ଚା'ଦୋକାନକୁ, କିମ୍ବା ଅଧିକାଂଶ ସମୟରେ ଅଦୂରର ମଦ ଭାଟିକୁ । ଦେବନାଥ ପ୍ରଥମେ ପ୍ରଥମେ ତାଙ୍କ ସହିତ ଚା'ଦୋକାନକୁ ଯାଉଥିଲା । ତା'ପରେ ନିଜର ଚା'ଗ୍ଲାସ୍‌କୁ ଧରି ସେମାନଙ୍କ ସହିତ ଭାଟି ପର୍ଯ୍ୟନ୍ତ ଗଲା । ଶେଷରେ ଦିନେ ଟିକିଏ ମଦ ଚାଖି ଥୁ ଥୁ କଲା ।

ଏହିପରି କ୍ରମରେ ମଦର କିଛି କିଛି ଢୋକ ପରେ ଜିନିଷଟି ତାକୁ ଆଉ ଖରାପ ଲାଗିଲା ନାହିଁ, ଏବଂ ମନ ମସ୍ତିଷ୍କ ଉପରେ ତା'ର ଯେଉଁ ସୁଖଦ ପ୍ରଭାବ ପଡ଼ିଲା, ଦେବନାଥ ତା'ର ଭକ୍ତ ହୋଇଗଲା । ବର୍ତ୍ତମାନ ଘାସ ଉପରେ ଶୋଇଥିବାବେଳେ ଏଇସବୁ କଥା ମନେ ପଡୁଥିଲା । ଆଖି ବନ୍ଦ କଲେ ଆଉ ଅତୀତ ବର୍ତ୍ତମାନ ଭବିଷ୍ୟତ ଅଲଗା ହୋଇ ରହେନାହିଁ, ସବୁ ମିଶାମିଶି ହୋଇ ଝାପ୍‌ସା ହୋଇଯାଏ । ପରିମିତ ସ୍ୱଭାବର, ସମୟାନୁବର୍ତ୍ତୀ, ସମାଜ ସଚେତନ ତା'ଭଳି ଲୋକ ଯେ ଶେଷକୁ ମଦ୍ୟପ ଓ ସମାଜଚ୍ୟୁତ ହୋଇଯିବ, ସେକଥା ଗୋଟିଏ ସମୟରେ କଳ୍ପନା ମଧ କରିପାରି ନଥା'ନ୍ତା ଦେବନାଥ । କିନ୍ତୁ ଅତି ଧୀରେ ଧୀରେ ଏଇ ରୂପାନ୍ତରଟି ଘଟିଲା ତା'ପାଇଁ ।

ତା ସହିତ ଆଉ ଯେଉଁ ପରିବର୍ତ୍ତନଟି ହେଲା ତାହା ହେଉଛି ପାଠକ ଓ ଆଲୋଚକଙ୍କ ଆଖିରେ ତା'ର କବିରୁ ଗୀତିକାରକୁ ପଦାବନତି । ଗୀତ ପତ୍ରପତ୍ରିକା ବା ବହିରେ ବାହାରୁ ନଥିବାରୁ ତା'ର କୌଣସି ପାଠକ ଗୋଷ୍ଠୀ ନଥା'ନ୍ତି ; ତା'ର ଥା'ନ୍ତି ଶ୍ରୋତା । ପୁଣି ଶୀଘ୍ର ଶୀଘ୍ର ନୂଆ ନୂଆ ଗୀତ ବଜାରକୁ ଆସୁଥିବାରୁ ଏଭଳି ଏକ ଧାରଣା ହୋଇଯାଏ ଯେ କବିତା ଶାଶ୍ୱତ ହୋଇଥିବାବେଳେ ଗୀତ ଏକ ଅତି ସାମୟିକ ଚମକ, ଯାହାର ଜୀବନକାଳ ଆଠଦିନ ମାତ୍ର । ଏ କଥାର କୌଣସି ତାର୍କିକତା ନାହିଁ, ଯେପରି କୌଣସି ଯୁକ୍ତି ନାହିଁ କହିବାରେ ଯେ ଲୋକପ୍ରିୟ ସାହିତ୍ୟ ଉତ୍ତମ ସାହିତ୍ୟ ନୁହେଁ । ଦେବନାଥ ଯେତେବେଳେ ପତ୍ରପତ୍ରିକାକୁ କବିତା ବଦଳରେ ଗୀତ ପଠାଇଲା, ସଂପାଦକମାନେ ତାକୁ ଛପାଇବାକୁ କୁଣ୍ଠିତ ହେଲେ । ଗୀତିକବିତା ବହି ଛପାଇବାର ସମ୍ଭାବନା ନଥିଲା । ସେ ମାନିନେଲା ଯେ କବିତା ଆଉ ତା ପାଇଁ ନୁହେଁ, ସେ ଜଣେ ଗୀତିକାର ହିଁ ।

ଏ ନିଷ୍ପତ୍ତି ନେବା ସତ୍ତ୍ୱେ ତାକୁ ଯାହା କଷ୍ଟ ଦେଉଥିଲା ସେ କଥାଟି ହେଲା ସେ କି ବିଷୟରେ ଲେଖିବ, ତା ସବୁବେଳେ ତା ନିଜ ଉପରେ ନିର୍ଭର କରୁ ନଥିଲା । ସିନେମାବାଲା ତାକୁ ଦୃଶ୍ୟ ବୁଝାଇ ଦେଉଥିଲେ, ଶ୍ମଶାନକୁ ଫେରି ନାୟକ ଏକା ଝରଣା କୂଳରେ ବସିଛି, ଅଥବା ନାୟିକା ଏଇମାତ୍ର ଫେରିଛି ଷ୍ଟେସନରେ ଚୋରା ପ୍ରେମିକକୁ ଛାଡ଼ି, ଅଥବା ଦୁଇଟି ଝିଅ ଗୀତରେ କଥା କଟାକଟି ହେଉଛନ୍ତି, ଇତ୍ୟାଦି । ତାକୁ ଏଇ

ଏଇ ପରିସ୍ଥିତି ପାଇଁ ଗୀତ ଲେଖିବାକୁ ହେବ । ଏଇଭଳି ଭାବରେ ସେ ରେଡ଼ିଓ, ରେକର୍ଡ଼ କମ୍ପାନୀ ଓ ସିନେମା ପାଇଁ ଅନେକ ଗୀତ ଲେଖିଲା ଓ ତା ମଧ୍ୟରୁ ଅନେକ ଜନପ୍ରିୟ ହୋଇ ସେ କବି ଭାବରେ ଯେତେ ଜଣା ନଥିଲା ତା'ଠାରୁ ବେଶି ଜଣାଶୁଣା ହୋଇଗଲା ।

ଥରେ କିନ୍ତୁ ନିୟମ ସାଙ୍ଗରେ ରଫା କଲେ ଆଉ ସୀମା ଭିତରେ ରହିହୁଏ ନାହିଁ । କବିତା ଛାଡ଼ି ଗୀତ ଲେଖିବା ପରେ ତାକୁ ଅନୁରୋଧ ଆସିଲା ସିନେମାରେ ସଂଳାପ ଲେଖିବା ପାଇଁ । ସେ ମନା କରିବାକୁ ଚାହୁଁଥିଲା, କିନ୍ତୁ ଚିତ୍ରର ପ୍ରଯୋଜକ କହିଲେ ଯେ ଏ କାମର ଦାୟିତ୍ୱ ନେଇଥିବା ଭଦ୍ରବ୍ୟକ୍ତି ବିନା ସୂଚନା ଦେଇ କୁଆଡ଼େ ଚାଲିଗଲେ ଏବଂ ଦେବନାଥ ଯଦି ସାହାଯ୍ୟ ନ କରେ ସେ ବହୁତ କ୍ଷତିରେ ପଡ଼ିବେ । ସେ ଏଥିପାଇଁ ଭଲ ଟଙ୍କା ଦେବାକୁ ମଧ୍ୟ ରାଜି ହେଲେ ଏବଂ ନିଜର ଅନିଚ୍ଛା ସତ୍ତ୍ୱେ ଦେବନାଥ ତାଙ୍କ କଥାରେ ହଁ ଭରିଲା ଏବଂ ଟଙ୍କା ପାଇ ଖୁସି ହେଲା ।

କଥା ଏତିକିରେ ଛିଣ୍ଡିଲା ନାହିଁ । ତାକୁ ପ୍ରଯୋଜକଙ୍କ ପାଖରୁ ଅନୁରୋଧ ଆସିଲା ଅଶ୍ଳୀଳ ଗୀତ ଲେଖିବା ପାଇଁ । ଅବଶ୍ୟ ସେ ତାକୁ ସିଧାସଳଖ ଅଶ୍ଳୀଳ କଥା କହି ନଥିଲେ, କହିଥିଲେ ଯେ ଗୀତ ଦ୍ୱୈର୍ଥକ ହେବ, ଯେପରିକି ଶିକ୍ଷିତ ଲୋକମାନଙ୍କ ସହିତ ସାଧାରଣ ଲୋକ ମଧ୍ୟ ତା'ର ମଜା ପାଇପାରିବେ । ସେ କିନ୍ତୁ ତାକୁ ଯେଉଁ ଉଦାହରଣ ଦେଲେ, ସେ ଗୀତଗୁଡ଼ିକ ଉପରକୁ ଠିକ୍‌ଠାକ୍ ଜଣା ଯାଉଥିଲେ ମଧ୍ୟ ତା ଭିତରୁ ବାହାରି ପାରୁଥିଲା ପ୍ରତିଟି ଧାଡ଼ିରେ ନାରୀର ଅଙ୍ଗପ୍ରତ୍ୟଙ୍ଗର ଅଶାଳୀନ ବର୍ଣ୍ଣନା ଓ ପ୍ରତିଟି କ୍ରିୟାପଦରେ ଯୌନ ସଂପର୍କର କୁତ୍ସିତ ସୂଚନା । ଦେବନାଥ ପ୍ରଥମେ ମନା କଲା ଏବଂ ଅନେକ କୁହାବୋଲା ପରେ ଯେଉଁ ଗୀତଟି ଲେଖିଦେଲା ସେଥିରେ ଦେହଜ ପ୍ରେମର କିଛି ରଙ୍ଗରସ ଥିଲା, କିନ୍ତୁ କୌଣସି ଅଶ୍ଳୀଳତା ନଥିଲା । କିନ୍ତୁ ପ୍ରଯୋଜକ ତା ଲେଖାକୁ କାଟଛାଟ କରି ଫିଲ୍ମରେ ଯେଉଁ ଗୀତଟି ଦର୍ଶକଙ୍କୁ ଦେଲେ ସେଇଟି ଥିଲା ଅଶ୍ଳୀଳତାର ଚୂଡ଼ାନ୍ତ । ଗୀତଟି ଅତି ସଫଳ ହେଲା ଏବଂ କ୍ୟାସେଟ୍‌ରେ ତା ନାଁ ସହିତ ଏଇଟି ବିକ୍ରି ହେବା ପରେ ଦେବନାଥର ଅଶ୍ଳୀଳ ଗୀତ ଲେଖିବାରେ ଆଉ କୌଣସି ସଂକୋଚ ରହିଲା ନାହିଁ ।

ତା'ର ସିନେମାର ଦିନମାନଙ୍କରେ ଗୋଟିଏ ସ୍ମରଣୀୟ ଘଟଣା ଥିଲା ସେ ଗୀତ ଲେଖିଥିବା ଫିଲ୍ମର ଶୁଟିଙ୍ଗ୍‌ବେଳେ ପ୍ରଥମ ଥର ପାଇଁ କଲିକତା ଯିବା । ଅନେକ ଦିନରୁ ତା'ର ଇଚ୍ଛା ଥିଲା କଲିକତା ଯାଇ ସେଠାରେ କିଛି କବି ଲେଖକଙ୍କୁ ଭେଟିବା ଓ ଗୁରୁଦେବଙ୍କ ଘର ଦେଖିବା । ପ୍ରଯୋଜକ କିନ୍ତୁ ତାକୁ ସାଙ୍ଗରେ ନେବାର ନାଁ ନେଲେ ନାହିଁ । ଶେଷକୁ ତା'ର ଟିଟିଆଇ ବନ୍ଧୁ ସହିତ ବିନା ଟିକେଟରେ କଲିକତାରେ ପହଞ୍ଚିଲା ଓ ଆଉଜଣେ ସାଙ୍ଗ ସହିତ ଗୋଟିଏ ଶସ୍ତା ହୋଟେଲରେ ରହିଲା । ପରଦିନ ଟାଲିଗଂଜରେ

ପହଞ୍ଚି ଦେଖିଲା ସେ ୟୁନିଟରେ ସମସ୍ତେ ନିଜ ନିଜ କାମରେ ବ୍ୟସ୍ତ ଅଛନ୍ତି, ତା ଆଡ଼କୁ ଅନାଇବାକୁ କାହାରି ସମୟ ନାହିଁ । ସାଙ୍ଗକୁ ନେଇ ସେ ଷ୍ଟୁଡ଼ିଓ ବାହାରକୁ ଆସି ସେଠାରେ ବୁଲୁଥିବା ଜଣେ ଯୁବକକୁ ରାସ୍ତାଘାଟ କଥା ପଚାରିଲା । ଯୁବକଟି ଜୋଡ଼ାସାଁକୋ କ'ଣ ବା କେଉଁଠି ଜାଣି ନଥିବା ଭଳି ଜଣାଗଲା, ତେବେ ଜଣାଇଲା ଯେ ତା'ର ନାଁ ସୋମେନ ଓ ସେ ଗୋଟିଏ ଲିଟିଲ ମ୍ୟାଗାଜିନ ଚଳାଏ । ସେ ଏମାନଙ୍କୁ କଲିକତା ବୁଲାଇ ଦେଖାଇବ ବୋଲି କହିଲା । ତା'ର ନାଁ ଚେହେରା ପୋଷାକ ଓ ସକାଳ ବେଳା କିଛି ପିଇ ଆସିଥିବା ଇତ୍ୟାଦିରୁ ଯୁବକଟି କବି ହୋଇଥିବାରେ ଆଉ କୌଣସି ସନ୍ଦେହ ନଥିଲା ଏବଂ ସେମାନେ ଦୁହେଁ ଦିନକ ପାଇଁ ତା'ର ସାଙ୍ଗ ହେବାକୁ ଠିକ୍ କଲେ । ସୋମେନ ସେମାନଙ୍କୁ ଦି'ଥର ବସ୍ ବଦଳାଇ ଯେଉଁ ଜାଗାକୁ ନେଇଗଲା, ସେଇଟି ଥିଲା ଖଲାସିଟୋଲା । ଅଳିଆ ଆବର୍ଜନା ସତ୍ତ୍ୱେ ରେଡ଼ିଓ ଷ୍ଟେସନ ପାଖ ମଦଦୋକାନ ତୁଳନାରେ ଏଇ ଶୁଣ୍ଡିଖାନା ଥିଲା ପରିଷ୍କୃତ ଓ ସମୃଦ୍ଧ । ଏବଂ ପାନୀୟଟି ମଧ୍ୟ ଥିଲା କମ୍ ବିସ୍ୱାଦ ।

ଦ୍ୱିତୀୟ ଗ୍ଲାସ୍ ପରେ ଦେବନାଥ ଠାକୁର ଘର ଦେଖି ନ ପାରିଥିବାର ଦୁଃଖକୁ ଭୁଲିଗଲା ଏବଂ ଚାରିପାଖର ଗରାଖମାନଙ୍କୁ ଦେଖିବାରେ ମନଦେଲା । ଅଧିକାଂଶ ଶ୍ରମିକ ଶ୍ରେଣୀର ଲୋକ ଥିଲେ, ତେବେ ଦୂରରେ ଗୋଟିଏ ଟେବୁଲରେ ବସିଥିଲେ ଚାରିଜଣ ଧୋବଧୋଉଲିଆ ଯୁବକ । ସେ ଶୁଣିଥିଲା ଯେ ଏଠାକୁ କିଛି କବି ମଧ୍ୟ ମଝିରେ ମଝିରେ ଆସିଥା'ନ୍ତି । ଏଇମାନେ କଣ ସେଇ ରାତ ବାରୋଟାର ପରେ କଲକାତା ଶାସନ କରେ ଚାରଜନ ଯୁବକ ? ସୋମେନକୁ ପଚାରି ଲାଭ ନାହିଁ, କାରଣ ଏତେବେଳକୁ ସେ ନିଶା ଜଡ଼ିତ ତୁରୀୟ ଅବସ୍ଥାରେ ଥିଲା ।

ଉପରବେଳା ସୋମେନ ବାଧ୍ୟକରି ଦି'ଜଣଙ୍କୁ କାଳୀ ମନ୍ଦିର ନେଇଗଲା । ସେଠାରେ ପହଞ୍ଚି ଜଣାଗଲା ଯେ ଚାରିଦଉଡ଼ିକଟା ଏଇ ଯୁବକର ପ୍ରକୃତ ଆସ୍ଥାନ ଥିଲା ମନ୍ଦିର ସାମନା ଗଛମୂଳର ଚଉତରା, କାରଣ ସେଠାରେ ସମସ୍ତେ ତାକୁ ଜାଣୁଥିଲେ ଏବଂ ସେଠାରେ ପହଞ୍ଚିବା ପରେ ସୋମେନ ଆଉ ତାଙ୍କୁ ଧରାଛୁଆଁ ଦେଲା ନାହିଁ । ମନ୍ଦିର ସେତେବେଳେ ବନ୍ଦ ଥିଲା । ତେଣୁ ଆଉ ସୋମେନ ପଛରେ ନ ପଡ଼ି ଦୁହେଁ ରାସ୍ତା ଧରିଲେ ସେ ଲେଖିଦେଇଥିବା ହାଡ଼କଟା ଗଳିର ଠିକଣାକୁ । ଏଇଟି ଦେବନାଥ ପାଇଁ ବେଶ୍ୟାଳୟ ସହିତ ପ୍ରଥମ ପରିଚୟ ଥିଲା ଏବଂ ଆଗରୁ ଭାବିଥିବା ଭଳି ଅପ୍ରୀତିକର ନଥିଲା । ଦୁହେଁ ଡେରି ରାତିରେ ହୋଟେଲକୁ ଫେରିଲେ ଏବଂ ପରଦିନ ଘରକୁ ଫେରିବାର ଟ୍ରେନ୍ ଧରିଲେ ।

ଦେବନାଥର ଯେଉଁ ଶଙ୍କା ଥିଲା ଯେ ସେ ଅସୁସ୍ଥ ହୋଇଯିବ, ଘରେ ପହଞ୍ଚିବାର କିଛିଦିନ ଭିତରେ ସେ ଭୟ ଭାଙ୍ଗିଗଲା । ସେ ବରଂ ମନେ ମନେ କଳନା କଲା କିପରି

ପୁଣି କଲିକତା ଯିବ, ସିନେମାବାଲା ଯା'ନ୍ତୁ ନଯା'ନ୍ତୁ । ଏଥରକ ସେ ନିଶ୍ଚୟ ଜୋଡ଼ାସାଁକୋ ଯିବ । ହାଡ଼କଟା ଲେନର ଝିଅଟିର ନାଁ ସେ ଏତେଦିନ ଭୁଲି ଯାଇଥିଲା । ଆଜି ହଠାତ ମନେ ପଡ଼ିଗଲା, ତିଲୋତ୍ତମା । ରେଡ଼ିଓ ଷ୍ଟେସନର ଝିଅଟିର ନାଁ ଥିଲା କୁସୁମ । ତା'ର ନିଜର ସ୍ତ୍ରୀର ନାଁ ଥିଲା ବାସନ୍ତୀ । ତା'ର ପ୍ରେୟସୀର ନାଁ ଥିଲା କବିତା ।

ତା'ର ଜୀବନର ଏପରି ସବୁ ଯେଉଁ ଅଦଳବଦଳ ହେଉଥିଲା, ଅତି ମୃତ୍ୟୁ ଓ ମନ୍ଥର ଥିଲା, କିନ୍ତୁ ଥିଲା ନିଶ୍ଚିତ ଓ ଅନିବାର୍ଯ୍ୟ । ତା'ର ଅଫିସ ଯିବାଆସିବା ଅତି ଅନିୟମିତ ହୋଇଗଲା । ଘରକୁ ଫେରିବାର ଆଉ କୌଣସି ନିର୍ଦ୍ଦିଷ୍ଟ ସମୟ ରହିଲା ନାହିଁ । ଖାଇବା ପିଇବାର ବର୍ତ୍ତମାନ କୌଣସି ଠିକ୍ ଠିକଣା ନଥିଲା । ଘରଖର୍ଚ୍ଚ ପାଇଁ ସେ ଦେଉଥିବା ଟଙ୍କା ଅବ୍ୟବସ୍ଥିତ ହୋଇଗଲା ଓ ଏଥିପାଇଁ ଅଶାନ୍ତି ବଢ଼ିଚାଲିଲା । ଶେଷକୁ ଦିନେ ବାସନ୍ତୀ ତା'ର ଚଉଦ ବର୍ଷର ପୁଅ ଓ ନିଜର ଜିନିଷପତ୍ରକୁ ନେଇ ବାପଘରକୁ ଚାଲିଗଲା । ଏକ ଅବିରତ ମାଦକତାର ମୋହ ଭିତରେ ଥାଇ ନିଜ ଜୀବନ ଏପରି ଭାବେ ବିଧ୍ୱସ୍ତ ହେଉଥିବା କଥା ଦେବନାଥ ବୁଝି ପାରିଲା ନାହିଁ ।

ପରେ ପରେ କ୍ଷିପ୍ରଗତିରେ ଅନେକ କିଛି ଘଟିଗଲା । ଅଫିସରୁ ତାକୁ କୈଫିୟତ ମଗାଗଲା, ଯାହାର ସେ ଉତ୍ତର ଦେଲା ନାହିଁ । କିଛିମାସ ପରେ ତାକୁ ଚାକିରିରୁ ସସ୍‌ପେଣ୍ଡ କରି ଦିଆଗଲା । ଏଇଟି ତାକୁ ଗୋଟିଏ ବରଦାନ ଭଳି ମନେ ହେଲା, କାରଣ ଏହାପରେ ତାକୁ ଆଉ ଅଫିସ ଯିବାର ତାଗିଦା ନଥିଲା, କିନ୍ତୁ ଘରେ ଅଥବା ଭାଟିରେ ବସି ତାକୁ ତା'ର ଅଧା ଦରମା ମିଳୁଥିଲା । କବିତା ତାକୁ ଅନେକଦିନରୁ ଛାଡ଼ି ଚାଲିଯାଇଥିଲା, ଏବେ ସେ ଦେଖିଲା ଗୀତ ବି ତାକୁ ଛାଡ଼ିବା ଉପରେ । ଚାରିଧାଡ଼ି ଗୀତ ଲେଖିବା ପାଇଁ ବର୍ତ୍ତମାନ ତାକୁ ଅନେକ କୁସ୍ତି କସରତ କରିବାକୁ ପଡୁଥିଲା, ଏବଂ ଶେଷକୁ ସେ ଯାହା ଲେଖି ଦେଉଥିଲା, ତା ସବୁବେଳେ ଗ୍ରାହକଙ୍କର ମନଃପୂତ ହେଉ ନଥିଲା । ସେ ଦିନକୁ ଦିନ ରୁକ୍ଷ ଓ ବଦରାଗୀ ପ୍ରକୃତିର ହୋଇଗଲା ଓ ବିନା କାରଣରେ ଲୋକଙ୍କ ସହିତ କଳି ତକରାଳ କରିବାକୁ ଆରମ୍ଭ କଲା ।

ଏଇଭଳି ଦିନେ ତା'ର ଝଗଡ଼ା ହୋଇଗଲା ରେଡ଼ିଓ ଷ୍ଟେସନରେ ବିଲ୍ ତିଆରି କରୁଥିବା କିରାଣୀ ସାଙ୍ଗରେ । ଗୀତ ଲେଖି ଯାହା ପ୍ରାପ୍ୟ ମିଳୁଥିଲା, ତାକୁ ପାଇବା ପାଇଁ କେବଳ ଯେ ଅନେକ ଦିନ ଲାଗୁଥିଲା ତା ନୁହେଁ, ସେଥିପାଇଁ ବିଭିନ୍ନ ବାବୁଙ୍କୁ ଖୋସାମତ କରିବାକୁ ପଡୁଥିଲା । ଆଗରୁ ସେ ଡେରି ହେଲେ ବିବ୍ରତ ହେଉ ନଥିଲା, କିନ୍ତୁ ଆଜିକାଲି ଫର୍ମ ଭରି ଜମା ଦେବା ପରେ ସେ ଟଙ୍କାର ତାଗିଦ କରିବାରେ ଲାଗି ଯାଉଥିଲା । ସେଦିନ କିରାଣୀ ଅଡ଼ି ବସିଲା ସେ ରେଭେନିଉ ଟିକଟ ଆଣି ତା ଉପରେ ଦସ୍ତଖତ ନକଲେ ସେ ତାକୁ ଟଙ୍କା ଦେବ ନାହିଁ । ଆଗରୁ ଏମିତି ହେଉଥିଲା ଯେ ସେମାନେ ସମସ୍ତେ ମିଶି କିରାଣୀ ପାଖରେ ବେଶ୍ କିଛି ଟିକଟ ରଖି ଦେଉଥିଲେ

ଯେପରିକି ପ୍ରତିଥର ଆଉ ଟିକଟ ଖୋଜିବାକୁ ପଡ଼ିବ ନାହିଁ । ସେଦିନ କିନ୍ତୁ କିରାଣୀ ତାକୁ ଟିକଟ ମାଗିଲା, ଦେବନାଥ ତାକୁ ପୂର୍ବରୁ ଦେଇଥିବା ଟିକଟର ହିସାବ ମାଗିଲା ଏବଂ ପାଟିତୁଣ୍ଡ ବଢ଼ିବାରେ ଲାଗିଲା । କଥା ଯେତେବେଳେ ମାରପିଟ ସ୍ତରରେ ପହଞ୍ଚିଲା, କୁସୁମ ଆସି କିରାଣୀର ଟେବୁଲ ଉପରେ ଗୋଟିଏ ଟିକଟ ରଖିଦେଲା । କୃତଜ୍ଞ ହେବା ବଦଳରେ ଦେବନାଥ ଓଲଟା କୁସୁମ ଉପରେ ପାଟି କଲା । ତେବେ ଝଗଡ଼ା ଏତିକିରେ ତୁଟିଲା ଓ କିରାଣୀ ତାକୁ ତା'ର ପ୍ରାପ୍ୟ ଦେଇଦେଲା ।

ଏ ଘଟଣାର କିଛିଦିନ ପରେ ଦେବନାଥ କୁସୁମକୁ ଖୋଜି ତା ବସିଥିବା ଜାଗାକୁ ଗଲା । ସେଦିନର ବ୍ୟବହାର ପାଇଁ କ୍ଷମା ମାଗି ସାହାଯ୍ୟ କରିଥିବାରୁ ତାକୁ ଧନ୍ୟବାଦ ଜଣାଇଲା । ସେ ଯେତେବେଳେ କୁସୁମକୁ ଚା' ପିଇବା ପାଇଁ ଡାକିଲା, ଜାଣିଥିଲା ଯେ ସେ ମନା କରିଦେବ । କିନ୍ତୁ କୁସୁମ ସାଙ୍ଗେ ସାଙ୍ଗେ ହଁ ଭରି ତା ସହିତ ଚା'ଦୋକାନକୁ ଆସିଲା ଓ ବେଞ୍ଚରେ ତା ପାଖେ ବସି ଚା' ପିଇଲା । ଦେବନାଥ ଭାବିନେଲା ଯେ ଝିଅଟି ତା'ର କବିତା ବା ଗୀତକୁ ପସନ୍ଦ କରେ, ଏବଂ ସେଥିପାଇଁ ତାକୁ ସାହାଯ୍ୟ କରିବାକୁ ଆଗେଇ ଆସିଥିଲା ସେଦିନ । ସେ ସାଙ୍ଗରେ ନିଜର ଯେଉଁ କବିତା ବହି ଆଣିଥିଲା, ସେଇଟି କୁସୁମକୁ ଦେଇ ପଚାରିଲା, ତମେ କ'ଣ ମୋର କିଛି କବିତା ପଢ଼ିଛ ? କୁସୁମ ମୁଣ୍ଡ ହଲାଇ ମନା କଲା । ତାହେଲେ ମୋର ଗୀତ ? ଏ କଥାର ବି ଉତ୍ତର ଥିଲା 'ନା' । ଏଥରକ କୁସୁମ ବହିଟି ଖୋଲି ଟିକିଏ ପଢ଼ିଲା, ପୃଷ୍ଠା ଓଲଟାଇ ଆଉ ଗୋଟିଏ କବିତା ଉପରେ ଆଖି ବୁଲାଇଲା, ବହିଟିକୁ ବନ୍ଦକରି ରଖିଦେଇ କହିଲା, ଏଗୁଡ଼ାକ ପଢ଼ିଲେ ମତେ କାନ୍ଦ ମାଡୁଛି ।

ଏଭଳି ପ୍ରତିକ୍ରିୟା କେହି ପ୍ରକାଶ କରି ନଥିଲେ ତା'ର କବିତା ପଢ଼ି, କାରଣ କାନ୍ଦ ମାଡ଼ିବାର କୌଣସି କଥା ନଥିଲା କବିତାରେ । ଯାହାହେଉ, ଦେବନାଥକୁ ଭଲ ଲାଗିଲା ଏଇ ଝିଅଟି ସହିତ ଆଳାପ କରି । ପ୍ରୌଢ଼ ବୟସରେ ତା'ର ଭେଟ ହେବାର ଥିଲା ଏଇ ଅଳ୍ପ ବୟସର ଝିଅଟି ସହିତ, ଏ ଏକ ବିଡ଼ମ୍ବନା । ଅନେକ ବର୍ଷ ଆଗରୁ ତା ସହିତ ଦେଖା ହୋଇଥାନ୍ତା କି ! ଏପରି କଥାସବୁ ଭାବିଲା ଦେବନାଥ, କିନ୍ତୁ ଝିଅଟି ସହିତ ଆଉ ଯୋଗାଯୋଗ କରିବା ବା ସଂପର୍କ ବଢ଼ାଇବା ପାଇଁ ଚେଷ୍ଟା କଲା ନାହିଁ । ତେବେ ଭାବି ରଖିଲା ଯେ ତା ପାଇଁ କେବଳ ଗୋଟିଏ କବିତା ଲେଖିବ, ପତ୍ରିକାର ପ୍ରକାଶ ପାଇଁ ନୁହେଁ, ଗାଇବା ପାଇଁ ନୁହେଁ, କେବଳ ତା'ରି ପଢ଼ିବା ପାଇଁ ।

ଏକଥା ବି ହେଲା ନାହିଁ । ତାକୁ ଶେଷରେ ଇସପାତ ବିଷୟରେ କବିତା ଲେଖିବାକୁ ପଡ଼ିଲା । ସେତେବେଳେ ଇସପାତ କାରଖାନା ଦାବି ନେଇ ବାତାବରଣ ସରଗରମ ଥିଲା । କେନ୍ଦ୍ରରେ ଭିନ୍ନ ଦଳର ସରକାର ଥିଲା ଏବଂ ତା ବିରୁଦ୍ଧରେ ପ୍ରତିବାଦ ଓ ବିକ୍ଷୋଭରେ ସଭା ଶୋଭାଯାତ୍ରା ଲାଗି ରହିଲା କିଛିଦିନ ଧରି । ତା'ର କିଛି ସାଙ୍ଗ

ମହା ଉତ୍ସାହରେ ଏହି ଆନ୍ଦୋଳନରେ ସାମିଲ ହୋଇଗଲେ ଏବଂ ତାକୁ ଜୋର କଲେ ଗୋଟିଏ ଓଜସ୍ୱୀ କବିତା ବା ଗୀତ ଲେଖିଦେବା ପାଇଁ । ଯେତେ ଚେଷ୍ଟା କଲେ ବି ଯେତେବେଳେ ତା କଲମରୁ ଧାଡ଼ିଏ ବି ବାହାରିଲା ନାହିଁ, ସେମାନେ ତାକୁ ନେଇ ଜଣେ ଏକା ରହୁଥିବା ବନ୍ଧୁଙ୍କ ଘରେ ବନ୍ଦ କରିଦେଲେ, କହିଲେ, କବିତା ନଦେଲେ ମଦ ବନ୍ଦ । ଏଇଭଳି ଭାବରେ ଜନ୍ମ ନେଇଥିଲା ତା'ର ସବୁଠାରୁ ଜଣାଶୁଣା କବିତା ।

କାଳକ୍ରମେ ରାଜ୍ୟରେ ଯେତେବେଳେ ଇସପାତ କାରଖାନାମାନ ତିଆରି ଆରମ୍ଭ ହୋଇଗଲା, ଦେବନାଥ ଭାବିଲା ଯେ ତା'ର ଇସପାତ କବିତାର ଆଉ କୌଣସି ମୂଲ୍ୟ ରହିବ ନାହିଁ । କିନ୍ତୁ ଏତେ ନାଟକୀୟତାରେ ତିଆରି ହୋଇଥିବା ଜିନିଷର କ'ଣ ଏତେ ସହଜରେ ମୃତ୍ୟୁ ହୁଏ ? ସେ ଯଦିଓ ଆହୁରି ଅନେକ ଭଲ କବିତା ଲେଖିଥିଲା, ଲୋକେ ତାକୁ ବର୍ତ୍ତମାନ ଜାଣୁଥିଲେ ଏଇ ସ୍ଲୋଗାନ ମୁଖର କେତୋଟି ଧାଡ଼ି ପାଇଁ । ଯଦି କବିତା ସଂକଳନ ପ୍ରକାଶ ପାଉଥିଲା, ସେଥିରେ ସ୍ଥାନ ପାଉଥିଲା ଏଇ ଇସପାତ କବିତାଟି ହିଁ । ଭାଗ୍ୟକୁ ତାକୁ କେହି ଇସପାତୀ କବିର ପଦବୀ ଦେଇ ନଥିଲେ ଏପର୍ଯ୍ୟନ୍ତ । ଦିନେ ଅଫିସର ବଡ଼ବାବୁ ତାକୁ ଡାକି କହିଲେ, ତମ ଚାକିରି ନେଇ ଯୋଉ ତଦନ୍ତ ହେଉଥିଲା, ସରି ଆସିଲାଣି । ତମେ ତ ତାଙ୍କୁ ଜବାବ ଲେଖି ଦେଲନାହିଁ, ଏଥର ତମର ଚାକିରି ଯିବ । ତମର ଯେତେବର୍ଷ ଚାକିରି ହେଲାଣି ସେଥିପାଇଁ ପେନ୍‌ସନ ପାଇବ । ଚାକିରିରୁ ତଡ଼ା କାହିଁକି ଖାଇବ, ବରଂ ମୋ ମତରେ ଇସ୍ତଫା ଦେଇ ପେନ୍‌ସନ ନେଇ ଚାଲିଯାଅ । ଏଇ ବଡ଼ବାବୁଙ୍କ ପାଖରେ ଦେବନାଥ ଅନେକ ଦିନ କାମ କରିଥିଲା ଓ ମନ ଦେଇ କାମ କରିଥିଲା । ସେ ତାକୁ ଭଲ ପାଉଥିଲେ ଏବଂ ଅନେକ ଥର ସାହାଯ୍ୟ ବି କରିଥିଲେ । ତେବେ ସେ ନିଜର ନୂଆ ଜୀବନ ଜୀଇଁବା ପରେ ତାଙ୍କ ସହିତ ସଂପର୍କ କାଟି ଦେଇଥିଲା । ଆଜି ତାଙ୍କ ପାଖରୁ ଏ ଉପଦେଶ ଶୁଣି ତା ମନ କୃତଜ୍ଞତାରେ ଭରିଗଲା । ସେ ଆଉ କିଛି ନ ଭାବି ନ ଚିନ୍ତି ତାଙ୍କ ପାଖରୁ ଗୋଟିଏ ସାଦା କାଗଜ ମାଗି ସେଥିରେ ସେ କହିଥିବା ମୁତାବକ ଦରଖାସ୍ତ ଲେଖିଦେଲା । ଏବଂ ସ୍ତ୍ରୀ ଘର ଛାଡ଼ି ଚାଲିଯିବା ପରେ ପାରିବାରିକ ବନ୍ଧନରୁ ବାହାରି ଆସିଥିବା ଭଳି ଚାକିରିର ଶୃଙ୍ଖଳରୁ ମୁକ୍ତ ହୋଇଗଲା ।

ଏତିକିବେଳେ କେହି କେହି ସାକ୍ଷାତ୍‌କାର ନେବାବେଳେ ତାକୁ ପ୍ରଶ୍ନ କରୁଥିଲେ, ଆପଣ କ'ଣ କବିତା ଲେଖିବା ପାଇଁ ଚାକିରି ଛାଡ଼ିଦେଲେ ? ଏଇଟି ଔପଚାରିକ ପ୍ରଶ୍ନ ଥିଲା କାରଣ ସମସ୍ତେ ଜାଣିଥିଲେ ଯେ ସେ କାମଦାମ କରୁ ନଥିବାରୁ ଚାକିରିରୁ ତଡ଼ା ଖାଇଛି । ଯେପରି ସମସ୍ତେ ଜାଣିଥିଲେ ଯେ କବି ଭାବରେ ସେ ମୃତ । ତା'ର ସାକ୍ଷାତ୍‌କାରରେ କୌଣସି ସାହିତ୍ୟିକ ମୂଲ୍ୟ ନଥିଲା, ଥିଲା ହୁଏତ ଏକ ଆମୋଦଦାୟକ ବିବରଣୀ ପ୍ରସାର କରିବାର ଆଗ୍ରହ । ଯେପରି ଗାଁରେ ଜିପ୍ ନେଇ ପହଞ୍ଚି ଯାଇଥିଲେ କୋଉ

ଟିଭି ଚ୍ୟାନେଲର ଦଳବଳ । ଅବଶ୍ୟ ଏଥିରେ ଗୋଟିଏ ଭଲକଥା ଥିଲା ଯେ ସେମାନେ ସାଙ୍ଗରେ ଆଣିଥିଲେ ଜଣେ ଯୁବକ ସାହିତ୍ୟ ପ୍ରାଧ୍ୟାପକଙ୍କୁ ତାକୁ ଇଣ୍ଟରଭିଉ କରିବା ପାଇଁ । ଗାଁରେ ଭିଡ଼ ଜମି ଯାଇଥିଲା ଏମାନେ ଗାଡ଼ିରୁ ଓହ୍ଲାଇବା କ୍ଷଣି । ଏବଂ ହୁଏତ ଦେବନାଥର ସମ୍ମାନ ବି କିଛି ବଢ଼ିଯାଇଥିଲା ଗାଁଲୋକଙ୍କ ପାଖରେ । ପ୍ରୋଗ୍ରାମର ପ୍ରସ୍ତୁତକର୍ତ୍ତା, କ୍ୟାମେରାମ୍ୟାନ, ଶବ୍ଦ ଉତ୍ତୋଳନକାରୀ ମିଶି ତା'ର ଘରଟିକୁ ଅଧିକାର କରିନେଲେ । ଦେବନାଥ ଯେତେବେଳେ କ୍ୟାମେରା ସାମନା କରିବା ପୂର୍ବରୁ କିଛି ଭଲ ଲୁଗାପଟା ପିନ୍ଧିବାକୁ ଚାହିଁଲା, ସେମାନେ ମନା କଲେ ; କହିଲେ, ସେମାନେ ଫିଲ୍ମଟି କରିବେ ବାସ୍ତବ ଓ ସତ୍ୟନିଷ୍ଠ, ଯାହା ଯେମିତି ।

ଦେବନାଥର କୌଣସି ଆଗ୍ରହ ନଥିଲା ଏଇ ଫିଲ୍ମ ପାଇଁ । ତେବେ କିଛିଦିନ ପୂର୍ବରୁ ଚ୍ୟାନେଲର ଲୋକ ଆସି ତାକୁ ତିନି ବୋତଲ ଭାରତ-ତିଆରି ବିଦେଶୀ ମଦ ଦେଇ ମନାଇ ଯାଇଥିଲେ । ଯୁବକ ପ୍ରାଧ୍ୟାପକ ତାକୁ ବିଭିନ୍ନ ପ୍ରକାରର ସାହିତ୍ୟିକ ପ୍ରଶ୍ନ ପଚାରିଲା, ଯଥା : ସେ କେଉଁ ସୌନ୍ଦର୍ଯ୍ୟ ତତ୍ତ୍ୱରେ ବିଶ୍ୱାସ କରେ ; ଗୋଟିଏ କବିତାରେ ସେ ଯେଉଁ ଲେଖିଥିଲା ପ୍ରେମର ତିନୋଟିଯାକ ଶପଥ, ସେ ତିନିଟି କ'ଣ ; ଗୋଟିଏ କବିତାରେ ନିର୍ଦ୍ଦିଷ୍ଟ କବିତାରୁ ଯଦି ଶେଷଧାଡ଼ିଟି କାଟି ଦିଆଯାଏ, ତେବେ ସେଇଟି କ'ଣ ଆହୁରି ସୁନ୍ଦର ହୋଇଯିବ ନାହିଁ ; ଇତ୍ୟାଦି ଇତ୍ୟାଦି । ଦେବନାଥ ପାଖରେ ଏ ସବୁର କୌଣସି ଉତ୍ତର ନଥିଲା, ତେବେ ସେମାନେ ତା'ର ଥତମତ ହୋଇ ଏଣୁତେଣୁ କଥା କହିବାର ଦୀର୍ଘ ଛବି ଉଠାଇଲେ । ସେମାନେ ଯେତେବେଳେ ତାକୁ ନେଇ ମଦ ଦୋକାନକୁ ଗଲେ, ଦେବନାଥ ବୁଝିଲା ଯେ ସେମାନଙ୍କର ଅସଲ ଲକ୍ଷ୍ୟ ଥିଲା ସେଠାରେ ତା'ର ଅପ୍ରସ୍ତୁତ ଅବସ୍ଥାର ଚିତ୍ର ତୋଳିବା । ପ୍ରଯୋଜକ ତାକୁ କହିଲା ସେ ବେଞ୍ଚ ଉପରେ ବସି ପିଉଥାଉ ଓ ପ୍ରାଧ୍ୟାପକ ସାଙ୍ଗରେ ସାଧାରଣ ଭାବରେ କଥାବାର୍ତ୍ତା କରୁଥାଉ ; ଭୁଲିଯାଉ ଯେ କ୍ୟାମେରା ତା ଆଡ଼କୁ ଅନାଇଛି ।

ଦେଢ଼ ଗ୍ଲାସ୍ ପିଇବା ପରେ ଦେବନାଥ ସତକୁ ସତ ଭୁଲିଗଲା ଯେ ସେ ଏକ ଅନୁପ୍ରବେଶକାରୀ କ୍ୟାମେରାର ଶରବ୍ୟ । ପ୍ରାଧ୍ୟାପକଟି ଧୀର ସ୍ୱଭାବର ଓ ସାହିତ୍ୟିକ ରୁଚିସଂପନ୍ନ ଥିଲା ଓ ଦେବନାଥର ସବୁ କବିତା ପଢ଼ିଥିଲା । ସେ ଚାହୁଁଥିଲା ଦେବନାଥ ପୁଣି ଫେରିଯାଉ ତା'ର ସକ୍ରିୟ ସୃଜନଶୀଳ ସମୟକୁ ଓ ଆହୁରି କବିତା ଲେଖୁ । ଦେବନାଥର କିଛି ପୁରୁଣା କବିତା ମନରୁ ଆବୃତ୍ତି କରି ସେ ସେଥିରୁ ତା'ର ଅନେକ ଗଭୀର ଅର୍ଥ ବାହାର କଲା । ଏବଂ କହିଲା ଯେ ସେ ଏ ବୃତ୍ତଚିତ୍ରର ନାଁ ଦେବାକୁ କହିଛି, ଦୀର୍ଘଜୀବୀ ହୁଅ କବି । ଏବଂ ଏଥିରେ ସେ କାମନା କରିବ ଯେ ଦେବନାଥ ଆହୁରି ଅନେକ ବର୍ଷ ବଞ୍ଚି ରହି ସରସ୍ୱତୀଙ୍କର ସେବା କରନ୍ତୁ ।

ଏହି କାର୍ଯ୍ୟକ୍ରମରେ ଦେବନାଥର ଆଉ ତିଳେ ବି ଆଗ୍ରହ ନଥିଲା ଏବଂ ସେ

ପ୍ରାଧ୍ୟାପକ ସହିତ କଥାବାର୍ତ୍ତା ବନ୍ଦ କରିଦେଇ ଚୁପ୍‌ଚାପ୍ ବସି ପିଇବାରେ ଲାଗିଲା । ପ୍ରଯୋଜକ ଆସି କହିଲା, ବର୍ତ୍ତମାନ ସେମାନେ ଦେବନାଥ ବେଞ୍ଚ ଉପରୁ ତଳେ ପଡ଼ିଯାଇଥିବାର ଗୋଟିଏ ଦୃଶ୍ୟର ଚିତ୍ର ଉଠାଇବେ । ଏକଥା ଶୁଣି ଦେବନାଥ ବିରକ୍ତ ହୋଇ କହିଲା ଯେ ବର୍ତ୍ତମାନ ସେ ଆଉ ତାଙ୍କ ସହିତ ସହଯୋଗ କରିବ ନାହିଁ । ପ୍ରଯୋଜକ ତା ସହିତ ଚୁକ୍ତିକଥା କହିଲା, ଦେବନାଥ ଆହୁରି ଉଚ୍ଚସ୍ୱରରେ ତା'ର ଜବାବ ଦେଲା, ପାଖରେ ଆଉ କିଛି ଲୋକ ଜମା ହେଲେ । ପ୍ରଯୋଜକ ତାଙ୍କୁ ଚିଡ଼ାଇବା ଭଳି ଆହୁରି କଥା କହିଲା । ଏଇସବୁ ଭିତରେ କ୍ୟାମେରା ଚାଲୁଥିଲା ଏବଂ ଦେବନାଥ ଜାଣିଲା ଯେ ତା'ର ଉଚ୍ଚବାଚ କରୁଥିବାର ଚିତ୍ର ତୋଳିବା ହିଁ ଥିଲା ସେମାନଙ୍କର ଉଦ୍ଦେଶ୍ୟ । ତେଣୁ ସେ ପୁଣି ବେଞ୍ଚ ଉପରେ ଚୁପ୍ ହୋଇ ବସିଗଲା । ଟେଲିଭିଜନବାଲା ଏଥରକ ସେମାନଙ୍କର ଜିନିଷପତ୍ର ଏକାଠି କରି ଯିବାକୁ ବାହାରିଲେ ଏବଂ ପ୍ରଯୋଜକ ହସ ହସ ମୁହଁରେ ଆସି ଦେବନାଥକୁ ଧନ୍ୟବାଦ ଦେଇ ବିଦାୟ ମାଗିଲା । ପ୍ରାଧ୍ୟାପକ ପୁଣି ଥରେ ତାକୁ କବିତା ଲେଖିବାକୁ ଅନୁରୋଧ କଲା ଏବଂ ବିଦାୟ ନେବାବେଳେ ନାଟକୀୟ ଭଙ୍ଗୀରେ କହିଲା : କବିତା ଦୀର୍ଘଜୀବୀ ହେଉ !

ସମସ୍ତେ ତାକୁ ତା'ର କବିତା କଥା କହନ୍ତି ଯେପରିକି ତା'ର ସଂପୂର୍ଣ୍ଣ ଅବସ୍ଥିତି ତା'ର ଲେଖାର ମାଧ୍ୟମରେ ; କବିତା ବାହାରେ ସେ କିଛି ବି ନୁହେଁ । ତା'ର ପରିଚିତ ଲୋକଙ୍କ ଭିତରେ ଏକମାତ୍ର କୁସୁମର କୌଣସି ଆଗ୍ରହ ନଥିଲା ତା'ର କବିତାରେ । ହୁଏତ ସାହିତ୍ୟ ବିଷୟରେ ହିଁ ସେ ସଂପୂର୍ଣ୍ଣ ଉଦାସୀନ ଥିଲା । ବାସନ୍ତୀ ଚାଲିଯିବା ପରେ ଦିନେ ସକାଳେ କୁସୁମ ନିଜଆଡ଼ୁ ତା ଘରକୁ ଆସିଲା । ସେତେବେଳେ ଦେବନାଥ ଘରେ ତା'ର ରୋଷେଇ କରୁଥିବା ପିଲାଟି ଥିଲା । ତାକୁ କିଛି ନ ପଚାରି ସବୁ କୋଠରି ଓ ଜିନିଷ ପର୍ଯ୍ୟବେକ୍ଷଣ କରିବା ପରେ ଦେବନାଥକୁ କହିଲା, ଘରଟାକୁ କ'ଣ କରି ରଖିଛନ୍ତି ଆପଣ ? ଟିକେ ସେପାଖକୁ ଘୁଞ୍ଚି ବସନ୍ତୁ, ମୁଁ ଏପାଖର ଜିନିଷପତ୍ର ଠିକ୍‌କରି ରଖି ଦେଉଛି । ଏତକ କରିବା ପରେ କୁସୁମ ରୋଷାଇ ଘରକୁ ଯାଇ ପିଲାଟିକୁ ରାନ୍ଧିବାରେ ସାହାଯ୍ୟ କଲା । ଦେବନାଥ ଠିକ୍ କରି ପାରିଲା ନାହିଁ ସେ କୁସୁମକୁ ଧନ୍ୟବାଦ ଦେବ, ଅଥବା ଅନଧିକାର ଚର୍ଚ୍ଚା କରୁଥିବାରୁ ବିରକ୍ତି ପ୍ରକାଶ କରିବ । ଶେଷକୁ ସେ ଚୁପ୍‌ଚାପ୍ ବିଛଣାରେ ଶୋଇରହି ବହି ପଢ଼ିବାରେ ଲାଗିଲା, କୁସୁମ ଘର ସଜଡ଼ାସଜଡ଼ି କରି, ଚାକରକୁ ତାଗିଦା କରି ବିଦାୟ ନେଇ ଚାଲିଯିବା ପର୍ଯ୍ୟନ୍ତ । କୁସୁମ ଏମିତି ମଝିରେ ମଝିରେ ଆସୁଥିଲା, ଯଦିଓ ଦେବନାଥ ତା ସହିତ ଅତି ଅଳ୍ପ କଥାବାର୍ତ୍ତା କରୁଥିଲା ଓ ନିଜଆଡ଼ୁ ତା ପ୍ରତି କୌଣସି ଆଗ୍ରହ ଦେଖାଉ ନଥିଲା । ଯୋଉଦିନ ଦେବନାଥର ଦେହ ଖରାପ ଥିଲା, କୁସୁମ ଅଫିସରୁ ଛୁଟିନେଇ ପୂରାଦିନ ତା ଘରେ ରହିଗଲା ଓ ତା'ର ଦେଖାରଖା କଲା । ଏଇସବୁ ଆତିଶଯ୍ୟ ଦେବନାଥ ମାନି

ନେଉଥିଲା, କିନ୍ତୁ ସଂଧ୍ୟାବେଳେ ଯେତେବେଳେ କୁସୁମ କହିଲା ଯେ ସେ ରାତିରେ ରହିଯିବ, ଦେବନାଥ ତାକୁ ରୋକଠୋକ ମନା କରିଦେଲା । ଯିବା ପୂର୍ବରୁ କିନ୍ତୁ କୁସୁମ ବ୍ୟବସ୍ଥା କରିଦେଇ ଗଲା ଯେ ଚାକର ପିଲା ରାତିରେ ଦେବନାଥ ପାଖରେ ରହିବ ।

ପଛକଥା ଭାବିଲେ ଦେବନାଥର ମନେହୁଏ ସେ ଜୀବନ ବି କିଛି ମନ୍ଦ ନଥିଲା । ଆଜିକାଲି ଆଉ ଅଫିସ ନଥିଲା । ଗାଁରୁ ଡାଲି ଚାଉଳ ଆସୁଥିଲା । ଜଣିକିଆ ଘର ଚଳାଇବାର ଝଞ୍ଜାଳ ବି ଖୁବ୍ ବେଶି ନଥିଲା । ମାସକୁ ମାସ ଯେଉଁ ପେନସନ ଟଙ୍କା ମିଳୁଥିଲା, ସେଇଥିରେ ତା'ର ପିଇବା ସମେତ ମୋଟାମୋଟି ଖର୍ଚ୍ଚ ଚଳି ଯାଉଥିଲା । ମଝିରେ ମଝିରେ ସେ ଖଣ୍ଡେ ଅଧେ ଗୀତ ବି ଲେଖି ଦେଉଥିଲା, ତା'ର ନିଜର ପସନ୍ଦ ହେଉ କି ନ ହେଉ ପଛେ । ଆଜିକାଲି ଗୀତର ବରାଦ ପାଇଲେ ସେ ଆଉ ବାଛବିଚାର କରୁନଥିଲା କି ପ୍ରକାରର ଗୀତ, ସେଥିରେ ଶାଳୀନତା ରହିବ କି ନାହିଁ ଏବଂ ସେ ଗୀତ କେଉଁଭଳି ଭାବେ ବ୍ୟବହାର ହେବ । ତା'ଛଡ଼ା ତାକୁ ସିନେମାର ସଂଳାପ ଲେଖିବାର କାମ ବି ମିଳିଯାଉଥିଲା କେବେ କେବେ । ଦେବନାଥ ଜାଣୁଥିଲା ଯେ ସେ କବିତା ଲେଖି ପାରୁ ନଥିଲେ ବି ତା'ର କଲମରେ ଅନ୍ତତଃ ଏମିତି କିଛି ଅଛି ଯାହା ପାଇଁ ତାକୁ ଲୋକେ ଲୋଡୁଛନ୍ତି ଏବଂ ମଝିରେ ମଝିରେ କାମ ମିଳି ଯାଉଛି ।

ଏଭଳି ସହଜ ଜୀବନଯାତ୍ରାର ପ୍ରଥମ ବିଘ୍ନ ଉପୁଜିଲା ଯେତେବେଳେ ଭଡ଼ାଘରର ମାଲିକ ତାକୁ ଘର ଛାଡ଼ିବା ପାଇଁ କହିଲା । ଚାକିରି ଆରମ୍ଭରୁ ଦେବନାଥ ଏଇ ଘରେ ରହୁଥିଲା ଏବଂ ସାମୟିକ ବଢ଼ିବା ସତ୍ତ୍ୱେ ଭଡ଼ା ଅତ୍ୟନ୍ତ କମ୍ ଥିଲା । ବର୍ତ୍ତମାନ ଚାରିଆଡ଼େ ଭଡ଼ା କମିଯାଇଥିଲା ଏବଂ ଦେବନାଥ ପକ୍ଷରେ ସମ୍ଭବ ନଥିଲା ଆଉ କୋଉଠି ଚଢ଼ାଦରରେ ଘର ନେବ । ତା ବ୍ୟତୀତ ବିନା ଚାକିରି, ସମୟର କୌଣସି ଠିକ୍ ଠିକଣା ନ ଥିବା ମଦ୍ୟପାୟୀକୁ ଘର ମିଳିବାର ସମ୍ଭାବନା କମ୍ ଥିଲା । ପ୍ରଥମେ ପ୍ରଥମେ ସେ ଘରବାଲାର କଥାକୁ ଟାଳିଦେଲା, କହିଲା ସେ ଅନ୍ୟ ଜାଗାରେ ଘର ଖୋଜୁଛି ; ମିଳିଲେ ତା ଘର ଛାଡ଼ିଦେବ । ଅବଶ୍ୟ ସେ ଅନ୍ୟ ଘର ଖୋଜିବା ପାଇଁ କୌଣସି ଚେଷ୍ଟା କଲା ନାହିଁ ଏବଂ ଏଣେ ଘର ମାଲିକଙ୍କର ତାଗିଦା ବଢ଼ି ଚାଲିଲା । ଏଇଭଳି ସାମାନ୍ୟ ଚିନ୍ତାରେ ପଡ଼ିଥିବା ଅବସ୍ଥାରେ ସୌଭାଗ୍ୟକୁ ଗାଁରେ ରହୁଥିବା ଦେବନାଥର ବୁଢ଼ା ବାପା ହଠାତ ମରିଗଲେ ।

ଦେବନାଥ ଥିଲା ବାପା ମା'ଙ୍କର ବଡ଼ପୁଅ । ତା'ର ଭାଇ ଭଉଣୀ ତାକୁ ସମ୍ମାନ କରୁଥିଲେ ଏବଂ ଯେତେବେଳେ କବି ଓ ଗୀତିକାର ଭାବରେ ତା'ର ଖ୍ୟାତି ହେଲା, ତା ସହିତ ଆହୁରି ବେଶି ସଂପର୍କ ରଖିବାରେ ଲାଗିଲେ । ପରବର୍ତ୍ତୀ ସମୟରେ ଅବଶ୍ୟ ଦେବନାଥର ନିମ୍ନଗାମୀ ଅବସ୍ଥାରେ ସେମାନେ ଆସ୍ତେ ଆସ୍ତେ ନିଜକୁ ଦୂରେଇ ରଖିଲେ ଏବଂ ଆଜିକାଲି ସେମାନଙ୍କର ସଂପର୍କ ଥିଲା ମଝିରେ ମଝିରେ ଖଣ୍ଡେ ଅଧେ

ଚିଠି ଓ ବିବାହ ଭଳି ଅନୁଷ୍ଠାନର ନିମନ୍ତ୍ରଣ । ନିଜର ଅବସ୍ଥାକୁ ଦେଖି ଦେବନାଥ ଆଉ ସେମାନଙ୍କ ଘରକୁ ବା ବିବାହ ଉତ୍ସବ ଇତ୍ୟାଦିକୁ ଯାଉ ନଥିଲା, ଏବଂ ସେମାନେ ମଧ୍ୟ ଏ ବିଷୟରେ ଖୁସି ଥିଲେ । ବାପାଙ୍କ ମରିବା ପରେ ଭିନ୍ନ ଭିନ୍ନ ଜାଗାରୁ ଆସି ଭାଇମାନେ ଗାଁରେ ଏକାଠି ହେଲେ ଏବଂ ପ୍ରସ୍ତାବ ଦେଲେ ଯେ ଦେବନାଥ ଗାଁକୁ ଫେରିଆସୁ ଓ ଜମିବାଡ଼ି ସମ୍ଭାଳୁ ।

କୁସୁମ ଥିଲା ଦେବନାଥର ଅନ୍ୟ ଏକ ସମସ୍ୟା । ଯଦିଓ ସେ ନିଜଆଡୁ ତାକୁ କେବେ କିଛି ସ୍ନେହ-ସୋହାଗର କଥା କହି ନଥିଲା, କୁସୁମ ତାକୁ କିପରି ଆପଣାର କରି ନେଇଥିଲା । କୁସୁମ ଭଲ ପ୍ରକୃତିର ଥିଲା, ତା'ର ଯତ୍ନ କରୁଥିଲା ଏବଂ ଦେବନାଥର ସାଙ୍ଗମାନେ ତାକୁ ଥଟ୍ଟାରେ ନୁହେଁ, ଗମ୍ଭୀରତାର ସହିତ କହୁଥିଲେ ଝିଅଟିକୁ ବାହା ହୋଇଯିବା ପାଇଁ । ହସରେ ଉଡ଼ାଇ ଦେଉଥିଲା ଦେବନାଥ ସେମାନଙ୍କର କଥା । ଏ ବୟସରେ ଏବଂ ତା'ର ଏଭଳି ଅବସ୍ଥାରେ, ସେ ପୁଣି ବାହା ହବ ! କୁସୁମ ତାକୁ ଏ ବିଷୟରେ କେବେ କହି ନଥିଲା, ଏପରି କୌଣସି ସୂଚନା ବି ଦେଇ ନଥିଲା । କେବଳ ତାକୁ ଆଦର କରିବା, ତା କଥା ବୁଝିବା ହିଁ କୁସୁମର ଧର୍ମ ଥିଲା, କୌଣସି ପ୍ରତିଦାନର ଅଭିଳାଷ ବିନା । ଦେବନାଥକୁ ଭଲ ଲାଗୁଥିଲା ଝିଅଟି, କିନ୍ତୁ ସେ କେବେହେଲେ ଆଉ କିଛି ବେଶି ଭାବୁ ନଥିଲା । ଯେତେବେଳେ ଦିନେ କୁସୁମ ବାହା ହୋଇ ସହର ଛାଡ଼ି ଚାଲିଗଲା, ଦେବନାଥ କିଛିଦିନ ଉଦାସ ରହିଲା । ମନେ ମନେ କହିଲା, ଭଲ ହେଲା ; ସୁଖରେ ରୁହ କୁସୁମ ।

ଗାଁକୁ ଫେରିଯିବାର ନିଷ୍ପତ୍ତି ନେବା ପରେ ନିଜକୁ ଆହୁରି ହାଲୁକା ବୋଧ କଲା ଦେବନାଥ । ସ୍କୁଲଦିନରୁ ଏ ପର୍ଯ୍ୟନ୍ତ ତା'ର ପୂରା ଜୀବନ କାଟିଥିଲା ସହରରେ । ତେବେ ତା'ର ଜୀବନର କେତେଭାଗ ସଂପୃକ୍ତ ଥିଲା ଏଇ ସହର ସହିତ ? ସେ ସହରର ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ନିର୍ଦ୍ଦିଷ୍ଟ ସାଙ୍ଗମାନଙ୍କ ସହିତ ଛୋଟ ପରିଧିର ଜୀବନ ଜୀଉଁଥିଲା । ଏଥର ଗାଁର ଖୋଲା ପରିବେଶକୁ ଚାଲିଯିବ ସେ । ଗାଁ କଥା ଭାବିଲେ ମନକୁ ଆସୁଥିଲା ଏକ ସରଳ ସବୁଜ ସୁନ୍ଦର ନିଷ୍କପଟ ଜୀବନଯାପନର ଚିତ୍ର । କବିତାର ଗାଁ । ଛୋଟ ମୋର ଗାଁଟି ଓ ରୂପସୀ ବାଂଲା । କିନ୍ତୁ ସେଠାରେ ଯାଇ ଦେଖିଲା ଗାଁଟି ଆଦୌ ତା'ର କଳ୍ପନାର ଜନପଦ ଭଳି ନଥିଲା । ଖରାଦିନର ଗାଁ ଅତ୍ୟନ୍ତ ରୁକ୍ଷ ଓ ଶ୍ରୀହୀନ ଦେଖା ଯାଉଥିଲା, ବର୍ଷା ପରେ ହୋଇଗଲା ଆବିଳ ଓ ଅପରିଚ୍ଛନ୍ନ । ତା ସହିତ ଲୋକମାନଙ୍କର କଥାବାର୍ତ୍ତାର ମୂଳ ବିଷୟ ଥିଲା ଟଙ୍କା ପଇସା ଓ ଜମିବାଡ଼ି । ସେ କେତେଟଙ୍କା ରୋଜଗାର କରୁଛି, ଜମିରୁ କେତେ ଫସଲ ଆସୁଛି ଓ ସେ ମଲାପରେ ଘରଟି କାହା ଭାଗକୁ ଯିବ ଇତ୍ୟାଦି ବିଷୟରେ ତାକୁ ବିସ୍ତୃତ ବିବରଣୀ ଦେବାକୁ ପଡୁଥିଲା ସମସ୍ତଙ୍କୁ । ସେଥିପାଇଁ ସେ ଆସ୍ତେ ଆସ୍ତେ ଗାଁ ଲୋକଙ୍କଠାରୁ ସଂପର୍କ

କାଟିଦେଲା । ତା'ର ପୃଥିବୀ ଆହୁରି ସୀମିତ ହୋଇଗଲା ହରି ମାଷ୍ଟରଙ୍କ ପରିବାର ଓ ମଦଭାଟି ଭିତରେ । ବାହାର ସହିତ ସଂପର୍କ ଥିଲା- ବ୍ୟାଙ୍କକୁ ଯାଇ ପେନ୍‌ସନ ଟଙ୍କା ଆଣିବା ଓ କେବେ କେମିତି ଡାକରେ ମିଳୁଥିବା ଖଣ୍ଡେଅଧେ ଚିଠି ।

ଗାଁଲୋକ ତାକୁ ମଝିରେ ମଝିରେ ପଚାରି ବ୍ୟସ୍ତ କରୁଥିଲେ ଟିଭିବାଲା ଆସି ଯୋଉ ଫଟୋ ଉଠାଇଥିଲେ, ସେ ସିନେମା କେବେ ଦେଖା ହେବ । ଦେବନାଥ ପାଖରେ ଏ କଥାର କୌଣସି ଉତ୍ତର ନଥିଲା । ଏଇ ସମୟରେ ସେ ସେଇ ପ୍ରାଧ୍ୟାପକ ପାଖରୁ ଚିଠିଟି ପାଇଲା : ପ୍ରିୟ କବି, ଦୁଃଖର ସହିତ ଜଣାଇବାକୁ ପଡୁଛି ଯେ ଆପଣଙ୍କ ଉପରେ ହେଉଥିବା ଯେଉଁ ବୃତ୍ତଚିତ୍ରଟି ସହିତ ମୁଁ ସଂପୃକ୍ତ ଥିଲି, ତା'ର ଅକାଳ ମୃତ୍ୟୁ ହୋଇଛି ବୋଲି କହିଲେ ବାହୁଲ୍ୟ ହେବ ନାହିଁ । ବର୍ତ୍ତମାନ ସେମାନେ ଯେଉଁ ଚିତ୍ରଟି କରିଛନ୍ତି, ସେଥିରେ ମୁଁ ଆପଣଙ୍କ ସହିତ କରିଥିବା ପ୍ରଶ୍ନୋତ୍ତର ସବୁକୁ କାଟି ଦିଆଯାଇଛି । ଆହୁରି କ୍ଷୋଭର ବିଷୟ ଏହି ଯେ ଚିତ୍ରଟିକୁ ସେମାନେ ସାହିତ୍ୟ ପତ୍ରିକା ବିଭାଗରେ ନ ଦେଖାଇ ସାମାଜିକ ବ୍ୟାଧି ବିଭାଗରେ ଦେଖାଇବାକୁ ଯାଉଛନ୍ତି । ସେଥିପାଇଁ ମୁଁ ଫିଲ୍ମ ନିର୍ମାତାଙ୍କ ସହିତ ଅସହଯୋଗ କରିବାକୁ ସ୍ଥିର କରିଛି । ମୁଁ ଭାବୁଛି ଆପଣଙ୍କ ପାଇଁ ମଧ୍ୟ ଉଚିତ ହେବ ସେମାନଙ୍କ ସହିତ କୌଣସି ସଂପର୍କ ନ ରଖିବା । ଆପଣ କିନ୍ତୁ ଲେଖିବା ଅବ୍ୟାହତ ରଖନ୍ତୁ ଏବଂ ସରସ୍ୱତୀ ଆପଣଙ୍କ ଉପରେ ପ୍ରସନ୍ନ ହୁଅନ୍ତୁ । କବିତା ଦୀର୍ଘଜୀବୀ ହେଉ ।

ଦେବନାଥ ନିସ୍ପୃହ ଭାବରେ ପଢ଼ିଥିଲା ଚିଠିଟିକୁ ଯେପରି ସେ ପଢ଼ିଥିଲା ଅନେକ ଦିନ ତଳେ କୁସୁମର ଚିଠିଟିକୁ । କିଛି ଆଉ ଲାଭ ନାହିଁ, ଜୀବନର କୌଣସି ସଂପର୍କ ବା କାର୍ଯ୍ୟକଳାପକୁ ଆଗକୁ ବଢ଼ାଇବା । ବାକି ଯେତିକି ଜୀବନ ବଳକା ଅଛି ସେଇ ଦୀର୍ଘ ବୋଧ ହେଉଥିବା ଜୀବନଟିକୁ କିପରି ବିନା ଶାରୀରିକ ମାନସିକ ଆର୍ଥିକ ସମସ୍ୟା ଓ ପୀଡ଼ା ବିନା କଟାଇବାକୁ ହେବ, ସେତିକି ଭାବିବାର କଥା । ଘର, ହରି ମାଷ୍ଟର, ମଦ ଦୋକାନର ଛୋଟ ପୃଥିବୀ ଭିତରେ ବେଶ୍ ରହିହେବ ଅବଶିଷ୍ଟ ସମୟ । ଏଇଟି ସମାଜ ବାହାରେ ଜୀବନ ; ତେବେ ତା'ର କବିର ଜୀବନ ବି ତ ଥିଲା ସମାଜ ବାହାରେ ହିଁ ।

ଆକାଶରେ ଆଉ ଖରା ନାହିଁ । ଶୀତଦିନର ସଂଧ୍ୟା ଶୀଘ୍ର ନଇଁ ଆସୁଛି ଘାସ ଉପରକୁ । ଆଜି ସେ ଖାଇବାକୁ ଭୁଲିଗଲା । ହରି ମାଷ୍ଟରଙ୍କ ଘରେ ତାକୁ କିଛି ସମୟ ଅପେକ୍ଷା କରି ବୁଝିଥିବେ ଯେ ସେ ଫେରିବ ନାହିଁ । ଖୁବ୍ ଭଲଲୋକ ସେମାନେ । ଗାଁ ଲୋକ, ଏପରିକି ତା'ର ଭାଇମାନେ, ତାକୁ ହରି ମାଷ୍ଟରଙ୍କ ବିରୁଦ୍ଧରେ ପ୍ରଭାବିତ କରିବାକୁ ଚେଷ୍ଟା କରିଥା'ନ୍ତି । ମାଷ୍ଟରଙ୍କର କୁଆଡ଼େ ଦେବନାଥର ଘରବାଡ଼ି ଉପରେ ଆଖି । ଦେବନାଥ ସବୁ ଶୁଣେ ; ଚୁପ୍ ରହେ । ସେ କାହିଁକି ବୁଝାଇବାର ଚେଷ୍ଟା କରିବ

କେତେ ସ୍ନେହ ପାଇଛି ସେ ସେମାନଙ୍କ ପାଖରୁ, ଯାହା ପାଇଁ ସେ ସାରା ଜୀବନ ଋଣୀ ରହିବ ? ସେ ଯାହା ଭାବିବାର ଭାବନ୍ତୁ ; ଯେ ଯାହା କହିବାର କହନ୍ତୁ । ତା'ର କୌଣସି ଅଭିଯୋଗ ନାହିଁ କେଉଁ ବିଷୟରେ, କାହା ବିରୁଦ୍ଧରେ । ସେ କବିର ନିଃସଙ୍ଗ ଏକାନ୍ତ ଜୀବନ ଚାହିଁଥିଲା, ପାଇଲା । ଜାଣି ଜାଣି ଆଉ ସବୁ ଛାଡ଼ିଦେଲା ।

କୁସୁମ ଲେଖିଥିଲା : ଆଜି ତମେ ଅନେକ ମନେ ପଡ଼ିବାରୁ ତମ ପାଖକୁ ଜୀବନର ପ୍ରଥମ ଚିଠି ଲେଖୁଛି । ପୁଅ ବଡ଼ ହେବାରେ ଲାଗିଛି ଓ ମୋର ଘର ସଂସାର ଠିକ୍‌ରେ ଚାଲିଛି । ତେବେ ଅନେକ ସମୟରେ ତମ କଥା ମନେପଡ଼େ । ଆଉ ଜାଣ, ତମେ ଯଦି ମତେ କେବେ କହିବ ମୋ ପାଖକୁ ଚାଲିଆ' ବୋଲି, ମୁଁ ସେଇ ମୁହୂର୍ତ୍ତରେ ସବୁକିଛି ଛାଡ଼ିଦେଇ ତମ ପାଖକୁ ଫେରି ଆସିବି ।

ଦେବନାଥ ଯିବାପାଇଁ ଉଠି ଠିଆ ହେଲା । ମଦ ଦୋକାନର ବେଢ଼ା ବାହାରେ ଚିହ୍ନା ରିକ୍ସା ଦେଖା ଯାଉଛି । ସେ ଘରକୁ ଫେରିଯିବ ଏଥର । ତା ପାଖରେ ଆଉ ଗୀତ ନାହିଁ କବିତା ନାହିଁ, ଶବ୍ଦ ନାହିଁ ସୁର ନାହିଁ । କାହିଁ କେଉଁଠି କେତେ ପଛରେ ରହିଗଲେ ସମସ୍ତେ । ତେବେ ନିଜପାଇଁ ସେ କବିତାର ଯେଉଁ ସ୍ୱତନ୍ତ୍ର ପୃଥିବୀଟିକୁ ତିଆରି କରିଥିଲା କେଉଁ ସମୟରେ, ସେଇଟି ତା ପାଖରେ ରହିଯାଇଛି । ଏବଂ ସେଇ ପରିମିତ ପରିସର ଭିତରେ ସେ ଜାଣେ ସେ ସ୍ୱଚ୍ଛନ୍ଦରେ କାଟିଦେବ ଜୀବନର ବାକିସବୁ ଦିନ ।

Printed at Rakmo Press Pvt. Ltd.. New Delhi-110020

ଓଡ଼ିଆ କ୍ଷୁଦ୍ରଗଳ୍ପକୁ ଭାବାଳୁତାରୁ ମୁକ୍ତି ଦେଇ ସଂଯତ, ବସ୍ତୁନିଷ୍ଠ ଓ ସର୍ବୋପରି ଆଧୁନିକ କରିତୋଳିବା କ୍ଷେତ୍ରରେ **ଜଗନ୍ନାଥ ପ୍ରସାଦ ଦାସ** (୧୯୩୬)ଙ୍କ ଭୂମିକା ଉଲ୍ଲେଖଯୋଗ୍ୟ । ଆବେଗମୁକ୍ତ ନିର୍ମୋହ ଦୃଷ୍ଟି ଓ ମନନଧର୍ମୀ ବିଶ୍ଲେଷଣ ନେଇ ସେ ଆଧୁନିକ ଜୀବନକୁ ନିଜସ୍ୱ ଛନ୍ଦରେ ରୂପାୟିତ ହେବାକୁ ଦେଇଛନ୍ତି । ଏକ ଦୁର୍ବୋଧ ଜଗତରେ ପୀଡ଼ିତ ଅସ୍ତିତ୍ୱର ଅର୍ଥ ଅନ୍ୱେଷଣ ତାଙ୍କ ଗଳ୍ପର ଅନ୍ତଃସ୍ୱର । ଜଗନ୍ନାଥ ପ୍ରସାଦ ଏକାଧାରରେ କବି, ଗାଳ୍ପିକ, ନାଟ୍ୟକାର, ଔପନ୍ୟାସିକ, ଗବେଷକ ଓ ଚିତ୍ରକର । କଳା-ଇତିହାସରେ ପିଏଚ୍‌ଡି ଡିଗ୍ରୀପ୍ରାପ୍ତ ଡକ୍ଟର ଦାସଙ୍କର ପାରମ୍ପରିକ ଓଡ଼ିଶୀ ଚିତ୍ରକଳାର ଗବେଷଣା କ୍ଷେତ୍ରରେ ଏକ ବିଶେଷ ପରିଚିତି ଅଛି । ଭାରତୀୟ ପ୍ରଶାସନିକ ସେବାରୁ ସ୍ୱେଚ୍ଛାରେ ଅବ୍ୟାହତି ନେଇ କଳା ଓ ସାହିତ୍ୟ ଭିତରେ ନିଜକୁ ନିୟୋଜିତ କରିଥିବା ଡକ୍ଟର ଦାସ ସର୍ବଭାରତୀୟ ସ୍ତରରେ ଏକ ପରିଚିତ ସାରସ୍ୱତ ବ୍ୟକ୍ତିତ୍ୱ । ତାଙ୍କର ଅନେକ କୃତି ଇଂରାଜୀ, ହିନ୍ଦୀ ଓ ବିଭିନ୍ନ ଭାରତୀୟ ଭାଷାରେ ଅନୂଦିତ । ନିଜସ୍ୱ ସାହିତ୍ୟକୃତି ପାଇଁ ସେ ସାହିତ୍ୟ ଅକାଦେମୀ, ସରସ୍ୱତୀ ସମ୍ମାନ, ସାରଳା ସମ୍ମାନ ଆଦି ବହୁ ମର୍ଯ୍ୟାଦାଜନକ ପୁରସ୍କାରରେ ସମ୍ମାନିତ ।

ସଂକଳକ **ଗୁରୁଚରଣ ବେହେରା** ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଇଂରାଜୀ ବିଭାଗରେ ସାମ୍ପ୍ରତିକ ସାହିତ୍ୟର ପ୍ରଫେସର ଭାବରେ କାର୍ଯ୍ୟ କରୁଛନ୍ତି । ବ୍ରିଟିଶ ନାଟ୍ୟକାର ହାରଲଡ ପିଣ୍ଟରଙ୍କ ସମ୍ପର୍କରେ ଗବେଷଣା କରି ପିଏଚଡି ଲାଭ କରିଥିବା ଡକ୍ଟର ବେହେରାଙ୍କ ଅନେକ ଗବେଷଣାମୂଳକ ପ୍ରବନ୍ଧ ଦେଶ-ବିଦେଶର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । 'ଅନେକ ଆଧୁନିକତା' ତାଙ୍କର ଏକ ଉଲ୍ଲେଖଯୋଗ୍ୟ ସମାଲୋଚନା ପୁସ୍ତକ । ଉଭୟ ଓଡ଼ିଆ ଓ ଇଂରାଜୀରେ ଜଣେ ଅନୁବାଦକ ଭାବେ ମଧ୍ୟ ସେ ପରିଚିତ ।

Jagannath Prasad Dasanka Shrestha Galpa (Odia)




ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

